JIBANARA JANAPATHARE
by Girija Bhusan Patnaik
Published by Vidyapuri, Cuttack 753 002

ISBN 978-81-7411-617-8

ପ୍ରଥମ ପ୍ରକାଶ ଜୁନ୍ ୨୦୦୭

ପ୍ରକାଶକ
ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

ଲିପିସଂଯୋଜନ
ଦି' ପ୍ରିଣ୍ଟୋଭର୍ସ
ମୈତ୍ରୀ ସରଣୀ, କଟକ ୭୫୩୦୦୧

ମୁଦ୍ରଣ
ଦି' ପ୍ରିଣ୍ଟୋଭର୍ସ
ମୈତ୍ରୀ ସରଣୀ, କଟକ ୭୫୩୦୦୧

ମୂଲ୍ୟ ଟ ୧୩୦.୦୦

ଯେଉଁମାନଙ୍କର ଜୀବନ
ମୋତେ ଅନୁପ୍ରାଣିତ, ଅଭିଭୂତ
ଏବଂ ପ୍ରଭାବିତ କରିଛି,
ଯେଉଁମାନଙ୍କର ଜୀବନ ମୋତେ
ଏହିପରି ବଞ୍ଚିବାପାଇଁ ସାହାଯ୍ୟ କରିଛି
ସେମାନଙ୍କ ପୁଣ୍ୟ ସ୍ମୃତିରେ
ଏହି ସଂକଳନଟି ନିବେଦିତ ।

## ଶପଥ ପାଠ

ମୁଁ ଯାହା ଲେଖୁଛି
ସତ ଲେଖୁଛି, ମିଛ ଲେଖୁ ନାହିଁ;
କିନ୍ତୁ ପୂରା ସତ୍ୟ ଲେଖୁ ନାହିଁ:
କାରଣ ତାହା ମୁଁ ଲେଖିପାରିବି ନାହିଁ ।
କିନ୍ତୁ କାହାରି ବ୍ୟକ୍ତିଗତ ଆଘାତ ପାଇଁ
ମୋର ଲେଖା ଉଦ୍ଦିଷ୍ଟ ନୁହେଁ ।
ସମୟ ଉପରେ ଯେତିକି ଲେଖା
କେବଳ ସେଇତକ ଲେଖିବାକୁ
ମୁଁ ବ୍ୱାଧ ହୋଇଚି ।
ଦୈବାତ୍, କେହି
ବ୍ୟକ୍ତିଗତ ଆଘାତ ପାଇଥିଲେ
ସେଥିପାଇଁ କ୍ଷମା ମାଗି ନେଉଛି ।

# ମୁଖବନ୍ଧ

ଜୀବନରେ କେବେ ସ୍ମୃତିକୁ ପଖାଳିବାକୁ ପଡ଼ିବ, ଇମିତି କଳ୍ପନା କେବେ ନ ଥିଲା । ଜୀବନଟା ବି ଇମିତି ନୁହେଁ ଯେ, ସେଥିରେ ଖୁବ୍ ବେଶୀ ବଡ଼ କାମ କ'ଣ ଗୋଟାଏ କରିପକାଇଛି ତାକୁ ଟିପି ଦେଇହେବ । ତେଣୁ ଡାଇରୀ ନାହିଁ କି ନୋଟ୍ ବହି ନାହିଁ । ଅଛି ଖାଲି ସ୍ମୃତି । ଯାହା ଶିଖିଚି, ଯାହା ଶୁଣିଚି, ଯାହା ମନକୁ ଲାଗିଛି କି ତାକୁ ପ୍ରଭାବିତ କରିଛି ତାକୁ ସବୁ ପଖାଳିଚି । ତା' ମଧ୍ୟ ପୂରା ହେଲା ନାହିଁ । ଦୁଇଟି ଷ୍ଟ୍ରୋକ୍ ଓ ମସ୍ତିଷ୍କରେ ରକ୍ତସ୍ରାବ ହେତୁ ତିନୋଟି ଅସ୍ତ୍ରୋପଚାର ପରେ ଯାହା ଅବସ୍ଥା ହୋଇଥିଲା, ସେଥିରୁ ମୁଁ ମନେ କରିଥିଲି ଯେ ଏଥିରୁ ଉବୁରିବା କଷ୍ଟ । କାରଣ ବସିବା ମଧ୍ୟ ସମ୍ଭବ ହୋଇପାରୁ ନ ଥିଲା । ଆଉ କେତେ ଶୋଇବ ମଣିଷ ? ତେବେ ଡାକ୍ତର ଏବଂ ଯୋଗାଭ୍ୟାସ ଯୋଗୁଁ ଅବସ୍ଥା ସୁଧୁରିଲା କିଛି କିଛି । କିନ୍ତୁ ଏ ପର୍ଯ୍ୟନ୍ତ ଚାଲିବା ସମ୍ଭବ ହୋଇ ନାହିଁ କି ଉପରବେଳାକୁ ମସ୍ତିଷ୍କ, ଆଖି ଠିକ୍ କାମ କରୁ ନାହିଁ । ଗୋଡ଼ ଫୁଲି ଯାଉଛି ଭୀଷଣ ଭାବରେ । ଡାକ୍ତର ଭବାନୀ ଦାସ, ଡାକ୍ତର ପି. ତେଜେଶ୍ୱର ରାଓ, ଡାକ୍ତର ବାଳକୃଷ୍ଣ କୁଅଁର, ଡାକ୍ତର ଯଦୁନାଥ ପ୍ରସାଦ ଦାସ, ଡାକ୍ତର ଲକ୍ଷ୍ମୀକାନ୍ତ ସାହୁ, ଡାକ୍ତର ଆଲୋକ କାନୁନ୍‌ଗୋ, ଡାକ୍ତର କେ.ସି.ପାଢ଼ୀ, ଡାକ୍ତର ସବ୍ୟସାଚୀ ଦାସ, ଡାକ୍ତର ସନାତନ ରଥ, ଡାକ୍ତର ପାର୍ଥ ଦାସ, ଡାକ୍ତର ରେବତୀ ଦାସ, ଡାକ୍ତର ରାଜକିଶୋର ଦାସ ଆମର ପାରିବାରିକ ବନ୍ଧୁ, ଆତ୍ମୀୟ । ଆମ ପାଇଁ ଖାଲି ଡାକ୍ତର ନୁହନ୍ତି, ସେମାନେ ରୋଗ ଦେଖନ୍ତି, ଯାହା ଔଷଧ ଥାଏ ଦିଅନ୍ତି । ତଥାପି ଜଣେ ମଧ୍ୟବିତ୍ତ ପରିବାର ମଣିଷ ପକ୍ଷରେ, ଔଷଧ ଖର୍ଚ୍ଚ ତୁଲାଇବା କଠିନ । ମୋର ତ ରୋଜଗାର ନାହିଁ । ସ୍ୱାଧୀନତା ସଂଗ୍ରାମରେ କିଛି ଅଂଶ ଗ୍ରହଣ କରିଥିଲି । କିନ୍ତୁ ଭତ୍ତା ପାଇଁ ଦ୍ୱାରସ୍ଥ ହୋଇ ନାହିଁ । କାଳକ୍ରମେ ପରିଚିତି ମୂଲ୍ୟହୀନ ହୋଇଯାଉଛି । ଗୁଡ଼ାଏ ଦିନ ବଂଚିଲେ ଏବଂ ପୁଣି ଅଚଳ ହୋଇଗଲେ ଏଇ ସମସ୍ୟା ଦେଖାଯିବ । ସେ ସଂପର୍କରେ ମୁଁ ସଚେତନ । ତେବେ ଯୋଗ କରିବା ଫଳରେ ଟିକିଏ ଦକ୍ଷତା ବଢ଼ିଯିବା ହେତୁ ହାତ କୁଣ୍ଡାଇ ହେଲା ଲେଖିବା ପାଇଁ । ପାରିବାରିକ ଆତ୍ମୀୟା ଯୋଗ ଶିକ୍ଷୟିତ୍ରୀ ଡାକ୍ତର ପଞ୍ଚଶୀଳ ଦାଶ ଯୋଗ ଶିଖାଇଲେ । ଆସ୍ଥା ଚାନେଲରୁ ବାବା ରାମଦେବ ଦେଉଥିବା ଯୋଗଶିକ୍ଷାରୁ ପାଞ୍ଚୋଟି ଯୋଗ ପ୍ରତିଦିନ କରିବା ଫଳରେ ନିଶ୍ଚିତ ଭାବରେ କିଛି ଲାଭ ହେଲା । ପୁରୁଣା ବନ୍ଧୁମାନେ ଲେଖିଲେ ଜୀବନ ସ୍ମୃତି ଲେଖିବା ପାଇଁ ପୁଣି ।

କୌଣସି ଏକ ଜନ୍ମ ଦିବସରେ ବୋଧହୁଏ ପଖଳା ସ୍ମୃତିର ପ୍ରଥମ ଖଣ୍ଡ ଜୀବନର ବାଟେଘାଟେ ଉନ୍ମୋଚିତ ହେଲା । ସେଇଦିନ ହିଁ ସକାଳୁ ବାକ୍‌ଶକ୍ତି ବ୍ୟାହତ ହୋଇଗଲା ଏବଂ ଡାକ୍ତରଖାନାକୁ ଗଲି ଅସ୍ତ୍ରୋପଚାର ପାଇଁ । ଆଗରୁ ରିଲିଫ୍ କାମ ବେଳେ ପ୍ରଥମ ଷ୍ଟ୍ରୋକ୍ ହୋଇଥିଲା । ହଠାତ ଯେଉଁ ସନ୍ଧ୍ୟାରେ ପଦିଆର ହତ୍ୟା ହେଲା, ସେଇଦିନ ମୁଁ ଡାକ୍ତର କେ.ସି. ପାଢ଼ୀଙ୍କୁ ଆଖି ଦେଖାଇବା ପାଇଁ ସେଇ ଗଳିରେ ପଶିବାର ଅବ୍ୟବହିତ

ପୂର୍ବଗୁ ଏଇ କାଣ୍ଡ ଘଟିଗଲା ସେଇଠି । ବନ୍ଧୁ ଉମେଶ କୌଣସିମତେ ଗାଡ଼ି ନେଇ ଖସିଆସିଲେ ସେଇଠୁ । ତା'ପରଦିନ ଦ୍ୱିତୀୟ ଷ୍ଟ୍ରୋକ୍ । ଅବସ୍ଥା ଶୋଚନୀୟ ହୋଇଗଲା ।

ସେତିକିବେଳେ ଆଉ ଜଣେ ଅଧ୍ୟାପକ ବନ୍ଧୁ ମୋତେ ଫୋନ୍ କରି ଅଭିନନ୍ଦନ ଜଣାଇଲେ ଯେ ମୋର 'ଜୀବନର ବାଟେଘାଟେ' ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ହେବାର ନିଷ୍ପତ୍ତି ହୋଇଛି । ସେ ମୋ'ଠାରୁ ବୟସରେ ସାନ । ପୋଷ୍ଟ ଗ୍ରାଜୁଏଟ୍ ହଷ୍ଟେଲ୍ (ରେଭେନ୍ସା ଓ.ଏମ୍.ପି. ପାଖ ମୟୂରଭଞ୍ଜ କୋଠି)ରେ ଆମେ ଏକାଠି ଥିଲୁ । ତାଙ୍କ ନାମ କହିବି ନାହିଁ । କାଳେ ସେ ଅପ୍ରତିଭ ହେବେ । ପରେ ମୋର ଆଉ ଜଣେ ବନ୍ଧୁ ବି ସେଇକଥା କହି ବଧାଇ ଜଣାଇଲେ । ଆଗରୁ କହିଚି ମୁଁ ଲେଖକ ନୁହେଁ । ମୁଁ ଲେଖୁ ଲେଖୁ କରଣ । ଦରକାର ପଡ଼ିଲା । ଅନ୍ୟମାନେ ପ୍ରେରଣା ଦେଲେ । ଶ୍ରୀ ବିଜୟ ଦାସ, ଶ୍ରୀ ମନମୋହନ ମିଶ୍ର, ଶ୍ରୀ ବନମାଳୀ ଦାସ, ଶ୍ରୀ ବ୍ରଜବନ୍ଧୁ ମିଶ୍ର ପ୍ରେରଣା ଦେଇଛନ୍ତି । ସହପାଠୀ ଶିବାଜି ପଟ୍ଟନାୟକ, ବିଶ୍ୱମ୍ଭର ସାମନ୍ତ, ମନୋଜ ଦାସ ତାଗିଦ କରିଛନ୍ତି ଲେଖା କାହିଁକି ସରି ନାହିଁ ବୋଲି । ଡାକ୍ତର ସଦାଶିବ ମିଶ୍ର, ଡକ୍ଟର ବୈଦ୍ୟନାଥ ମିଶ୍ର ଉତ୍ସାହ ଦେଇଛନ୍ତି । ସେଦିନ ସମ୍ବାଦ ପାଇଲା ପରେ ବିଶେଷ କିଛି ଘଟି ନ ଥିଲା । କାରଣ ବନ୍ଧୁମାନେ ଜିଗର ଲଗାଇଲେ ବୋଲି ଲେଖୁ ଲେଖୁ ଲେଖିଦେଲି । ରାମହରି ମିଶ୍ର, ସାରଦା ପ୍ରସନ୍ନ ନନ୍ଦ, ବସନ୍ତ ଦାସ ପ୍ରଭୃତିଙ୍କ ଜିଗର ମନେପଡୁଛି । କିନ୍ତୁ ବୟସ ଅନେକ ହୋଇଗଲାଣି । କୌଣସି ଆୱାର୍ଡ଼ ଉତ୍ତେଜିତ କରିବାର ବୟସ ଆଉ ନାହିଁ ।

ବହିଟା ଯେ ଆୱାର୍ଡ଼ ପାଇଁ ଯାଇଛି, ଏକଥା ମୁଁ ଜାଣି ନ ଥିଲି । ବନ୍ଧୁ ବିଜୟ ସିଂହ ଏହା କରିଥିଲେ ମୋର ଅଜାଣତରେ ଏବଂ ବନ୍ଧୁ ମତଲୁବ ଅଲ୍ଲୀ ତାକୁ ଛାପିବାକୁ ଲାଗିଥିଲେ ତାଙ୍କ ପତ୍ରିକାରେ । କିନ୍ତୁ ହଠାତ୍ ସେ ଘୋଷଣା କୁଆଡ଼େ ହଜିଗଲା ଏବଂ ତା'ର ପ୍ରାୟ ତିନିବର୍ଷ ପରେ ହଠାତ୍ ବନ୍ଧୁ ବିଜୟାନନ୍ଦ ସିଂହ ଏବଂ ପରେ ପରେ ହୁସେନ ରବି ଗାନ୍ଧୀ ଦିନେ ଫୋନ୍ କଲେ ଯେ, ବହି ପୁରସ୍କାର ପାଇଛି । ଏ ତିନିବର୍ଷର ଇତିହାସ ଲେଖି ଲାଭ ନାହିଁ । ସେଇଯୋଗୁଁ ହିଁ ପୁରସ୍କାର ଗ୍ରହଣ କଲି । ଯାଇ ତ ପାରିବି ନାହିଁ । ଝିଅ ଯାଇ ଆଣିଲା ସନନ୍ଦ ଏବଂ ପୁରସ୍କାର ।

ସେମାନଙ୍କର ପୁଣି ସେଇ ଜିଗର । ଆହୁରି ଅନେକ କଥା ବାକି ରହିଗଲା, ଲେଖନ୍ତୁ, ଲେଖନ୍ତୁ, ଲେଖନ୍ତୁ । ଅନୁରୋଧ ଭାଙ୍ଗିବା ଭାରି କଷ୍ଟ । ତେବେ ଗୋଟିଏ କଥା । ଯେଉଁଦିନ 'ଜୀବନର ବାଟେଘାଟେ'ର ଉନ୍ମୋଚନ, ସେଇଦିନ ହିଁ ଅସ୍ତ୍ରୋପଚାର । ସୁତରାଂ ପ୍ରଥମ ନିଷ୍ପତ୍ତି ଯେ ବହିର ନାମ ସେଇଆ ରହିବ ନାହିଁ । ବହିର ନୂଆ ନାମ ହେବ 'ଜୀବନର ଜନପଥରେ' । କେତେ ବାଟ ଯିବ କହିପାରିବି ନାହିଁ । ଯଦି ନ ସରେ ତୃତୀୟ ଖଣ୍ଡ ଲେଖିବି, ଭଲ ଥିଲେ । ଦ୍ୱିତୀୟ କଥା ମୋ'ଠାରୁ ଯେଉଁମାନେ ବୟସରେ ବଡ଼, ସେମାନଙ୍କୁ ବହି ବିଷୟରେ କହିବା ପାଇଁ ନିମନ୍ତ୍ରଣ କରିବି ନାହିଁ । ୟୁନିଭର୍ସର ବନ୍ଧୁ ଓ ପରିବାରର ଅନ୍ୟମାନଙ୍କୁ ସେଇ କଥା କହିଛି ଏବଂ ସେମାନେ ରାଜି ହୋଇଛନ୍ତି ।

ୟୁନିଭର୍ସର ଆର୍ଥିକ ସ୍ଥିତି ଭଲ ନୁହେଁ । ପ୍ରକାଶିତ ବହିସବୁ ପଡ଼ିରହିଛି । କାରଣ ମାର୍କେଟିଂ ସେମିନାରୀ ଆମର ନାହିଁ । ମୁଁ ଅସୁସ୍ଥ । ସେମାନଙ୍କ ଉପରେ ଏଇ ଆର୍ଥିକ ବୋଝ ଲଦିଦେଲେ ବି ସେମାନେ ପାରିବେ ନାହିଁ । ପାରିବାରିକ ବନ୍ଧୁ ଶ୍ରୀ ପୀତାମ୍ବର ମିଶ୍ର ସମ୍ମତି ଦେଲେ ବହିଟି ପ୍ରକାଶ କରିବା ପାଇଁ । ତାଙ୍କ ପାଖରେ କୃତଜ୍ଞ ମୁଁ ।

ମୁଁ ଆଗରୁ କହିଚି ଯେ ମୋର ଜୀବନର କ୍ରମ ନାହିଁ । ନୋଟ୍ ନାହିଁ, କିଛି ଟିପି ନାହିଁ । ତେଣୁ ଲେଖାର ବି କ୍ରମ ନାହିଁ । ପଠାଣିବାବୁ, ବିଜୟ ସିଂହ ପ୍ରାୟ ପଢ଼ିଛନ୍ତି ପାଣ୍ଡୁଲିପିଟିକୁ । ସେମାନଙ୍କ ଉପରେ ଲଦିଦେଇଛି ସଂଶୋଧନ କରିବାର ଦାୟିତ୍ୱ । ଚିତ୍ତବାବୁ ଶୁଣିଲେ ମାରି ଗୋଡ଼ାଇବେ । ଲେଖିବେ ତ ଯାହା ମନେପଡ଼ିଲା, ସେଥିରେ ପୁଣି ସଂଶୋଧନ କ'ଣ, ସଂଶୋଧନ କ'ଣ ଭାବନାର ନା ଲେଖାର ? ସେ ପଣ୍ଡିତ ଲୋକ । ଅନେକ କଥା କରିଛନ୍ତି, ଲେଖିଛନ୍ତି । ଆଉ ମୋତେ ତାଙ୍କ ସାଙ୍ଗରେ ତୁଳନା କଲେ ଲାଭ କ'ଣ ?

ତେବେ ବହିଟିରେ ମୁଁ ଜନପଥର ଶେଷ ପର୍ଯ୍ୟାୟରେ ପହଞ୍ଚିଯିବି ବୋଲି ଭାବୁଛି । ତା'ପରଟା ହେଉଛି ରାଜପଥ, ବେଶୀ କଳିଗୋଳ, ହଙ୍ଗାମା ନାହିଁ । ସେଇ ରାଜପଥ ଲମ୍ବିଯିବ ରେଭେନ୍ସା କଲେଜରୁ ୟୁନିଭର୍ସ ଦେଇ ବୈଦ୍ୟୁତିକ ଚୁଲା ପର୍ଯ୍ୟନ୍ତ । କିଏ ଜଣେ କହୁଥିଲା ଯେ କଟକରେ କୁଆଡ଼େ ଆଉ ଗୋଟାଏ ବୈଦ୍ୟୁତିକ ଚୁଲା ତିଆରି ହେବ । କାଳେ ଗୋଟାଏ ଖରାପ ଥିଲେ ଆରଟାକୁ ବ୍ୟବହାର କରିହେବ । ଭାବୁଛି ଶୀଘ୍ର ହେଇଯିବ ବୋଲି ସେଇଟା ।

ମୁଁ ତ କହିଛି ଯେ ମୋର ମୃତ୍ୟୁରେ ବିଶେଷ ସମୟ ଅପେକ୍ଷା କରିବ ନାହିଁ । ବିଶେଷ କାହାକୁ ଅପେକ୍ଷା କରିବ ନାହିଁ । ଜନସାଧାରଣଙ୍କଠାରୁ ମୁଁ ବହୁତ ସ୍ନେହ, ସ୍ୱୀକୃତି ପାଇଛି, ସୀମା ଆନ୍ଦୋଳନ, କୋଲକାତାର ସହିଦ ମିନାର ସଭା, କଟକନଗର ସହସ୍ର ବାର୍ଷିକୀ ଉତ୍ସବ ପ୍ରଭୃତିରେ ବିଶାଳ ଜନସଭାରେ ଭାଷଣ ଦେବାର ସୁଯୋଗ ମିଳିଛି । ପୃଥିବୀର ଅନେକ ଦେଶରେ ବହୁ ଆନ୍ତର୍ଜାତିକ ସମ୍ମିଳନୀରେ ଯୋଗଦାନ କରିଛି । ପୃଥିବୀର ବହୁ ବିଶିଷ୍ଟ ବ୍ୟକ୍ତିଙ୍କୁ ଭେଟିଛି । ଆଦିବାସୀମାନଙ୍କ ଉପରେ ଗବେଷଣା କରି ଦଶଟି ପୁସ୍ତକ ସମ୍ପାଦନାରେ ସହାୟକ ହୋଇଛି । ବାର ଚଉଦଟି ଆନ୍ତର୍ଜାତିକ ସେମିନାର କଟକରେ କରିବା ପାଇଁ ସକ୍ରିୟ ଭୂମିକା ଗ୍ରହଣ କରିଛି । କଟକ ତଥା ଓଡ଼ିଶାକୁ ଜାତୀୟ, ଆନ୍ତର୍ଜାତୀୟ ସ୍ତରରେ ପରିଚିତି ପାଇଁ ଭୂମିକା ଗ୍ରହଣ କରିଛି । ବିଭିନ୍ନ ସମସ୍ୟା ଉପରେ ବିଭିନ୍ନ ଖବରକାଗଜ, ମେଗାଜିନ୍, ଜର୍ଣ୍ଣାଲରେ ଲେଖିଛି । ଲେଖୁ ଲେଖୁ ସାତ ଆଠଟି ବହି ନିଜେ ଲେଖିଦେଇଛି ।

ଆୱାର୍ଡ଼, ଉପାଧି, ପୁରସ୍କାର ପାଇଁ ଆଗ୍ରହ ଉତ୍କଣ୍ଠା ମୋର କେବେ ନ ଥିଲା ବା ଆଜି ନାହିଁ । ଥିଲେ ସେମିତି ଏକ 'ପଦ୍ମ' ସ୍ୱୀକୃତି ସମରବଲ୍ଲଭ ମୋତେ ଦେବା ପାଇଁ ସଫଳ ହୋଇଥାନ୍ତେ ପଇଁତିରିଶ ବର୍ଷ ତଳେ । ଆମେରିକାର ବିଭିନ୍ନ ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ୍ ଉପାଧି ପାଇଁ ପ୍ରସ୍ତାବନା ଚିତ୍ତବାବୁ, ହରିଶବାବୁ, ମୁଁ ପାଇଛୁ, ଅନେକ ବାର । ସେ ଚିଠିର ଉତ୍ତର ମଧ ଆମେ ଦେଇ ନାହୁଁ, ଗ୍ରହଣ କରିବା ଦୂରର କଥା ।

ସବୁଠାରୁ ବେଶୀ ପୁଣ୍ୟ ଅର୍ଜନ କରିଛି, ଦୁଇ ହଜାରରୁ ଅଧିକ ଶବଦାହ କରି । ତେଣୁ ମୋତେ ନେଇଯିବ ବୈଦ୍ୟୁତିକ ଚୁଲାକୁ ମୃତ୍ୟୁ ପରେ ।

ମୁଁ ରେସ୍‌ନାଲିଷ୍ଟ, ଆଗ୍ନେଷ୍ଟିକ୍ । ମୁଁ ପୁରୋହିତବାଦରେ ବିଶ୍ୱାସ କରେନା । ତେଣୁ ମୋ ପାଇଁ କ୍ରିୟା ଇତ୍ୟାଦି କରାଯିବା ଉଚିତ ନୁହେଁ । ମୁଖାଗ୍ନି ଯିଏ ଦେଲେ ଚଳିବ । ପୁତ୍ର, କନ୍ୟା, ଜାମାତା, ବନ୍ଧୁ ଯିଏ ହେଲେ ଚଳିବ ।

ମୋର କୌଣସି ସମାଧି ହେବ ନାହିଁ । ମଧ୍ୟବିତ୍ତ ପରିବାରରୁ ଆସିଥିଲି । ମଝିରେ ବେଶ୍ କିଛି ବର୍ଷ ଆର୍ଥିକ ଅବସ୍ଥା ବହୁତ ଖରାପ ଥିଲା । ଜନସାଧାରଣ, ପରିବାର ଏବଂ ବନ୍ଧୁମାନଙ୍କ ଦୟାରୁ ମୁଁ ବଞ୍ଚିରହିଛି ଏପର୍ଯ୍ୟନ୍ତ । ସେମାନଙ୍କୁ ମୁଁ ଆଉ ବେଶୀ ବୋଝ ଦେବାକୁ ଚାହୁଁ ନାହିଁ । ମୋତେ କାନ୍ଧରେ ନେବା ଦରକାର ନାହିଁ । ଶବ ବୋହିବା ଗାଡ଼ି ଏବେ ମିଳିଲାଣି ଭଡ଼ାରେ । ସେଇଥିରେ ବା ଯେକୌଣସି ଗାଡ଼ିରେ ନେଇଯିବ । ସ୍ୱର୍ଗରେ ମୋର ବିଶ୍ୱାସ ନାହିଁ । କାନ୍ଧରେ ନେଲେ କିଏ ସେ 'ସ୍ୱର୍ଗ'କୁ ଯାଏ ମୁଁ ଜାଣେନା । (crystallises serial ideas is religion) ସେଇଯୋଗୁଁ ସବୁ ସାମାଜିକ ଆବଶ୍ୟକତା ପଦ୍ଧତିରେ ପରିଣତ ହୋଇଛି । ମୋଜାଇକ୍ ଫ୍ଲୋର୍‌ରେ ଗୋବର ପାଣି ଛିଞ୍ଚି ପବିତ୍ର ହେବା ଯାହା, ନଦୀକୂଳରେ ରହି ଗୋଟିଏ କମଣ୍ଡଳୁରେ ସବୁ ନିତ୍ୟକର୍ମ କରିବା ସେଇଆ ।

କେବଳ ନେଲାବେଳେ ମୋତେ ରେଭେନ୍ସା କଲେଜ ଏବଂ ୟୁନିଭର୍ସ ବାଟରେ ନେବ । ସେଇଠି ରେଭେନ୍ସା କଲେଜ ପୋର୍ଟିକୋ ପାଖରେ ମୋତେ ଛାଡ଼ିଦେବ ଏକୁଟିଆ ମାତ୍ର ଦଶମିନିଟ୍ ପାଇଁ ।

ସକ୍ଷମ ଥାଇ ବି ମରିବି, ଏଇ ଏକମାତ୍ର କାମନା । ମୃତ୍ୟୁକୁ ମୋର ଭୟ ନାହିଁ । ତା' ସାଙ୍ଗରେ ଦେଖା ହୋଇଛି ବହୁବାର । ଭୟ ରୋଗକୁ, ଯନ୍ତ୍ରଣାକୁ । ଶୁଣୁଥିବ କହୁଛନ୍ତି, ତାଙ୍କ ବୁଢ଼ା ଗଲେଣି, ଆମ ବୁଢ଼ା ଘାଣ୍ଟି ହେଉଛନ୍ତି । ଦେଖାଯାଉ, ଭଗବାନ୍ ତାଙ୍କୁ କେବେ ଉଦ୍ଧାର କରିବେ । ଏତ ଗୀତାର ବାଣୀ ଅପେକ୍ଷା ଆହୁରି ମର୍ମଭେଦୀ ।

ବହି ଲେଖୁଛି ଏବଂ ଦେଉଛି ଡିଟିପି କରିବା ପାଇଁ । ମନେପଡୁ ନାହିଁ ଧାରାବାହିକ କିଛି । ରୀନା କପି କରୁଥିଲା, କାରଣ ମୋର ଅକ୍ଷର ଖୁବ୍ ଛୋଟ, ଲୁପ୍ତ । ମନା କରିଦେଲି । କାରଣ ଲେଖିବା ଅପେକ୍ଷା କପି କରିବା ଆହୁରି କଷ୍ଟ । ତା'ଛଡ଼ା ତା'ର ତ ପୁଣି କାମ ଅଛି । ବହି ଦେଖିବାକୁ ଚାହୁଁଛନ୍ତି ସ୍ତ୍ରୀ କମଳକୁମାରୀ । କିନ୍ତୁ ବହି ଲେଖା ସରିଲାଣି କେଉଁଠି ?

ବହିର ମୁଖବନ୍ଧ ଦେଖିବାକୁ ଚାହିଁଛନ୍ତି ବନ୍ଧୁ ବିଜୟ ସିଂହ । ପାଣ୍ଡୁଲିପିର ଦେଢ଼ଶହ ପୃଷ୍ଠା ପଢ଼ି ଖାଲି ସାବାସି ଦେଲେ, ଯେଉଁଥିରୁ ମନେହେଲା ସେ ଭଲକରି ପଢ଼ି ନାହାନ୍ତି । କାରଣ ବହିରେ ଇମିତି କେତେକ କଥା ରହିଯାଇଛି କି ଆଉ, ଯାହା ଅନ୍ୟକୁ ଆଘାତ କରିବ, ଏଇଭଳି ଭୟ ମୋର ଥିଲା । ମୁଁ କାହାକୁ ବ୍ୟାଘାତ କରିବାକୁ ଚାହେଁନା, ପୁଣି ଏଇ ବୟସରେ । ଯାହା ମୋତେ ଲାଗିଛି, ପ୍ରେରଣା ଦେଇଛି ସେଇଆ ମୁଁ ଲେଖିଯିବାକୁ ଚାହେଁ ଉତ୍ତରପିଢ଼ି ପାଇଁ । ସେଇଯୋଗୁଁ ପଠାଣିବାବୁଙ୍କୁ ଦେଇଛି ଥରେ ଆଖି ପକାଇଦେବା ପାଇଁ ।

ବହି ବିଷୟରେ କହିବା ପାଇଁ ଅନେକ ବିଶିଷ୍ଟ ବ୍ୟକ୍ତି ସମ୍ମତି ଦେଉଛନ୍ତି । ସେମାନଙ୍କ ମଧ୍ୟରେ ବନ୍ଧୁ ସୀତାକାନ୍ତ ମହାପାତ୍ର, ବିଶ୍ୱଭୂଷଣ ହରିଚନ୍ଦନ, ନରସିଂହ ମିଶ୍ର, ଅରୁଣ ଦେ, ମତଲୁବ ଅଲ୍ଲୀ, ନିତ୍ୟାନନ୍ଦ ପ୍ରଧାନ, ଶରତ ମିଶ୍ର, ଜନାର୍ଦ୍ଦନ ପତି, ବଟକୃଷ୍ଣ ତ୍ରିପାଠୀ, ଗୌରହରି ଦାସ, ହୁସେନ ରବି ଗାନ୍ଧୀ, ଅଧ୍ୟାପିକା ପ୍ରତିଭା ରାୟ, ଅଧ୍ୟାପିକା ମନୋରମା ମହାପାତ୍ର, ଭର୍ତ୍ତୃହରି ମହତାବ ପ୍ରମୁଖ ଅନ୍ତର୍ଭୁକ୍ତ । ସେମାନେ ବିଭିନ୍ନ ଦଳର, ବିଭିନ୍ନ ମତର ଏବଂ ସମସ୍ତେ ମୋ'ଠାରୁ ବୟସରେ ସାନ, ପ୍ରତିଷ୍ଠାରେ ଅଧିକ । ୟୁନିଭର୍ସରେ ମୁଁ ଖୋଜିଛି ସମଝୋତାର ବଳୟ ବିତର୍କ, ମତଭେଦର ସାଗରରେ । ତାହାହିଁ ସାର୍ଥକ ହୋଇଛି । ୟୁନିଭର୍ସର ସହକର୍ମୀ ସନ୍ତୋଷ, ଉମେଶ, କିଶୋର ଉନ୍ମୋଚନ ଉତ୍ସବ ଏବଂ ବନ୍ଧୁମିଳନ ପାଇଁ ଆୟୋଜନର ଦାୟିତ୍ୱ ନେଇଛନ୍ତି । ପୁଅ ବ୍ୟାପ୍ତି, ଝିଅ ପ୍ରଜ୍ଞା ମଧ୍ୟ ଦାୟିତ୍ୱ ବୋଝ ନେଉଛନ୍ତି ।

ବନ୍ଧୁ ଡାକ୍ତର ଯଦୁନାଥ ପ୍ରସାଦ ଦାସ ଜଣେ ପ୍ରଖ୍ୟାତ ଚିତ୍ରଶିଳ୍ପୀ ମଧ୍ୟ । ସେ ଆଙ୍କି ଦେଇଛନ୍ତି ପ୍ରଚ୍ଛଦପଟ । 'ଜୀବନର ବାଟେ ଘାଟେ' ବହିର ପ୍ରଚ୍ଛଦପଟ ଆଙ୍କି ଦେଇଥିଲେ ପ୍ରସିଦ୍ଧ ଚିତ୍ରଶିଳ୍ପୀ ବ୍ୟୋମକେଶ ମହାନ୍ତି । ସେ ଆଙ୍କିଦେଇଥିଲେ ଆତ୍ମ ଜୀବନୀର ତୃତୀୟ ଖଣ୍ଡ ପାଇଁ ଚିତ୍ର । ସକ୍ଷମ ହେଲେ ଲେଖିବି ତୃତୀୟ ଖଣ୍ଡ । ଦେଖାଯାଉ । ସେ ଦୁହିଁଙ୍କ ପାଖରେ ମୁଁ କୃତଜ୍ଞ ।

ବହିର ପ୍ରକାଶନ ପାଇଁ ଡାକ୍ତର, ଯୋଗାଚାର୍ଯ୍ୟଙ୍କଠାରୁ ଆରମ୍ଭ କରି ପ୍ରକାଶକଙ୍କ ପର୍ଯ୍ୟନ୍ତ ୟୁନିଭର୍ସ ପରିବାରଠାରୁ ଆରମ୍ଭ କରି ନିଜ ପରିବାର ପର୍ଯ୍ୟନ୍ତ, ଅଗଣିତ ବନ୍ଧୁ, ଶୁଭେଚ୍ଛୁଙ୍କଠାରୁ ଆରମ୍ଭ କରି ବାନ୍ଧବମାନଙ୍କ ପର୍ଯ୍ୟନ୍ତ ସମସ୍ତଙ୍କ ପାଖରେ ମୁଁ ଋଣୀ । ବିଶେଷତଃ ଋଣୀ ମୁଁ ବନ୍ଧୁ ପୀତାମ୍ବର ମିଶ୍ରଙ୍କ ପାଖରେ । ସେ ଚାହିଁ ନ ଥିଲେ ବହି ପ୍ରକାଶ ପାଇପାରି ନ ଥାନ୍ତା ।

ବହି ପ୍ରକାଶନ ପରେ ଏହାର ସାଫଲ୍ୟ ନିର୍ଭର କରେ ପାଠକମାନଙ୍କ ଉପରେ । ସେମାନେ ହିଁ ଏହାର ନିୟାମକ ।

କଟକ — ଲେଖକ

ତା ୧।୫।୨୦୦୭

# ଉପକ୍ରମଣିକା

ତଥାକଥିତ ଆତ୍ମଜୀବନୀର ପ୍ରଥମ ଖଣ୍ଡର ପ୍ରକାଶନ ସହିତ ମୋର ବ୍ୟକ୍ତିଗତ ଜୀବନର ଅନେକ ଦୁର୍ବିପାକ ଜଡ଼ିତ ହୋଇଗଲା । ପ୍ରଥମ ଖଣ୍ଡ ଲେଖାର ଶେଷ ଭାଗବେଳକୁ ମୁଁ ଏକ ଷ୍ଟ୍ରୋକ୍‌ର ଶିକାର ହେଲି । ଫେବୃଆରୀ ମାସ ୧୬ ତାରିଖ ୨୦୦୦ ମସିହା । ମୁଁ ସଦ୍ୟ ଫେରିଥାଏ କୁଚଙ୍ଗ, ଏରସମା-ନିଆଳୀ ବ୍ଲକରୁ ରିଲିଫ୍ କାମ ସାରି । ୧୯୫୫ ମସିହାରୁ ରିଲିଫ୍ କାମ କରୁଚି, ରିଲିଫ୍ କାର୍ଯ୍ୟ ସଂଗଠିତ କରିଛି । କିନ୍ତୁ ଏଥରକ କେମିତି ବେଶି କ୍ଳାନ୍ତି ଅନୁଭୂତ ହେଲା । ଦିନକୁ ଦିନ କ୍ଳାନ୍ତି ବଢ଼ି ବଢ଼ି ଚାଲିଲା । ସହକର୍ମୀମାନଙ୍କୁ ଏଥିରୁ ମୋତେ ମୁକ୍ତି ଦେବାପାଇଁ ଅନୁରୋଧ କଲି କିନ୍ତୁ ସେମାନେ ରାଜି ହେଲେ ନାହିଁ ଏଇ ଚଳନ୍ତି ପର୍ଯ୍ୟାୟରୁ ମୁକ୍ତି ଦେବାପାଇଁ । ସେମାନେ ଏପରି କହିବାର ଅବଶ୍ୟ ଅନେକ ଯଥାର୍ଥ କାରଣ ଥିଲା । ୧୫ ଫେବୃଆରୀ ଦିନ ଫେରିଲି ଘରକୁ । ପରଦିନ ସକାଳେ ବ୍ୟାଙ୍କ କର୍ମଚାରୀ ସଂଘର କର୍ମକର୍ତ୍ତାମାନଙ୍କ ସହିତ ସାକ୍ଷାତ୍ ଥିଲା । ଘରୁ ବାହାରିଲି ଦି' ୟୁନିଭର୍ସକୁ । ସାଙ୍ଗରେ ୟୁନିଭର୍ସର ସହକାରୀ । ହଠାତ୍ ବାଟରେ ବାଁ ପଟ ଗୋଡ଼ଟା କେମିତି ଭାଙ୍ଗିପଡ଼ିଲା ପରି ମନେହେଲା । ମୁଁ କ'ଣ ହେଲା ତାହା ଜାଣିପାରିଲି ନାହିଁ । ମୁଁ ଚାଲିଲି ୟୁନିଭର୍ସର ସବା ଉପର ମହଲାକୁ । ସେଇଠି ବିଦେଶରୁ ଆସିଥିବା ଏକ ଦମ୍ପତିଙ୍କ ସହ ସାକ୍ଷାତ୍ ହେଲା । ତଳକୁ ପାହାଚରେ ଓହ୍ଲାଇଲା ବେଳକୁ ପାଦ ପଡ଼ିଲା ନାହିଁ ତଳେ । ତଥାପି ବହୁ କଷ୍ଟରେ ଆସି ବଂଧୁ ବାସୁଦେବ ସାମଲ ଓ ବ୍ୟାଙ୍କ କର୍ମଚାରୀମାନଙ୍କ ସହିତ ରିଲିଫ୍ ସଂକ୍ରାନ୍ତୀୟ କଥାବାର୍ତ୍ତା ହେଲି ।

କଥାବାର୍ତ୍ତା ଭିତରେ ହିଁ ମନେହେଲା ମୋର ବାମ ପଟଟା ଅଚଳ ହୋଇଯାଉଛି । ଫୋନ୍ କଲି ସ୍ତ୍ରୀଙ୍କୁ । ବୋଧହୁଏ ମୋର ଷ୍ଟ୍ରୋକ୍ ହୋଇଛି । ଡାକ୍ତର ଡାକ । ମୁଁ ଆଲୋଚନା ସାରି ଯାଉଛି । ସେଦିନ ରବିବାର । ଭୁବନେଶ୍ୱରରେ ବହୁମୂତ୍ର ରୋଗ ଉପରେ ସେମିନାର । ବିଭୂତିବାବୁ, ସବ୍ୟସାଚୀ, ଆଲୋକ କେହି ନାହାନ୍ତି । ସମସ୍ତେ ଭୁବନେଶ୍ୱରରେ । ମୋ ସ୍ତ୍ରୀ ଡାଃ ଯଦୁନାଥ ଦାସ (ହୃଦ୍‌ରୋଗ ବିଶେଷଜ୍ଞ)ଙ୍କୁ ପାଇଲେ । ସେ ଇ.ସି.ଜି. କରି ଦେଖିଲେ ନର୍ମାଲ ଅଛି । ରକ୍ତଚାପ ମଧ ନର୍ମାଲ । ଡାକ୍ତର ବାଳକୃଷ୍ଣ କୁଅଁର ଆସି ପହଞ୍ଚିଲେ । ସେ କହିଲେ ମୁଣ୍ଡର ସ୍କାନିଂ ଆବଶ୍ୟକ ଏବଂ କହିଲେ ଯେ କଟକ ବଡ଼ଡାକ୍ତରଖାନାକୁ ଏକ ନୂଆ ବଢ଼ିଆ ମେସିନ ଆସିଛି । ଶସ୍ତା ବି ପଡ଼ିବ । ସେଇଠାକୁ ଯିବା । ଗଲୁ । ଘଣ୍ଟାଏ ଅପେକ୍ଷା କଲା ପରେ ଶୁଣିବାକୁ ହେଲା ମେସିନ୍ ଅଛି, ଫିଲ୍ମ ନାହିଁ । ଆସିପାରେ । ଅପେକ୍ଷା କରନ୍ତୁ । ସେଇଠି ବସି ବସି ଲେଖିଲି ଏକ ଲେଖା 'ନାରୀ ସୁନ୍ଦର, କିନ୍ତୁ ବନ୍ଧ୍ୟା' । ସେଇଟି ପ୍ରକାଶିତ ହେଲା 'ସମୟ'ରେ । ତେଣୁ ଲୋକମାନେ ବୁଝିଗଲେ ଯେ ମୋର ତ ଦେହ ଗଲା କେଇବର୍ଷ

ହେଲା ଭଲ ରହୁ ନ ଥିଲା । ସେଇଭଳି କିଛି ହୋଇଥିବ ! ସନ୍ଧ୍ୟାବେଳକୁ ରମେଶ, ଭବାନୀ, ଶାରଦା ଏବଂ ପରଦିନ ସକାଳୁ ସନାତନବାବୁ (ସମସ୍ତେ ପ୍ରସିଦ୍ଧ ଡାକ୍ତର) ଆସି ପହଞ୍ଚିଲେ । ଚିକିତ୍ସା ଆରମ୍ଭ ହେଲା । ମୁଁ କିନ୍ତୁ ଅଚଳ ହୋଇଗଲି ପ୍ରାୟ । ଡାକ୍ତରଖାନା ଆଉ ଯାଇ ନାହିଁ । ଯାଇ ଲାଭ କ'ଣ ହେବ ? ମେସିନ ଥିଲେ ଲୋକ ନାହାନ୍ତି, ଲୋକ ଥିଲେ ଫିଲ୍ମ ନାହିଁ, ଲୋକ ଓ ଫିଲ୍ମ ଅଛି କିନ୍ତୁ ମେସିନ ଖରାପ । ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜ ଓ ଡାକ୍ତରଖାନା ପରିଚାଳନା ସମିତିର ମୁଁ ସଭ୍ୟ ଥିଲି ବହୁ ବର୍ଷ ଧରି ।

ସରକାର ବଦଳି ଥିଲା, କିନ୍ତୁ ମୋର ସଭ୍ୟପଦ ସେମିତି ଥିଲା । କାରଣ ଗଭର୍ଣ୍ଣିଂ ବଡିର ତତ୍‌କାଳୀନ ସବୁ ଚେୟାରମ୍ୟାନମାନେ ମୋତେ ସବୁଠାରୁ ସକ୍ରିୟ ସଭ୍ୟ ବୋଲି ସାର୍ଟିଫିକେଟ ଦେଇଥିଲେ । ଡାକ୍ତର ସନାତନ ରଥ ତ ସଭାରେ ଖୋଲାଖୋଲି ଭାବରେ ଘୋଷଣା କଲେ ଯେ ଗିରିଜାବାବୁ ସଭାକୁ ଆସନ୍ତି ନିର୍ଭୀକ ଭାବରେ ଆଉ ଆମେସବୁ ଥରିବାକୁ ଆରମ୍ଭ କରୁ । ମୋ ପରିବର୍ତ୍ତେ ମୋଠାରୁ ଯୋଗ୍ୟ ବ୍ୟକ୍ତି ପରେ ମନୋନୀତ ହେଲେ, ସମୟର ଗତିପଥରେ ।

ଗଭର୍ଣ୍ଣିଂ ବଡିର ସଭ୍ୟ ଥିବା ସମୟରେ ଅନେକ ବିଚିତ୍ର ଘଟଣା ଆଖିରେ ପଡ଼ିଛି । ମେଡ଼ିକାଲ କଲେଜ ଛାତ୍ରମାନେ ଧାରଣାରେ ବସିଛନ୍ତି ଗେଟ୍ ପାଖରେ । ଆମକୁ 'ଉପଦେଶ' ଦିଆଗଲା ପଛପଟେ ଆସିବା ପାଇଁ । ଡାକ୍ତର ନିରୁପମା ରଥ ଏବଂ ମୁଁ ମନାକଲୁ । ଆମେ ସେଇ ବାଟରେ ହିଁ ଯିବୁ । ବସିଅପା (ନିରୁପମା ରଥ) ତଳେ ବସି ପାରିବ ନାହିଁ, ମୁଁ ବସିବି । ଆମେ ଶୁଣିବୁ ସେମାନଙ୍କର ସମସ୍ୟା । ବୁଝିବୁ କେଉଁ କାମ ଆମ ଦ୍ୱାରା ହୋଇପାରିବ । କେଉଁଗୁଡ଼ାକ ଆମ କର୍ତ୍ତୃତ୍ୱର ବାହାରେ । ଆମେ ଗଲୁ, ଶୁଣିଲୁ । କିଛି ତ ଗଣ୍ଡଗୋଳ ହେଲା ନାହିଁ । ଥରେ ଗୋଟାଏ ଗଭର୍ଣ୍ଣିଂ ବଡି ବୈଠକ ଡକାଗଲା ସର୍କିଟ ହାଉସ୍‌ରେ । ହଠାତ୍ ବଦଳି କରାଗଲା ମେଡିକାଲ T-ଘର ଉପର ମହଲାକୁ । ମେଡ଼ିକାଲ କଲେଜରେ କ'ଣ ଗୋଟାଏ ଗଣ୍ଡଗୋଳ ଚାଲିଥିଲା । ପିଲାମାନେ ଆମକୁ ଭେଟିବାକୁ କୁଆଡ଼େ ଚାହିଁଥିଲେ ଆମେ ତାହା ଜାଣି ନାହୁଁ । (ଅନ୍ତତଃ ନିରୁପମା ରଥ ଓ ମୁଁ ଜାଣି ନ ଥିଲୁ) ସଭା ଆରମ୍ଭ ହେବା ମାତ୍ରେ ଉତ୍ତ୍ୟକ୍ତ ପିଲାମାନେ ଚଢ଼ାଉ କଲେ । ସେମାନଙ୍କର ମୁଖ୍ୟ ଶରବ୍ୟ ଥିଲେ ସେକ୍ରେଟେରୀ; କିନ୍ତୁ ଆକ୍ରମଣ ହେଲା ଗଭର୍ଣ୍ଣିଂ ବଡି ଉପରେ । ସେକ୍ରେଟେରୀଙ୍କ ପାଟି ଖନି ବାଜିଗଲା । ତାଙ୍କର ଅବସର ନେବା ବେଳ ପାଖେଇ ଆସିଥିଲା ଏବଂ ସେ ମାତ୍ର ଚାରିଶହ ବ୍ୟକ୍ତିଙ୍କୁ ନିଯୁକ୍ତି ଦେଇଥିଲେ ବିନା ଅନୁମତିରେ । ଶୁଣାଗଲା ଯେ ପ୍ରତ୍ୟେକ ଚାଳିଶରୁ ପଚାଶ ହଜାର ଲେଖାଏଁ ଟଙ୍କା ଦେଇଥିଲେ ସେଥିପାଇଁ । ବସିଅପା ଓ ମୁଁ ବସି ରହିଲୁ । ଆମକୁ ଉତ୍ତ୍ୟକ୍ତ ଛାତ୍ରମାନେ କିଛି କହିଲେ ନାହିଁ ଦେଖି ଚେୟାରମ୍ୟାନ୍ ଆଶ୍ଚର୍ଯ୍ୟ ହେଲେ । ପରେ ତତ୍‌କାଳୀନ ସ୍ୱାସ୍ଥ୍ୟମନ୍ତ୍ରୀ ଶ୍ରୀ ନିରଞ୍ଜନ ପଟ୍ଟନାୟକଙ୍କୁ ଆମେ ନିମନ୍ତ୍ରଣ କରିଥିଲୁ ଗଭର୍ଣ୍ଣିଂ ବଡି ବୈଠକରେ ଯୋଗଦେବା ପାଇଁ । ସେ ସମ୍ମତି ଦେଲେ । ମୁଁ ତାଙ୍କୁ ବୈଠକ ବସିବାର ଘଣ୍ଟାଏ ପୂର୍ବରୁ ଆସିବାକୁ କହିଲି । ସେ ଆସିଥିଲେ ଏବଂ ଆମେ ସାଙ୍ଗ ହୋଇ ମେଡ଼ିକାଲ

ବୁଲିଲୁ । ନିରଞ୍ଜନଙ୍କ ଚେହେରା ଗୁଲୁଗୁଲିଆ । ମନ୍ତ୍ରୀ ବୋଲି ନ ଜାଣିଥିଲେ ଚେହେରାକୁ ଦେଖି ଜାଣିବା କଠିନ । ଆମେ ଯାଇ ପହଞ୍ଚିଲୁ ରୋଷଶାଳାରେ । ଅରଖ ନୂଆ ଘର ଫାଟି ଆଁ କରି ରହିଛି । ଦୈବାତ୍ କଣ୍ଟ୍ରାକ୍ଟର ସେଇଠି ଥିଲା । ନିରଞ୍ଜନ ତାକୁ ପଚାରିଲେ ଘର ଇମିତି କ'ଣ ହେଲା ? ସେ ତ ମନ୍ତ୍ରୀଙ୍କୁ ଚିହ୍ନି ନାହିଁ । ଆଜ୍ଞା, ଉପନିର୍ବାଚନ ପାଇଁ ମୋତେ କହିଲେ ଲକ୍ଷେଟଙ୍କା ଦେବାକୁ । ଏ ଘର ତ ଆପଣ ଦେଖୁଚନ୍ତି । ଦଶ ବାର ଲକ୍ଷ ଟଙ୍କାର କାମ । ସେଥିରୁ ଲକ୍ଷେ ଗଲା ଉପନିର୍ବାଚନ ପାଇଁ । ଏହା ତ ପୂର୍ତ୍ତବିଭାଗବାଲା ଜାଣିଲେ । ସେମାନେ ଯେତିକି ନେବା କଥା ତା' ଠାରୁ ବେଶି ଦାବି କଲେ । ସେଥିରୁ ଯାହା ହୁଏ ! ଆମେ ଫେରିଲୁ ।

ସ୍ୱାସ୍ଥ୍ୟମନ୍ତ୍ରୀଙ୍କୁ ଚିଠି ଲେଖିଲି । ମେଡ଼ିକାଲ କଲେଜରେ ଅପରେସନ୍ ଥିଏଟର ବ୍ୟବସ୍ଥା ସଂପର୍କରେ । ଡିପାର୍ଟମେଣ୍ଟ ବଢ଼ି ଚାଲିଛି । ପୋଷ୍ଟ ବି ବଢ଼ି ଚାଲିଛି । ସେଇ ଅନୁଯାୟୀ ଅପରେସନ ଥିଏଟରର ସଂଖ୍ୟା ବଢ଼ି ନାହିଁ । ତେଣୁ ଜଣେ ସର୍ଜନଙ୍କୁ ସପ୍ତାହରେ ଅପରେସନ ପାଇଁ ସୁଯୋଗ ମିଳୁଛି ଥରେ । ତା' ପୂର୍ବଦିନ ସେ ଆଡ଼ମିଶନ କରାଇଛନ୍ତି ପ୍ରାୟ କୋଡ଼ିଏ ଜଣଙ୍କୁ । ସେମାନେ ସମସ୍ତେ ଟର୍ଚ୍ଚ ଲାଇଟ୍ ବ୍ୟାଟେରୀ, ଛୁଞ୍ଚି, ସୂତା, ଇଂଜେକ୍ସନ, ଗ୍ଲୁକୋଜ୍ ସବୁ କିଣି ଠିଆହୋଇଛନ୍ତି ଅପରେସନ୍ ଥିଏଟର ଆଗରେ ଧାଡ଼ିକରି । ଅପରେସନ ଆରମ୍ଭ ହେଲା । ଗୋଟିଏ  ମେଜର୍ ଏବଂ ଦୁଇଟି ମାଇନର ଅପରେସନ ପରେ ନିଶ୍ଚେତକ ହାତ ଟେକି ଦେଲେ । ଏହାଠାରୁ ବେଶି ସେ କରିପାରିବେ ନାହିଁ । ବାକିତକ ଯିବେ କୁଆଡ଼େ ? ସବୁତ କିଣି ଆଣିଛନ୍ତି । ବାଧହୋଇ ସେଇ ସର୍ଜନ ଯେଉଁ ନର୍ସିଂହୋମ୍‌ରେ କାମ କରନ୍ତି (ଅଫିସିଆଲି ନୁହେଁ) ସେଇଠିକୁ ଯିବା ଛଡ଼ା ଉପାୟ କ'ଣ ?

ତେଣୁ ନର୍ସିଂହୋମ୍‌ମାନେ ପୋଷା ହେଉଛନ୍ତି କଟକ ବଡ଼ଡାକ୍ତରଖାନା ଦ୍ୱାରା । ସେତେବେଳେ ମନ୍ତ୍ରୀମାନଙ୍କ ସହିତ ପରିଚିତି ଯୋଗୁଁ ହେଉ ବା ସେମାନଙ୍କର ରିସେପ୍‌ଟିଭିଟି (Receptivity) ବେଶି ଥିବା ଯୋଗୁଁ ହେଉ ସେମାନଙ୍କୁ ଲେଖିଲେ ଉତ୍ତର ମିଳୁଥିଲା । ଏବେ କିଛି ଲୋକଙ୍କଠାରୁ ମିଳୁଛି, ଅନ୍ୟମାନଙ୍କଠାରୁ ଉତ୍ତର ମଧ ମିଳୁ ନାହିଁ, କାର୍ଯ୍ୟପନ୍ଥା ଦୂରର କଥା ।

ମନେପଡୁଛି । ଥରେ ୰ରାୟବାହାଦୁର ସାମୁଏଲ ଦାସ ଗୋଟିଏ ଚିଠି ଲେଖିଥିଲେ ମ୍ୟୁନିସିପାଲଟି ଏକ୍ସିକ୍ୟୁଟିଭ୍ ଅଫିସରଙ୍କ ପାଖକୁ । ସେ ତା'ର ଉତ୍ତର ଦେଇ ନ ଥିଲେ । କ୍ଷୁବ୍ଧ ସାମୁଏଲ୍ ଦାସ ଖବରକାଗଜରେ ଲେଖିଲେ ଯଦି ମୋ ଭଳି ବରିଷ୍ଠ ନାଗରିକଙ୍କ ପତ୍ରର ଉତ୍ତର ଦେବାପାଇଁ ଏଇ ଅଫିସରଙ୍କ ସମୟ ହେଉ ନାହିଁ ତା' ହେଲେ ସାଧାରଣ ନାଗରିକଙ୍କ ଚିଠିର ଭାଗ୍ୟ କ'ଣ ହେଉଥିବ ? ଅଫିସରମାନେ କ'ଣ ଭୁଲିଗଲେଣି ଯେ ଏଇ ଟିକସଦାତାମାନେ ହେଉଛନ୍ତି ସେମାନଙ୍କର ପେ' ମାଷ୍ଟର (Pay master) । ସେମାନଙ୍କ କଥା ଶୁଣିବା ପାଇଁ, ସେମାନଙ୍କର ଚିଠିର ଉତ୍ତର ଦେବାପାଇଁ ଅଫିସରମାନେ ବାଧ; କିନ୍ତୁ ନିଷ୍ପତ୍ତି ନେବେ ବା କାମ କରିବେ ନିୟମ ଅନୁଯାୟୀ । ମୋର ଜଣେ ବନ୍ଧୁ ଥିଲେ ଏକ୍ସିକ୍ୟୁଟିଭ୍ ଅଫିସର । ତାଙ୍କୁ ସରକାର କୈଫିୟତ୍ ତଲବ କରିଥିଲେ । ଭୁଲିଯିବା ଉଚିତ ନୁହେଁ ନିଜେ ସାମୁଏଲ୍ ଦାସ ଜଣେ ସିନିଅର ଅଫିସର ଥିଲେ ।

ମୋର ଚିଠିର ବିଷୟବସ୍ତୁ ଥିଲା ଯେ ମେଡ଼ିକାଲ କଲେଜର ଅପରେସନ ଥିଏଟରର ସଂଖ୍ୟା ବୃଦ୍ଧି ହେଉ ଏବଂ ନିଶ୍ଚେତକ ବିଭାଗକୁ ଅନ୍ତତଃ ତିନିଗୁଣ କରାଯାଉ । ଏକ ଉଚ୍ଚସ୍ତରୀୟ ବୈଠକ ବସିଲା ସର୍କିଟ ହାଉସ କନଫରେନ୍ସ ହଲରେ । ସ୍ୱାଭାବିକ ଭାବରେ ଅର୍ଥ ବିଭାଗର ସେକ୍ରେଟେରୀ ଆସି ନ ଥିଲେ । ତାଙ୍କର ପ୍ରତିନିଧି ଏକ ହିସାବ ଫର୍ଦ୍ଦ ଦାଖଲ କଲେ ଯେ ନିଶ୍ଚେତକ ବିଭାଗର ପ୍ରତ୍ୟେକ ଅଧିକା ୟୁନିଟ୍ ପାଇଁ ଲକ୍ଷ ଲକ୍ଷ ଟଙ୍କା ଆବଶ୍ୟକ । କାରଣ ପ୍ରତି ବିଭାଗ ପାଇଁ ଜଣେ ପ୍ରଫେସର, ଜଣେ ଆସୋସିଏଟ ପ୍ରଫେସର, ଜଣେ ଲେକ୍ଚରର ଏବଂ ଜଣେ ଆନାଥେସିଷ୍ଟ (Anaesthesist) ରହିବା ଆବଶ୍ୟକ । ସେ ହିସାବ କରି ଥୋଇଦେଲେ ଏବଂ ଏହାର ପ୍ରତିବାଦ ହେଲା ଆମ ତରଫରୁ । ଆମର ଯୁକ୍ତି ହେଲା ଯେ ଏହା ଠିକ୍ ନୁହେଁ । କାରଣ ପ୍ରକୃତରେ ଗୋଟିଏ ନୂଆ ୟୁନିଟ୍ ପାଇଁ ତିନିଜଣ ପ୍ରମୋଶନ ପାଇବେ, ଜଣେ ହିଁ ନୂଆ ନିଯୁକ୍ତି ପାଇବ ଏବଂ ପ୍ରମୋଶନ ପାଇବା ବ୍ୟକ୍ତି ଯେତିକି ଅଧିକା ଟଙ୍କା ପାଇବେ, ସେ ଅନୁସାରେ ତାଙ୍କର ବର୍ଦ୍ଧିତ ଘରଭଡ଼ା ମଧ୍ୟ ସେଇ ପରିମାଣରେ ହେବ । ଗୋଟିଏ ଅପ୍ରୀତିକର ପରିସ୍ଥିତି ସୃଷ୍ଟି ହେବା ଭଳି ମନେହେଲା । କାରଣ ଉଦ୍‌କ୍ଷିପ୍ତ ବ୍ୟୁରୋକ୍ରାସି ଏହା ଗ୍ରହଣ କରିବାକୁ ନାରାଜ । କିନ୍ତୁ ଖୋଦ୍ ଚିଫ୍ ସେକ୍ରେଟେରୀ ନା ଅର୍ଥମନ୍ତ୍ରୀ (ମୋର ଠିକ୍ ମନେପଡୁ ନାହିଁ) ଆମର ଯୁକ୍ତି ଗ୍ରହଣ କରିବାରୁ କଥା ଥଣ୍ଡା ପଡ଼ିଗଲା ।

ମେଡ଼ିକାଲ କଲେଜରେ ନାମ ଲେଖାଇବା ପାଲା । କାହିଁକି ଅଗଷ୍ଟ ସେପ୍ଟେମ୍ବରରେ ପରୀକ୍ଷା ହେଉଛି ସେ ସଂପର୍କରେ ଆମେ ଦୁଇଜଣ ବହୁତଥର ଲେଖିଦେଇଛୁ । ଗଭର୍ଣ୍ଣିଂ ବଡ଼ିରେ ପ୍ରସ୍ତାବ ପାସ୍ ହୋଇଛି । ଆମର ପ୍ରସ୍ତାବନା ଥିଲା ଯେ ମେଡ଼ିକାଲ ଆଡମିଶନ୍ ପାଲା ଜଏଣ୍ଟ ଏଣ୍ଟ୍ରାନ୍ସ ପରୀକ୍ଷା ସହିତ ହେଉ । ଏହାକୁ ଅଲଗା କରିବାର କୌଣସି କାରଣ ନାହିଁ ଏବଂ ଅଗଷ୍ଟ ସେପ୍ଟେମ୍ବର ମାସରେ ପରୀକ୍ଷା ହେଲେ ପିଲାମାନେ ଅଧିକା ଖର୍ଚ୍ଚାନ୍ତ ହେଉଛନ୍ତି, କାରଣ ସେମାନେ ଏହି ଫଳାଫଳ ଉପରେ ନିର୍ଭର କରି ନ ପାରି ଅନ୍ୟ କଲେଜମାନଙ୍କରେ ନାମ ଲେଖାଇବାକୁ ବାଧ୍ୟ ହେଉଛନ୍ତି । ମେଡ଼ିକାଲରେ ପଢ଼ିବାପାଇଁ ମନୋନୀତ ପ୍ରାର୍ଥୀମାନେ କଲେଜମାନଙ୍କରେ ଯେଉଁ ସିଟ୍ ସବୁ ଛାଡ଼ି ଆସୁଛନ୍ତି ସେ ସିଟ୍ ସବୁ ପୂରଣ ହୋଇପାରୁ ନାହିଁ । କାରଣ ସେତେବେଳକୁ କଲେଜମାନଙ୍କର ନାମ ଲେଖା ସମୟ ଅତିକ୍ରାନ୍ତ ହୋଇସାରିଛି ଏବଂ ମେଡ଼ିକାଲ ପାଠ ପଢ଼ିବା ପିଲାମାନେ ଯେଉଁ ସିଟ୍‌ସବୁ ଛାଡ଼ି ଆସୁଛନ୍ତି ସେସବୁର ଅଧିକାଂଶ ହେଉଛି ଅନର୍ସ ସିଟ୍ । ଏହା ଫଳରେ ସାଧାରଣ ଶିକ୍ଷା ବିଭାଗର କ୍ଷତି ହେଉଛି । ପ୍ରତିବର୍ଷ ଏଇପ୍ରକାର ପ୍ରସ୍ତାବ ପାସ୍ ହୋଇଛି କିନ୍ତୁ ସରକାରଙ୍କଠାରୁ କିଛି ଉତ୍ତର ବି ମିଳି ନାହିଁ । ଯେପର୍ଯ୍ୟନ୍ତ ଏଇ ପରୀକ୍ଷା ସହିତ ଜଡ଼ିତ ଦୁର୍ନୀତି ସଂକ୍ରାନ୍ତରେ ବିସ୍ଫୋରଣ ନ ହୋଇଛି ସେ ପର୍ଯ୍ୟନ୍ତ 'ସରକାର'ଙ୍କ ନିଦ ଭାଙ୍ଗିବ ନାହିଁ । କାରଣ ସମସ୍ତେ ଜଡ଼ିତ ହୋଇ ରହିଛନ୍ତି ଏଇ ସ୍କାଣ୍ଡାଲ ସହିତ ।

ସରକାର କହିଲେ କାହାକୁ ବୁଝାଏ ତା ମୁଁ ପଢ଼ିଥିଲି ରାଜନୀତି ବିଜ୍ଞାନରେ । କିନ୍ତୁ ସେ ହେଲା ପାଠ କଥା, ପୋଥି ବାଇଗଣ । ପରେ ମୁଁ ଖୋଜିଛି 'ସରକାର'କୁ; କିନ୍ତୁ ପାଇ ନାହିଁ ।

ମୁଖ୍ୟମନ୍ତ୍ରୀ କହିଲେ, ମନ୍ତ୍ରୀ କହିଲେ, ଚିଫ୍ ସେକ୍ରେଟେରୀ କହିଲେ, ସେକ୍ରେଟେରୀମାନେ କହିଲେ, ଡାଇରେକ୍ଟରମାନେ କହିଲେ, କିରାଣି କହିଲେ, ପରିଶେଷରେ ପିଅନ ବି କହିଲେ– ''ଆପଣ ତ ଜାଣନ୍ତି ସରକାରୀ କଳ କଥା !''

'ସ୍ୱାଧୀନତା ପର ଓଡ଼ିଶା' ନାମରେ ଏକ ବହି 'ୟୁନିଭର୍ସ' ଦ୍ୱାରା ପ୍ରକାଶିତ ହୋଇଥାଏ । ବହିଟିକୁ ଉପହାର ଦେବା ପାଇଁ ଯାଇ ପହଞ୍ଚିଲି ତତ୍‌କାଳୀନ ମୁଖ୍ୟମନ୍ତ୍ରୀଙ୍କ ପାଖରେ । ମୁଖ୍ୟମନ୍ତ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ବହିଟିକୁ ଦେଖି ଖୁସି ହୋଇ କହିଲେ ଯେ– ''ଏ ବହି ତ୍ ସରକାର ଛାପିବା କଥା ! ଅଥଚ.....'' ମୁଁ ଉତ୍ତର ଦେଲି ଯେ, ''ଆଜ୍ଞା, ସେଇ ସରକାର ନାମକ ଜନ୍ତୁଟିକୁ ମୁଁ ଖୋଜୁଛି ବହୁ ବର୍ଷଧରି ।'' ଜାନକୀବାବୁ ହସିଦେଇ କହିଲେ ଯେ ମୁଁ ବି ଖୋଜୁଛି ।

ସରକାର କିଛି ନିଷ୍ପତ୍ତି କରନ୍ତି ନାହିଁ, ଯେ ପର୍ଯ୍ୟନ୍ତ ଭୂମିକମ୍ପ ନ ହୋଇଛି । ମେଡ଼ିକାଲ କଲେଜ ଗଭର୍ଣ୍ଣିଂ ବଡ଼ିର ବହୁଦିନ ସଭ୍ୟ ହୋଇ ମୋର ଏଇ ଅଭିଜ୍ଞତା ଯେପରି ହୋଇଛି, ଓଡ଼ିଆ ପର୍ଯ୍ୟଟନ କର୍ପୋରେଶନ, ଓଡ଼ିଶା ହସ୍ତତନ୍ତ ନିଗମର ବହୁବାର ସଭ୍ୟ ହୋଇ ତାହା ଦୃଢ଼ୀଭୂତ ହୋଇଛି । ପ୍ରସ୍ତାବରେ ସମସ୍ତେ ହଁ ଭରିବେ କିନ୍ତୁ ନିଷ୍ପତ୍ତି କେହି ନେବେ ନାହିଁ । ତେବେ ବ୍ୟକ୍ତିଗତ ପରିଚିତି, ବ୍ୟକ୍ତିଗତ ଆଗ୍ରହ କେତେକ ସମୟରେ କାର୍ଯ୍ୟ କରେ ଏଥିରେ ମଧ୍ୟ କୌଣସି ସଂଦେହ ନାହିଁ ।

ଏଇ ଅଭିଜ୍ଞତା ହେତୁ ୨୦୦୦ ମସିହା ଫେବୃଆରୀ ମାସରେ ଆଉଥରେ ଡାକ୍ତରଖାନାରେ ଭର୍ତ୍ତି ହେବାକୁ ଡର ମାଡ଼ିଲା । କାରଣ ୧୯୯୯ ମସିହାରେ ଡାକ୍ତରଖାନାରେ ଭର୍ତ୍ତିହୋଇ ମୋର ଅଭିଜ୍ଞତା ସେ ପର୍ଯ୍ୟନ୍ତ ମଳିନ ହୋଇ ନ ଥିଲା । ଗୁଣାତ୍ମକ ପରିବର୍ତ୍ତନ କହିଲେ ଯାହା ବୁଝାଯାଏ, ତାହା ଖାଲି ଦରମାଦ୍ୱାରା ନିୟନ୍ତ୍ରିତ ହୁଏ ନାହିଁ । ବିଶେଷତଃ ଯେଉଁଠି ମାନବିକ ପ୍ରଶ୍ନ ନିହିତ, ଯେପରି ଡାକ୍ତରଖାନା ।

ମୋ ପିଲାବେଳ ଡାକ୍ତରଖାନାରେ ଖ୍ରୀଷ୍ଟିଆନ ସିଷ୍ଟରମାନେ ଥିଲେ । ବେକରେ ବିଡ୍ ଏବଂ କ୍ରସ୍ ପରିହିତ ମହିଳାମାନଙ୍କ ମୁହଁରୁ ଝରୁଥିଲା ଅମିୟ ହସ, କଲ୍ୟାଣ ଓ ସେବାରେ ଭିଜି ରହିଥିଲା ସେଇ ହସ । ଏଇ କ୍ୟାଥଲିକ୍ ସିଷ୍ଟରମାନଙ୍କର ସେବା ପାଇଁ ସେମାନେ ପ୍ରସିଦ୍ଧ ହୋଇଥିଲେ । ଯେପରି ଫୁଲବାଣୀର ସିଷ୍ଟର ଉର୍‌ସୁଲା (Ursula) ପରିଣତ ହୋଇଥିଲେ ପ୍ରବାଦ ପୁରୁଷରେ । ତାଙ୍କର ସେବା, ବୀରତ୍ୱ, ନିର୍ଭୀକତା ସଂପର୍କରେ ଯେଉଁସବୁ କାହାଣୀ ଆଜି କନ୍ଧମାଳ ଭିତରେ ଶୁଣାଯାଏ ତାହା ଯେକୌଣସି ମଣିଷର ମଥାକୁ ନତ କରିଦେବ ସେଇ ମଣିଷ ପାଖରେ ।

ଏଇଠି ସ୍ୱାଭାବିକ ଭାବରେ ଉଠିବ ଧର୍ମାନ୍ତରୀକରଣର କଥା । ଧର୍ମାନ୍ତରୀକରଣ ସହିତ ଯୋଡ଼ିଏ କଥା ସଂପୃକ୍ତ । ଗୋଟିଏ ହେଉଛି ଦାରିଦ୍ର୍ୟ । ଏଇସବୁ ପାଦ୍ରି ବା ନର୍ସମାନେ

ଏଭଳି ଅଗମ୍ୟ ସ୍ଥଳମାନଙ୍କରେ କାମ କରୁଥିଲେ ଏବଂ ନିଷ୍ଠାର ସହିତ କରୁଥିଲେ ଯେ ସେମାନେ ଲୋକମାନଙ୍କ ପାଖରେ 'ଦେବତା' ପାଲଟି ଯାଇଥିଲେ । ଷ୍ଟେନ୍ସ ହତ୍ୟାକାଣ୍ଡ ପରେ ତାଙ୍କର ଡ୍ରାଇଭରର ବକ୍ତବ୍ୟ କ'ଣ ଥିଲା ? ସେ ଥିଲା କୁଷ୍ଠରୋଗରେ ଆକ୍ରାନ୍ତ । ତାକୁ ଗାଁରୁ ବାଛନ୍ଦ ଏବଂ ବହିଷ୍କୃତ କରାଯାଇଥିଲା । ପାଖଆଖରେ ଡାକ୍ତରଖାନା ନାହିଁ, ସେ ଗ୍ରାମକୁ ଯିବା ପାଇଁ ରାସ୍ତା ନାହିଁ । ସେ ପଡ଼ିରହିଥିଲା ଗ୍ରାମର ସୀମାନ୍ତରେ ମୃତ୍ୟୁକୁ ଅପେକ୍ଷା କରି କରି । ଷ୍ଟେନ୍ସ ତାକୁ ଉଠାଇ ତା'ର ଯତ୍ନ ନେଲେ, ଚିକିତ୍ସା କଲେ । ସେ ରୋଗମୁକ୍ତ ହେଲା । ସେ ତାକୁ ଡ୍ରାଇଭିଂ ଶିଖାଇଲେ । ସ୍ୱାଭାବିକ ଭାବରେ ତା' ପାଇଁ ଷ୍ଟେନ୍ସ ପାଲଟିଗଲେ ଭଗବାନ୍ । କିନ୍ତୁ ଷ୍ଟେନ୍ସ ଯିଶୁଖ୍ରୀଷ୍ଟଙ୍କ ଫଟୋ ତାକୁ ଦେଖାଇ କହିଲେ ଏଇ ହେଉଛନ୍ତି ଭଗବାନ । ସେ ଡ୍ରାଇଭର ହିନ୍ଦୁ ଥିଲା । କିନ୍ତୁ ସେ ଭାବିବା ବି ଠିକ୍ ଯଦି ଭଗବାନ୍ ଥାଆନ୍ତି ତାହେଲେ କୌଣସି ହିନ୍ଦୁ ଭଗବାନ୍ ବା ଭଗବାନ୍‌ଙ୍କ ଦୂତ (ମଠାଧୀଶମାନେ) ତାକୁ ସାହାଯ୍ୟ କରି ନ ଥିଲେ । ତେଣୁ ସେ ଡ୍ରାଇଭରର ଧର୍ମାନ୍ତରୀକରଣ ହେବାରେ ବିଚିତ୍ରତା କ'ଣ ? ଆତ୍ମଶକ୍ତିର ପରାଜୟ ଘଟିଲେ ମଣିଷ ମଥା ପିଟେ 'ଅଜଣା ଶକ୍ତି' ପାଖରେ ।

ଏଇ ପରିପ୍ରେକ୍ଷୀରେ ଗୋଟିଏ ଗପ ମନେପଡ଼େ । ପ୍ରସିଦ୍ଧ ଡାକ୍ତର ସର୍ଜନ ବନ୍ଧୁ ଭବାନୀ ଶଙ୍କର ଦାସ କହନ୍ତି ଯେ ସେ 'ବଇଦ' କିନ୍ତୁ 'ଦଇବ' ନୁହନ୍ତି । ତେଣୁ ସେ ଅପରେସନ ପାଇଁ ଛୁରୀ ଧରିବା ଆଗରୁ ABCର ଏକ କକ୍‌ଟେଲ କରନ୍ତି ।

ABC ମାନେ କ'ଣ ? Aରୁ ଆଲ୍ଲା, Bରୁ ଭଗବାନ୍, Cରୁ ଖ୍ରୀଷ୍ଟ ସମସ୍ତଙ୍କୁ ମିଶାଇ ଡାକିଦେଇ ଛୁରୀ ଧରନ୍ତି । ''ମୋର ମସ୍ତିଷ୍କକୁ କାଟିଲାବେଳେ ତମେ କ'ଣ ସେଇଆ କଲ ?'' ମୋର ଏଇ ପ୍ରଶ୍ନର ଉତ୍ତରରେ ସେ କହିଲେ, ''ଉପାୟ କ'ଣ ?''

ଏଇ ପ୍ରସଙ୍ଗରେ ସେ ଗୋଟିଏ ଗପ କହିଲେ । ତାଙ୍କର ଜଣେ ହିନ୍ଦୁ କ୍ଲାଏଣ୍ଟ ଅପରେସନକୁ ଯିବା ପୂର୍ବରୁ ଡାକିଲା ହେ ଭଗବାନ୍, ହେ ଆଲ୍ଲା, ହେ ଖ୍ରୀଷ୍ଟ । ଭବାନୀବାବୁ ପଚାରିଲେ ଆପଣ ପରା ହିନ୍ଦୁ ? ଆପଣ କ'ଣ ଭଗବାନ୍, ଆଲ୍ଲା, ଖ୍ରୀଷ୍ଟ ସମସ୍ତଙ୍କୁ ଡାକିଦେଲେ । ସେ ହାତଯୋଡ଼ି କହିଲେ– ''ଡାକ୍ତର ସାହେବ, ମାଫ୍ କିଜିୟେ ! ଅବ୍ କିସ୍‌କା ଡିଉଟି (duty) ହେ କ୍ୟା ମାଲୁମ୍ ମୁଝେ ? ଇସ୍‌ଲିଏ ତିନୋକୋ ବୋଲଦିୟା । ଯିସ୍‌କା ଡ୍ୟୁଟି ହୋଗା ଓ କାମ କରଦେଙ୍ଗେ !''

ଏଇସବୁ ନର୍ସ, ପାଦ୍ରି, ଡାକ୍ତରମାନେ ବର୍ତ୍ତମାନ ବି ଯେଉଁ ଦୁରାରୋଧ ଅଞ୍ଚଳରେ କାମ କରନ୍ତି, ଦେଖିଲେ ତାଜୁବ୍ ଲାଗେ । ଗୋଟାଏ କୌଣସି ବିଶ୍ୱାସ ଖୁବ୍ ଦୃଢ଼ ନ ହେଲେ ଏପରି କରିବା କଠିନ । ଏକଦା ରାଜନୈତିକ କର୍ମୀ ଥିଲି । ରାଜନୈତିକ ବିଶ୍ୱାସ ଦୃଢ଼ ଥିଲା । ସମାଜର ଗୁଣାତ୍ମକ ପରିବର୍ତ୍ତନ ପାଇଁ ଯେକୌଣସି ତ୍ୟାଗ ପାଇଁ ପ୍ରସ୍ତୁତ ଥିଲି । ଏଇ ରାଜନୈତିକ ଜୀବନରେ ପଳାତକ ଥିଲି କିଛିକାଳ । ଦେଖାହୋଇଛି ସେଇ ସମୟରେ ଅନେକ ବ୍ୟକ୍ତିଙ୍କୁ, ବନ୍ଧୁବାନ୍ଧବଙ୍କୁ । ସମସ୍ତେ ଆଶ୍ଚର୍ଯ୍ୟ ହୋଇଛନ୍ତି । ଏଡ଼େ ସୁକୁମାରିଆ ପିଲା କିପରି ହେଲା ଏଇଭଳି ? ସେମାନଙ୍କ ଆଖିରୁ ଲୁହ ଝରିଛି । ସେମାନେ ମୋତେ ଆଶୀର୍ବାଦ

କରିଛନ୍ତି । ଜୀବନର ଜନପଥରେ ପରବର୍ତ୍ତୀ କାଳରେ ନକ୍ସଲବାଦୀ ବନ୍ଧୁମାନଙ୍କୁ ଭେଟିବାର ସୁଯୋଗ ପାଇଛି ଗଭୀର ଅରଣ୍ୟ ଭିତରେ । ହାତରେ ଏ.କେ.-୪୭ ରାଇଫଲ ଧରି ବେଶ୍ ଉଚ୍ଚଶିକ୍ଷିତ ପୁଅଝିଅ ଜୀବନକୁ ବାଜି ରଖି ବୁଲିବାର ଦେଖିଛି । ସେମାନଙ୍କର ପନ୍ଥା ସହିତ ଏକମତ ହୋଇ ନାହିଁ; କିନ୍ତୁ ସେମାନଙ୍କ ନିଷ୍ଠା ପ୍ରତି ମୁଣ୍ଡ ନଇଁ ଯାଇଛି ।

ଠିକ୍ ସେଇପରି ଏଇ ପାଦ୍ରି ବା ସିଷ୍ଟରମାନଙ୍କର ଜୀବନ ! ମୋ ସ୍ତ୍ରୀ ଏବଂ ମୁଁ ଯାଉଥିଲୁ କୋରାପୁଟ ଜିଲ୍ଲାର ଏକ ରାସ୍ତାରେ । ଗଭୀର ଅରଣ୍ୟ, ରାସ୍ତାଘାଟରେ କେହି ନାହାନ୍ତି ମାଇଲ ମାଇଲ ଧରି । ହଠାତ୍ ଦେଖିଲୁ ଜଣେ ସିଷ୍ଟରଙ୍କୁ । ବେଶି ବୟସ ନୁହେଁ, ଦେଖିବା ପାଇଁ ମଧ୍ୟ ସୁନ୍ଦର । ସେ ଚାଲିଛି ଏକାକୀ ସେଇ ରାସ୍ତାରେ । ଗାଡ଼ି ଅଟକାଇ ମୋ ସ୍ତ୍ରୀ ତାଙ୍କୁ ପଚାରିଲେ କୁଆଡ଼େ ଯାଉଛ ? ସେ ଉତ୍ତର ଦେଲେ ଯାଉଛି ଏଇ ଆଗରେ ଏକ ଗାଁକୁ । ମୋ ସ୍ତ୍ରୀ ତାଙ୍କୁ ଗାଡ଼ିରେ ବସାଇ ପଚାରିଲେ କେତେ ବାଟ ସେଇ ଗାଁ ? ସେ ଉତ୍ତର ଦେଲେ ପ୍ରାୟ ୧୦ କିଲୋମିଟର ହେବ । ଆପଣ କେତେ ବାଟ ଚାଲି ସାରିଲେଣି ? ମୋ ସ୍ତ୍ରୀଙ୍କ ବିସ୍ମୟଜଡ଼ିତ ପ୍ରଶ୍ନ । ସେ କହିଲେ ଯେ ପ୍ରାୟ ଆଠ କିଲୋମିଟର ହେବ ? ଆଜି ଦୈବାତ୍ କୌଣସି ବସ୍ ନାହିଁ, କାହିଁକି କେଜାଣି ? କିନ୍ତୁ ଘରୁ ତ ବାହାରି ସାରିଛି ତେଣୁ ଭାବିଲି ବସ୍‌କୁ ଅପେକ୍ଷା ନ କରି ଚାଲିବି । ଆପଣଙ୍କୁ ଭେଟିଲି । ଆପଣଙ୍କ ସାହାଯ୍ୟ ହେଉଛି ଖ୍ରୀଷ୍ଟଙ୍କ କରୁଣା, ଏଥିପାଇଁ ଆପଣଙ୍କୁ ଧନ୍ୟବାଦ । ସେ ଆଖି ବୁଜି ଦୁଇ ହାତରେ ବୁକୁ ଓ ମସ୍ତିଷ୍କ ସ୍ପର୍ଶ କଲେ ଯିଶୁଖ୍ରୀଷ୍ଟଙ୍କ ଉଦ୍ଦେଶ୍ୟରେ । କିନ୍ତୁ କାହିଁକି ଯାଉଛନ୍ତି ସେ ଗାଁକୁ । କ'ଣ ଜରୋରୀ କାମ ? ମୋ ସ୍ତ୍ରୀଙ୍କ ପ୍ରଶ୍ନ । ସେଇ ଗାଁରେ ଲୋକେ ସବୁ ବେମାର ପଡ଼ିଛନ୍ତି ବହୁ ସଂଖ୍ୟାରେ । ଜର ହେଉଛି, ଜର ହୋଇ ହଠାତ୍ ମରିଯାଉଛନ୍ତି । କେତେ ଲୋକ ମରି ସାରିଲେଣି । ଡାକ୍ତରଖାନା ନାହିଁ କି କେହି ସେ ଗାଁକୁ ଆସି ନାହାନ୍ତି । ମୁଁ ଜଣେ ନର୍ସ । ମୁଁ ଯାଉଛି ସେମାନଙ୍କୁ ଦେଖିବି, ସେମାନଙ୍କର କିଛି ସେବା କରିବି । କିଛି ଦୂରରେ ଆମର ଏକ ଡାକ୍ତରଖାନା ଅଛି । ସେଠାକୁ ଖବର ଦିଆହୋଇଛି । ସେମାନେ ଆଜି ସନ୍ଧ୍ୟା ସୁଦ୍ଧା ସେଠାରେ ପହଞ୍ଚିବେ । ସେ ଗାଁ ପାଖ ହୋଇ ଆସିଥିଲା । ସେ ଓହ୍ଲାଇବା ପୂର୍ବରୁ ପୁଣି ଥରେ ଧନ୍ୟବାଦ ଜଣାଇ ଖ୍ରୀଷ୍ଟଙ୍କ ଉଦ୍ଦେଶ୍ୟରେ କୃତଜ୍ଞତା ଜଣାଇ ଚାଲିଲେ ସେଇ ଗାଁକୁ ।

ତାଙ୍କର ଯିବା ପଥକୁ ମୁଁ ଅନେଇ ହେଜୁଥିଲି ନିଜ ଅତୀତର କଥା । ଫାନାଟିସିଜମ୍ ହେଉ ବା ବିଶ୍ୱାସ ହେଉ, ତା' ବିନା ଯେ ଲକ୍ଷ୍ୟ ସାଧିତ ହୋଇପାରିବ ନାହିଁ, ଏକଥା ସତ୍ୟ । ବିପ୍ଳବୀମାନେ ଭଦ୍ରଲୋକ ହୋଇଯିବା ପରେ ଯେପରି ମୌଳିକ ଲକ୍ଷ୍ୟ ବ୍ୟାହତ ହୋଇଛି, ହୁଏତ ସେଇପରି ଏଇ ବିରଳ ମହାନ୍ ତ୍ୟାଗକୁ ଧର୍ମାନ୍ତରୀକରଣର ମାଧ୍ୟମ ବନାଇ ବସିଛନ୍ତି କିଛି (ସମସ୍ତେ ନୁହନ୍ତି) କିଛି ମଠାଧୀଶ ବା ଚର୍ଚ୍ଚାଧୀଶମାନେ । ଏଥିରେ କୌଣସି ସନ୍ଦେହ ନାହିଁ । ଚର୍ଚ୍ଚର ଜମିବାଡ଼ି, ସଂପତ୍ତି, ଅତ୍ୟାଚାର, ଲୁଣ୍ଠନର କ୍ଷେତ୍ର ପାଲଟିଛି । ତାହା ମଠ, ମନ୍ଦିର ପାଇଁ ମଧ୍ୟ ପ୍ରଯୁଜ୍ୟ ।

ମୋର ବନ୍ଧୁ ୰ ଚନ୍ଦ୍ରମଣି ନାୟକ ଥାଆନ୍ତି ଏସ୍.ଡି.ଓ. ଭଂଜନଗରରେ । ଦିଲ୍ଲୀ, ବମ୍ବେ, କଲିକତାର ଜିଲ୍ଲାପାଳ ଯାହା, ଫୁଲବାଣୀର, ଛତ୍ରପୁରର ଜିଲ୍ଲାପାଳ କ'ଣ ସେୟା ?

ମୋର ମନେଥିବା ଭିତରେ ଥରେ ମୁଖ୍ୟମନ୍ତ୍ରୀଙ୍କ ରିଲିଫ୍ ପାଣ୍ଠି ପାଇଁ (ବନ୍ୟା ଦୁର୍ଗତଙ୍କ ସାହାଯ୍ୟ ପାଇଁ) ଦାନ ସଂଗ୍ରହ ସକାଶେ ମୁଁ ଯାଇଥାଏ କଲିକତାରୁ ଇଷ୍ଟବେଙ୍ଗଲ ଫୁଟବଲ ଟିମ୍‌କୁ ଆଣିବା ପାଇଁ । କ'ଣ ଗୋଟାଏ ଦରକାର ପଡ଼ିଲା କଲିକତାର ଜିଲ୍ଲାପାଳଙ୍କ ସାହାଯ୍ୟ । ବହୁତ କଷ୍ଟ କରିବାକୁ ପଡ଼ିଲା ତାଙ୍କୁ ପାଇବା ପାଇଁ । ବରଂ ପୁଲିସ୍ କମିଶନରଙ୍କୁ ପାଇବା ସହଜ ହେଲା । ସେଠାରେ ଜିଲ୍ଲାପାଳଙ୍କ ମୂଲ୍ୟ କେତେ ? ତାଙ୍କ ଉପରକୁ ତ କେତେ କେତେ ଅଛନ୍ତି । କିନ୍ତୁ ଫୁଲବାଣୀର ଜିଲ୍ଲାପାଳ ହେଉଛନ୍ତି ସର୍ବେସର୍ବା, ହର୍ତ୍ତାକର୍ତ୍ତା, ଦୈବ ବିଧାତା । ଭଂଜନଗରରେ ତ ଆର୍.ଡି.ଓ. ସବୁ ପରିବାରର ହେଡ୍ ବା ମୁଖ୍ୟ । ମୋ ପିଲାଦିନେ (ସ୍ୱାଧୀନତା ପୂର୍ବରୁ ଏବଂ ସ୍ୱାଧୀନତାର ଠିକ୍ ପରେ) ଭଂଜନଗରରେ ବହୁ ଲୋକ ସେମାନଙ୍କ ଘରେ କିଛି ଭଲ ତରକାରି ହେଲେ କି ବଗିଚାରେ ଭଲ କଦଳୀ ହେଲେ କି ଅମୃତଭଣ୍ଡା ହେଲେ କିଛି କିଛି ଆର୍.ଡି.ଓ.ଙ୍କ ଘରକୁ ପଠାଇବାର ମୁଁ ଦେଖିଛି । ଏଇଟା ଲାଞ୍ଚ ନୁହେଁ । କିସ ଆଞ୍ଚା ? ଆମ ଘରେ ଭଲ କଦଳୀ ହୋଇଛି, ଆର୍.ଡି.ଓ.ଙ୍କ ଘରକୁ ନ ପଠେଇଲେ ହେବ କି ? ମାହାପ୍ରୁ ! ନ ପଠେଇଲେ ପାପ ହେବ ନା ! ଏଇପରି ଉକ୍ତି ମୁଁ ଶୁଣିଚି ।

ଚନ୍ଦ୍ରମଣି ଭାରି ମଖ୍‌ଚୋଷ ! କାହାରି ଆୟୋଜନରେ ଖାଇବ ନାହିଁ । ସରକାରୀ ଗାଡ଼ି କାହାକୁ ଦେବ ନାହିଁ ଇତ୍ୟାଦି । ଆମେ ଯାଇଥିଲୁ ସୋରଡ଼ା । ସେଠାରେ କିଛିଦିନ ମୁଁ ଥିଲି ପିଲାଦିନେ । ବାପା ଅଳ୍ପଦିନ ପାଇଁ ସେଠାରେ ଫରେଷ୍ଟ ରେଞ୍ଜ ଅଫିସର ଥିଲେ । ପ୍ରାକୃତିକ ଦୃଶ୍ୟ ଦିଗରୁ ସୋରଡ଼ା ଭଂଜନଗରଠାରୁ ଭଲ । ଦୁଇ ସ୍ଥାନରେ ଦୁଇଟି ଘାଇ । ମିଳେ ପ୍ରସିଦ୍ଧ ବାଉଁଶପତରୀ ମାଛ । ଏବେ ମୋର ବାଲ୍ୟବନ୍ଧୁ ପଦ୍ମଲୋଚନ ଶତପଥୀ କହୁଥିଲେ ଯେ ତାଙ୍କ ଘରେ ବର୍ତ୍ତମାନ ବି ବାଉଁଶପତରୀ ମାଛ ଭଜା ହେଲେ ତାଙ୍କର ମୋ କଥା ମନେପଡ଼େ ଭଂଜନଗରରେ !

ଆମେ ଯାଇ ପହଞ୍ଚିଲୁ ସୋରଡ଼ାରେ । ଚନ୍ଦ୍ରମଣିର କ'ଣ ଗୋଟାଏ ବୈଠକ ଥିଲା ଡାକବଙ୍ଗଳାରେ । କଲେକ୍ଟର ଆସିବା କଥା । ସେ ଉକ୍ତ ସଭାରେ ସଭାପତିତ୍ୱ କରିବେ । ତାଙ୍କୁ ଅପେକ୍ଷା କରି ରହିଥିବା ଅଫିସରମାନଙ୍କ ଭିତରେ ଥିଲେ ଜିଲ୍ଲା କୃଷି ଅଫିସର ଡକ୍ଟର ମହାନ୍ତି । ସେ ଇଂଲଣ୍ଡ ବା ଆମେରିକାରୁ ଡକ୍ଟରେଟ୍ କରି ଆସିଥାଆନ୍ତି । ପ୍ରାୟ ଘଣ୍ଟାଏ ଅପେକ୍ଷା କଲା ପରେ ସେ ଉଠିଯିବାକୁ ବାହାରିଲେ ଏବଂ କହିଗଲେ ''କଲେକ୍ଟର ଆସିଲେ ତାଙ୍କୁ କହିଦେବ ଯେ ମୁଁ ଘଣ୍ଟାଏ ଅପେକ୍ଷା କରି ଫେରିଯାଉଛି ।'' ଅଧସ୍ତନ ଅଫିସର ହେଲେ ବି ସମୟ ଜ୍ଞାନ ତ ବେଶ୍ । ସାଧାରଣତଃ ସେମାନେ ବଡ଼ ଅଫିସରଙ୍କୁ ଜଗି ବସନ୍ତି ଘଣ୍ଟା ଘଣ୍ଟା ଧରି । ଯେପରି ମନ୍ତ୍ରୀ ବା ଭି.ଆଇ.ପି.ମାନଙ୍କୁ ସଭାମାନଙ୍କରେ ଆୟୋଜକମାନେ ଅପେକ୍ଷା କରିବସନ୍ତି ସଭା କାର୍ଯ୍ୟ ଆରମ୍ଭ କରିବା ପାଇଁ । ଯେଉଁମାନେ ଠିକ୍ ଟାଇମ୍‌ରେ ଆସିଥାଆନ୍ତି ସେଇମାନେ ଦଣ୍ଡିତ ହୋଇଥାଆନ୍ତି; କାରଣ ଅନେକ ସମୟ ପରେ ବିଳମ୍ବରେ ଆସିଥିବା ଭି.ଆଇ.ପି.ମାନେ ନିଜର ଭାଷଣ ଦେଇସାରି ଚାଲିଯାଆନ୍ତି ଅନ୍ୟମାନଙ୍କର କହିବାକୁ ଅପେକ୍ଷା ନ କରି । ଡକ୍ଟର ମହାନ୍ତିଙ୍କର ଏଇ ବ୍ୟତିକ୍ରମ ମୋତେ ମୁଗ୍ଧ କରିଥିଲା ।

ପରେ ସେ କୃଷିବିଭାଗର ଡାଇରେକ୍ଟର ହେଲେ । ଥରେ ମୁଁ ଯାଇ ତାଙ୍କ ପାଖରେ ପହଞ୍ଚିଲି । ୟୁନିଭର୍ସିଟିର ସହକର୍ମୀ ଉମେଶଚନ୍ଦ୍ର ନାୟକଙ୍କର ବାପା କୃଷି ବିଭାଗର ଏକ କର୍ମଚାରୀ ଥିଲେ କିନ୍ତୁ ତାଙ୍କର ବଦଳି ହୋଇଥିଲା ବହୁ ଜାଗାକୁ । ତେଣୁ ପେନ୍‌ସନ୍ ମିଳିବା ସହଜ ନୁହେଁ । ଅବସର ନେଲା ପରେ କିଏ ପଚାରୁଚି କାହାକୁ । ନବବାବୁଙ୍କ ଭଳି ମୁଖ୍ୟମନ୍ତ୍ରୀଙ୍କୁ ତ ପଚାରିଲେ ନାହିଁ, ଆଉ ସାଧାରଣ କଥା ନ କହିବା ଭଲ ।

ରାଜସ୍ୱ ବୋର୍ଡ଼ର ସଭ୍ୟ ୰ ବିଘ୍ନରାଜ ପଟେଲ ଆଉ ମୁଁ ଯାଇଥାଉ ମାଳତୀ ଦେବୀଙ୍କୁ ଭେଟିବା ପାଇଁ । ମାଳତୀ ଦେବୀ ଯେତେବେଳେ ବିଘ୍ନରାଜବାବୁ ବୋଲି ସମ୍ବୋଧନ କଲେ, ଉତ୍ତର ମିଳିଲା, "ଆପଣ ଯଦି ମୋତେ ବାବୁ ଏବଂ ଆପଣ ବୋଲି ସମ୍ବୋଧନ କରିବେ ତା' ହେଲେ ମୁଁ ଏଠୁ ଉଠିଲି ।" ଆମେ ସବୁ ତଳେ ବସିଥିଲୁ ତାଙ୍କ ସାଙ୍ଗରେ । ମାଳତୀ ଦେବୀ ଏସ୍.ଡି.ଓ., ତହସିଲଦାର ପ୍ରଭୃତିଙ୍କୁ ସାଙ୍ଗରେ ଦେଖି କ୍ଷୋଭ ପ୍ରକାଶ କରି କହିଲେ ଯାହାହେଉ ବିଘ୍ନରାଜ, ତମେ ଆସିଛ ବୋଲି ଏସ୍.ଡି.ଓ., ତହସିଲଦାର ପ୍ରଭୃତିଙ୍କ ସାଙ୍ଗରେ ଦେଖା ମିଳିଲା । "ସେମାନେ କ'ଣ ଆପଣଙ୍କ ପାଖକୁ ଆସନ୍ତି ନାହିଁ ?" ପ୍ରଶ୍ନର ଉତ୍ତର ଦେଇ ମାଳତୀ ଦେବୀ କହିଲେ, କାହିଁକି ଆସିବେ ? ନବବାବୁ କ୍ଷମତାରୁ ଗଲା ପରେ ତ କେହି ଏଆଡ଼କୁ ଆସନ୍ତି ନାହିଁ । ସେମିତି ତମଭଳି କିଏ ଜଣେ ଆସିଲେ ବାଧହୋଇ ଆସନ୍ତି । କିନ୍ତୁ ସେଇ ଦେଖାରେ କ'ଣ କିଛି କହିହୁଏ, ସୁଖଦୁଃଖର କଥା ? ଆଉ ସେ ଗଲା ପରେ.... ମାଳତୀ ଦେବୀଙ୍କ କଣ୍ଠ ଗମ୍ଭୀର ହୋଇ ଉଠୁଥିଲା । ମୁଁ ତ କେବେ କ୍ଷମତା ଚାଖି ନାହିଁ.... ତାଙ୍କ କଥା ସରିବାକୁ ନ ଦେଇ ବିଘ୍ନରାଜ ପଟେଲ କହିଲେ ଯେ "ମୁଁ ଲିଖିତ ଅର୍ଡ଼ର ଦେଇ ଯାଉଛି ଯେ ସେମାନେ ନିୟମିତ ଆସି ଆପଣଙ୍କୁ ଭେଟିବେ ।" ସାଧାରଣତଃ ବିଘ୍ନରାଜ ପଟେଲ ନରମ ସ୍ୱଭାବର ଲୋକ । କିନ୍ତୁ ସେଦିନ ତାଙ୍କର କଣ୍ଠ ଗମ୍ଭୀର ହୋଇଯାଇଥିଲା ।

ମୋର ଜଣେ ବନ୍ଧୁ ଥାଆନ୍ତି ଅର୍ଥ ବିଭାଗର ସଚିବ ବା ସେକ୍ରେଟେରୀ । ବଲାଙ୍ଗୀରରୁ ଜଣେ ଭଦ୍ରଲୋକ ଆସି ତାଙ୍କୁ ଭେଟିଲେ । ସେ ଉକ୍ତ ବିଭାଗର କର୍ମଚାରୀ ଥିଲେ । ଅବସର ନେଲେଣି । ବର୍ତ୍ତମାନ କେହି ତାଙ୍କ କଥା ଶୁଣିବାକୁ ନାହାନ୍ତି । ସେ ପେନ୍‌ସନ୍ ପାଉ ନାହାନ୍ତି । ବନ୍ଧୁ ଡକାଇ ପଠାଇଲେ ସଂପୃକ୍ତ ବିଭାଗର କିରାଣିକୁ ଏବଂ କୈଫିୟତ୍ ମାଗିବା ଢଙ୍ଗରେ ପଚାରିଲେ ପେନ୍‌ସନ୍ ପେପର ପ୍ରସ୍ତୁତ ନ ହେବାର କାରଣ କ'ଣ ? ସେ ମୁଣ୍ଡ କୁଣ୍ଡାଇ ଠିଆ ହେଲେ । ବାଧହୋଇ ସେକ୍ରେଟେରୀ ଆସିଥିବା ବ୍ୟକ୍ତିଙ୍କୁ ତୁରନ୍ତ ପଦକ୍ଷେପର ଭରସା ଦେଇ ବିଦା କଲେ । ସେ ଗଲା ପରେ ଉକ୍ତ କିରାଣି ସାହସ ବାନ୍ଧି କହିଲା ଯେ ଆଜ୍ଞା, ଏଇ ଭଦ୍ରଲୋକ ପରା ବହୁ ବ୍ୟକ୍ତିଙ୍କର ପେନ୍‌ସନ୍ ପେପର ପ୍ରସ୍ତୁତ କରିବାର ଡେରି କରି କମ୍ ହଇରାଣ କରିଛନ୍ତି ଲୋକଙ୍କୁ ?

ପେନ୍‌ସନ୍ ପେପର ପାଇବାର ଏଇ ଦଶା ବହୁ ଲୋକଙ୍କୁ ଘାରିଲା ପରେ ବିଭିନ୍ନ ରାଜ୍ୟରେ ବିଭିନ୍ନ ପ୍ରକାରର ନିର୍ଦ୍ଦେଶନାମା ଜାରି ହୋଇଛି । ଅବସର ନେବାର ବର୍ଷକ ପୂର୍ବରୁ ପେନ୍‌ସନ୍ ପେପର ପ୍ରସ୍ତୁତି ଆରମ୍ଭ ହେବାଠାରୁ ଆରମ୍ଭକରି ଅବସର ନେବା ଦିନ ହିଁ ପେନ୍‌ସନ୍

ପେପର୍ ନେଇଯିବା ପର୍ଯ୍ୟନ୍ତ ବହୁ ଅର୍ଡ଼ର ବିଭିନ୍ନ ରାଜ୍ୟ ସରକାର ଦେଇଛନ୍ତି । ତଥାପି ସମସ୍ୟା କ'ଣ ପୂରା ତୁଟିଲାଣି ?

ମୁଁ ଯାଇ ଡକ୍ଟର ମହାନ୍ତିଙ୍କ ପାଖରେ ପହଞ୍ଚିଲି । ମୋ ସାଙ୍ଗରେ ଉମେଶ ଥିଲେ । ସବୁ କଥା କହିଲି ଏବଂ ଆବଶ୍ୟକୀୟ କାଗଜପତ୍ର ଦେଲି । ସେ ସାତଦିନ ସମୟ ମାଗିଲେ । ମୁଁ ତାଙ୍କୁ ଆସିଲାବେଳେ ପଚାରିଲି ପୁଣି କେବେ ଆସିବି ? କ'ଣ ଚା' ଖାଇବାକୁ ନା, ଏଇ ପେନ୍‌ସନ୍ ପେପର୍ ପାଇଁ ? ପେନ୍‌ସନ୍ ପେପର ପାଇଁ ଆପଣଙ୍କର ଆସିବା ଦରକାର ନାହିଁ । ମୁଁ ଫେରିଲି ।

ଠିକ୍ ଛଅଦିନ ପରେ ପେନ୍‌ସନ ପେପର ଆସି ମୋ ପାଖରେ ହାଜର । ଏଭଳି ଘଟଣା ମୋତେ ବିସ୍ମିତ, ଚମତ୍କୃତ କଲା । ଡକ୍ଟର ମହାନ୍ତି ଅବସର ନେଲେଣି । ବର୍ତ୍ତମାନ କେଉଁଠି କହିପାରିବି ନାହିଁ । ଜୀବନରେ ବହୁ ଅଫିସରଙ୍କୁ ବହୁ କାର୍ଯ୍ୟ ପାଇଁ ଭେଟିଛି କିନ୍ତୁ ଏଭଳି ଅଫିସର ଖୁବ୍ କମ୍ ଭେଟିଛି ।

ଚନ୍ଦ୍ରମଣି ଏବଂ ମୁଁ ସେଦିନ ସୋରଡ଼ାରେ ରହିଲୁ । ରାତିକୁ ସେଠାର ଗିର୍ଜାର ପାଦ୍ରିମାନେ ଖାଇବାକୁ ଡାକିଲେ । ଚନ୍ଦ୍ରମଣି ପ୍ରଥମେ ଏକଦମ୍ ନାରାଜ ଥିଲା । ସେ ବହୁତ ନେହୁରା ହେଲେ । ପରିଶେଷରେ ଆମେ ଗଲୁ । ମିଳିଥିଲା କୁକୁଡ଼ା, ଖାସି, ମୃଗ ମାଂସ । ମିଳିଥିଲା ଭାକୁରଠାରୁ ଆରମ୍ଭ କରି ବାଉଁଶପତରୀ ପର୍ଯ୍ୟନ୍ତ ମାଛ ଇତ୍ୟାଦି । ରାତିରେ ମୋତେ ଚନ୍ଦ୍ରମଣି କହିଲା ତୁ ଜାଣୁ ଆମ ପାଇଁ ଏଇ ପାଦ୍ରିର ଏତେ ଆଦର କାହିଁକି ? ଅତିଥି ଚର୍ଚ୍ଚା ଭଳି ଧର୍ମ କାର୍ଯ୍ୟ ପାଇଁ ନୁହେଁ ଏସବୁ । ଏମାନେ ବହୁ ସରକାରୀ ଜମି ଜବରଦଖଲ କରିଛନ୍ତି ଏବଂ ଭାଗଚାଷୀମାନଙ୍କୁ ମଧ ସେମାନଙ୍କର ପ୍ରାପ୍ୟ ଦେଉ ନାହାନ୍ତି । ଭାବିଛନ୍ତି ଯେ ଧର୍ମ ନାମରେ ସବୁ ଅତ୍ୟାଚାର, ଶୋଷଣ, ବେଆଇନ୍ କାମ ହୋଇଯାଇପାରିବ ।

କାଲି ମୋ କୋର୍ଟରେ ସେମାନଙ୍କର କେତେଗୁଡ଼ାଏ ମୋକଦ୍ଦମା ରାୟ ପାଇଁ ରହିଛି । ସେଇଯୋଗୁଁ ଆଜି ତାଙ୍କର ଏତେ ଆଦର ! ତା' ପରଦିନ ଚନ୍ଦ୍ରମଣି ତାଙ୍କର ରାୟରେ ଚର୍ଚ୍ଚର ଅନ୍ୟାୟ କାର୍ଯ୍ୟ ବିରୋଧରେ ରାୟ ଦେଲେ । ଚନ୍ଦ୍ରମଣିର ଅଭ୍ୟାସ ଇମିତି । ପ୍ରସିଦ୍ଧ ଚାଷୀନେତା ଗୌରଚନ୍ଦ୍ର ପ୍ରଧାନଙ୍କ ଭାଗଚାଷୀ ବିରୋରେ ମୋକଦ୍ଦମା । ଗୌରର ଓକିଲ ହେଉଛନ୍ତି ପ୍ରବୀର ପାଲିତ ଏବଂ ରମାକାନ୍ତ ମହାପାତ୍ର । ସେ ଦୁହେଁ ଏବଂ ଗୌର ଚନ୍ଦ୍ରମଣିର ବନ୍ଧୁ । ଦୁଇ ଓକିଲ ଏବଂ ଗୌର ଚନ୍ଦ୍ରମଣିର ଅତିଥି । ଖିଆପିଆ ସରିଲା । ଉପରବେଳାକୁ ରାୟ ବାହାରିଲା ଗୌର ବିରୋଧରେ । କିନ୍ତୁ ବନ୍ଧୁତାରେ ଆଞ୍ଚ ଆସି ନାହିଁ । ଏହା ଗୌର ଭଳି କମ୍ ବନ୍ଧୁଙ୍କ କ୍ଷେତ୍ରରେ ପ୍ରଯୁଜ୍ୟ । କିନ୍ତୁ ଚନ୍ଦ୍ରମଣି ଭଂଜନଗରରୁ ଆସିଲା ପରେ ସୋରଡ଼ାର ସେଇ ପାଦ୍ରି ତାଙ୍କୁ ଆଉ ଅତିଥି କରିଛି କି ନାହିଁ ମୁଁ ଜାଣେ ନାହିଁ ।

ଖ୍ରୀଷ୍ଟଧର୍ମ ପ୍ରତି ଆନୁଗତ୍ୟରେ ଫାନାଟିସିଜମ୍ ହେଉ ବା ଗଭୀର ମାନବିକତାରେ ଉଦ୍‌ବୁଦ୍ଧ ହେବା ଯୋଗୁଁ ହେଉ ଏଇ ପାଦ୍ରି, ନର୍ସମାନେ ଦିନେ ସାଧାରଣ ମଣିଷ ଭିତରେ ସେମାନଙ୍କ ପ୍ରତି ଶ୍ରଦ୍ଧା ଭକ୍ତି ଆରୋପିତ କରିପାରିଥିଲେ । କିନ୍ତୁ ଯେତେବେଳେ ଗିର୍ଜାଧୀଶ ହୋଇଯାଇଛନ୍ତି ପାଦ୍ରିମାନେ ସେତେବେଳେ ଏହା ତୁଟି ଯାଇଛି ।

ଅପର ପକ୍ଷରେ ଯେତେବେଳେ ଅଗମ୍ୟ ଅଂଚଳକୁ ରାସ୍ତା ଫିଟିଛି, ଜନମଙ୍ଗଳ କାର୍ଯ୍ୟକ୍ରମ ଚାଲୁ ହୋଇଛି ଓ ଶିକ୍ଷା ବଢ଼ିଛି ସେତେବେଳେ ଧର୍ମାନ୍ତରୀକରଣ ମଧ୍ୟ କମିଯାଇଛି । କୋରାପୁଟ, ଫୁଲବାଣୀ ଜିଲ୍ଲାରେ ଏହା ମୋର ପ୍ରତ୍ୟକ୍ଷ ଅଭିଜ୍ଞତା । ସେତେବେଳେ ଦାତବ୍ୟ ଚିକିତ୍ସା କେନ୍ଦ୍ର ସବୁ ମଧ୍ୟ କ୍ରମେ ଦାତବ୍ୟତ୍ୱ ହରାଇ ବସିଛି ।

ମୋ ପିଲାଦିନର କଥା ।

ଜି. ଉଦୟଗିରିରେ ଏକ ଖ୍ରୀଷ୍ଟିଆନ ହସ୍‌ପିଟାଲ ଥାଏ । ସେତେବେଳେ ଜି. ଉଦୟଗିରି ଅରଣ୍ୟାନୀରେ ଭରା । ଉଦୟଗିରି ଏକ ଦୁରାରୋଧ ଅଞ୍ଚଳ । ତଥାପି ସେଠାର ଡାକ୍ତରମାନଙ୍କର ଦକ୍ଷତା ଓ ନିଷ୍ଠା ଯୋଗୁଁ ଅନେକ ଉପକୂଳ ଅଂଚଳର ରୋଗୀ ସେଠାକୁ ଯାଉଥିଲେ ଚିକିତ୍ସା ପାଇଁ ବିଶେଷତଃ ଅପରେସନ୍ ପାଇଁ ।

ମୋର ଯେତେବେଳେ ସ୍କାନିଂ ହୋଇପାରିଲା ନାହିଁ, ସେତେବେଳେ ଆଉ ଡାକ୍ତରଖାନାକୁ ଯିବାର ଆବଶ୍ୟକତା ପଡ଼ିଲା ନାହିଁ । କାରଣ ଦେହର ବାମ ଗୋଡ଼, ବାମ ହାତ ଅଚଳ ହୋଇସାରିଛି । ତାହା ସୁଧାରି ହେବ ନାହିଁ । ସମୟ ଲାଗିବ । ବୟସ ସତୁରି ଛୁଇଁଲାଣି । ସମୟ ଲାଗୁ ଲାଗୁ ତେଣେ ଶେଷ ସମୟ ଆସିଯିବ ନା କ'ଣ ?

ଗୋଟିଏ ବର୍ଷ ଅଚଳ ହୋଇଗଲି । ସବୁ କାମ ଅଟକିଗଲା । ବର୍ଷ ଶେଷବେଳକୁ ମନେପଡ଼ିଲା ନିଜ ଜୀବନ କାହାଣୀ ଲେଖିବାର ପ୍ରତିଶ୍ରୁତି– ପ୍ରତିଶ୍ରୁତି ନିଜକୁ ଏବଂ ପ୍ରତିଶ୍ରୁତି ଅନ୍ୟମାନଙ୍କୁ । କିଛି ଅଂଶ ହଜିଗଲା– ହଜିଗଲା ବାତ୍ୟାରେ ଏବଂ କିଛି ହଜିଗଲା ବନ୍ଧୁମାନଙ୍କ ଦୟାରୁ । ତଥାପି ନିଷ୍ପତ୍ତି କଲି ଗୋଟାଇ ଗୋଟାଇ ସାରିଦେବି । ଜୀବନର ଜନପଥ ତ ଏକ ଦୀର୍ଘପଥ । ଯେତିକି ପର୍ଯ୍ୟନ୍ତ ଯିବ ଯାଉ ।

ଏଇ ଭିତରେ ମୁଁ ଭୁବନେଶ୍ୱର ଯାଇପାରିଚି ମାତ୍ର ଥରେ ଏବଂ ସେତିକି ମଧ୍ୟ ସମ୍ଭାଳି ହେଲା ନାହିଁ । ଅସୁସ୍ଥ ହୋଇ ପଡ଼ିଲି । ଆଗାମୀ ୨୦୦୨ ମସିହାରେ ଏକ ଆନ୍ତର୍ଜାତିକ ସେମିନାର ପାଇଁ ପ୍ରଥମ ପ୍ରସ୍ତୁତି ପର୍ବ ସେଇଦିନ ଆରମ୍ଭ ହେଲା । କିନ୍ତୁ ମୋର ରୋଗର ଯେ ପ୍ରସ୍ତୁତିପର୍ବ ଆରମ୍ଭ ହୋଇଯାଇଛି ମୁଁ ତାହା ଜାଣିପାରିଲି ନାହିଁ । ଫେବୃଆରୀ ୫, ୨୦୦୧, ସକାଳୁ କିଛି ଡାକ୍ତର ବନ୍ଧୁ ଫୋନ୍ କଲେ ସେମାନେ ଗୁଜୁରାଟ ଯାଉଛନ୍ତି ରିଲିଫ ଦେବା ସକାଶେ । ମୋର ଶୁଭେଚ୍ଛା ସେମାନେ ଚାହାନ୍ତି । ମୁଁ ସେମାନଙ୍କୁ ଶୁଭକାମନା ଜଣାଇବା ପାଇଁ ଷ୍ଟେସନକୁ ଆସିପାରିଲେ ସେମାନେ ଖୁସି ହେବେ । ନାହିଁ କରିପାରିଲି ନାହିଁ । ରିଲିଫ୍ କାମ ପାଇଁ ମୋର ଏକ ଦୁର୍ବଳତା ରହିଛି । ୧୯୫୫ରୁ ଏପର୍ଯ୍ୟନ୍ତ ସବୁ ବାତ୍ୟା, ବନ୍ୟା, ମରୁଡ଼ି ବିପର୍ଯ୍ୟୟରେ କାମ କରି ଆସିଛି । ଷ୍ଟେସନରେ ଯାଇ ପହଞ୍ଚିଲି– ସାଙ୍ଗରେ ଉମେଶ । ଦୈବାତ୍ ସେଦିନ ଆଉ ଜଣେ ବନ୍ଧୁ ଶ୍ରୀ ବି.ଏନ୍.ରାୟ ଜୁଟିଲେ ଯିବାପାଇଁ । ସେଇ ଯୋଗୁଁ ବଞ୍ଚିଗଲି । ଷ୍ଟେସନରେ ହଠାତ୍ ଦୁଇହାତ ଅଚଳ ହୋଇଗଲା । ଆକସ୍ମିକ ସେଇଠି ଦେଖାହେଲା ବନ୍ଧୁ ଚକ୍ରଧର ପାଢ଼ୀଙ୍କ ସହିତ । ସେମାନେ ମୋତେ ଟେକିନେଇ ଗାଡ଼ିରେ ବସାଇଦେଲେ । ଘରେ ପହଞ୍ଚିଲା ବେଳକୁ ଆଉ ପାଟିରୁ କଥା ବାହାରୁ ନାହିଁ । ମୂକ ହୋଇଗଲି ପୂରା । ଝାଡ଼ା ପରିସ୍ରା ମଧ୍ୟ ହୋଇଗଲା ବିଛଣାରେ ।

ଫେବୃଆରୀ ୯ ତାରିଖ ୨୦୦୧ ମସିହା । ସେ ଦିନ ମୋର ଜନ୍ମଦିନ । ସକାଳୁ କିଏ ସବୁ ଆସିଥିଲେ ବଧେଇ ଜଣେଇବା ପାଇଁ । ମୋର କିଛି ମନେ ନାହିଁ । ସନ୍ଧ୍ୟାରେ ମୋର ବହି 'ଜୀବନର ବାଟେଘାଟେ' ଉନ୍ମୋଚନ ହେବ । ଜାନକୀବାବୁ ଉନ୍ମୋଚନ କରିବେ । ସୌମ୍ୟରଞ୍ଜନ, ସାତକଡ଼ିବାବୁ, କିଶୋରବାବୁ (ତ୍ରିପାଠୀ) ପ୍ରଭୃତି ଆସିବେ । କିନ୍ତୁ ସକାଳୁ ମୋର ବାକ୍‌ଶକ୍ତିରହିତ ହୋଇଗଲା । ପଡ଼ୋଶୀ ନରେନ୍ଦ୍ର, ଉମେଶ, ସନ୍ତୋଷ ବୋହିଆଣି ବସାଇ ଦେଇଥିଲେ ଗାଡ଼ିରେ । ଗାଡ଼ିରୁ ପୁଣି ବୋହି ଆଣିଥିଲେ ୟୁନିଭର୍ସର ହଲ୍‌କୁ । ମୋର ଝାପ୍‌ସା ମନେପଡୁଛି କିଛି କିଛି । କିନ୍ତୁ କିଛି କହିପାରିଲି ନାହିଁ କି ସମ୍ବର୍ଦ୍ଧନାର ଉତ୍ତର ଦେଇପାରିଲି ନାହିଁ ।

ରାତିରେ ଅବସ୍ଥା ଖରାପ ହେବାକୁ ଲାଗିଲା । ମୋର ସ୍ତ୍ରୀ କମଳ କୁମାରୀ ଭାରି ନର୍ଭସ ମଣିଷ । ସେ ପୁଣି ନିଜେ ଅସୁସ୍ଥ । କିନ୍ତୁ ମୁଁ ଆଶ୍ଚର୍ଯ୍ୟ ହେଲି ଯେପରି ସେଦିନର ପରିସ୍ଥିତି ସେ ସମ୍ଭାଳି ନେଇଥିଲେ । ମିଟିଂ ଶେଷରେ ମୋତେ ସେହିପରି ବୋହି ଅଣା ହୋଇଥିଲା ଘରକୁ । ହଠାତ୍ କେହି ଡାକ୍ତର ବି ମିଳିଲେ ନାହିଁ । ରାତି ୧୦ଟାରେ ବୋଧହୁଏ ରତ୍ନାକର ପଣ୍ଡା ମିଳିଥିଲେ । ସେ ସବୁ ବନ୍ଧୁ ଡାକ୍ତରମାନଙ୍କୁ ଡାକି ଆଣିଲେ । ବନ୍ଧୁ ଯଦୁ, ଭବାନୀ, ଆଲୋକ, ରତ୍ନାକର, ସଂଜୟ, ଲୁଲୁ ସମସ୍ତେ ପହଞ୍ଚିଲେ । ରତ୍ନାକର କିନ୍ତୁ ଦୁଇଦିନ ଆଗରୁ ଠିକ୍ ଠଉରାଇଥିଲେ ଯେ ବୋଧହୁଏ ମୁଣ୍ଡରେ କିଛି ଗଣ୍ଡଗୋଳ ହୋଇଛି । ସେ ଭବାନୀଙ୍କୁ ଡକାଇବା ପାଇଁ କହିଥିଲେ । ଭବାନୀ ଏବଂ ଅନ୍ୟମାନେ ପରୀକ୍ଷା କରି କହିଲେ ଯେ କାଲି ସକାଳୁ ସ୍କାନିଂ ହେବା ଏକାନ୍ତ ଜରୁରୀ । ସ୍କାନିଂ ହେଲା ବହୁ କଷ୍ଟରେ । ଉମେଶ ଏବଂ ରୀନା ଜଗି ରହିଲେ । ରୀନା ତ ଝାଡ଼ା ପରିସ୍ରା ସବୁ ସଫା କଲା ମୋ ସ୍ତ୍ରୀଙ୍କ ସହିତ ମିଶି । ୧୧ ତାରିଖ ଦିନ ସ୍କାନିଂ । ମସ୍ତିଷ୍କରେ ରକ୍ତସ୍ରାବ । ତୁରନ୍ତ ଅପରେସନ୍ ଦରକାର ୧୨ ତାରିଖ ସକାଳୁ । ସେ ଦିନ ସୋମବାର । ଘରେ ଟଙ୍କା ନ ଥିଲା । ଭବାନୀକୁ କମଳ କିଛି ସମୟ ମାଗିଲା । ଦୁଇ ପୁଅ ଦିଲ୍ଲୀରେ । ଜୋଇଁ ଯାଇଛି ସମୁଦି, ସମୁଦୁଣୀଙ୍କର ଅସ୍ଥି ବିସର୍ଜନ ନିମନ୍ତେ କୁମ୍ଭମେଳାକୁ । ଝିଅ ତା'ର ଦୁଇ ସାନ ପିଲା ସହିତ ଭୁବନେଶ୍ୱରରେ । ବନ୍ଧୁ ବି ଇମିତି ଅଛନ୍ତି ମୋର । ସେ କହିଲେ ଯେ କାହା ପାଇଁ ଅପେକ୍ଷା କରନ୍ତୁ ନାହିଁ । ମୁଁ ସବୁ ବୁଝିବି । ଡେରି ହୋଇ ଗଲାଣି । ଆଉ ବିଳମ୍ବ କଲେ ତାଙ୍କର ଜୀବନ ପ୍ରତି ବିପଦ ଅଛି । ସେ ନେଇଚାଲିଲେ କଳିଙ୍ଗ ହସ୍‌ପିଟାଲକୁ । ରମେଶ, ଶାରଦା ପ୍ରଭୃତି ସେଠାରେ ଅପେକ୍ଷା କରିଥିଲେ । କଟକ ହସପିଟାଲ ହୋଇଥିଲେ ଅନ୍ତତଃ ପାଞ୍ଚ ଦିନ ଲାଗିଥାନ୍ତା ଯେତିକି ପରୀକ୍ଷା ହେଲା ସେଇତକ କରିବା ପାଇଁ । ଦିନ ଦଶଟାରୁ ବାରଟା ଭିତରେ ଆଠ ଦଶଟା ପରୀକ୍ଷା ହୋଇଗଲା । ଦିନ ଗୋଟାଏ ବେଳେ ସେ ଧରିଲେ ଛୁରୀ । ମୋର ହୃଦ୍‌ଯନ୍ତ୍ରରେ ସମସ୍ୟା ଥିବାରୁ ଲୋକାଲ ଆନାସ୍ଥେସିଆରେ ଅପରେସନ୍ ହେଲା ।

କିନ୍ତୁ ମସ୍ତିଷ୍କରେ ଦୁଇଟି କଣା କରି ରକ୍ତ ବାହାର କରିବା ସତ୍ତ୍ୱେ ପୁଣି ମାସକ ପରେ ଆଉ ଗୋଟିଏ ଅପରେସନ୍ ଦରକାର ପଡ଼ିଲା । ଏଇଟି ହେଲା କଟକରେ ବନ୍ଧୁ ଡାକ୍ତର

ମୁସ୍ତାକ୍ ଅଲ୍ଲୀଙ୍କ ନର୍ସିଂହୋମ୍‌ରେ । ଭବାନୀ ନିଜର ପରିଶ୍ରମ ପାଇଁ ପାରିଶ୍ରମିକ ଗ୍ରହଣ କଲେ ନାହିଁ । ସେଥିପାଇଁ ମୁଁ ତା' ପାଖରେ କୃତଜ୍ଞ ।

ମୋର ମନେପଡୁଛି ଟିକିଏ ଟିକିଏ । ରମେଶ ଚନ୍ଦ୍ର ରାୟଚୌଧୁରୀଙ୍କ ସ୍ତ୍ରୀ ଅସୀମା ଆସିଥିଲେ ମୋତେ ଦେଖିବାକୁ । ଭବାନୀକୁ ଉଦ୍‌ବିଗ୍ନ ଦେଖି ସେ କହିଲେ ଗିରିଜାବାବୁଙ୍କ ଜୀବନ ଯେକୌଣସିମତେ ରକ୍ଷା କରିବାକୁ ହେବ । ସେ କଥା ମୁଁ ଭୁଲିପାରିବି ନାହିଁ । ବଡ଼ପୁଅ ଦିଲ୍ଲୀରେ ରହେ । ସାନପୁଅ ବି ସେଇଠି । ତା'ର ବନ୍ଧୁମାନେ ତାକୁ ଉପଦେଶ ଦେଲେ ମୋତେ ଦିଲ୍ଲୀ ନେଇଯିବା ପାଇଁ, ଏସ୍‌କର୍ଟକୁ । ସେ ସାଙ୍ଗମାନଙ୍କୁ ଯେଉଁ ଡାକ୍ତରମାନଙ୍କ ତତ୍ତ୍ୱାବଧାନରେ ମୁଁ ଅଛି ତା'ର ଏକ ତାଲିକା ଦେଇ କହିଲା, ''ଦିଲ୍ଲୀରେ କେଉଁ ଡାକ୍ତରଖାନାରେ ମୁଁ ଏତିକି ଡାକ୍ତର ଠୁଳ କରିପାରିବି ?''

ବହୁ ବନ୍ଧୁ, ବହୁ ଡାକ୍ତରବନ୍ଧୁମାନଙ୍କର ସାହାଯ୍ୟରେ ମୁଁ ଏକ ନୂତନ ଜୀବନ ଲାଭ କଲି । କିନ୍ତୁ ପୁଣି ସେମାନଙ୍କ ଉପଦେଶ । ସମୟ ଲାଗିବ । ସେହିଦିନଠାରୁ ମୁଁ କୌଣସି କାର୍ଯ୍ୟକ୍ରମ ସଭାସମିତି, ବିବାହ, ବ୍ରତ, ଅନ୍ତ୍ୟେଷ୍ଟି କ୍ରିୟାରେ ଯୋଗ ଦେବାପାଇଁ ଅକ୍ଷମ ହୋଇପଡ଼ିଚି । କିଛି ମାସ ପରେ ମୁଁ କେବଳ ୟୁନିଭର୍ସକୁ ଦିନରେ ଥରେ ଆସିପାରୁଚି । ତା' ବି ସବୁଦିନ ନୁହେଁ ।

ଏଇ ପରିସ୍ଥିତିରେ ଏକ ନୂତନ ଜୀବନ ଲାଭ କରି ମୁଁ ଲେଖିବାକୁ ଆରମ୍ଭ କଲି 'ଜୀବନର ଜନପଥରେ' । ସ୍ମରଣ ଶକ୍ତି, ଲେଖିବାର ଶକ୍ତି କମିଯାଇଛି । ତଥାପି ଦେଖାଯାଉ ।

## ଘନକୁନ୍ତଳ କେରିକେରି
## ଫିଟିପଡ଼େ ଆଗୋ ଫିଟିପଡ଼େ
## ଅନୁରାଗେ

କାଲି ରାତି । ହଠାତ୍ ନିଦ ଭାଙ୍ଗିଗଲା । ଉଠି ଆକାଶକୁ ଅନେଇଲି । ଆକାଶ କାଲି ଥିଲା ନିର୍ମେଘ । ମନେ ହେଉଥିଲା ଯେମିତି ଆକାଶରୁ ନିଆଁ ବର୍ଷୁଛି । ଆଜି କିନ୍ତୁ ସମଗ୍ର ଆକାଶ ମେଘଭରା । ଅଭିମାନିନୀ ପ୍ରିୟାର ମୁହଁ ପରି । ଏଇ ଆଷାଢ଼ ଭଲ ଲାଗେ । ଅନେକ ସ୍ମୃତି ପହଁରିଯାଏ ମନରେ, ଆପେ ଆପେ ।

ଅରଣ୍ୟ ଭିତରେ ବଢ଼ିଛି ଏବଂ କାହିଁକି କେଜାଣି ଅରଣ୍ୟ ମୋତେ ଭୁଲି ନାହିଁ କି ଅରଣ୍ୟକୁ ମୁଁ ଭୁଲି ନାହିଁ । ଅରଣ୍ୟ କ୍ଷୟ ହୋଇ ଚାଲିଛି । ଲୋକେ ବୁଝୁ ନାହାନ୍ତି କି ସରକାର ବୁଝୁ ନାହାନ୍ତି । ଅରଣ୍ୟ କ୍ଷୟ ହୋଇଗଲେ କି ବିପଦ ଘନେଇ ଆସିବ । ସେ ସଂପର୍କରେ କେହି ସଚେତନ ନୁହନ୍ତି । ଯୁଦ୍ଧ ହୁଏ ତିନି ପ୍ରକାର– ଯୁଦ୍ଧ, ଶୀତଳ ଯୁଦ୍ଧ ଓ ନୀରବ ଯୁଦ୍ଧ । ନୀରବ ଯୁଦ୍ଧ ହେଉଛି ପ୍ରକୃତିର ଅବକ୍ଷୟ । ଏଥିପାଇଁ କମାଣ, ବନ୍ଧୁକ, ବୋମାର ଆବଶ୍ୟକତା ପଡ଼େ ନାହିଁ । ଶବ୍ଦ ଶୁଭେନା ଏଇ ଯୁଦ୍ଧରେ । ସବୁ ନୀରବରେ ହୋଇଯାଏ କିନ୍ତୁ ଏହା ଏପରି ବିପଦ ସୃଷ୍ଟି କରେ ଯାହା ଦୂର କରିବା ପାଇଁ ଯୁଗ ଯୁଗ ଲାଗିଯାଏ । ଥରେ ସେ କ୍ଷତି ହୋଇସାରିଲା ପରେ ତାକୁ ଦୂର କରିବା ପାଇଁ ବହୁ ମନସ୍ତାପ, ପ୍ରାୟଶ୍ଚିତ୍ତ କରିବାକୁ ପଡ଼େ ।

ବ୍ରାଜିଲ୍‌ରେ ଆଜି ବି ରହିଛି ଘନ ଅରଣ୍ୟ । ସେ ଅରଣ୍ୟ କାଟିବାକୁ ଆରମ୍ଭ କଲାବେଳେ ସାରା ପୃଥିବୀରେ ଉଠୁଛି ପ୍ରତିବାଦର ସ୍ୱର । ଏଇ ଅରଣ୍ୟ କଟିଗଲେ ପୃଥିବୀପୃଷ୍ଠରୁ ଅମ୍ଳଜାନ କମିଯିବ ଶତକଡ଼ା ୧୫ ଭାଗ । ସମଗ୍ର ମଣିଷ ଜାତିର ଅସ୍ତିତ୍ୱ ଉପରେ ବିପଦ ଦେଖାଯିବ ।

ପ୍ରତିବାଦ ଉଠୁଛି ସାରା ପୃଥିବୀରୁ । ବିଶେଷତଃ ଶିଳ୍ପ ସମୃଦ୍ଧ ୟୁରୋପରୁ କାରଣ ସେମାନଙ୍କର ଶିଳ୍ପ ସମୃଦ୍ଧି ସହିତ ପ୍ରାକୃତିକ ଅବକ୍ଷୟ ସମାନ ତାଳରେ ଚାଲିଛି । ଜାପାନରେ ହୋଟେଲମାନଙ୍କରେ ବାସିନ୍ଦାମାନଙ୍କୁ ସତର୍କ କରାଇ ଦିଆଯାଉଛି । ବାହାରକୁ ଯାଆନ୍ତୁ ନାହିଁ । ଅମ୍ଳଜାନର ଅଭାବ ଗୁରୁତର । ନିହାତି ଯିବାକୁ ହେଲେ ଅମ୍ଳଜାନ ମୁଖା ପିନ୍ଧି ଯାଆନ୍ତୁ । କି ସାଂଘାତିକ ଅବସ୍ଥା ! ଦ୍ୱିତୀୟ ମହାଯୁଦ୍ଧ ଏବଂ ଶିଳ୍ପ ବିକାଶ ଯୋଗୁଁ ଅରଣ୍ୟ ଆଉ ନାହିଁ । ତେଣୁ ଅମ୍ଳଜାନର ଗୁରୁତର ସଂକଟ ଦେଖାଦେଇଛି ।

ଓଡ଼ିଶାରେ ଅରଣ୍ୟ ବୃଦ୍ଧି ପାଇଁ ବହୁ ପ୍ରକାର କାର୍ଯ୍ୟକ୍ରମ ଗ୍ରହଣ କରାଯାଉଛି । ସାମାଜିକ ବନ ପ୍ରକଳ୍ପ ଠାରୁ ଆରମ୍ଭ କରି ବନ୍ୟ ସପ୍ତାହ ପାଳନ ପର୍ଯ୍ୟନ୍ତ । କିନ୍ତୁ ସ୍ୱାଧୀନତା ପରେ ଏ ପର୍ଯ୍ୟନ୍ତ ଗୋଟିଏ ଇଞ୍ଚ ନେଚୁରାଲ ହାବିଟାଟ୍ (Natural Habitat) ତିଆରି ହୋଇପାରିଛି କି ? ବନ୍ୟ ବିଭାଗରେ ଅଫିସର ବଢ଼ିଛନ୍ତି, ଗାଡ଼ି ବଢ଼ିଛି, କୋଠା ବଢ଼ିଛି କିନ୍ତୁ ଅରଣ୍ୟ ବଢ଼ି ନାହିଁ ବରଂ କ୍ଷୟ ହୋଇ ଚାଲିଛି ।

ମୋର ମନେପଡୁଛି । ବିନୋବା ଭାବେଙ୍କ ପଦଯାତ୍ରାରେ କିଛିଦିନ ଚାଲିଥିଲି କୋରାପୁଟରେ । କି ନିବୁଜ, ନିରନ୍ଧ୍ର ଅରଣ୍ୟ ? ଚାଲିକରି ଯିବା ସତ୍ତ୍ୱେ କ୍ଳାନ୍ତି ଲାଗୁ ନ ଥିଲା । କାରଣ ଘେରି ରହିଥିଲା ଅରଣ୍ୟ । ଏବେ ଯାଉଥିଲି ସେଇ ରାସ୍ତାରେ ପୁଣି ଥରେ । ଅରଣ୍ୟ ନାହିଁ, ଅଛି ଖାଲି ଲଣ୍ଡା ଲଣ୍ଡା ପାହାଡ଼ । ବର୍ତ୍ତମାନ ଚାଲିଛି, Watershed managementର ନାଟକ କିଛି ଅଞ୍ଚଳରେ । ପାହାଡ଼ର ଢାଲୁର କିଛି ସ୍ଥାନରେ ବନ୍ଧ ଦେଇ ପାଣି ଅଟକା ଯାଉଛି । ଉପାୟ ଆଉ ନାହିଁ । ଆମେ ଫେରିଛୁ ପୁଣି ପୁରୁଣା ଦିନକୁ । ଶଉରାମାନେ ଯାହା କରୁଥିଲେ ଆମେ ସେୟା କରୁଛୁ । କିନ୍ତୁ ଚେତିଲା ବେଳକୁ ସମୟ ଅତିକ୍ରାନ୍ତ ହୋଇସାରିଛି । ବର୍ତ୍ତମାନ ବହୁ ସମୟ ଲାଗିବ ।

ବ୍ରାଜିଲର ଅରଣ୍ୟ କଟିଯିବା ସମ୍ବାଦର ପ୍ରତିବାଦ ଶୁଭୁଛି ସୁଦୂର ୟୁରୋପରେ । କିନ୍ତୁ ବ୍ରାଜିଲବାସୀ ମଧ୍ୟ ଏକ ଯଥାର୍ଥ ପ୍ରଶ୍ନ ଉଠାଇଛନ୍ତି । ଏଇ ଅରଣ୍ୟ ହେଉଛି ଆମର ଏକମାତ୍ର ସଂପଦ । ଯେଉଁ ଦେଶମାନେ ଆପଣା ଦେଶର ଗଛସବୁ କାଟି ଦେଶକୁ ଶିଳ୍ପ ସମୃଦ୍ଧ କରିଛନ୍ତି ଯେଉଁମାନେ ଅନ୍ୟ ଦେଶର ପ୍ରାକୃତିକ ବିଭବକୁ ଧ୍ୱଂସ କରି ଆପଣାର ଶ୍ରୀବୃଦ୍ଧି କରିଛନ୍ତି, ସେମାନେ ବର୍ତ୍ତମାନ କାନ୍ଦିଲେ କ'ଣ ହେବ ? ବ୍ରାଜିଲର ପ୍ରାକୃତିକ ସଂପଦକୁ ରକ୍ଷା କରିବା ଯଦି ସମଗ୍ର ବିଶ୍ୱର ଦାୟିତ୍ୱ ତା'ହେଲେ ସେମାନେ ଏଥିପାଇଁ ବ୍ରାଜିଲ ଏବଂ ଦକ୍ଷିଣ ଆମେରିକାର ଅନ୍ୟ ଦେଶମାନଙ୍କୁ ତଥା ପୃଥିବୀର ଯେଉଁସବୁ ଦେଶରେ ତଥାପି ଅରଣ୍ୟ ସଂପଦ ରହିଛି ସେମାନଙ୍କୁ କ୍ଷତିପୂରଣ ଦେବା ଉଚିତ।

ଷ୍ଟକ୍‌ହୋମ୍ ଓ ରାଇଓଡିଜେନିରୋରେ ଏଥିପାଇଁ ଦୁଇଟି ଆନ୍ତର୍ଜାତିକ ସମ୍ମିଳନୀ ହୋଇଯାଇଛି, ପରିବେଶ ସୁରକ୍ଷା ପାଇଁ ଉଦ୍‌ବେଗ ଆନ୍ତର୍ଜାତିକ ହୋଇଛି । କିନ୍ତୁ ଫଳ ବିଶେଷ କିଛି ହୋଇ ନାହିଁ ।

ଏ ପର୍ଯ୍ୟନ୍ତ ଭାରତବର୍ଷରେ ବିଶେଷତଃ ଓଡ଼ିଶାରେ ଶିକ୍ଷା ସମେତ ଅରଣ୍ୟ ପାଇଁ କୌଣସି ନିର୍ଦ୍ଦିଷ୍ଟ ନୀତି ସ୍ଥିର ହୋଇପାରି ନାହିଁ । ଶିକ୍ଷା ବଣୁଆ ପାଲଟିଛି, ଅରଣ୍ୟ ଲଣ୍ଡା ହୋଇଛି । ସେଇପରି ଅରଣ୍ୟରୁ କିଛି ଶିକ୍ଷା ଲାଭ କଲା ପରି ମନେ ହେଉ ନାହିଁ । ୱାର୍କିଂ ପ୍ଲାନ୍ (working plan) ନାମକ ଜରୋରୀ ବିଷୟ ପ୍ରତି ଅରଣ୍ୟ ବିଭାଗର ଧ୍ୟାନ ନାହିଁ । ଏହିପରି ଗୁରୁତ୍ୱପୂର୍ଣ୍ଣ ବିଭାଗରେ ଅଲୋଡ଼ା ଅଫିସରମାନଙ୍କୁ ପୋଷ୍ଟିଂ କରି କରି ଅରଣ୍ୟ ବିଭାଗ ଏହାର ଗୁରୁତ୍ୱକୁ କମାଇ ଦେଇଛନ୍ତି । ଯଦିଓ ୱାର୍କିଂପ୍ଲାନ୍ ହେଉଛି ଅରଣ୍ୟ ପାଇଁ ନୀତି, କିନ୍ତୁ ଏହାକୁ ପ୍ରଥମେ କୁରାଢ଼ିର ସମ୍ମୁଖୀନ ହେବାକୁ ପଡ଼ିଛି । ମଝିରେ ମଝିରେ ଏହା ପାଇଁ ପାଟିତୁଣ୍ଡ ଶୁଭିଛି । ମନ୍ତ୍ରୀ (କେନ୍ଦ୍ର ବା ରାଜ୍ୟ) ଯଦି ଏଥିପାଇଁ ହଠାତ୍ ଉଦ୍‌ବେଗ ପ୍ରକାଶ କଲେ ତା' ହେଲେ ସମଗ୍ର ବିଭାଗ ଚଞ୍ଚଳ ହୋଇ ଉଠୁଛି । ମାତ୍ର କିଛି ସମୟ ପାଇଁ । ତା ପରେ ପୁଣି ସେଇ ଅବସ୍ଥା ।

ଯେପରି ମେମ୍ବର ବୋର୍ଡ଼ ଅଫ୍ ରେଭନ୍ୟୁ ପଦବୀ । ଏହା ସରକାରଙ୍କର ଏକ ଗୁରୁତ୍ୱପୂର୍ଣ୍ଣ ପଦବୀ । ସେ ହେଉଛନ୍ତି ରାଜସ୍ୱ ବିଭାଗର ମୁଖ୍ୟ । ସେଇ ଯୋଗୁଁ ସରକାରୀ

କର୍ମଚାରୀମାନଙ୍କ ମଧ୍ୟରେ ସେଇ ଏକମାତ୍ର ଅଫିସର ଯେ ଗନ୍ ସାଲ୍ୟୁଟ୍ (Gun Salute) ପାଆନ୍ତି । କିନ୍ତୁ ଗଲା ବହୁବର୍ଷ ଧରି ସରକାର ଯେଉଁ ଅଫିସରମାନଙ୍କୁ ଏଥିରେ ନିଯୁକ୍ତ କରିଛନ୍ତି ଏହାର ଗୁରୁତ୍ୱ ଏପରି କମାଇ ଦେଇଛନ୍ତି ଯେ ଏହି ପଦବୀ ଏକ ଅନାବଶ୍ୟକ ପଦବୀ ଭଳି ସମସ୍ତେ ବିଚାର କରୁଛନ୍ତି । ଶିବରମଣଙ୍କ ଠାରୁ ଏହା ଆରମ୍ଭ ହୋଇ ବର୍ତ୍ତମାନ ପର୍ଯ୍ୟନ୍ତ ଚାଲିଛି । ଏହି ପରିପ୍ରେକ୍ଷୀରେ ସରକାରୀ ପଦବୀମାନଙ୍କର ଆବଶ୍ୟକତା, ଅନାବଶ୍ୟକତା କଥା ବିଚାର କରାଯାଇପାରେ । ରେଭେନ୍ୟୁ ଡିଭିଜନାଲ କମିଶନର ପଦବୀ ସଂପର୍କରେ କୌଣସି ରାଜ୍ୟ ସରକାର (ବୋଧହୁଏ ମହାରାଷ୍ଟ୍ର ବୋଲି ମୋର ମନେ ହେଉଛି) ଏକ କମିଶନ ବସାଇଥିଲେ । କମିଶନ ସିଦ୍ଧାନ୍ତରେ ଉପନୀତ ହେଲେ ଯେ ଏହି ପଦବୀ ମଣିଷ ଶରୀରର ଆପେଣ୍ଡିକ୍ସ (Appendix) ପରି । ଏହା କାର୍ଯ୍ୟ କରେ ନାହିଁ । ଯଦି କାର୍ଯ୍ୟ କଲା ତା'ହେଲେ ଶରୀରରେ ବିପଦ ସୃଷ୍ଟି ହେଲା । ଏହି ସିଦ୍ଧାନ୍ତକୁ ସବୁ ରାଜ୍ୟ ସ୍ୱାଗତ କଲେ କିନ୍ତୁ କିଛି ନିଷତ୍ତି ଗ୍ରହଣ କଲେ ନାହିଁ ।

କିଏ କରିବ ନିଷତ୍ତି ? କେହି କରିବାକୁ ପ୍ରସ୍ତୁତ ନୁହନ୍ତି । ନିଷତ୍ତି କରିବା ମାନେ ବିପଦ ବରଣ କରିବା । ଆମେ ସବୁ ପାଲଟିଛୁ Indecisionର ବନ୍ଦୀ । ନିଷତ୍ତି ନେଲେ ଭୁଲ୍ ହେବାର ସମ୍ଭାବନା ରହିଛି । ବିପଦର ଆଶଙ୍କା ମଧ୍ୟ ରହିଛି । ତେଣୁ ନିଷତ୍ତି ନ ନେଲେ ଚଳିବ । ଯାହା ଯେମିତି ଚାଲୁଛି ଚାଲୁ ।

ଏଇଆ ଲେଖିଲାବେଳକୁ ଅବିଭକ୍ତ କୋରାପୁଟ ଜିଲ୍ଲାରେ ଭୂମିକମ୍ପ ସୃଷ୍ଟି ହେଉଛି । ଗୋଟାଏ ପଟରେ ନକ୍ସଲବାଦୀମାନଙ୍କର ଆକ୍ରମଣରେ ମୋଟୁଥାନାର ପୁଲିସମାନେ ନିହତ ହୋଇଛନ୍ତି । ସେଠାକୁ ସାମରିକ ପୁଲିସ ପଠାଯାଉଛି । ଚାରିଶହ କୋଟି ଟଙ୍କାର ବ୍ୟୟବରାଦ ହୋଇଛି, ପୁଲିସ ବାହିନୀର ଆଧୁନିକୀକରଣ ପାଇଁ । ନକ୍ସଲବାଦୀମାନେ ସେ ଅଞ୍ଚଳକୁ କୁଆଡ଼େ 'ମୁକ୍ତ ଅଞ୍ଚଳ' (Liberated Zone) ବୋଲି ଘୋଷଣା କରିଛନ୍ତି ଏବଂ ସେଠାରେ କୁଆଡ଼େ 'ଯୁଦ୍ଧ ପରିସ୍ଥିତି' ସୃଷ୍ଟି ହୋଇଛି ବୋଲି ପୁଲିସ ପକ୍ଷରୁ କୁହାଯାଉଛି ।

ଅନ୍ୟପଟରେ କାଶୀପୁର ଅଞ୍ଚଳରେ ବହୁ ଅନାହାର ମୃତ୍ୟୁ ଘଟିଛି ବୋଲି ଅଭିଯୋଗ ହେଉଛି । ଅନାହାର ମୃତ୍ୟୁ ସଂପର୍କରେ ବିବାଦ ବହୁ ପୁରୁଣା । ସବୁବେଳେ ସରକାର ଅନାହାର ମୃତ୍ୟୁକୁ ଅସ୍ୱୀକାର କରନ୍ତି ଏବଂ କହନ୍ତି ଯେ ଅଖାଦ୍ୟ ଖାଇ ଡାଇରିଆ ଇତ୍ୟାଦିରେ ସେମାନେ ମରିଛନ୍ତି । ଅନାହାରରେ କେବଳ ଅନଶନକାରୀମାନେ ହିଁ ମରନ୍ତି । କାରଣ ସେମାନେ ଉପାସରେ ରହି ମରିବା ପାଇଁ ସ୍ଥିର କରିଥା'ନ୍ତି । କିଛି ଖାଇବାକୁ ନ ମିଳିଲେ ଯାହା ମିଳେ ମଣିଷ ତାକୁ ଖାଇଯାଏ ଏବଂ ସେଇଥିରେ ହିଁ ତା'ର ମୃତ୍ୟୁ ହୁଏ । ସେ ଅନଶନ କରି ମରେ ନାହିଁ । ବିରୋଧୀମାନେ ସରକାରକୁ ଗଲେ ସରକାରୀ କଥା କହନ୍ତି । କିନ୍ତୁ ବିରୋଧୀ ଦଳରେ ଥିଲାବେଳେ ଅନାହାର ମୃତ୍ୟୁ କଥା କହନ୍ତି । ନାୟକ ଓ ଖଳନାୟକମାନଙ୍କ ମଧ୍ୟରେ ଏଇ ଭୂମିକା ସବୁବେଳେ ଦେଖାଦେଇଛି । ଆଜିର ନାୟକ, କାଲିର ଖଳନାୟକ ।

କିନ୍ତୁ ଏହି ଅଭିଯୋଗ ପ୍ରତିଅଭିଯୋଗ ସହିତ ବର୍ତ୍ତମାନ ଖୋଲତାଡ଼ ହେବାରୁ ଜଣାପଡ଼ିଛି ଯେ ଏହି ଜିଲ୍ଲାରେ ଆଦିବାସୀମାନଙ୍କ ନାମରେ କୋଟି କୋଟି ଟଙ୍କା ଲୁଟ

ହୋଇଛି । ଏଥିପାଇଁ କେତେକ ଉଚ୍ଚପଦସ୍ଥ ଅଫିସର ନିଲମ୍ବିତ ହୋଇଛନ୍ତି । ଅଧିକ ହୁଏତ ହେବେ । ସେମାନେ ଦଣ୍ଡିତ ହେବେ କି ନାହିଁ ତାହା ସ୍ୱତନ୍ତ୍ର କଥା । କାରଣ ସ୍ୱାଧୀନତା ପରେ ଖୁବ୍ କମ୍ ଉଚ୍ଚପଦସ୍ଥ ଅଫିସର ଦଣ୍ଡିତ ହୋଇଛନ୍ତି । ପରବର୍ତ୍ତୀ କାଳରେ ସେମାନଙ୍କୁ ଘଣ୍ଟ ଘୋଡ଼ାଇ ଦିଆଯାଇଛି 'ସହକର୍ମୀ'ମାନଙ୍କ ଦ୍ୱାରା । ଆଦିବାସୀମାନଙ୍କର ବିକାଶ ପାଇଁ ଉଦ୍ଦିଷ୍ଟ ଅର୍ଥକୁ ମାରିନେବାରେ କିଏ କେତେ ପାରଦର୍ଶିତା ଲାଭ କରିଛନ୍ତି ସେଥିପାଇଁ ପ୍ରତିଯୋଗିତା ଲାଗିଲା ଭଳି ମନେ ହେଉଛି । ତା' ନ ହୋଇଥିଲେ କମିଶନର ଡକ୍ଟର ହୃଷୀକେଶ ପଣ୍ଡାଙ୍କ ରିପୋର୍ଟ (ସି.ଏ.ଜି.ର ମନ୍ତବ୍ୟ ସତ୍ତ୍ୱେ) ଫାଇଲ ତଳେ ଚପି ଯାଇଥିଲା କିପରି ?

ଆଦିବାସୀମାନଙ୍କ ଭିତରେ ଅସନ୍ତୋଷର କାରଣ ସଂପର୍କରେ ଜାଣିବା ପାଇଁ ବେଶି ବାଟ ଯିବାକୁ ପଡ଼ିବ ନାହିଁ । ସେ ଅସନ୍ତୋଷକୁ ଦୂର କରିବା ପାଇଁ ଯେତିକି ପଦକ୍ଷେପ ନେବାର କଥା ତାହା ନିଆଯାଉ ନାହିଁ କି ସେ ସଂପର୍କରେ ବିଶେଷ ପଦକ୍ଷେପ ମଧ୍ୟ ନାହିଁ । କିନ୍ତୁ ପୁଲିସ, ଗୁଳି, ସୈନ୍ୟ, ସରଞ୍ଜାମ ଉପରେ ହିଁ ଆଲୋଚନା ଚାଲିଛି ।

ଦାରିଦ୍ର୍ୟ, ଅବହେଳା, ଶୋଷଣ, ଅତ୍ୟାଚାର ହିଁ ଅସନ୍ତୋଷର କାରଣ । ଏହା ଅର୍ଥନୈତିକ । ପରେ ଏହା ରାଜନୈତିକ ରୂପ ଧାରଣ କରେ । କରିବାକୁ ବାଧ୍ୟ । ମାଲକାନାଗିରି ଅଞ୍ଚଳର ଶତକଡ଼ା ନବେ ଭାଗ ଗ୍ରାମକୁ ରାସ୍ତା ନାହିଁ, ବିଜୁଳି ନାହିଁ । ଅରଣ୍ୟ ଛଡ଼ା ବଞ୍ଚିବାର ବିକଳ୍ପ ଧନ୍ଦା ନାହିଁ । ସ୍କୁଲ ନାହିଁ, ସ୍କୁଲ ଥିଲେ ମାଷ୍ଟର ନାହିଁ, ଡାକ୍ତରଖାନା ନାହିଁ । ଡାକ୍ତର ଥିଲେ ଔଷଧ ନାହିଁ, ଚିକିତ୍ସାର ବ୍ୟବସ୍ଥା ନାହିଁ । ସବୁ ଆଇନ୍‌କୁ ଉଲ୍ଲଙ୍ଘନ କରି ସାହୁକାର ଶୋଷଣ ଅବ୍ୟାହତ ଚାଲିଛି । ବ୍ୟାଙ୍କ ଋଣ ଦିଏ ଧନୀଲୋକମାନଙ୍କୁ । ସେମାନେ ଶହ ଶହ କୋଟି ଟଙ୍କା ଋଣ ନିଅନ୍ତି । ଋଣ ଶୁଝନ୍ତି ନାହିଁ । ତାଙ୍କୁ ମାଫି ଦିଆଯାଏ, ଋଣ ଛାଡ଼ ହୁଏ । ଆଦିବାସୀକୁ ଋଣ ମିଳେନା । କାରଣ ତା'ର 'ଶୁଝିବାର କ୍ଷମତା' ନାହିଁ । ଯଦି କେବେ ମିଳେ ସେ ଟଙ୍କା ଶୁଝିବାକୁ ଯାଇ ତା'ର ଜମିବାଡ଼ି ସବୁ ଯାଏ । ସେ ବନ୍ଧା ହୋଇ ଜେଲକୁ ଯାଏ । ଆଦିବାସୀର ଜମିବାଡ଼ିକୁ 'ଅଣ-ଆଦିବାସୀ'ମାନେ କିଣିପାରିବେ ନାହିଁ ବୋଲି ନିୟମ ଅଛି । ଏହି ଆଇନ୍‌କୁ ଉଲ୍ଲଙ୍ଘନ କରି ଅଣ-ଆଦିବାସୀମାନେ ଆଦିବାସୀମାନଙ୍କର ଜମିକୁ ହଡ଼ପ କରି ଚାଲିଛନ୍ତି । ଏ ସଂପର୍କରେ ପୂର୍ବତନ ଡି.ଜି. ଶରତଚନ୍ଦ୍ର ମିଶ୍ରଙ୍କ ରିପୋର୍ଟ, ପୂର୍ବତନ ଆର୍.ଡି.ସି. ଅରବିନ୍ଦ ବେହେରାଙ୍କ ରିପୋର୍ଟ ସରକାରଙ୍କର ଫାଇଲ ଗଦାରେ ଖତ ଖାଉଛି ।

ଆଗରୁ କହିଛି ଯେ ଏହି ଦାରିଦ୍ର୍ୟ ଯେପରି ଅସନ୍ତୋଷର କାରଣ ଠିକ୍ ସେଇପରି ଧର୍ମାନ୍ତରୀକରଣ । ଏହି ଅବହେଳା, ଲୁଣ୍ଠନ ଦୂର ହୋଇପାରିଲେ ଧର୍ମାନ୍ତରୀକରଣ ହେବ ନାହିଁ । ନକ୍ସଲବାଦୀମାନଙ୍କର ପ୍ରଭାବ ମଧ୍ୟ ବଢ଼ିବ ନାହିଁ । କିନ୍ତୁ ସେ ସଂପର୍କରେ ସରକାରୀ ପଣ୍ଡାମାନଙ୍କର ଯେପରି ବିଚାର ନାହିଁ ଠିକ୍ ସେଇପରି ଧାର୍ମିକ ପଣ୍ଡାମାନଙ୍କର ମଧ୍ୟ ବିଚାର ନାହିଁ ।

ତେଣୁ ଅରଣ୍ୟ ବା ଅରଣ୍ୟର ବାସିନ୍ଦା ଦୁହେଁ ରହିଯାଇଛନ୍ତି ପ୍ରକୃତରେ ଅରଣ୍ୟରେ । ଅରଣ୍ୟ ସହିତ ଅରଣ୍ୟ ବାସିନ୍ଦା ମଧ୍ୟ ହୋଇଛନ୍ତି ଲୁଣ୍ଠିତ ।

ମୋର ମନେପଡୁଚି ।

୧୯୫୭ ମସିହାରେ ନିର୍ବାଚନ ହେଉଥାଏ । ବିଧାନସଭା ପାଇଁ ଆମର ପ୍ରାର୍ଥୀ ଥାଆନ୍ତି ୰ହରିଶ୍ଚନ୍ଦ୍ର ବକ୍ସିପାତ୍ର ଏବଂ ପାର୍ଲ୍ୟାମେଣ୍ଟ ପାଇଁ ପ୍ରାର୍ଥୀ ଥାଆନ୍ତି ବ୍ରହ୍ମାନନ୍ଦ ପଣ୍ଡା । ସେମାନେ ଆଉ ସଂସାରରେ ନାହାନ୍ତି କିନ୍ତୁ ସେ ଅଭିଜ୍ଞତା ତ ଭୁଲିହେବ ନାହିଁ । ଏକ ସଭା ହେଉଥାଏ କୋଟପାଡ଼ ଗ୍ରାମରେ । ବହୁ ଆଦିବାସୀ ଆସିଥାଆନ୍ତି ସଭାକୁ । ବ୍ରହ୍ମାନନ୍ଦ ପଣ୍ଡା ସଦ୍ୟ ଫେରିଥାନ୍ତି ସୋଭିଏଟ୍ ଦେଶରେ ଆପଣାର ଚାକିରି ଛାଡ଼ି । ସେ ବକ୍ତୃତା ଦେଉଥାନ୍ତି । ପୃଥିବୀ ଦୁଇଭାଗରେ ବିଭକ୍ତ । ଗୋଟିଏ ପଟରେ ଯୁଦ୍ଧର ଶିବିର, ଆର ପଟରେ ଶାନ୍ତିର ଶିବିର । ସବୁ ଆଦିବାସୀ ଶ୍ରୋତା ଘୁମାଇବା ଅବସ୍ଥାରେ– ଭୋକ ଏବଂ ମହୁଲି ଉଭୟର କରାମତି । କିଛି ବୋଧଗମ୍ୟ ହେଉ ନ ଥାଏ ସେମାନଙ୍କୁ । ସାଙ୍ଗରେ ଥିଲେ ସାଥୀ ରାମଚନ୍ଦ୍ର ଷଡ଼ଙ୍ଗୀ । ସେ ସ୍ଥାନୀୟ ଲୋକ । ସେ ରାଗରେ ଉତ୍‌କ୍ଷିପ୍ତ ହୋଇ ଉଠିଲେଣି । ''କିସ ଆଜ୍ଞା, ଏଇ ଆଦିବାସୀ କ'ଣ ବୁଝିବ ସେ ଯୁଦ୍ଧ ଓ ଶାନ୍ତିର ଶିବିରରୁ ? ତା'ର ପୃଥିବୀ ତ ଏଇ ପାହାଡ଼ ପାଖରେ ଶେଷ ।'' ମୁଁ ସଭାପତି । ବାଧ ହୋଇ ରାମଚନ୍ଦ୍ରଙ୍କୁ ଡାକିଲି କହିବା ପାଇଁ । ସେ ଆରମ୍ଭ କଲେ, ଭାଇମାନେ, ଏ ଶଲେ ବ୍ରାହ୍ମଣମାନେ, ଶୁଣ୍ଢିମାନେ, ଉଚପିଣ୍ଡାବାଲାମାନେ... ଦେଖିଲି ଯେ, ଆଦିବାସୀମାନଙ୍କର ନିଦ ଭାଙ୍ଗିଗଲାଣି । ସେମାନେ ଆଖି ଖୋଲି ଶୁଣିବାକୁ ଆରମ୍ଭ କଲେ..... ରାମଚନ୍ଦ୍ର ଛାଡ଼ିବାର ଲୋକ ନୁହନ୍ତି । ସେ ପୁଣି କହିବାକୁ ଆରମ୍ଭ କଲେ । ଇ ଶଲେ...... ଆରମ୍ଭ ହେଲା ଦୁଇ ଅକ୍ଷରିଆ ଗାଳି ବ୍ରାହ୍ମଣମାନଙ୍କ ଉପରେ, ଶୁଣ୍ଢିମାନଙ୍କ ଉପରେ.... ଇମାନେ ଆଦିବାସୀମାନଙ୍କର ............... ଧାନକୁ ନେଇ ଚାଲାଣ କରି ଦେଉଛନ୍ତି..... ଆଦିବାସୀମାନଙ୍କର ତାଳି ଶୁଭୁଛି, ସେମାନେ ଠିଆ ହୋଇ ତାଳି ମାରୁଚନ୍ତି । ରାମଚନ୍ଦ୍ର ନିଜେ ବ୍ରାହ୍ମଣ, ହରିଶ୍ଚନ୍ଦ୍ର ବ୍ରାହ୍ମଣ, ବ୍ରହ୍ମାନନ୍ଦ ବ୍ରାହ୍ମଣ, ପାଖରେ ଠିଆହୋଇଛନ୍ତି ରାମଚନ୍ଦ୍ର ବକ୍ସିପାତ୍ର, ସେ ମଧ୍ୟ ବ୍ରାହ୍ମଣ ।

ରାମଚନ୍ଦ୍ର ଷଡ଼ଙ୍ଗୀଙ୍କୁ ପଚାରିଲି ପାର୍ଟି ବୈଠକରେ । ତମେ ଇମିତି କ'ଣ କହୁଛ ? ସେ ନିର୍ବିକାର ଚିତ୍ତରେ ଜବାବ ଦେଲେ । ଆପଣ ପରା ନିଜେ ଦେଖିଲେ । ଆଦିବାସୀମାନଙ୍କର ନିଶା ନିଦ କେମିତି ଭାଙ୍ଗିଗଲା ଏଇ ଗାଳିରେ ? ବ୍ରାହ୍ମଣମାନେ, ଶୁଣ୍ଢିମାନେ ହେଉଛନ୍ତି ଶୋଷକ, ଅତ୍ୟାଚାରୀ । ସେମାନେ ଟଙ୍କାଏ ଧାର ଦେବେ, ଲେଖେଇ ନେବେ ପାଞ୍ଚଟଙ୍କା । ନେଲୁ ଟଙ୍କାଏ, ଦେବୁ ଟଙ୍କାଏ, ମୂଳ ଟଙ୍କାଏ, ସୁଧ ଟଙ୍କାଏ, ଶୁଝିବୁ ଟଙ୍କାଏ.... ଲେଖ ପାଞ୍ଚଟଙ୍କା । ଏଇ ଆଦିବାସୀ ତାହା ଲେଖେ ଆଉ ଜୀବନ ସାରା ସେ ଧାର ଶୁଝିପାରେ ନାହିଁ । ସେମାନଙ୍କୁ ଗାଳି ଦେବି ନାଇଁ ତ ସାମ୍ରାଜ୍ୟବାଦୀ, ଫାସିବାଦୀମାନଙ୍କୁ ଗାଳି ଦେବି ? ଯାହାର କୌଣସି ଅର୍ଥ ସେ ଆଦିବାସୀ ବୁଝେନା । ତା ପାଇଁ ସେ ଲୁଣ୍ଠନକାରୀମାନେ ହିଁ ଫାସିବାଦୀ, ସାମ୍ରାଜ୍ୟବାଦୀ । ଏଇ ପାହାଡ଼ ଆରପଟେ ତା'ର ପୃଥିବୀ ଶେଷ । ଆଉ ବ୍ରହ୍ମାନନ୍ଦବାବୁ କହି ଚାଲିଛନ୍ତି ଯୁଦ୍ଧର ଶିବିର ଶାନ୍ତିର ଶିବିର ।

ହଠାତ୍ ଶୁଣାଗଲା ଯେ କୌଣସି ଏକ ରାଣୀ ଆସି ପ୍ରଚାର କରିବେ ଆମ ବିରୋଧରେ । ଉତ୍‌କ୍ଷିପ୍ତ ରାମଚନ୍ଦ୍ର କହିଲେ, ରାଣୀ ଆସିଲେ କଥା ସରିଲା । ରାମଚନ୍ଦ୍ର ସେଇ ସନ୍ଧ୍ୟାରେ ସଭାରେ ଭାଷଣ ଦେଲେ– ରାଣୀ ନୁହେଁରେ ଦାରୀ ପିଲା, ଦାରୀ ପିଲା

ଆଣିବେ ସେମାନେ ରାଣୀ ପିଲା ବୋଲି କହି । ରାଣୀକୁ କେବେ ଦେଖିଛୁ କିରେ ? ରାଣୀ କି କେବେ ଆସେ ବାହାରକୁ ? ଏସବୁ ତେଲେଙ୍ଗା ଦାରୀ ପିଲା, ତେଲେଙ୍ଗା ଦାରୀ ପିଲା । ରାମଚନ୍ଦ୍ର.... ? କ'ଣ କହୁଛ ଆଜ୍ଞା ରାଜାରାଣୀଙ୍କୁ ଆଦିବାସୀର ବଡ଼ ଭକ୍ତି ଥାଉଚି । ସବୁ ରାଣୀ ହେଲେ ତା' ପାଇଁ ସୀତା ଠାକୁରାଣୀ । ଏଇଟା ପରା ପଞ୍ଚବଟୀର ରାଜ୍ୟ !

ଆଦିବାସୀ ଭିତରେ ରହିଛି ରାଜାରାଣୀ, ପୂର୍ବପୁରୁଷଙ୍କ ପ୍ରତି ଅଟଳ ଭକ୍ତି । ଶହ ଶହ କର୍ମୀଙ୍କୁ ଦେଖିଲି ନୀଳ ଖଦଡ଼ର ଶାର୍ଟ, ଧଳା ଖଦଡ଼ ଧୋତି ପିନ୍ଧି, ପତାକା ଧରି ପ୍ରଚାର କରୁଛନ୍ତି । ହେଲେ ଆଉ ଚରଖା ଥିବା ପତାକା ମିଳୁ ନାଇଁ ତେଣୁ ଜାତୀୟ ପତାକାର ଚକ୍ର ଚିହ୍ନକୁ ବଙ୍କାଇ ଅରଟ କରି ଦିଆଯାଇଛି । ସେମାନଙ୍କ ସହିତ ଭେଟ ହୋଇଛି । ଦେଶର ଅର୍ଥନୈତିକ ବିପର୍ଯ୍ୟୟରେ ସେମାନେ ଦୁଃଖିତ, ନୈତିକ ଅଧୋପତନରେ ବିବ୍ରତ । କିନ୍ତୁ କାହିଁକି ଚାଲିଛି ସେଇ ବାଟରେ ବୋଲି ପ୍ରଶ୍ନର ଉତ୍ତରରେ ଶୁଣିଚି ଆଖିରୁ ଲୁହ ଝରାଇ ଉତ୍ତର– ମାହାପ୍ରୁ, ଲକ୍ଷ୍ମଣ ନାଇକର ତୁମା କିସ ବୋଲିବ ଆମକୁ ? ଆମ ସାଥିରେ ଥିଲା, ଏଇ ପତାକା ଧରିଥିଲା । ତା'ର ତୁମା କାନ୍ଦିବ ବାବୁ ! ଆରଜନ୍ମକୁ ମୁଁ ତୁମ ସାଙ୍ଗରେ ଯିବି ! କିନ୍ତୁ ଏ ଜନ୍ମରେ ଲକ୍ଷ୍ମଣ ନାଇକର ତୁମା ଆମକୁ ଅଭିଶାପ ଦେବ ମାହାପ୍ରୁ ! ମାଫ କରିବ ଏ ଜନ୍ମ ପାଇଁ । ଆର ଜନ୍ମକୁ ତମ ସାଙ୍ଗରେ ରହିବି ନା !

ଆଖିରେ ଲୁହ ଭରି ଆସେ । ଏଇପ୍ରକାର ସାରଲ୍ୟରେ !

ପରେ ସେମାନଙ୍କ ସଂଖ୍ୟା କମି କମି ଯାଇଛି । ସେମାନଙ୍କୁ ଆଉ ବେଶି ଦେଖିବାକୁ ମିଳି ନାହିଁ । ସେମାନଙ୍କର ନାମ ନାହିଁ, ଠିକଣା ନାହିଁ, ଥିଲେ ବି ମୁଁ ଜାଣି ନାହିଁ । କିନ୍ତୁ ସେଇ ଗୋଷ୍ଠୀ କ୍ରମଶଃ ଲୋପ ପାଇଯାଉଛି ।

କୋରାପୁଟ ଜିଲ୍ଲା ଛିଟିକି ଆସିଲା ଜାତୀୟ ଜୀବନକୁ । ଯେତେବେଳେ ବ୍ରହ୍ମପୁର ଜେଲରେ ଲକ୍ଷ୍ମଣ ନାୟକଙ୍କୁ ଫାଶୀ ଦିଆଗଲା । ଆଜି ଶୁଣିଲେ ଆଶ୍ଚର୍ଯ୍ୟ ଲାଗିବ ଯେ ସେତେବେଳେ ବ୍ରହ୍ମପୁର ସେଣ୍ଟ୍ରାଲ ଜେଲର ସୁପରିଣ୍ଟେଣ୍ଡେଣ୍ଟ ଥିଲେ ଜଣେ ଫରେଷ୍ଟ ଅଫିସର । ତାଙ୍କର ନାମ ଶୟଦୁଦ୍ଦିନ ବୋଲି ମନେପଡୁଛି । ତାଙ୍କର ବ୍ରିଟିଶ ଆନୁଗତ୍ୟର ପ୍ରାବଲ୍ୟ ଯୋଗୁଁ ତାଙ୍କୁ ଏଇ ପଦବୀ ମିଳିଥିଲା ।

ଲକ୍ଷ୍ମଣ ନାୟକଙ୍କର ସମସାମୟିକମାନେ ଆଉ ଦଳ ଛାଡ଼ି ନାହାନ୍ତି । ଦଳ ପରିବର୍ତ୍ତନର ମିଠା ସେମାନଙ୍କୁ ଜଣା ନ ଥିଲା । ବର୍ତ୍ତମାନ ତାହା ଏକ ମୂଲ୍ୟବାନ୍ ବ୍ୟବସାୟରେ ପରିଣତ ହୋଇଗଲାଣି । ସାରଙ୍ଗଧର ଦାସ କଂଗ୍ରେସ ଦଳ ଛାଡ଼ି ସୋସାଲିଷ୍ଟ ପାର୍ଟିରେ ଯୋଗ ଦେଲେ କିନ୍ତୁ ତାହା ସହିତ ସେ ନିର୍ବାଚିତ ହୋଇଥିବା ପଦବୀରୁ ଇସ୍ତଫା ଦେଲେ । ବିଜୟ ଚନ୍ଦ୍ର ଦାସ କମ୍ୟୁନିଷ୍ଟ ପାର୍ଟି ଛାଡ଼ି କଂଗ୍ରେସରେ ଯୋଗ ଦେଲେ । କିନ୍ତୁ ବେଶ୍ କିଛି ସମୟ ସେ ଜନ-ଜୀବନରୁ ଆପଣାକୁ ନିଷ୍କ୍ରାନ୍ତ କରିଦେଲେ । ସେମାନଙ୍କ ପାଇଁ ଏହା ଥିଲା ନୀତିଗତ କଥା । କିନ୍ତୁ ସମୟ ବଦଳିଗଲା । ଅନ୍ୟ ଦଳରୁ ପ୍ରାର୍ଥୀ ଆଣି ନିଜ ଦଳରେ ମିଶାଇ ସରକାରରେ ରହିବାକୁ ଅନେକ ଆପଣାର ପେସା କରିନେଲେ । ପରବର୍ତ୍ତୀ କାଳରେ ଏହା ଆହୁରି ଲୋମହର୍ଷକ କାଣ୍ଡରେ ପରିଣତ ହେଲା । ଦଳମାନେ ସରକାରୀ ଦଳ ସହିତ ଭିତିରିଆ ସଂପର୍କ ରଖି ଆପଣାର ବ୍ୟକ୍ତିଗତ ମୁନାଫା ବଢ଼ାଇଲେ । ମୋର ମନେପଡୁଚି । ନନ୍ଦିନୀ

ଦେବୀ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇଥାନ୍ତି । ସେ ଛାତ୍ରାବସ୍ଥାରେ କମ୍ୟୁନିଷ୍ଟ ପାର୍ଟିର ଧୂରୀଣ ସଭ୍ୟା ଥିଲେ ଏବଂ ମୋ ଭଳି ବହୁ କନିଷ୍ଠ ସଭ୍ୟମାନଙ୍କର ପ୍ରେରଣାର ଉତ୍ସ ଥିଲେ । ପରବର୍ତ୍ତୀ କାଳରେ ସେ ଭୂଦାନ ବାଟ ଦେଇ ପଶିଗଲେ କଂଗ୍ରେସରେ । ଏକ ମନ୍ତ୍ରିମଣ୍ଡଳ ଗଠନ ସମୟରେ ସେ ସଂଖ୍ୟାଲଘୁ ହେବା ସତ୍ତ୍ୱେ କମ୍ୟୁନିଷ୍ଟ ପାର୍ଟିର ସହଯୋଗରେ ସରକାର ଗଢ଼ିଲେ । ପରବର୍ତ୍ତୀ କାଳରେ ଅନ୍ୟ ଦଳରୁ ସଭ୍ୟମାନଙ୍କୁ କିଣି ସଂଖ୍ୟାଗରିଷ୍ଠତା କଲେ । ଏହାର କାରଣ ବା ଯାଥାର୍ଥ୍ୟ ସଂପର୍କରେ ତାଙ୍କ ଦଳର ଜଣେ ଯୁବନେତ୍ରୀ ପଚାରିବାରୁ ସେ ଉତ୍ତର ଦେଲେ ଯେ ''ନାଇଁ ପ୍ରତିଦିନ କମ୍ୟୁନିଷ୍ଟମାନଙ୍କୁ ପୋଷୁଥାନ୍ତି'' । ଏହା ସତ୍ୟ କି ନୁହେଁ ତାହା ଅଲଗା କଥା ।

ହରେକୃଷ୍ଣ ମହତାବ ତ ଅନୁରୂପ ଏକ ପନ୍ଥାର ଯାଥାର୍ଥ୍ୟ ପ୍ରତିପାଦିତ କରିବାକୁ ଯାଇ କହିଲେ ଯେ ଆମେ ସବୁ ଯାତ୍ରାଦଳର ମ୍ୟାନେଜର ପରି । ଯାତ୍ରା ଦଳ ବଇନା ନେଇଛନ୍ତି ନାଟକ କରିବା ପାଇଁ । ହଠାତ୍ ଦ୍ରୌପଦୀ ଭୂମିକାରେ ଅଭିନୟ କରିବା ପାଇଁ ସ୍ଥିର ହୋଇଥିବା ବ୍ୟକ୍ତି ଅସୁସ୍ଥ ହୋଇପଡ଼ିଲେ । ଯାତ୍ରାଦଳ ସେଥିପାଇଁ ନାଟକ ବନ୍ଦ କରି ଢେଲାମାଡ଼ ଖାଇବେ ନା ଆଉ ଜଣକୁ ଦ୍ରୌପଦୀ ଭୂମିକାରେ ଅବତରଣ କରାଇ ନାଟକ ମଞ୍ଚସ୍ଥ କରାଇନେବେ ? ଠିକ୍ ସେଇପରି ଆମେ ସରକାର ଗଢ଼ିବା ପାଇଁ ଲୋକଙ୍କୁ ପ୍ରତିଶ୍ରୁତି ଦେଇଥିଲୁ । ଦି'ଚାରିଜଣ କମ୍ ପଡ଼ିଗଲେ । ଆମେ ସରକାର ଯେକୌଣସିମତେ ଚଳାଇନେବୁ ନା ଲୋକଙ୍କ ଆଗରେ ଭାଣ୍ଡିଆ ହେବୁ ?

ଇନ୍ଦିରାଗାନ୍ଧୀ ଯେତେବେଳେ କଂଗ୍ରେସରେ ଆପଣାର ଶକ୍ତି ବୃଦ୍ଧି ଆରମ୍ଭ କଲେ ସେତେବେଳେ ନନ୍ଦିନୀ ଦେବୀ ତାଙ୍କ ପାର୍ଶ୍ୱ ଲୋକ ପାଲଟିଗଲେ । ସଂଜୀବ ରେଡ଼ି-ଭି.ଭି. ଗିରି ସଂଗ୍ରାମରେ ସେ ଭି.ଭି. ଗିରିଙ୍କ ସହିତ ଇନ୍ଦିରାଗାନ୍ଧୀଙ୍କ ସଂଯୋଜକ ହେଲେ । ବ୍ରହ୍ମାନନ୍ଦ ପଣ୍ଡା ହେଲେ ତାଙ୍କର ମାଧ୍ୟମ । ଭି.ଭି. ଗିରି ଯେତେବେଳେ ରାଷ୍ଟ୍ରପତି ଭବନ ଛାଡ଼ି ଲୋଧୀ ଇଷ୍ଟେଟରେ ତାଙ୍କ ପୁତୁରା ପାଖରେ ରହିଲେ ସେତେବେଳେ ତାଙ୍କ ସହିତ ସଂପର୍କ ସ୍ଥାପନ କରିବା ଇନ୍ଦିରାଗାନ୍ଧୀଙ୍କ ପାଇଁ ସମ୍ଭବ ହେଲା ନାହିଁ । ସିଣ୍ଡିକେଟ୍ ସଭ୍ୟମାନେ ତାଙ୍କର ସବୁ ଯୋଗସୂତ୍ର ଉପରେ ଶ୍ୟେନ ଦୃଷ୍ଟି ରଖିଲେ । ସେତେବେଳେ ବ୍ରହ୍ମାନନ୍ଦ ପଣ୍ଡା ଜଣେ ସାଧାରଣ ପାର୍ଲ୍ୟାମେଣ୍ଟ ସଭ୍ୟ । ଭି.ଭି.ଗିରି ଏବଂ ବ୍ରହ୍ମାନନ୍ଦ ପଣ୍ଡା ଉଭୟେ ବ୍ରହ୍ମପୁରର ଲୋକ । ଭି.ଭି. ଗିରି ସିନା ଓଡ଼ିଆ କହିପାରନ୍ତି ନାହିଁ କିନ୍ତୁ ବ୍ରହ୍ମାନନ୍ଦ ପଣ୍ଡା ଭଲ ତେଲୁଗୁ ଜାଣନ୍ତି । ବ୍ରହ୍ମାନନ୍ଦ ପଣ୍ଡାଙ୍କ ଶ୍ମଶ୍ରୁ, ଡ୍ରେସ ତାଙ୍କୁ ବାବାଜି ବୋଲି ଭ୍ରମ ସୃଷ୍ଟି କରାଏ । ସେ ମଧ୍ୟ ଏକ ପକ୍ଷରେ ଅଭିରାମ ଓ ଅନ୍ୟ ପଟରେ ସତ୍ୟସାଇଙ୍କ ଶିଷ୍ୟ ! ଧର୍ମ ତାଙ୍କ ପାଇଁ ବର୍ତ୍ତମାନ ରକ୍ଷାକବଚ ଭଳି କାମ କଲା । ସେ ନିର୍ବିଘ୍ନରେ, ନିରାପଦରେ ଲୋଧୀ ଇଷ୍ଟେଟ-ନନ୍ଦିନୀ ଶତପଥୀ-ଇନ୍ଦିରାଗାନ୍ଧୀଙ୍କ ଭିତରେ ଯୋଗସୂତ୍ର ପାଲଟିଲେ । ତାଙ୍କର ଦ୍ୱିତୀୟଥର ରାଜ୍ୟସଭା ସଭ୍ୟ କାଳ ଇନ୍ଦିରାଗାନ୍ଧୀଙ୍କ ଯୋଗୁଁ ସମ୍ଭବ ହେଲା । ସେ ବିସ୍ତରାପଟା ବାନ୍ଧି ସାରିଥିଲେ ଦିଲ୍ଲୀରେ । ଏତିକିବେଳେ ଦିନେ ଇନ୍ଦିରାଗାନ୍ଧୀ ତାଙ୍କୁ ପଚାରିଲେ । ସେ ଉତ୍ତର ଦେଲେ– ଆପଣ ଚାହିଁଲେ ମୁଁ ବିସ୍ତରା ଖୋଲିବି, ନଚେତ୍ ଚାଲିଲି ଭୁବନେଶ୍ୱରରେ 'ନୀଡମ୍' କୁ । ସେ ଉତ୍ତର ଦେଲେ–

କିଏ କହୁଚି ତମକୁ ଯିବା ପାଇଁ ? ବ୍ରହ୍ମାନନ୍ଦବାବୁ ବିସ୍ତରା ଖୋଲିଲେ ଏବଂ ପ୍ରାର୍ଥୀ ହେଲେ । ଏଇଠି ଗୋଟିଏ କଥା ମୁଁ ଉଲ୍ଲେଖ ନ କଲେ ଭୁଲ ହେବ । କାରଣ ମୁଁ ଏଇ ଘଟଣାର ସାକ୍ଷୀ । ନନ୍ଦକିଶୋର ପଟ୍ଟନାୟକ ଏବଂ ମୁଁ ଦିଲ୍ଲୀ ଗଲେ ବ୍ରହ୍ମାନନ୍ଦବାବୁଙ୍କ ଘରେ ରହୁ । ସେ ତ ସାଇ ଭକ୍ତ । ସେ ତାଙ୍କ ଗୁରୁଙ୍କୁ ପଚାରିଲେ ଯେ ନିର୍ବାଚନରେ ଫଳ କ'ଣ ହେବ ? ସେ କେବଳ ⑶ରେ ଏଇପରି ଗୋଲଟିଏ କାଟି ଥୋଇଦେଲେ । ବ୍ରହ୍ମାନନ୍ଦ ପଣ୍ଡା ସେଥର ନିର୍ବାଚନରେ ୩ଟି ଫାଷ୍ଟ ପ୍ରିଫରେନ୍ସ ଭୋଟ ପାଇଥିଲେ ଏବଂ ସମାନସଂଖ୍ୟକ ସେକେଣ୍ଡ ପ୍ରିଫରେନ୍ସ ଭୋଟ ପାଇବା ଯୋଗୁଁ ସେ ନିର୍ବାଚନରେ ଜୟଲାଭ କଲେ । ମୋର ଅଲୌକିକ ଶକ୍ତି ଉପରେ ଆଦୌ ବିଶ୍ୱାସ ନାହିଁ । ମୁଁ ଆଗ୍ନୋଷ୍ଟିକ୍ । ଏପରି କେତେକ ଘଟଣା ମୋତେ ଆଶ୍ଚର୍ଯ୍ୟ କରିଛି । କିନ୍ତୁ ଏଭଳି ଘଟଣାର ସଂଖ୍ୟା କେତେ ?

ଏ ଡକ୍ଟର ଗୋପାଳ ଜଣେ ପ୍ରସିଦ୍ଧ ଐତିହାସିକ ଏବଂ ରେସନାଲିଷ୍ଟ । ସେ କିନ୍ତୁ ଲେଖିଛନ୍ତି ଯେ ପ୍ରସିଦ୍ଧ ହସ୍ତରେଖା ବିଶେଷଜ୍ଞ କିରୋ ତାଙ୍କ ବାପା ସାର୍ ସର୍ବପଲ୍ଲୀ ରାଧାକ୍ରିଷ୍ଣନଙ୍କ ହାତରେଖା ଦେଖି କହିଥିଲେ ଯେ ସେ ଏକ ସ୍ୱାଧୀନ ସାର୍ବଭୌମ ରାଷ୍ଟ୍ରର ମୁଖ୍ୟ ହେବେ । ଏହା ୧୯୩୦-୩୧ ମସିହାର କଥା । ଭାରତବର୍ଷ ସ୍ୱାଧୀନତା ଲାଭ କରିବା ପାଇଁ ଆହୁରି ୧୭ ବର୍ଷ ଏବଂ ସାଧାରଣତନ୍ତ୍ର ହେବା ପାଇଁ ୨୦ ବର୍ଷ ବାକି ଥାଏ । ଡକ୍ଟର ଗୋପାଳ ଲେଖିଛନ୍ତି ଯେ ଏହି ଭବିଷ୍ୟଦ୍‌ବାଣୀ ଆମ ଘରେ କୋଡ଼ିଏ ବର୍ଷ ପର୍ଯ୍ୟନ୍ତ ଗୋଟିଏ ମଉଜିଆ ଗପ ବା ଜୋକ୍ ଭାବରେ ପ୍ରଚଳିତ ହେଲା । କାରଣ ଭାରତବର୍ଷ ସ୍ୱାଧୀନ ହେବ, ସାଧାରଣତନ୍ତ୍ର ହେବ, ତାହାର ଏକ ମୁଖ୍ୟ ରହିବେ ଏବଂ ଜାତୀୟ ଆନ୍ଦୋଳନରେ କୌଣସି ଭୂମିକା ଗ୍ରହଣ କରି ନ ଥିବା ସାର ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍ ଭଳି ଜଣେ ବ୍ୟକ୍ତିଙ୍କୁ ରାଷ୍ଟ୍ରପତି ପଦପାଇଁ ମନୋନୀତ କରାଯିବ ଏହା ସବୁ ଥିଲା କାହାଣୀ ଭଳି ।

ଭି.ଭି. ଗିରି ଆପଣାକୁ ରାଷ୍ଟ୍ରପତି ପଦ ପାଇଁ ଟ୍ରେଡ ୟୁନୀୟନିଷ୍ଟ ପ୍ରାର୍ଥୀ ବୋଲି ଘୋଷଣା କଲେ । ଭୁବନେଶ୍ୱରରେ ସେ ଯେଉଁମାନଙ୍କୁ ଆପଣାର ସାହାଯ୍ୟ ପାଇଁ ଲୋଡ଼ିଥିଲେ ସେମାନଙ୍କ ମଧରେ ମୁଁ ଥିଲି । ମୋତେ ସେ ଏଇ କଥା କହିଥିଲେ । କିନ୍ତୁ ନିର୍ବାଚିତ ହେଲା ପରେ ସେ ହୋଇଗଲେ ସବୁଠାରୁ କଷ୍ଟଲି ରାଷ୍ଟ୍ରପତି । ତାଙ୍କର ବିଶାଳ ପରିବାର ନେଇ ସେ ଗଲେ ବହୁ ଜାଗାକୁ ସରକାରୀ ଖର୍ଚ୍ଚରେ । ରାଷ୍ଟ୍ରପତି ପଦବୀ ସରିବାର ଦିନକ ପୂର୍ବରୁ ସେ ଓ ତାଙ୍କର ସ୍ତ୍ରୀ ବାଙ୍ଗାଲୋରରେ ଏକ ସରକାରୀ ଦୋକାନରୁ ହଜାର ହଜାର ଟଙ୍କାର ସିଲ୍କ ଶାଢ଼ି କିଣିନେଲେ । ଏହାର ପ୍ରାପ୍ୟ ମିଳି ନ ଥିଲା । ମିଳିଲା କି ନାହିଁ କହିପାରିବି ନାହିଁ ।

ଭି.ଭି. ଗିରି ବହୁଲୋକଙ୍କୁ ବ୍ୟକ୍ତିଗତ ଚିଠି ଲେଖିଥିଲେ । ଓଡ଼ିଶାର ପ୍ରାୟ ୫୦ ଜଣ ସରିକି ଲୋକ ଏ ଚିଠି ପାଇଥିଲେ । ସେମାନଙ୍କ ମଧରେ ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ଦୁର୍ଗାଚରଣ ମହାନ୍ତି ଥିଲେ ବୋଲି ମୋର ମନେ ପଡୁଚି ।

ସେ ରାଷ୍ଟ୍ରପତି ନିର୍ବାଚିତ ହେଲେ । ସେ ଦିନ ଅନ୍ୟମାନଙ୍କ ଭିତରେ ମୁଁ ବି ଜୟଧ୍ୱନିରେ ଯୋଗ ଦେଇଥିଲି । କିନ୍ତୁ ପରବର୍ତ୍ତୀ ଅବସ୍ଥା କ'ଣ ହେଲା ତାହା ସମସ୍ତେ ଜାଣନ୍ତି, ସେ ରାଷ୍ଟ୍ରପତି ନ ହୋଇ ରବରଷ୍ଟାମ୍ପ ପାଲଟିଗଲେ ।

ମୋର ଯେତିକି ମନେପଡୁଚି, ପରବର୍ତ୍ତୀ ରାଷ୍ଟ୍ରପତି ନୀଲମ ସଂଜୀବ ରେଡ୍ଡୀ ଯାଇଥିଲେ ଅନୁଗୋଳ ବାଜିରାଉତ ଛାତ୍ରାବାସକୁ ନବବାବୁଙ୍କୁ ଭେଟିବା ପାଇଁ । ନବବାବୁଙ୍କୁ ଭୁବନେଶ୍ୱର ଏପରିକି ଅନୁଗୋଳ ସର୍କିଟ ହାଉସକୁ ଡକାଇ ଆଣିବାକୁ ସେ ରୋକ୍‌ଠୋକ୍ ମନାକରି ଦେଇଥିଲେ ।

ରାଷ୍ଟ୍ରପତି ପଦରୁ ବିଦାୟ ନେଲା ପରେ ପରବର୍ତ୍ତୀ କାଳରେ ସେମାନଙ୍କ ପାଇଁ ଅନେକ ସୁବିଧା ଦିଆଯାଇଛି । ତା ମଧ୍ୟରେ ଦିଲ୍ଲୀରେ ରହିବା ପାଇଁ ଘର, ଡାକ୍ତର ଇତ୍ୟାଦିର ସୁବିଧା ଅନ୍ତର୍ଭୁକ୍ତ । ଅନେକ ରାଷ୍ଟ୍ରପତି ଏହି ସୁବିଧାର ଠିକ୍ ବ୍ୟବହାର କରି ନାହାନ୍ତି । ବିଦାୟୀ ରାଷ୍ଟ୍ରପତିଙ୍କୁ ଯେଉଁ ଘର ଦିଆଯାଏ ତା'ର ପରିବର୍ଦ୍ଧନ ପାଇଁ ସରକାରଙ୍କୁ ଦଶଲକ୍ଷ ପର୍ଯ୍ୟନ୍ତ ଟଙ୍କା ଖର୍ଚ୍ଚ କରିବାକୁ ପଡ଼ିଛି । ଏତିକିରେ ମଧ ରାଷ୍ଟ୍ରପତି ଶଙ୍କର ଦୟାଲ ଶର୍ମାଙ୍କ ପରି ବ୍ୟକ୍ତି ସନ୍ତୁଷ୍ଟ ନ ହୋଇ ୩୦ ଲକ୍ଷ ଟଙ୍କା ମାଗିଛନ୍ତି ଏବଂ ତା ନ ଦେଲେ ନୂଆ ରାଷ୍ଟ୍ରପତିଙ୍କ ଲାଗି ରାଷ୍ଟ୍ରପତି ଭବନ ଛାଡ଼ିବେ ନାହିଁ ବୋଲି ଜଣାଇ ଦେଇଥିବା ହେତୁ ବାଧହୋଇ ସରକାର ୩୦ ଲକ୍ଷ ଟଙ୍କା ଦେଇଛନ୍ତି ଏବଂ ଏହା ପରମ୍ପରାରେ ପରିଣତ ହେବ ନାହିଁ ବୋଲି ମଧ ଘୋଷଣା କରିଛନ୍ତି । ଗୋଟିଏ ରାଜ୍ୟ ଗଢ଼ାହେଲେ ମନ୍ତ୍ରୀମାନଙ୍କ ପାଇଁ ବାତାନୁକୂଳ ଗାଡ଼ି (କେତେକ କ୍ଷେତ୍ରରେ ବୁଲେଟପ୍ରୁଫ୍ କାର) ଆଗ ଦରକାର ପଡୁଛି ।

ଅନ୍ୟ ଦିଗରେ କାଶୀପୁରରେ ଲୋକେ କୋଇଲି ଟାକୁଆ ଖାଇ ବଞ୍ଚୁଛନ୍ତି । ଭାରତବର୍ଷରେ କୋଟି କୋଟି ଟନ୍ ଧାନ, ଗହମ ଖତ ଖାଉଛି । ତାକୁ ରଖିବା ପାଇଁ ମାଲଗୋଦାମ ନାହିଁ ।

ଅନ୍ୟ ଦିଗରେ ଲୋକେ ଉପାସରେ ମରୁଛନ୍ତି ଏବଂ ତାହା ରାଜ୍ୟ ସରକାର ପରେ ଜାଣୁଛନ୍ତି । କାମ ବଦଳରେ ଖାଦ୍ୟ ଯୋଜନା କାର୍ଯ୍ୟକାରୀ ହେଉ ନାହିଁ । ଲୋକଙ୍କର ଶାରୀରିକ ଶକ୍ତି କମିଗଲା ପରେ, ଲୋକେ ହଜାର ହଜାର ସଂଖ୍ୟାରେ ଭିଟାମାଟି ଛାଡ଼ିଲା ପରେ ବିଚାର ଚାଲିଛି ସେ ସଂପର୍କରେ ।

ଫଳରେ ଅରଣ୍ୟ ଭିତରେ ଦାବାଗ୍ନି ଦେଖା ଦେଇଛି । ଦେଖାହେବା ସ୍ୱାଭାବିକ । ସେଦିନ ବନ୍ଧୁ ସୀତାକାନ୍ତ ମହାପାତ୍ର କହୁଥିଲେ ଯେ ସେ କଲେକ୍ଟର ଥିଲାବେଳେ ଏକ ଉଚ୍ଚପଦସ୍ଥ ଅଫିସରଙ୍କୁ କାର୍ଯ୍ୟରୁ ନିଲମ୍ବିତ କରିଥିଲେ । କାରଣ ଉକ୍ତ ଅଫିସର ଜାଣିଶୁଣି ଆଦିବାସୀମାନଙ୍କ ଜମିକୁ ଅଣଆଦିବାସୀମାନେ କିଣିବା ପାଇଁ ସାହାଯ୍ୟ କରିଥିଲେ । କିନ୍ତୁ ତା'ର ଫଳ କ'ଣ ହେଲା ସେ କହିପାରିବେ ନାହିଁ । କାରଣ ତାଙ୍କର ବଦଳି ହୋଇଯାଇଥିଲା ସେଠାରୁ ।

ଆଜି ଆଦ୍ୟ ଆଷାଢ଼ରେ ସେଇସବୁ ସ୍ମୃତି ପଖାଳୁଚି । ମନେପଡୁଚି । ଆଦିବାସୀମାନଙ୍କର କରମା ନାଚ । ପାହାଡ଼ ଖୋଲ, ଭିଜା ଭିଜା କାକର ଚାରିପଟେ ଘେରା ଗମ୍ଭୀର ଅରଣ୍ୟାନୀ, ପେଟରେ ହାଣ୍ଡିଆ । ଆଦିବାସୀ ରମଣୀର ନାଚ କରମା, ଢୋଲର ତାଳେ ତାଳେ । ତା'ର ପ୍ରତିଧ୍ୱନି ଶୁଭେ ପାହାଡ଼ ଖୋଲରେ, ମାଦଳ ବାଜେ, ମାଦଳ ବାଜେ ।

ପିଲାଦିନର ସ୍ମୃତି ପହଁରିଯାଏ ମନରେ । ଚିନ୍ତାସବୁ ହାବୁକା ମାରନ୍ତି ।

# କ୍ରମ ନାହିଁ ଯାହାର

ନିଜର ଜୀବନୀ ଲେଖିବା ପାଇଁ ବହୁ ଅନୁରୋଧକୁ ଏଡ଼ାଇ ନ ପାରି ଯେତେବେଳେ ଲେଖିବାକୁ ଆରମ୍ଭ କଲି ସେତେବେଳେ ଦେଖିଲି ଯେ ମୋ ପାଖରେ ସ୍ମୃତି ଛଡ଼ା ଆଉ କିଛି ନୋଟ୍ ନାହିଁ । ତାକୁ ଇ ସମ୍ବଳ କରି ଲେଖିବା ଛଡ଼ା ଆଉ କୌଣସି ଉପାୟ ନାହିଁ । ତେଣୁ ତାହା ଆଉ ଆତ୍ମଜୀବନୀ ନ ହୋଇ ସ୍ମୃତିଚାରଣ ହୋଇଗଲା । ହେବାକୁ ବାଧ ଏବଂ ସ୍ମୃତି ବି କେବେ କ୍ରମ ମାନେ ? ତେଣୁ ଆଗକଥା ପଛକୁ, ପଛକଥା ଆଗକୁ ହୋଇଗଲା । ଯାହା ମୁଁ ଶୁଣିଛି, ଯାହା ମୁଁ ଜାଣିଛି ତାହା ଲେଖିଯିବି । କାରଣ ମୁଁ ଏଭଳି କୌଣସି ବଡ଼ଲୋକ ନୁହେଁ ଯେ ମୁଁ ଗୋଟିଏ କ'ଣ କରି ପକେଇଛିର ଗର୍ବ ବହନ କରିବି !

ତେଣୁ ଲେଖିବାର କୌଣସି କ୍ରମ ରହିଲା ନାହିଁ । କେମିତି ରହିବ ଅବା ? ଯାହାର ଜୀବନରେ କୌଣସି କ୍ରମ ନାହିଁ ତାହାର କ୍ରମ ଆସିବ କୁଆଡୁ ?

ଜୀବନର ବିଳମ୍ବିତ ଅପରାହ୍ନ । ସାଥୀମାନଙ୍କ ଭିତରୁ ଅନେକେ ହଜିଗଲେଣି । ଅନ୍ୟମାନେ ଯିବେ ଯିବେ ବୋଲି ଅଟକି ଯାଇଛନ୍ତି । ସନ୍ଧ୍ୟା ହେବା ବେଶି ଡେରି ନାହିଁ ।

ଥରେ ବଙ୍ଗଳାର ପୂର୍ବତନ ମୁଖ୍ୟମନ୍ତ୍ରୀ ୰ଅଜୟ ମୁଖାର୍ଜୀଙ୍କୁ ଡାକିବା ପାଇଁ ମୁଁ କଲିକତାରେ ପହଞ୍ଚିଲି । ସେ ତ ଅବିବାହିତ । ପରିବାର ନାହିଁ । ସେ ରହୁଥାନ୍ତି ତାଙ୍କର ଜଣେ ପୁତୁରାଙ୍କ ଘରେ । ବଙ୍ଗଳାରେ ଏକ ନିର୍ବାଚନ ଆସନ୍ନ ଥିଲା । ତଥାପି ସେ ସମ୍ମତି ଦେଲେ ଆସିବା ପାଇଁ ।

ସେ ଆସିଥିଲେ । ତାଙ୍କର ବକ୍ତୃତା ଚମତ୍କାର । ମନେହେବ ଯେପରି ଏକ ଚଳଚ୍ଚିତ୍ର ଦେଖୁଛି ଦର୍ଶକ । ତାଙ୍କର ବେଶପୋଷାକ ବେଶ୍ ସରଳ । ଯୋଡ଼ିଏ ଧୋତି ଏବଂ ଦୁଇଟି କୁର୍ତ୍ତା ତାଙ୍କର ଥାଏ । ଗୋଟିକୁ ସେ ପ୍ରତିଦିନ ନିଜେ ଧୋଇ ଶୁଖାନ୍ତି ପରଦିନ ପାଇଁ । ଗାମୁଛାଟିଏ ଏବଂ ଦୁଇଟି ଖଦଡ଼ ଲୁଙ୍ଗି ହେଉଛି ତାଙ୍କର ପରିଧାନ ସମ୍ବଳ ।

ମେଦିନୀପୁର ହେଉଛି ଭାରତର ଅନ୍ୟତମ ସ୍ଥାନ ଯେଉଁଠି ଏକ ସମାନ୍ତରାଳ ସରକାର ଗଢ଼ି ଉଠିଥିଲା ୧୯୪୨ ମସିହାରେ । ଏଇ ସମାନ୍ତରାଳ ସରକାରର ସେ ଥିଲେ ନେତା । ସେ ଦିନର ଗୁଳିକାଣ୍ଡରେ ମାତଙ୍ଗିନୀ ହାଜରାଙ୍କର ପରଲୋକ ହୋଇଯାଏ ଏବଂ ସେ ବଙ୍ଗଳା ନାରୀ ଜାଗରଣର ପ୍ରତୀକ ପାଲଟି ଯାଆନ୍ତି । ଏଇ ବିଧବା ଯୁବତୀ ସହିଦର ମୂର୍ତ୍ତି ବର୍ତ୍ତମାନ କୋଲକାତାର ମଇଦାନରେ ପ୍ରତିଷ୍ଠିତ ।

ଅଜୟ ମୁଖାର୍ଜୀ କହୁଥିଲେ । ତାଙ୍କର ଜଳଦ ଗମ୍ଭୀର କଣ୍ଠରୁ ନିନାଦିତ ହେଉଥିଲା ଶବ୍ଦ । ସତେ ଯେପରି ଛୁଟିଆସୁଚି ସେ ଶବ୍ଦ ଆକାଶ ବକ୍ଷରୁ ବୁଲେଟ୍ ଭଳି ।

''ଜୀବନର ସନ୍ଧ୍ୟା ଉପଗତ । ରାତ୍ରୀ ହେବା ପାଇଁ ଡେରି ନାହିଁ । ଆଖିରେ ଯେତେବେଳେ ସ୍ୱପ୍ନ ଥିଲା, ରକ୍ତରେ ଥିଲା ଅଗ୍ନି ସେତେବେଳେ ଗାନ୍ଧିଜୀଙ୍କର ଆଦର୍ଶରେ

ଆସିଥିଲି । ଭାବିଥିଲି ଏକ ସୁନାର ଭାରତ ଗଢ଼ିଯିବି । ଜୀବନର ରାତ୍ରି ହେବା ପୂର୍ବରୁ ଯଦି ସେଇ ସ୍ୱପ୍ନର କାଣିଚାଏ ସାର୍ଥକ ହୁଏ, ତା'ହେଲେ ଭାବିବି ଜୀବନ ସାର୍ଥକ ହୋଇଛି ।''

ମୋର ବି ସେଇଆ ମନେହେଉଛି । କ'ଣ ହେବାକୁ ଚାହିଁଥିଲି, କ'ଣ ହେଲା ଏବଂ ଯାହା ବି ହେଲା ତା କ'ଣ ସ୍ୱପ୍ନର କାଣିଚାଏ ସାର୍ଥକତା ?

ଡାକ୍ତର ହେବା ପାଇଁ ଇଚ୍ଛା ଥିଲା ପିଲାଦିନରୁ । ହେଲା ନାହିଁ । ମୋର ଅଭିଭାବକ ଓ ଶୁଭେଚ୍ଛୁମାନେ ଭାବିଲେ ଯେ ଏଇ ପିଲା ଆଇ.ଏ.ଏସ୍. ହେବ । ତାହା ବି ହେଲା ନାହିଁ। ସ୍ୱପ୍ନ ଦେଖିଲି ଭାରତବର୍ଷ ପାଇଁ, ମଣିଷକୁଳ ପାଇଁ । ନିଜ ଜୀବନ ବଡ଼ କଥା ନୁହେଁ, ମଣିଷକୁଳ ହେଉଛି ବେଶି ବଡ଼ ।

ଜେଲଖାନା, ପଳାତକ ଜୀବନ ସମାପ୍ତି ପରେ ଅନୁଗୋଳରେ ରହୁଥାଏ । ବୟସ ୨୦/୨୧ ହୋଇଥାଏ । ଏକ ବିବାହ ଭୋଜିରେ ଗପ କରୁ କରୁ ହଠାତ୍ ଅନୁଗୋଳର ତତ୍‌କାଳୀନ ଏସ୍.ଡି.ଓ. ମୋତେ କହିଲେ ତମେ ତ ବେଶ୍ ବୁଦ୍ଧିମାନ୍ ଜଣା ପଡୁଛ । ଆଇ.ଏ.ଏସ୍. ପରୀକ୍ଷା ଦେଉନ ? ସେ ନିଜେ ଖୁବ୍ ଭଲ ଛାତ୍ର ଥିଲେ । ଆଇ.ଏ.ଏସ୍. ପରୀକ୍ଷାରେ ମଧ କୃତିତ୍ୱର ସହିତ ପାସ୍ କରିଥିଲେ । କିନ୍ତୁ ନିଜ ଜୀବନର ଇତିହାସ ଭୁଲିଯାଇ ଅପରକୁ ଆଘାତ କରିବାର ଏକ ସାଡ଼ିଷ୍ଟିକ ପ୍ଲେଜର ତାଙ୍କର ଥିଲା ।

ମୁଁ ତାଙ୍କୁ ତତ୍‌କ୍ଷଣାତ୍ ଉତ୍ତର ଦେଲି, ମୁଁ ତ ସେମାନଙ୍କୁ ନିଯୁକ୍ତି ଦେବା ଗୋଷ୍ଠୀରେ ଆପଣାକୁ ସାମିଲ କରିଛି । ସେ ଏକ ପୁରୁଣା ଆରାମ ଚଉକିରେ ଶୋଇଥିଲେ । ମୋ କଥାରେ ସେ ଚମକି ବସିପଡ଼ିଲେ ।

କ'ଣ କହିଲ ?

ମୋ ବାପା, ଢେଙ୍କାନାଳର ପ୍ରଖ୍ୟାତ ରାଜା ୰ଶଙ୍କରପ୍ରତାପ ସିଂହଦେଓ ଏବଂ ଅଭିମନ୍ୟୁ ମାନସିଂହ ମହାପାତ୍ର ଥିଲେ ସହପାଠୀ । ଅଭିମନ୍ୟୁ ମାନସିଂହ ମହାପାତ୍ରଙ୍କର ପାଠ ପଢ଼ିଲାବେଳେ ଟିକିଏ ବୟସ ହୋଇଯାଇଥିଲା । ସେ ବିବାହ କରିଥିଲେ ଏବଂ ତାଙ୍କର ଏକ ପୁତ୍ର ବି ଜନ୍ମ ହୋଇଥିଲା ସେଇ ସମୟରେ । ସେତିକିବେଳେ ତାଙ୍କର ପଡ଼ୋଶୀ ଥିବା କୌଣସି ଏକ ବିଧବା ନାରୀ ପ୍ରତି ସେ ଆକୃଷ୍ଟ ହେଲେ । ପାଠପଢ଼ା ସରିଲା ପରେ ସେ ଢେଙ୍କାନାଳରେ ଫରେଷ୍ଟ ଅଫିସର ହେଲେ । କିନ୍ତୁ ଆଉ ଗ୍ରାମକୁ ଗଲେ ନାହିଁ କି ସ୍ତ୍ରୀଙ୍କୁ ଆଣିଲେ ନାହିଁ । ସମାଧାନର ସବୁ ବାଟ ବନ୍ଦ ହୋଇଗଲା ପରେ ତାଙ୍କ ସ୍ତ୍ରୀ ରାଜାଙ୍କୁ ଦରଖାସ୍ତ କଲେ । ରାଜା ଶଙ୍କରପ୍ରତାପ ପ୍ରବଳ ପ୍ରତାପୀ । ପୁଣି ଅଭିମନ୍ୟୁଙ୍କର ସହପାଠୀ । ସେ ଦରବାରକୁ ଡକାଇଲେ ଅଭିମନ୍ୟୁଙ୍କୁ । ଦରବାରରେ ଅଭିମନ୍ୟୁଙ୍କୁ ପ୍ରଶ୍ନ କଲେ ରାଜା । ତମର ସ୍ତ୍ରୀ ଥାଉ ଥାଉ ତମେ ଆଉ ଏକ ନାରୀକୁ ରଖିଛ ପାଖରେ ରକ୍ଷିତା କରି । ତମର ପୁଂଲିଙ୍ଗ କ'ଣ ଏତେ ଶକ୍ତିଶାଳୀ ? ତାହା ଆମ ଲୋକେ ଦେଖିବା ଉଚିତ ।

ତାଙ୍କୁ ଉଲଗ୍ନ କରି ଦିଆଗଲା ରାଜା ଆଦେଶରେ । ପୁଂଲିଙ୍ଗରେ ଏକ ରଥ ଦଉଡ଼ି ବନ୍ଧା ହେଲା ଏବଂ ତାକୁ ଧରି ପୁଲିସମାନେ ଟାଣିଲେ । ଏଣେ ଢେଙ୍ଗୁରା ପିଟାଇ ଜଣାଇ

ଦିଆଗଲା ଯେ ସମସ୍ତେ ଠୁଳ ହେବେ ରାଜରାସ୍ତାରେ । ରାଜା ଶଙ୍କରପ୍ରତାପ ଅତ୍ୟାଚାରୀ ଥିଲେ କିନ୍ତୁ ନାରୀ ପାଇଁ ଦୁର୍ବଳତା ତାଙ୍କର ନ ଥିଲା । ସେଇ ରାତିରେ ଅଭିମନ୍ୟୁ ଆପଣାର ବାନ୍ଧବୀ ସହିତ ଢେଙ୍କାନାଳ ଛାଡ଼ି ପଳେଇଲେ । ତାଙ୍କ ଘରେ ଗୋଟିଏ ଚାକର ପିଲା ଥିଲା । ବ୍ରାହ୍ମଣୀ ନଈ ସେ ପିଲା ବଉଁଶର ଯେତେସବୁ ଜମିବାଡ଼ି ଖାଇ ଯାଇଛି । ସେ ପିଲାଟିକୁ ନେଇ ମଧ୍ୟ ସେ ଚାଲିଲେ ଅନ୍ଧାରରେ । ପିଲାଟି ପ୍ରତି ତାଙ୍କର ଦରଦ ବଢ଼ିଗଲା । ସେ ପିଲାଟି ଖୁବ୍ ବୁଦ୍ଧିଆ ଦେଖି ସେ ତାକୁ ପାଠ ପଢ଼ାଇଲେ । ପିଲାଟି ଖୁବ୍ ଭଲ ପଢ଼ିଲା ଏବଂ ପରେ ଆଇ.ଏ.ଏସ୍. ବି ହେଲା । ଆଇ.ଏ.ଏସ୍. ହେବା ପର୍ଯ୍ୟନ୍ତ ସେ ଅଭିମନ୍ୟୁଙ୍କୁ ବାପା ବୋଲି ଡାକୁଥିଲା । କିନ୍ତୁ ତା ପରେ ସବୁ ସମ୍ପର୍କ ଛିନ୍ନ କରିଦେଲା । ଅଭିମନ୍ୟୁଙ୍କର ପ୍ରଥମ ସ୍ତ୍ରୀ ରହିଗଲେ ଗାଁରେ । ସେ ବାପାର ନାମ ଯାହା ପୁଅର ନାମ ସେଇଆ ରଖିଲେ ।

ଅଭିମନ୍ୟୁ ମାନସିଂହ ମହାପାତ୍ର ପରେ ମଧ୍ୟପ୍ରଦେଶର ଏକ ଗଡ଼ଜାତରେ ଫରେଷ୍ଟ ଅଫିସର ହେଲେ । ତାଙ୍କ ଦ୍ୱିତୀୟ ସ୍ତ୍ରୀ, ପୁଅ ଜଣେ ଶିଳ୍ପୀ । ତା'ର ପରଲୋକ କିଛି ବର୍ଷ ତଳେ ହୋଇଯାଇଛି । ଅଭିମନ୍ୟୁବାବୁ ମୋର ପାରିବାରିକ ବନ୍ଧୁ । ସେ ମୋତେ ନିଜେ ଏହି କାହାଣୀ କହିଛନ୍ତି ।

ଆଇ.ଏ.ଏସ୍. ହେଲି ନାଇଁ କି ସେ ଦିଗକୁ ଗତି କଲି ନାହିଁ ମଧ୍ୟ । ଜୀବନର ମୋଡ଼ ବଦଳିଗଲା । କେବଳ ନିଜ ଜୀବନ ପାଇଁ ନୁହେଁ ସମଗ୍ର ମଣିଷ ଜାତିର କଲ୍ୟାଣର ସ୍ୱପ୍ନ ଘାରିଲା ମୋତେ । ମୁଁ ଏକ ଲାଜକୁଳା ପିଲା ଥିଲି । ପାଠଛଡ଼ା ଆଉ କିଛି ଜାଣି ନ ଥିଲି । ସାମ୍ୟବାଦର ମହାମନ୍ତ୍ର ମୋତେ ପ୍ରଗଳ୍ଭ କରିଦେଲା । ମୁଁ ବକ୍ତା ପାଲଟିଗଲି । ମୁଁ କେବେ କିଛି ଲେଖି ନ ଥିଲି । ସାମ୍ୟବାଦ ଓ ସାମ୍ୟବାଦୀମାନେ ମୋତେ ଅନୁବାଦକ, ଲେଖକ କରିଦେଲେ । ମୁଁ ଲେଖୁ ଲେଖୁ ନିଜର ତଥାକଥିତ ଜୀବନ ସଂପର୍କରେ ଲେଖିବାକୁ ଆରମ୍ଭ କଲି, ଖବରକାଗଜରେ ଲେଖିଲି । ମୁଁ ଏକ ଲେଖକ ବି ପାଲଟିଗଲି ।

ନେପୋଲିଅନଙ୍କ ଉକ୍ତି ମନେ ପଡ଼େ Circumstance ? I create it....

ପରିସ୍ଥିତି ବ୍ୟାପକ । ମଣିଷକୁ ବାଛିବାକୁ ପଡ଼େ । ମଣିଷ ଯାହା ବାଛେ ତାହା ହୁଏ ।

ରାଜନୀତି କଲି । ଜେଲଖାନା ଗଲି । ଲାଠିମାଡ଼ ଖାଇଲି । ପଳାତକ ହେଲି । ଅନଶନ କଲି । କିନ୍ତୁ ଆଉ ବେଶି ବାଟ ତ ଯାଇପାରିଲି ନାହିଁ ।

ଆମ ୟୁନିଭର୍ସର କିଛି ପ୍ରାପ୍ୟ ପାଇବାର ଥାଏ ଭାରତ ସରକାରଙ୍କର ଏକ ବିଭାଗରୁ । କିନ୍ତୁ ମିଳୁ ନ ଥାଏ । ବନ୍ଧୁ ତ୍ରିଲୋଚନ କାନୁନ୍‌ଗୋ ପାର୍ଲ୍ୟାମେଣ୍ଟ ସଭ୍ୟ । ତାଙ୍କୁ କହିଲି । ସେ ବିଭାଗୀୟ ସେକ୍ରେଟେରୀଙ୍କୁ ଭେଟିଲେ ଏବଂ ମୋ ବିଷୟରେ କହୁ କହୁ କହିଲେ– ଆମେ ଯେତେ କହିଲୁ କ'ଣ ମିଳିବ ଏ ସବୁ କାମରୁ ? ଏମ୍.ପି. ହୁଅ, ଏମ୍.ଏଲ୍.ଏ. ହୁଅ । ସବୁ ଯୋଗ୍ୟତା ତମର ଅଛି । କିନ୍ତୁ କିଛି ମାନିଲା ନାହିଁ । ସେ ହଇରାଣ ହବ ନାହିଁ ତ ହବ କିଏ ?

ତା' ପରଦିନ ସେକ୍ରେଟେରୀ ମୋତେ ଏଇ କଥା କହିଲେ । ମୋର ବକ୍ତବ୍ୟ ଥିଲା ଯେ ସେସବୁ ହେବା ପାଇଁ ମୋର ଯୋଗ୍ୟତା ନାହିଁ, ଥିଲେ ହୋଇ ନ ଥାନ୍ତି !

ଅନ୍ୟଙ୍କୁ ଜିତାଇବାରେ ମୋର ଆନନ୍ଦ ବେଶି । ନିଜ ପାଇଁ କହିବାକୁ ମୋତେ ଲାଜ ଲାଗେ ।

ରେଭେନ୍ସା ୟୁନିଅନର ସଭାପତି ପଦ ପାଇଁ ଥରେ ପ୍ରତିଯୋଗିତା କରିଥିଲି । ସେଇଟା ମୋର ଶେଷ ନିର୍ବାଚନ ଲଢ଼ିବା, ବାକି ଯାହା ସବୁ ଲଢ଼ିଛି ତାହା ନାମକୁମାତ୍ର । କିନ୍ତୁ ରେଭେନ୍ସା କଲେଜ ୟୁନିଅନ ଛଡ଼ା ଓଡ଼ିଶାର ବହୁ କଲେଜ ୟୁନିଅନରେ ପ୍ରାର୍ଥୀ ମନୋନୟନ କରିବା ଓ ସେମାନଙ୍କର ପ୍ରଚାରରେ ଭାଗ ନେବାର ସୌଭାଗ୍ୟ ମୋର ହୋଇଛି । ରେଭେନ୍ସା କଲେଜ ୟୁନିଅନ ନିର୍ବାଚନରେ ନିଜ ପାଇଁ ପ୍ରଚାର କରିବା ଭାରି କଷ୍ଟକର ଥିଲା । ମୋ ଲାଗି ଗୋଟିଏ ପ୍ରଚାରପତ୍ର ଦୁଇ ଧାଡ଼ିରେ ଦିଆ ଯାଇଥିଲା । ତା'ର କୃତିତ୍ୱ ସୁଶୀଳ କୁମାର ପଟ୍ଟନାୟକ, ଶରତ ଚନ୍ଦ୍ର ମିଶ୍ର, ରାମଚନ୍ଦ୍ର ବକ୍ସିପାତ୍ର, ମନୋଜ ଦାସ ପ୍ରଭୃତିଙ୍କର । ମୋର ନୁହେଁ ।

କିନ୍ତୁ ଛାତ୍ର ୟୁନିଅନ ଛଡ଼ା ବିଶ୍ୱବିଦ୍ୟାଳୟ ସିନେଟ, ସିଣ୍ଡିକେଟ ନିର୍ବାଚନ, କଟକ ପୌରସଂସ୍ଥା, ଅନେକ ଆସେମ୍ଲି ଏବଂ ପାର୍ଲ୍ୟାମେଣ୍ଟ ପ୍ରାର୍ଥୀମାନଙ୍କ ପାଇଁ ମୁଁ କାମ କରିଛି । ସେଥିରେ ବେଶି ଆନନ୍ଦ ମିଳିଛି । ସେସବୁର ଅଭିଜ୍ଞତା ପରେ ଲେଖିବି ।

ରାଜନୀତି ସରିଗଲା ମୋର । କମ୍ୟୁନିଷ୍ଟ ପାର୍ଟି ବିଭାଜିତ ହୋଇଗଲା ଖଣ୍ଡ ଖଣ୍ଡ ହୋଇ । ସାମ୍ୟବାଦର ସାଫଲ୍ୟ ପାଇଁ ରାସ୍ତା ଥିଲା ଦୁର୍ଗମ, ଅନ୍ଧକାରାଚ୍ଛନ୍ନ । ତଥାପି ସାହସ ଥିଲା ଆମର । ଜୀବନକୁ ବାଜି ରଖି ଭାରତବର୍ଷର ବହୁ ଯୁବକ ଯୁବତୀ ଏଥିପାଇଁ ଆଗଭର ହୋଇଥିଲେ । ଏହାଛଡ଼ା ରାଜନୀତି ନିର୍ବାଚନସର୍ବସ୍ୱ ହେବାକୁ ଲାଗିଲା । ମୋର ଅନ୍ୟତମ ସହଯୋଦ୍ଧା, ନେତା ୰ ରାମଚନ୍ଦ୍ର ମିଶ୍ର କହୁଥିଲେ ଆମେ ସବୁ ଦୁଇଟି ବା ତିନୋଟି ନିର୍ବାଚନ କଥା ହିଁ ବିଚାର କରୁଛୁ । ଆମେ ସବୁ ପଲିଟିସିଆନ୍, କେହି ଷ୍ଟେଟ୍‌ସମ୍ୟାନ୍ ନାହାନ୍ତି । ପଲିଟିସିଆନ୍‌ମାନେ ଆରକୁ ଦୁଇଟି ତିନୋଟି ନିର୍ବାଚନ ବିଚାର କରନ୍ତି । ତେଣୁ ଆମ ଦ୍ୱାରା ହେବ କ'ଣ ?

ନିର୍ବାଚନ ତ ସାମ୍ୟବାଦ ପ୍ରତିଷ୍ଠା କରିପାରିବ ନାହିଁ । ଏହା ଏକ ନୂତନ କ୍ଲାସ ତିଆରି କଲା । ବିଧାନସଭା ସଦସ୍ୟ, ପାର୍ଲ୍ୟାମେଣ୍ଟ ସଦସ୍ୟମାନେ ଅନେକ ସୁବିଧା (ପେନ୍‌ସନ ସମେତ) ଭୋଗ କଲେ, ଯାହା ରାଜନୈତିକ ଦଳମାନଙ୍କର ହଜାର ହଜାର ସଂଖ୍ୟାଧିକ କର୍ମୀ ପାଇଲେ ନାହିଁ । ସେମାନଙ୍କ ଭିତରେ ଅସନ୍ତୋଷ ଦେଖାଦେଲା ଏବଂ ସେମାନେ କୌଣସିମତେ ପ୍ରାର୍ଥୀ ହେବା ପାଇଁ ଉଦ୍ୟମ କଲେ । ଏଣେ ଏହିସବୁ ପଦବୀ ତ ଆଗରୁ ଗୋଷ୍ଠୀଗତ ଥିଲା, ବର୍ତ୍ତମାନ ପାରିବାରିକ ହୋଇଗଲା । ପାର୍ଲ୍ୟାମେଣ୍ଟ ସଭ୍ୟ ପଦବୀଠାରୁ ଏହା କ୍ଷରିତ ହୋଇ ପଞ୍ଚାୟତ ପର୍ଯ୍ୟନ୍ତ ବ୍ୟାପିଗଲା । ଏହି New-classର ଜନ୍ମ ଯୋଗୁଁ ସୋଭିଏଟ୍ ୟୁନିଅନ ଭାଙ୍ଗିଗଲା । ସମାଜର ଗୁଣାତ୍ମକ ପରିବର୍ତ୍ତନ ଏହା ଫଳରେ ସମ୍ଭବ ହେବ ନାହିଁ ।

ସମାଜର ଗୁଣାତ୍ମକ ପରିବର୍ତ୍ତନ ନ ହେଲେ ଆମେ ସବୁ ଆୱାର୍ଡ଼, ପେନସନ ପାଇଲେ କେତେ ନ ପାଇଲେ କେତେ ? ମଲେ ପତାକା ଅର୍ଦ୍ଧନମିତ ହେଲେ କେତେ ନ ହେଲେ କେତେ ?

ଆମେ ସବୁ ଲେନିନ୍‌ଙ୍କ ଭାଷାରେ "In the names of the happy dreams of the future, those who avoid sharp tasks of today are called opportunists." ସୁବିଧାବାଦୀ ହୋଇଗଲୁ ।

ରାଜନୀତି ସରିଗଲା । କିନ୍ତୁ କ'ଣ ଯେ କରିବି ? ଓକିଲାତି ହେଲା ନାହିଁ, ସମାଜସେବା ବା ସାମାଜିକ କାର୍ଯ୍ୟ ହିଁ ଜୀବନର ପାଥେୟ ହେଲା ।

"One step enough for me" ଏଇ କାବ୍ୟିକ ବାଣୀ ଜୀବନର ଲକ୍ଷ୍ୟ ହୋଇଗଲା ।

ନାଗଭୂଷଣ ପଟ୍ଟନାୟକ ମୋର ଆଇନ୍ ପଢ଼ିବା ବେଳର ସହପାଠୀ । ସେ ଶ୍ୱାସରୋଗୀ । ଦିନେ ହଠାତ୍ ଆସି ପହଞ୍ଚିଲେ । ମୋର ସ୍ତ୍ରୀ ତାଙ୍କୁ ଶ୍ୱାସରୋଗର ଔଷଧ ଦେଲେ ତିନିମାସ ପାଇଁ । ସେ ଦିନେ ହଠାତ୍ ସେ ଔଷଧରୁ ଅଧା ଫେରାଇ ଦେବାକୁ ଆସିଲେ । କହିଲେ ମୁଁ ଚାଲିଯାଉଛି । ଆଉ ତ ଔଷଧ ଖାଇବାକୁ ସୁବିଧା ହେବ ନାହିଁ । ତେଣୁ ଅନ୍ୟ ରୋଗୀର ସୁବିଧା ହେବ ଭାବି ମୁଁ ଫେରାଇ ଦେବାକୁ ଆସିଛି ।

କ'ଣ ନାଗଭୂଷଣ, ବିପ୍ଲବ କ'ଣ ଆମ ଗେଟ୍ ପାଖରେ ଅପେକ୍ଷା କରିଛି କି ? ତା'ହେଲେ ଚାଲ ଯିବା ସାଙ୍ଗ ହୋଇ । ଦେଶରେ ବୈପ୍ଳବିକ ପରିସ୍ଥିତି ନାହିଁ ବର୍ତ୍ତମାନ । ବର୍ତ୍ତମାନ ସମସ୍ତେ 'ମୁଁ' କାରରେ ବ୍ୟସ୍ତ । ତେଣୁ ତରତର କାହିଁକି ?

ସେ କିନ୍ତୁ ଚାଲିଯାଇଥିଲେ । ଔଷଧ ଅଧାବୋତଲ ରହିଗଲା ମୋ ପାଖରେ ।

ବନ୍ଧୁ ଶ୍ୟାମସୁନ୍ଦର ମହାପାତ୍ରଙ୍କ ଝିଅ ଏବଂ ସାଗରିକା ମହାପାତ୍ରଙ୍କୁ ସାଙ୍ଗରେ ନେଇ ମୁଁ ଯାଇଥାଏ ଜବାହରଲାଲ ନେହେରୁ ବିଶ୍ୱବିଦ୍ୟାଳୟକୁ । ସେଇଠି ହଠାତ୍ ଲାଇବ୍ରେରୀ ପାଖରେ ଦେଖାହୁଏ କମ୍ୟୁନିଷ୍ଟ ପାର୍ଟିର ପ୍ରବାଦ ପୁରୁଷ ପି. ସି. ଯୋଶୀଙ୍କ ସହିତ ।

ଆପଣ ଏଇଠି ?

ସେ କହିଲେ ଯେ ଦେଶରେ ବୈପ୍ଳବିକ ପରିସ୍ଥିତି ଥିଲେ ମୁଁ ଏଇ ଭଙ୍ଗା ହୃଦୟ (Broken Heart) ସତ୍ତ୍ୱେ ଯାଇଥାନ୍ତି ସେଇଠିକୁ । କିନ୍ତୁ ତାହା ତ ନାହିଁ । ତେଣୁ ଏଇଠି ବସି ପଢୁଛି ।

ଆପଣ ଯେତେବେଳେ କମ୍ୟୁନିଷ୍ଟ ପାର୍ଟିରେ ସକ୍ରିୟ ଥିଲେ, ନେତା ଥିଲେ ସେତେବେଳେ କ'ଣ ବୈପ୍ଳବିକ ପରିସ୍ଥିତି ଥିଲା ?

ନିଶ୍ଚିତ ଭାବରେ । କମ୍ୟୁନିଷ୍ଟ ପାର୍ଟି ଛୋଟ ଥିଲା । କିନ୍ତୁ ଦେଶର ପରିସ୍ଥିତି ବୈପ୍ଳବିକ ଥିଲା । ସେଇଥିପାଇଁ ପ୍ରାଣପାତ କରିବା ସକାଶେ, ତ୍ୟାଗ କରିବା ସକାଶେ ଯୁବକ ଯୁବତୀ, ବୁଦ୍ଧିଜୀବୀମାନେ ଆସୁଥିଲେ । ବର୍ତ୍ତମାନ ତାହା ନାହିଁ । ଏହା ରାଜନୈତିକ ବେପାରୀମାନଙ୍କର ବଜାରରେ ପରିଣତ ହୋଇଛି ।

କାର୍ଯ୍ୟକ୍ରମ ରହିଲା ନାହିଁ । ତେଣୁ ଜୀବନର କ୍ରମ ମଧ ରହିଲା ନାହିଁ । ଯାହା ମନେପଡ଼ିଲା ତାହା ଲେଖିଗଲି ଉତ୍ତରପିଢ଼ି ପାଇଁ ।

ସମ୍ବଲପୁର ଛାଡ଼ିବାବେଳକୁ ସମାଜବାଦୀ ବା ସାମ୍ୟବାଦୀ ଚିନ୍ତାର ଆଦ୍ୟ ପାଠ ଆରମ୍ଭ ହୋଇଯାଇଥିଲା । ସମ୍ବଲପୁରରେ ସେତେବେଳକୁ ଅନେକ ପୁରୁଖା ନେତା । ସେମାନଙ୍କ ମଧ୍ୟରେ ଲକ୍ଷ୍ମୀନାରାୟଣ ମିଶ୍ର, ଦୟାନନ୍ଦ ଶତପଥୀ, ପ୍ରହ୍ଲାଦ ରାୟ ଲାଠଙ୍କ ନାମ ମନେପଡୁଛି । ବୋଧରାମ ଦୁବେଙ୍କ ସହିତ ସାଧାରଣ ମଣିଷର ସଂପର୍କ ଖୁବ୍ କମ୍ । ଲକ୍ଷ୍ମୀନାରାୟଣ ମିଶ୍ରଙ୍କର ପାଣ୍ଡିତ୍ୟ ଥିଲା ଅଗାଧ । ବିଭିନ୍ନ ଭାଷାରେ ତାଙ୍କର ବକ୍ତୃତା ମୁଗ୍ଧ କରୁଥିଲା ଲୋକଙ୍କୁ । ସ୍ତ୍ରୀଙ୍କର ଚିତାଗ୍ନିରେ ଯୋଗ ଦେଇ ସେଇଠାରୁ ଯାଇଥିଲେ କାରାବାସକୁ । ଗୋଟିଏ କଥା ତାଙ୍କ ଭିତରେ ମୁଁ ଲକ୍ଷ୍ୟ କରିଥିଲି । ନିଜର ମତଠାରୁ ଭିନ୍ନ ମତର ଲୋକଙ୍କ ସହିତ ତାଙ୍କର ସଂପର୍କ ଥିଲା ନିବିଡ଼ । ସେମାନଙ୍କୁ ଯେ ଯଥାର୍ଥରେ ଭଲ ପାଉଥିଲେ । ତାଙ୍କର ଉକ୍ତି ଅତ୍ୟନ୍ତ ଶାଣିତ ଏବଂ ବାଇଟିଙ୍ଗ ଥିଲା । ବିଧାନସଭାର ପ୍ରସିଡିଙ୍ଗ ଆଜି ବି ଖୋଲିଲେ ତାହା ମିଳିପାରିବ । ଥରେ ମହତାବବାବୁ ଭାଷଣ ଦେଉଥିଲେ ବିଧାନସଭାରେ । ପାଖରେ ବସିଥିଲେ ତାଙ୍କର ଉପମନ୍ତ୍ରୀ ଭୈରବଚନ୍ଦ୍ର ମହାନ୍ତି । ହଠାତ୍ ପଛପଟରୁ ଗୋଟିଏ ସ୍ଲିପ୍ ଆସିଲା ମହତାବବାବୁଙ୍କ ପାଖକୁ । ଆଉ ଖଣ୍ଡିଏ ସ୍ଲିପ୍ ମଧ୍ୟ ଆସିଲା ଭୈରବବାବୁଙ୍କ ପାଖକୁ । ମହତାବବାବୁ ଭାବିଲେ ଯେ କୌଣସି ସହକର୍ମୀ ତାଙ୍କୁ ନୋଟ୍‌ଟିଏ ପଠାଇଛନ୍ତି କୌଣସି ବିଷୟରେ ବା ସେ ବକ୍ତୃତା ଦେଉଥିବା ବିଷୟରେ । ସ୍ଲିପ୍‌ରେ ଲେଖାଅଛି–

ଲକ୍ଷ୍ମୀନାରାୟଣ ଉବାଚ–

ମିଥ୍ୟା ବୋଲିଣ ନାମ କିସ ।

କହ ହେ ମହତାବ ଈଶ ।

ମହତାବବାବୁ ସେ ସ୍ଲିପ୍‌କୁ ଦେଖୁଥିବା ଅବସ୍ଥାରେ ଆଉ ଖଣ୍ଡିଏ ସ୍ଲିପ୍ ଆସି ପହଞ୍ଚିଲା ।

ମହତାବ ଉବାଚ–

ମିଥ୍ୟା ମୋହର ନିଜ ଗୁରୁ

ଭୈରବ କେତେ ତୁ ପଚାରୁ ।

ମହତାବବାବୁ ପଛକୁ ଅନେଇଲା ବେଳକୁ ଲକ୍ଷ୍ମୀନାରାୟଣବାବୁ ଦ୍ୱାର ଖୋଲି ଲବିକୁ ଚାଲିଗଲେଣି । ମହତାବବାବୁଙ୍କ ମୁହଁରୁ ହସ ବାହାରି ପଡ଼ିଲା ।

ହ୍ୟୁମର ମରିଗଲାଣି ସମାଜରୁ । ଦେଶରୁ କିନ୍ତୁ ହ୍ୟୁମର ମରିଗଲେ ଯେ ଦେଶ, ଜାତି ଦରିଦ୍ର ହୋଇଯିବ ଏକଥା କେହି ବୁଝୁ ନାହାନ୍ତି ।

ମନେପଡୁଛି । ରେଭେନ୍ସା କଲେଜ ହଲ୍‌ରେ ବିଧାନସଭା ହେଉଥାଏ । ଆଜି ହୋଇଥିଲେ ପ୍ରତିଦିନ ସେଠାରେ ଦଶଟା ବିକ୍ଷୋଭ ହୋଇ କାମ ଅଚଳ ହୋଇଯାଆନ୍ତା । ମୋର ମନେଥିବା ଭିତରେ ଆଟିନଲେକ ବୟକଟ, ତୁଡୁମା ଚୁକ୍ତି ବିରୋଧୀ ଆନ୍ଦୋଳନ, ଦରମା ବୃଦ୍ଧି ଆନ୍ଦୋଳନ ଭଳି ଚାରି ପାଞ୍ଚଟି ଘଟଣାରେ ବିଧାନସଭା ଆଗରେ ବିକ୍ଷୋଭ ହୋଇଥିଲା ।

ଗଡ଼ଜାତ ମିଶ୍ରଣ ହୋଇଥାଏ ସଦ୍ୟ । ଗଡ଼ଜାତ ନେତାମାନଙ୍କ ମଧ୍ୟରୁ କୈଳାସ ଚନ୍ଦ୍ର ମହାନ୍ତି (ନୀଳଗିରି), ପବିତ୍ର ମୋହନ ପ୍ରଧାନ (ତାଳଚେର) ଏବଂ କପିଳେଶ୍ୱର ପ୍ରସାଦ ନନ୍ଦ (ବଲାଙ୍ଗୀର) ଓଡ଼ିଶା ବିଧାନସଭାକୁ ଆସିଲେ । କୈଳାସ ଚନ୍ଦ୍ର ମହାନ୍ତିଙ୍କ ପାଖ ସିଟ୍‌ରେ ସରସ୍ୱତୀ ଦେବୀଙ୍କ ସିଟ୍ । (ସେ ଗଲାବର୍ଷ ବିଦାୟ ନେଲେ ସଂସାରରୁ) କୈଳାସବାବୁ, ପବିତ୍ରବାବୁ ଏବଂ କପିଳେଶ୍ୱରବାବୁ ପରବର୍ତ୍ତୀ କାଳରେ ଏକଜିକ୍ୟୁଟିଭ୍ କାଉନସିଲର ହେଲେ ଏବଂ ମନ୍ତ୍ରିମଣ୍ଡଳ ସହିତ ଏକାଠି ବସିବା ପାଇଁ ସେମାନଙ୍କର ସ୍ଥିରୀକୃତ ସ୍ଥାନକୁ ଯିବାକୁ ପଡ଼ିଲା । କୈଳାସବାବୁ ଉଠି ଠିଆହେଲେ । ସମସ୍ତଙ୍କୁ ଧନ୍ୟବାଦ ଦେଲେ ଏବଂ ଧନ୍ୟବାଦ ଦେଲେ ସରସ୍ୱତୀ ଦେବୀଙ୍କୁ । ''ଏଇ କେତେ ମାସ ହେଲା ଆପଣଙ୍କ ସହିତ ଯେଉଁ ସହବାସ ହେଉଥିଲା, ସେଥିରୁ ମତେ ବଞ୍ଚିତ ହେବାକୁ ପଡୁଚି । ସମସ୍ତେ ଚମକି ଉଠିଲେ । ସରସ୍ୱତୀ ଦେବୀ ମଧ୍ୟ **ବିସ୍ମିତ** ନେତ୍ରରେ ଅନେଇଲେ କୈଳାସବାବୁଙ୍କୁ । କ'ଣ ହେଲା ? ସଂଗେ ସଂଗେ କୈଳାସବାବୁ **ବିନମ୍ରତା**ର ସହିତ କହିଲେ ଯେ ନା, ନା, ମୁଁ ଉପେନ୍ଦ୍ରବାବୁ (ସରସ୍ୱତୀ ଦେବୀଙ୍କ ସ୍ୱାମୀ)ଙ୍କ **କଥା କହୁ ନାହିଁ** । ଆପଣଙ୍କ ସହିତ ଏଇ ଯେଉଁ ଏକାଠି ବସୁଥିଲେ ସେଥିପାଇଁ ମୁଁ ଆପଣଙ୍କୁ ଧନ୍ୟବାଦ ଜଣାଉଛି । ସମସ୍ତେ ହସରେ ଫାଟି ପଡ଼ିଲେ । ସରସ୍ୱତୀ ଦେବୀ ଏବଂ ଉପେନ୍ଦ୍ରବାବୁ ମଧ୍ୟ ସେଥିରେ ଯୋଗ ଦେଲେ ।

ଓଡ଼ିଶାର ବିଧାନସଭାରେ ଲକ୍ଷ୍ମୀନାରାୟଣ ମିଶ୍ର, କୈଳାସ ଚନ୍ଦ୍ର ମହାନ୍ତି, ଅଚ୍ୟୁତାନନ୍ଦ ମହାନନ୍ଦ, ହରିହର ଦାସ ଏଥିପାଇଁ ସ୍ମରଣୀୟ ହୋଇ ରହିବେ । ଦୁଇଟଙ୍କା ଦରମାରେ ଆସିକାର ଡାକବଙ୍ଗଳାରେ କାମ କରୁଥିବା ଚେମୀ ବାଉରାଣୀ ସଂପର୍କରେ ବିଧାନସଭାରେ ହରିହର ଦାସ ଭାଷଣ ଦେଲା ପରେ, ତାହା ୰ଗୋଦାବରୀଶ ମହାପାତ୍ରଙ୍କୁ ମଧ୍ୟ ଛୁଇଁଥିଲା ଏବଂ ସେ କବିତା ଲେଖିଥିଲେ ଏଇ ବାଉରାଣୀ କଥା ଉଲ୍ଲେଖ କରି ।

''ଏ ଜାତିର ସୁନାପୁଅ ଥିଲା ସେ ଧରମା,
ଗଢ଼ିଥିଲା କୋଣାରକ ନ ଖାଇ ଦରମା ।''

କିନ୍ତୁ ପରବର୍ତ୍ତୀ କାଳରେ ବିଧାନସଭାର ବିତର୍କ ଶୁଷ୍କ ହୋଇଯାଉଛି । ଲୋକେ ଆଉ ବିଧାନସଭାକୁ ଯାଉ ନାହାନ୍ତି ବିତର୍କ ଶୁଣିବା ପାଇଁ । କାରଣ ବିତର୍କର ଷ୍ଟାଣ୍ଡାର୍ଡ଼ ମଧ୍ୟ କମିଯାଇଛି ।

ତତ୍‌କାଳୀନ ବାଚସ୍ପତି ପ୍ରସନ୍ନ କୁମାର ଦାସ ଆସିଥିଲେ ୟୁନିଭର୍ସରେ ଭାଷଣ ଦେବା ପାଇଁ । ସଭା ସରିଲା । ତାଙ୍କର ଗାଡ଼ି ଆସି ନ ଥିଲା । ଗପ ଜମିଲା । ବନ୍ଧୁ ବାସୁଦେବ ସାମଲ ତାଙ୍କୁ ପଚାରିଲେ ଯେ ଆପଣ କାହିଁକି ବିଧାନସଭାରେ ଦର୍ଶକମାନଙ୍କର ଶୁଣିବା ସମୟ ଏକ ଘଣ୍ଟାକୁ ସୀମିତ କରିଦେଇଛନ୍ତି ? ତାଙ୍କର ପଥୁରିଆ ମୁହଁ ଉପରେ ହସର ଏକ ମ୍ଳାନ ରେଖା ଉକୁଟିଗଲା । ସେ ପଚାରିଲେ କ'ଣ ଆପଣଙ୍କ ଦରକାର ତା'ଠାରୁ ବେଶି ସମୟ ? ଏହାଛଡ଼ା ମେଡିକାଲ ଆଡ୍‌ଭାଇସ ଅନୁଯାୟୀ ଆମେ ଏହି ସମୟ ସୀମା ସ୍ଥିର କରିଛୁ । ମେଡିକାଲ ଆଡଭାଇସ୍ କ'ଣ ଦରକାର ପଡ଼ିଲା ? ସେ ଗଭୀର କଣ୍ଠରେ

କହିଲେ ଯେ ତା'ଠାରୁ ବେଶି ସମୟ ବସିଲେ ଏବଂ ଶୁଣିଲେ ଦର୍ଶକର ନସିଆ (nautia) ହେବ, ବାନ୍ତି ଲାଗିବ, ମୁଣ୍ଡ ବଥାଇବ, ମାଇଗ୍ରେନ୍ ବା ଅଧାକପାଳି ହୋଇପାରେ । ବେଶି ସମୟ ବସିଲେ ଘୃଣାରେ ତା'ର ନାକ କୁଞ୍ଚନ ହୋଇଯିବ, ରକ୍ତଚାପ ବଢ଼ିଯିବ ଏବଂ.... । ସେ ରହିଗଲେ ଥମ୍ କରି । ହସରେ ସମସ୍ତଙ୍କର ପେଟ ଫାଟିପଡ଼ିଲା ।

ପାର୍ଲ୍ୟାମେଣ୍ଟରେ ମଧ ସେଇ ଅବସ୍ଥା । ଦିନ ଥିଲା ଅଶୋକ ମେହେଟା, ହାରେନ୍ ମୁଖାର୍ଜୀ, ଏଚ୍.ଭି. କାମାଥ, ମଧୁ ଲିମାୟେ, ଏସ୍.ଏ. ଡାଙ୍ଗେ, ହାରିନ ଚଟ୍ଟୋପାଧ୍ୟାୟ ପ୍ରଭୃତିଙ୍କ ବକ୍ତୃତା ଶୁଣିବା ପାଇଁ ଗବେଷକ, ଅଧ୍ୟାପକ ଛାତ୍ର ଛୁଟି ଆସୁଥିଲେ ପାର୍ଲ୍ୟାମେଣ୍ଟକୁ ।

ହାରିନ୍ ଚଟ୍ଟୋପାଧ୍ୟାୟ ହସର ଖଣି (ତାଙ୍କର ଦୁଇବର୍ଷ ତଳେ ପରଲୋକ ହୋଇଯାଇଛି) ଭାଷଣ ଦେଉଥିଲେ ଗୀତରେ–

"Irrigation budget is soaring
like a Rocket
It does not irrigate land
but irrigates pockets
The Railway minister does not bother
about the fares in the lines
Because he travels in the Air
and read between the lines."

ଏପରି ଅନେକ ପାର୍ଲ୍ୟାମେଣ୍ଟ ସଦସ୍ୟ ଥିଲେ ଯେଉଁମାନେ ପଣ୍ଡିତ ନେହେରୁଙ୍କୁ ମଧ ଭୟ କରୁ ନ ଥିଲେ । ସେମାନଙ୍କ ମଧ୍ୟରେ ତାଙ୍କର ଜାମାତା ୰ଫିରୋଜ ଗାନ୍ଧୀ, ବୈଦ୍ୟନାଥ ରଥ ପ୍ରମୁଖ ଅନ୍ତର୍ଭୁକ୍ତ ।

ସେଥରକ ତାରକେଶ୍ୱରୀ ସିହ୍ନା ହେଉଥାନ୍ତି Minister of Cultural Affairs । ତା ପୂର୍ବରୁ ଦୁଇଜଣ ମହିଳା ହୋଇଥାନ୍ତି Minister of Youth Affairs, Minister of Foreign Affairs.

କୌଣସି ନୂଆ ଲୋକ ମନ୍ତ୍ରୀ ହେଲେ ପଣ୍ଡିତ ନେହେରୁଙ୍କ ଅଭ୍ୟାସ ଥିଲା ତାଙ୍କୁ ପାର୍ଲ୍ୟାମେଣ୍ଟ ସଭ୍ୟମାନଙ୍କ ସହିତ ପରିଚିତ କରାଇବା । ମନ୍ତ୍ରୀ ହେଉଥିବା ବ୍ୟକ୍ତିଙ୍କ ଗୁଣଗାରିମା କଥା ପଣ୍ଡିତ ନେହେରୁ ଏହି ଉପଲକ୍ଷରେ କହିଥାଆନ୍ତି ।

ପଣ୍ଡିତ ନେହେରୁ ଉଠି ଠିଆହେଲେ ତାରକେଶ୍ୱରୀ ସିହ୍ନାଙ୍କୁ ପରିଚିତ କରାଇବା ପାଇଁ । ଉଠି ଠିଆହେଲେ ଫିରୋଜ ଗାନ୍ଧୀ Point of order ରେ । ସମସ୍ତେ କିଞ୍ଚିତ୍ ବିରକ୍ତ ହେଲେ । ଏପରି ଏକ ସମୟରେ କ'ଣ Point of order ଉଠାଯାଏ ?

ଫିରୋଜ ଗାନ୍ଧୀ କହିଲେ– Prime Minister is introducing a lady for cultural affairs. Last time he introduced a lady for external affairs. Earlier

he introduced another lady for Foreign Affairs. Can he not introduce a lady without affairs.

ହସରେ ପାର୍ଲ୍ୟାମେଣ୍ଟ ଫାଟି ପଡ଼ିଲା । ଅନନ୍ତ ଶୟନମ୍ ଆୟାଙ୍ଗାର ଖୁବ୍ ବୁଦ୍ଧିମାନ୍ ବ୍ୟକ୍ତି ଥିଲେ । ସେ କହିଲେ Sit down young man. Go back home and ask your wife. She will answer the question । ପୁଣି ହସର ରୋଳ । ପାର୍ଲ୍ୟାମେଣ୍ଟ ଚାଲିଲା ।

ହ୍ୟୁମର ବୁଝିବା କଠିନ । ଖୁବ୍ ସଟଲ (subtle) ହ୍ୟୁମର ବୁଝିହୁଏନା । ନ ବୁଝିପାରିଲେ ହ୍ୟୁମରର ରସ ଭଗ୍ନ ହୁଏ । କୁହାଯାଏ ଏ ପର୍ଯ୍ୟନ୍ତ ବିଭିନ୍ନ ଦେଶର ପାର୍ଲ୍ୟାମେଣ୍ଟରେ ଯେଉଁସବୁ ରସରସିଆ କଥା ହୋଇଛି ତା ମଧରେ ସବୁଠାରୁ ଉଚ୍ଚ ଦରର ହେଉଛି ପେରୁ ପାର୍ଲ୍ୟାମେଣ୍ଟରେ ବିତର୍କ । ଜଣେ ପାର୍ଲ୍ୟାମେଣ୍ଟ ସଭ୍ୟ ଖୁବ୍ ଜୋର୍‌ରେ ଗାଳି ଦେଉଥିଲେ ଆପଣା ବକ୍ତୃତାରେ । ତାଙ୍କୁ ଉକ୍ତ ଭାଷଣରେ ବାଧାଦେଇ ଅପର ପକ୍ଷରୁ ଜଣେ ସଭ୍ୟ ବାଚସ୍ପତିଙ୍କୁ ଲକ୍ଷ୍ୟକରି କହିଲେ Sir, I would like..... ଉକ୍ତ ବକ୍ତା ସେଥିରେ କର୍ଣ୍ଣପାତ ନ କରି ପୁଣି କହି ଚାଲିଲେ I have not finished my speech...... ଇମିତି ଦୁଇ ଚାରିଥର ବାଧା ଦେଲା ପରେ ବାଧ ହୋଇ ଉକ୍ତ ସଭ୍ୟ ନିଜର ଭାଷଣ ସମାପ୍ତି କଲେ । ଅପର ପକ୍ଷରେ ସଭ୍ୟ ବାଚସ୍ପତିଙ୍କୁ ପଚାରିଲେ Sir, has the hon'ble member now finished his speech ? ଅପର ପକ୍ଷରୁ ଉକ୍ତ ସଭ୍ୟ କହିଲେ Yes ମାନେ ହଁ ଭରିଲେ । ବିନୀତ ଭାବରେ ବାଧା ଦେଇଥିବା ପାର୍ଲ୍ୟାମେଣ୍ଟ ସଭ୍ୟ କହିଲେ ଯେ What I want to request you is to advise the Hon'ble member, to pull the flush.

ହ୍ୟୁମରର ଏକ ଖଣି ଥିଲେ ପଣ୍ଡିତ ଲକ୍ଷ୍ମୀନାରାୟଣ । କିନ୍ତୁ ମୋର ଯାହା ମନେପଡୁଛି ସେ ସେଇପରି କ୍ରୋଧୀ ମଧ ଥିଲେ । ତାଙ୍କର ଥିଲା Strong likes and dislikes । ଥରେ ଜଣେ ଲୋକକୁ ଅବିଶ୍ୱାସ କଲେ ସେ ଯାହା କରିବ ତାକୁ ସେ ଅବିଶ୍ୱାସ କରିବେ ନିଶ୍ଚିତ ଭାବରେ । ✓ବିଜୟ ପାଣିଙ୍କ ସହିତ ତାଙ୍କର ଭଲ ପଡୁ ନ ଥିଲା । ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ରଙ୍କର ସର୍ବଭାରତୀୟ ନେତାଙ୍କ ସହିତ ପରିଚିତି ଏବଂ ଆତ୍ମୀୟତା ଥିବାରୁ ତାଙ୍କୁ ଅନେକେ ଈର୍ଷା କରୁଥିଲେ ।

ସମ୍ବଲପୁରର ଅନ୍ୟତମ ପ୍ରବାଦପୁରୁଷ ପ୍ରହ୍ଲାଦ ରାୟ ଲାଠ । ସାଧାରଣତଃ ତାଙ୍କ ସମ୍ପ୍ରଦାୟର ବ୍ୟକ୍ତିମାନେ ପ୍ରତ୍ୟକ୍ଷ ରାଜନୀତିକୁ ଓହ୍ଲାନ୍ତି ନାହିଁ । ରାଜନୀତିକୁ ନିୟନ୍ତ୍ରିତ କରିବାକୁ ଇଚ୍ଛା କରନ୍ତି । କିନ୍ତୁ ତା'ର ଏକ ବ୍ୟତିକ୍ରମ ଥିଲେ ପ୍ରହ୍ଲାଦ ରାୟ ଲାଠ, ଯେପରି ବ୍ୟତିକ୍ରମ ଥିଲେ ରାମମନୋହର ଲୋହିଆ । ଲୋହିଆ ଜଣେ କଟ୍ଟର ସମାଜବାଦୀ । ଏକଦା ଷ୍ଟେଟ ପିପୁଲ୍‌ସ କନଫରେନ୍ସ ସଭାପତି ପଣ୍ଡିତ ନେହେରୁଙ୍କ ସେକ୍ରେଟେରୀ ଏବଂ ପରେ ତାଙ୍କର ପ୍ରବଳ ବିରୋଧୀ ଲୋହିଆ ସୋସାଲିଷ୍ଟ, ପୁଞ୍ଜିବାଦ ବିରୋଧୀ କିନ୍ତୁ ଭାରତର ସବୁ ମାରୱାଡ଼ି ବ୍ୟବସାୟୀମାନେ ତାଙ୍କୁ ଆପଣାର ବୋଲି ବିଚାର କରନ୍ତି । ସେ ଯାହା କରୁଚି କରୁ, ଆମ ଲୋକ ତ । ଉପରେ ବସିଛି । ଏଇଆ କହି ଅନେକ ତାଙ୍କୁ ସାହାଯ୍ୟ କରନ୍ତି । ଲୋହିଆ

ଜଣେ ପରମ୍ପରା ବିରୋଧୀ ବ୍ୟକ୍ତି । ବିବାହକୁ ସେ ଦାସତ୍ୱ ବା ଆଇନାନୁମୋଦିତ ବେଶ୍ୟାବୃତ୍ତି ବୋଲି ବିଚାର କରନ୍ତି । ମୋର ମନେପଡୁଛି ପାର୍ଲ୍ୟାମେଣ୍ଟର ସଭ୍ୟ ଥାଆନ୍ତି ଲୋହିଆ । ଜୋସେଫ ଷ୍ଟାଲିନ୍‌ଙ୍କ ଝିଅ ଶ୍ୱେତଲାନା ଜଣେ ଭାରତୀୟ କମ୍ୟୁନିଷ୍ଟ ବ୍ରଜେଶଙ୍କୁ ବିବାହ କରି ଭାରତ ପଳାଇ ଆସିଥାଏ । ତାକୁ ନେଇ ବିବାଦ ଉଠିଥାଏ ଭାରତ ପାର୍ଲ୍ୟାମେଣ୍ଟରେ । ତାଙ୍କର ପକ୍ଷ ସମର୍ଥନ କରି ଲୋହିଆ ସରକାରଙ୍କ ଉପରେ ତୀବ୍ର ବାକ୍ୟବାଣ ପ୍ରୟୋଗ କରୁଥା'ନ୍ତି ।

ଏତିକିବେଳେ ଜଣେ ମହିଳା ପାର୍ଲ୍ୟାମେଣ୍ଟ ସଭ୍ୟ (ତାରକେଶ୍ୱରୀ ସିହ୍ନା ବୋଲି ମନେପଡୁଛି) ଉଠି କହିଲେ ଯେ ବିଦେଶିନୀ ନାରୀର ଦିଲ୍‌ର ଧଡ଼କନୀ ବା ହୃତ୍‌କମ୍ପନ ଶୁଣିବା ପାଇଁ ଲୋହିଆ କାହିଁକି ଆଗ୍ରହୀ ? ଲୋହିଆ ଛାଡ଼ିବା ଲୋକ ନୁହନ୍ତି । ସେ ସାଂଗେ ସାଂଗେ ଉତ୍ତର ଦେଲେ, ''ମୁଁ ଭାରତୀୟ ନାରୀର ଦିଲ୍‌ର ଧଡ଼କନୀ ବା ହୃଦ୍‌କମ୍ପନ ଶୁଣିବା ପାଇଁ ପ୍ରସ୍ତୁତ, କିନ୍ତୁ ମାନ୍ୟବର ସଭ୍ୟା ମୋତେ ସେ ସୁଯୋଗ ଦେଲେ କେତେବେଳେ ?'' ପାର୍ଲ୍ୟାମେଣ୍ଟରେ ହସର ରୋଳ ।

ତରୁଣ ତରୁଣୀମାନଙ୍କ ଉପରେ ଲୋହିଆଙ୍କର ଅକଳନ୍ତି କରିସ୍ମା । ଲୋହିଆ ଆଦୌ ଡଗ୍‌ମାଟିକ୍ ନ ଥିଲେ କିନ୍ତୁ ପଣ୍ଡିତ ନେହେରୁଙ୍କ ପରିବାର ଉପରେ ଆକ୍ରମଣ ଯୋଗୁଁ ଯଦିଓ କିଛି ଲୋକ ଏହାକୁ ଉପଭୋଗ କରୁଥିଲେ ସତ୍ୟ କିନ୍ତୁ ସନ୍ତୁଷ୍ଟ ନ ଥିଲେ । ଲୋହିଆ କାହାକୁ spare କରନ୍ତି ନାହିଁ । କିନ୍ତୁ ଏହି ପ୍ରସେସ୍ ବା ଧାରାରେ ସେ ଏକୁଟିଆ ହୋଇଗଲେ ବି ସେଥିପାଇଁ ତାଙ୍କର ଖାତିର ନ ଥାଏ । ପ୍ରହ୍ଲାଦ ରାୟ ଲାଠଙ୍କ ସମ୍ବଲପୁର ଘର ଥିଲା ଅତିଥିଶାଳା । ଭାରତବର୍ଷର ସବୁ ବିଶିଷ୍ଟ ବ୍ୟକ୍ତି ତାଙ୍କର ଆତିଥ୍ୟ ଗ୍ରହଣ କରିଛନ୍ତି ।

ପରବର୍ତ୍ତୀ କାଳରେ ସେ କଟକର ବାଖରାବାଦରେ ହିଁ ରହିଗଲେ ଏବଂ ସେଇଠି ତାଙ୍କର ପରଲୋକ ହୋଇଗଲା ୨୦୦୧ ମସିହାରେ ।

ସମ୍ବଲପୁରର ଅନ୍ୟତମ ପ୍ରଥିତଯଶା ସ୍ୱାଧୀନତା ସଂଗ୍ରାମୀ ଦୟାନନ୍ଦ ଶତପଥୀଙ୍କ ସହିତ ପରିଚୟ ଘଟେ । ସେ ସେତେବେଳକୁ ପ୍ରବାଦପୁରୁଷ । ତାଙ୍କ ନିଜ ଘର ଗଞ୍ଜାମ ଜିଲ୍ଲା ଜଗନ୍ନାଥ ପ୍ରସାଦରେ । ତାଙ୍କ ବାପା ପୁରୋହିତ ହୋଇଯାଇଥିଲେ ବାମଣ୍ଡା ରାଜାଙ୍କର । ସେଇଟା ବୋଧହୁଏ ସାର୍ ବାସୁଦେବ ସୁଡଳ ଦେବଙ୍କର ରାଜୁତି ସମୟ । ଦେବଗଡ଼ କଳା ସଂସ୍କୃତିର ପୀଠ ପାଲଟିଥିଲା । ଓଡ଼ିଶାର ବହୁ କବି ଲେଖକ ରାଜଦରବାରରେ ସମ୍ମାନ ଲାଭ କରିଛନ୍ତି । ଦେବଗଡ଼ର ପ୍ରସିଦ୍ଧ ଜଳପ୍ରପାତ ଭୈରବ ରବରେ ଯେଉଁଠି ଗିରିବକ୍ଷ ଛାଡ଼ି ତଳକୁ ଲମ୍ଫ ପ୍ରଦାନ କରିଛି ସେଇଠି ସୂର୍ଯ୍ୟୋଦୟ ଏବଂ ସୂର୍ଯ୍ୟାସ୍ତ ସମୟରେ ରମଣୀୟ ଦୃଶ୍ୟ ଉପଭୋଗ କରିବା ପାଇଁ ତିଆରି ହୋଇଥିଲା ଦୁଇଟି ନିବାସ । ଏହି ଦୁଇଟି ଦେଖିବାର ଏବଂ ସେଠାରେ ରହିବାର ସୁଯୋଗ ପାଇଛି ୧୯୪୮ ମସିହା ଗଡ଼ଜାତ ମିଶ୍ରଣ ପରେ । ଏଗୁଡ଼ିକ ସରକାରୀ ବଙ୍ଗଳାରେ ପରିଣତ ହେଲା ଏବଂ ଫଳ ଯାହା ହୁଏ । ତା'ପରେ ଦେଖିଛି ଏଗୁଡ଼ିକର ଜୀର୍ଣ୍ଣଶୀର୍ଣ୍ଣ ଅବସ୍ଥା । ଉପରେ ଜଙ୍ଗଲ କଟିଗଲାଣି, ପ୍ରଧାନପାଟରେ ଆଉ ସେପରି

ପାଣି ଆସୁ ନାହିଁ । ଦିନେ ହୁଏତ ଶୁଖିଯିବ ! କିନ୍ତୁ କାହାରି ସେଥିପ୍ରତି ନିଘା ନାହିଁ କି ପୃଷ୍ଠପୋଷକତା ନାହିଁ ।

ରାଜବଂଶର ରାଜୁତି ଯାଇଛି । ରାଜା ଉଠନ୍ତି ସନ୍ଧ୍ୟାରେ । ତେଣୁ ସେହି ସନ୍ଧ୍ୟାକୁ ଘୋଷଣା କରାଗଲା ସକାଳ ବୋଲି । ରାଜ୍ୟରେ ସେଇ ରାଜୁତି ଚାଲିଲା । ରାତିଯାକ ଦରବାର ବସେ । ସକାଳୁ ସମସ୍ତେ ଶୋଇବାକୁ ଯାଆନ୍ତି । ରାଜାଙ୍କର ଅତ୍ୟାଚାରରେ ରାଜ୍ୟରେ ଉଦ୍‌ବେଳନ ଦେଖାଦିଏ । ରାଜାଙ୍କର ଗାଡ଼ି ଦେଖିଲେ ଝିଅବୋହୂମାନେ ରାସ୍ତାରୁ ଜଙ୍ଗଲକୁ ଦୌଡ଼ି ପଳାନ୍ତି । ତେଣିକି ବାଘ, ହାତୀ ବା ଭାଲୁ ହାବୁଡ଼ରେ ପଡ଼ନ୍ତୁ ପଛକେ । କାରଣ ରାଜାଙ୍କ ହାବୁଡ଼ରେ ପଡ଼ିଲେ ରକ୍ଷା ନାହିଁ । ତା'ର ସମ୍ମତି ବା ରୁଚିକୁ କେହି ପଚାରିବେ ନାହିଁ । ଧର୍ଷଣର ଶିକାର ହୋଇ ମୃତ୍ୟୁ ଘଟିଛି ବହୁ ନାରୀଙ୍କର ।

ରାଜ୍ୟରେ ବିଦ୍ରୋହ ଦେଖାଦେଇଛି । କିଏ ଏହାର ନାୟକ ? ଖୋଜା ଚାଲିଛି । ଧରାପଡ଼ିବା ମାନେ ମୃତ୍ୟୁ ସୁନିଶ୍ଚିତ ଘାତକର ହାତରେ । ବିଚାରର ପ୍ରଶ୍ନ ଉଠୁ ନାହିଁ । କିଏ ଏହାର ନେତା ରାଜାଙ୍କର ଲୋକ ଖୋଜୁଛନ୍ତି । ଶେଷରେ ଦେଖାଗଲା ଯେ ପୁରୋହିତଙ୍କ ପୁତ୍ର ହିଁ ଏହାର ନାୟକ । ଧର ତାକୁ । ସେ ସବୁଠି ବୁଲିଲା, ଗାଁରୁ ଗାଁକୁ, ପଲ୍ଲୀରୁ ପଲ୍ଲୀକୁ । କିନ୍ତୁ ଧରାପଡୁ ନାହିଁ । ହୁଲିଆ ଜାରି ହେଲା ତାଙ୍କୁ ଧରିବାପାଇଁ । ସେ ହେଉଛନ୍ତି ଦୟାନନ୍ଦ ଶତପଥୀ । ବାମଣ୍ଡା ଅଞ୍ଚଳରେ ସେ ଥିଲେ ପ୍ରବାଦ ପୁରୁଷ । ତାଙ୍କ ନାମରେ ବହୁ ଗଳ୍ପ ଜଡ଼ିତ ଅଛି ।

ସେ ସମ୍ବଲପୁରକୁ ପଳାଇଲେ । ଆଶ୍ରୟ ନେଲେ ପ୍ରହ୍ଲାଦରାୟ ଲାଠଙ୍କ ଘରେ । ସେଇଠାରୁ ପରିଚାଳନା କଲେ ଆନ୍ଦୋଳନ । ସମ୍ବଲପୁର ସହରରେ ସାଧାରଣତନ୍ତ୍ର ଦିବସ ପାଳନ ପାଇଁ ପ୍ରସ୍ତୁତି ଚାଲିଛି । ସମ୍ବଲପୁର ସହର ପାଲଟିଛି ସେନା ଶିବିର । ବାଲିବନ୍ଧାରେ ପତାକା ଉତ୍ତୋଳନ ହେବ ଏବଂ ସେ ପତାକା ବୁଲିବ ସମ୍ବଲପୁର ରାସ୍ତାରେ । କିଏ ସେ କରିବ ଦୁଃସାହସ । ଦାୟିତ୍ୱ ନେଲେ ଦୟାନନ୍ଦ ଶତପଥୀ । ବାଲିବନ୍ଧାରେ ପତାକା ଉଡ଼ିଲା । ପୁଲିସ ତାଙ୍କୁ ଧରିଲେ । ସେ ପିନ୍ଧିବା ଲୁଗାଟିକୁ ପୁଲିସକୁ ଦେଇସାରି ଦୌଡ଼ିଲେ ପତାକା ସହିତ ସମ୍ବଲପୁର ରାସ୍ତାରେ । ଏକ ସଂପୂର୍ଣ୍ଣ ଉଲଗ୍ନ ଯୁବକ ହାତରେ ଜାତୀୟ ପତାକାକୁ ଧରି ଦୌଡୁଛି । କଣ୍ଠରୁ ଶୁଭୁଛି ବନ୍ଦେ ମାତରଂର ମହିମ୍ନଃ ବାଣୀ । ଦୌଡୁଛନ୍ତି ପଛରେ ପୁଲିସ, ସାମରିକ ପୁଲିସ ।

ଦୟାନନ୍ଦବାବୁ ଦୋକାନଟିଏ କରିଛନ୍ତି ବଜାର ଉପରେ । ନାମକୁ ମାତ୍ର ଦୋକାନ । ଖଦଡ଼ ଲୁଗାର ଦୋକାନ । ଦୟାନନ୍ଦବାବୁ ସେଇଠି ତାଲିମ ଦିଅନ୍ତି ଯୁବକମାନଙ୍କୁ ସାମ୍ୟବାଦର ମହାମନ୍ତ୍ରରେ ।

ତୁମେ କହିକି ପାର ଆଜି ?
ପଡୁଛି କିଆଁ ଆମର ମେରୁ
ଲଳିତା ପରି ଭାଜି ?

ଅନନ୍ତ ପଟ୍ଟନାୟକଙ୍କ କବିତା ବହନକାରୀ ମୁକ୍ତିଯୁଦ୍ଧ ବିକ୍ରି କରନ୍ତି । ସେଇଟା ତାଙ୍କର ଗର୍ବ । ମୋର ମନେପଡୁଛି । ଥରେ ରାମକୃଷ୍ଣ ପତି (ତତ୍‌କାଳୀନ ଓଡ଼ିଶା କମ୍ୟୁନିଷ୍ଟ ପାର୍ଟିର ସେକ୍ରେଟେରୀ) ପଚାରିଲେ ଚଟ୍ଟଗ୍ରାମ ଅସ୍ତ୍ରାଗାର ଲୁଣ୍ଠନର ଅନ୍ୟତମ ସେନାପତି ଅନନ୍ତ ସିଂହଙ୍କୁ । ଆପଣ ବର୍ତ୍ତମାନ ପାର୍ଟିର କେଉଁ ଦାୟିତ୍ୱରେ ? ସେ ଗର୍ବର ସହିତ କହିଲେ ପାର୍ଟି ମୁଖପତ୍ର 'ସ୍ୱାଧୀନତା'କୁ ମୁଁ ନିଜେ ବିକ୍ରିକରେ ଦୈନିକ ଶହେ କପି ଏବଂ ଏହାର ବିକ୍ରିର ଆୟୋଜନ କରେ ।

କମ୍ୟୁନିଷ୍ଟ ପାର୍ଟିରେ ଯୋଗଦେବାର ପ୍ରାଥମିକ ତାଲିମ ହେଉଛି ପାର୍ଟିର ମୁଖପତ୍ର 'ମୁକ୍ତିଯୁଦ୍ଧ' ବିକ୍ରି କରିବା । ପୁଅଝିଅ ସମସ୍ତେ ବିକ୍ରି କରି ହକିଙ୍ଗ କରି କରି ଯାଆନ୍ତି ଚାନ୍ଦିନୀଚୌକ ଛକରୁ ରେଳବାଇ ଷ୍ଟେସନ ପର୍ଯ୍ୟନ୍ତ । ଆମ ସାଙ୍ଗରେ ଇମିତି ତ ୰ଉଦୟନାଥ ସୁବୁଦ୍ଧି (ପରେ ସଂଗୀତଜ୍ଞ), ପ୍ରହ୍ଲାଦ ସେଠୀ, ଶିବାଜି ପଟ୍ଟନାୟକ, ନବଘନ ଜେନା, ୰ଧୀରେନ୍ଦ୍ରନାଥ ବିଶ୍ୱାଳ (ପରେ ଅଭିନେତା ଏବଂ ପ୍ରଯୋଜକ) ୰ମୁରାରି ମୋହନ ଜେନା ଯାଆନ୍ତି । ଅନେକ ସମୟରେ ନନ୍ଦିନୀ ଶତପଥୀ (ସେତେବେଳେ ପାଣିଗ୍ରାହୀ) ନିରୁପମା ରଥ (ପରେ ଡାକ୍ତର) ୰ସାବିତ୍ରୀ ମିଶ୍ର ମଧ୍ୟ ଯାଆନ୍ତି କାଗଜ ବିକ୍ରି ଅଭିଯାନରେ । କଟକ ସହରରେ ସେତେବେଳେ ଯେଉଁ ଅବସ୍ଥା । ଏହି ଅଭିଯାନ ଏକ ରୋମାଞ୍ଚକାରୀ ଅଭିଯାନରେ ପରିଣତ ହୁଏ ଏବଂ ଅନେକ ଯୁବକ ଆମ ସହିତ ସାମିଲ ହୁଅନ୍ତି । ସେମାନଙ୍କୁ ପାର୍ଟିରେ ରଖିପାରିଲା ଭଳି ଶକ୍ତି ନ ଥାଏ । କ୍ୟାଡର ବିଲ୍‌ଡିଙ୍ଗ ଏବଂ କ୍ୟାଡର ମ୍ୟାନେଜମେଣ୍ଟ ଏକ କଠିନ ବ୍ୟାପାର ।

''ଟାଣିନିଏ ଊର୍ଦ୍ଧ୍ୱେ ଶତ ଭଗ୍ନ ମହାରଥୀ
ଯାରେ ଦେଖି ଜାଗେ ସ୍ନେହ ମମତା ପୀରତି
ସାଥୀ ଦୁର୍ବଳତା ଆଉ ଦୁଃଖର ଆକୃତି ଏଡ଼ିଦିଏ ଯିଏ
ଗମ୍ଭୀର ମୃତ୍ୟୁର ବୁକେ ସେଇହୁଏ ଅମୃତର ସାଥୀ ।''

୰ମନମୋହନ ମିଶ୍ରଙ୍କ ଏଇ କବିତା ମନେପଡ଼େ । କ୍ୟାଡ଼ର ମ୍ୟାନେଜମେଣ୍ଟ ଥିଲା । ବର୍ତ୍ତମାନ ନାହିଁ । କ୍ୟାଡ଼ର ପାର୍ଟିର ସଭ୍ୟ ସଂଖ୍ୟା କମ୍ ହେଲେ ମଧ୍ୟ ସେମାନଙ୍କର ଦକ୍ଷତା ଏବଂ ଜନ ଆକର୍ଷଣକାରୀ ଶକ୍ତି ପ୍ରଭୂତ । ମୋର ମନେପଡୁଛି । ୰ପର୍ଶୁରାମ ଦାସ (ଡାକ୍ତର ସବ୍ୟସାଚୀ ଦାସଙ୍କ ଦାଦା) ବି.ଏ. ପାସ୍ କରି କମ୍ୟୁନିଷ୍ଟ ପାର୍ଟିରେ ଯୋଗ ଦେଇଥାନ୍ତି । ସେ ଦିନେ ଏକ ବିଶାଳ ଖଡ଼ା ଏବଂ ଶାଗର ବୋଝକୁ ମୁଣ୍ଡରେ ବୋହି ଆସୁଛନ୍ତି ଛତ୍ରବଜାରରୁ ଚାନ୍ଦିନୀଚୌକ । ବାଟରେ କାଳିନ୍ଦୀଚରଣ ପାଣିଗ୍ରାହୀଙ୍କ ଘର 'ସ୍ୱପ୍ନପୁରୀ' । କାଳିନ୍ଦୀବାବୁ ଦାଣ୍ଡପିଣ୍ଡାରେ ଠିଆ ହୋଇଥିଲେ । ପର୍ଶୁଦା (ପର୍ଶୁରାମ ଦାସ)ଙ୍କୁ ଦେଖି ତାଙ୍କର ଆଖିରୁ ଲୁହ ବୋହିଚାଲିଲା । ପର୍ଶୁଦା ବହୁ ବିଳମ୍ବରେ ବିବାହ କରିଥିଲା । ବଡ଼ କଷ୍ଟରେ ଶେଷ ଜୀବନ ତା'ର କଟିଥିଲା । ଏଭଳି ତ୍ୟାଗର ଜୀବନ କ୍ୱଚିତ୍ ଦେଖିଛି ମୁଁ । ସେମାନଙ୍କର ଆଦର୍ଶ ଏବଂ ତ୍ୟାଗ ହିଁ ଉଦ୍‌ବୁଦ୍ଧ କରିଥିଲା ଯୁବକ ଯୁବତୀମାନଙ୍କୁ ।

ଦୟାନନ୍ଦ ଶତପଥୀଙ୍କ ପୁଅ ୰ନୀଳମଣି ଶତପଥୀ ମୋର ସହପାଠୀ । ତେଣୁ ଦୟାନନ୍ଦବାବୁଙ୍କ ସହିତ ପରିଚିତି ବଢ଼ିଥିଲା । ସେ ରାଜନୀତିକ ଦର୍ଶନ କଥା ଖୁବ୍ ବେଶି

କହନ୍ତି ନାହିଁ । କହନ୍ତି ଭଲ ମଣିଷ ହୁଅ । ଦେଶ ପାଇଁ କିଛି ତ୍ୟାଗ କର । ପରବର୍ତ୍ତୀ କାଳରେ ଆଚାର୍ଯ୍ୟ ହରିହର ଦାସ ଏବଂ ବାଳକୃଷ୍ଣ ପଟ୍ଟନାୟକଙ୍କଠାରୁ ମୁଁ ଏଇପରି ବାଣୀ ଶୁଣିଚି । ବାଳକୃଷ୍ଣବାବୁଙ୍କର ଘର ଆଠଗଡ଼ । ସେ ଯାହାକୁ ଦେଖୁଥିଲେ କହୁଥିଲେ 'ଦେଶ ପାଇଁ ପାଞ୍ଚମିନିଟ୍' । ଏଇ ନାମରେ ହିଁ ସେ ପରିଚିତ ଥିଲେ । ପୁତ୍ରମାନେ, ଜାମାତାମାନେ ସମସ୍ତେ ଉଚ୍ଚ ପ୍ରତିଷ୍ଠିତ କିନ୍ତୁ ବାଳକୃଷ୍ଣ ଥିଲେ ସେଇପରି ସରଳ, ଅମାୟିକ ।

ଲକ୍ଷ୍ମଣ ପୂଝାରୀ । ସେ ବି ଆଉ ନାହାନ୍ତି । ମୋର ଏ ପର୍ଯ୍ୟନ୍ତ ମନେଅଛି ପଟ୍ଟନାୟକପଡ଼ା ହାଇସ୍କୁଲ ଆଗରେ ତାଙ୍କର ଏକ ଚା'-ଜଳଖିଆ ଦୋକାନ । ସେତେବେଳେ ଚା'ର ପ୍ରଚଳନ ଗଂଜାମ, କୋରାପୁଟ ଜିଲ୍ଲା ଛଡ଼ା ଅନ୍ୟତ୍ର ଏତେ ନ ଥିଲା ।

'... ଚା' ଅର୍ଡ଼ର ଦେଇ ମୋର ଜଣେ ବନ୍ଧୁ ଆମକୁ ଅବାକ୍ କରନ୍ତି । ସେ ପାଲଟି ଯାଆନ୍ତି ଆମର ଚା' ସର୍ଦ୍ଦାର । ପିଲାଙ୍କୁ ଖୁଆନ୍ତି ଏବଂ ବେଶି ସମୟ ସେମାନଙ୍କଠାରୁ ଚାନ୍ଦାରେ ଚଳିଯାଆନ୍ତି ।

ଲକ୍ଷ୍ମଣ ପୂଝାରୀଙ୍କ ଚା'-ଜଳଖିଆ ଦୋକାନ ଏକ ରାଜନୀତିକ ଖଟି । ସେଇଠି ମୁଁ ପ୍ରଥମ କରି ଭେଟିଥିଲି ଦୁର୍ଗା ନାୟକଙ୍କୁ । (ପରେ ଅଧ୍ୟାପକ ଏବଂ ଆହୁରି ପରବର୍ତ୍ତୀ କାଳରେ ସମ୍ବଲପୁର ଜିଲ୍ଲା କମ୍ୟୁନିଷ୍ଟ ପାର୍ଟିର ସଂପାଦକ) । ସେ ସେତେବେଳେ ଜଣେ ପ୍ରତିଷ୍ଠିତ ଛାତ୍ର ନେତା । ପରବର୍ତ୍ତୀ କାଳରେ ତାଙ୍କ ସାଙ୍ଗରେ ମୋର ଆଉ ଭେଟାଭେଟି ହୋଇ ନାହିଁ । କିନ୍ତୁ ସାମ୍ୟବାଦ ସଂପର୍କରେ ଯେଉଁମାନେ ମୋତେ ଆଦ୍ୟପ୍ରେରଣା ଦେଇଥିଲେ ସେମାନଙ୍କ ମଧ୍ୟରେ ସେ ଅନ୍ୟତମ ।

ସମ୍ବଲପୁରରେ ଥିଲାବେଳେ ହିଁ କଲିକତାରେ ହିନ୍ଦୁ-ମୁସଲମାନ ଦଂଗା ହୋଇଥିଲା । ହଜାର ହଜାର ବଙ୍ଗବାସୀ କଲିକତା ଛାଡ଼ି ସମ୍ବଲପୁରରେ ପହଞ୍ଚିଥିଲେ । ସେମାନେ କହୁଥିଲେ ଲୋମହର୍ଷୀ କାହାଣୀ, କିପରି ବହୁ ଦିନର ଚାକର ବା ବହୁଦିନର ପଡ଼ୋଶୀଙ୍କର ଅବିଶ୍ୱାସର ଶିକାର ହୋଇଛନ୍ତି ଲୋକେ । ସେ ଭିତରୁ କେତେ ସତ୍ୟ, କେତେ ମନଗଢ଼ା ଗଳ୍ପ କହିବା କଠିନ କିନ୍ତୁ ଲୋକ ମୁଖରେ ସେସବୁ ଗଳ୍ପ ଅତିରଂଜିତ ହୋଇ ବିଚ୍ଛୁରିତ ହୋଇଯାଇଥିଲା ଦ୍ରୁତ ଗତିରେ ।

ଆମେ ସେ ସମୟରେ ରେଙ୍ଗାଲିରେ ଥାଉଁ । ସେତେବେଳେ ସେଇଟା କେନ୍ଦୁପତ୍ର ଏବଂ ତଲେଇ କଣ୍ଟ୍ରାକ୍ଟରଙ୍କ ପେଣ୍ଠ । ସେମାନଙ୍କ ମଧ୍ୟରେ ଥାଆନ୍ତି କିଛି ମୁସଲମାନ (ଯେଉଁମାନଙ୍କର ମାଲିକ ହେଉଛନ୍ତି ହାଜୀ ଲତିଫ ଅବଦୁଲ୍ଲା) ଆଉ କେତେକ ଥାଆନ୍ତି ହିନ୍ଦୁ (ଯେଉଁମାନଙ୍କର ମାଲିକ ହେଉଛନ୍ତି ଶିଓ ମଂଗଲ ଅଗସ୍ତି) । ମୋର ଯେତିକି ମନେପଡୁଛି ସେ ଦୁହେଁ ଯଥାକ୍ରମେ ମୁସଲିମ୍ ଲିଗ୍ ଓ ହିନ୍ଦୁ ମହାସଭାର କର୍ମକର୍ତ୍ତା ମଧ୍ୟ ଥିଲେ ।

ଏହି ଲେଖା ଲେଖିଲାବେଳକୁ ଗୁଜରାଟରେ ସାମ୍ପ୍ରଦାୟିକ ଦଂଗା ଗୁରୁତର ଆକାର ଧାରଣ କରିଛି । ଏକ ରେଳବାଇ ଷ୍ଟେସନରେ ଗାଡ଼ି ଅଟକାଇ ନିରୀହ ସ୍ତ୍ରୀ ଓ ପିଲାଙ୍କୁ ପୋଡ଼ିଦେବା ଭଳି ନୃଶଂସତା ମଧ୍ୟ ଏଇ ଯୁଗରେ ରହିଛି ଏହା ଭାବିଲେ ମସ୍ତକ ନଇଁଯାଏ

ଘୃଣାରେ । କିନ୍ତୁ ତା' ପରେ ସତେ ଯେପରି ଏହି ଘଟଣାର ବଦଲାନେବା ପାଇଁ ଯେଉଁ ଗଣହତ୍ୟା ରାଜ୍ୟ ସରକାରଙ୍କର ସହଯୋଗରେ ଜାଣତରେ ଘଟିଗଲା ତାହା ମଣିଷକୁ ନେଇଗଲା ବର୍ବର ଯୁଗକୁ । ଟ୍ରେନରେ ଯାତ୍ରୀମାନଙ୍କୁ ପୋଡ଼ିଦେବା ଏକ ଆକସ୍ମିକ ବା ଉଦ୍ଦେଶ୍ୟମୂଳକ ଘଟଣା, ତାହା କହିବା କଠିନ । କିନ୍ତୁ ପରବର୍ତ୍ତୀ ହତ୍ୟାକୁ ରାଜ୍ୟ ସରକାର ନିଶ୍ଚିତ ଭାବରେ ପ୍ରୋତ୍ସାହନ ଦେଇଛନ୍ତି । ଦଙ୍ଗା ହେଲାବେଳେ ପୁଲିସ ଅନେଇଛି ଅନ୍ୟ ଦିଗକୁ ଏଥିରେ କୌଣସି ସଂଦେହ ନାହିଁ ।

ରାଜ୍ୟ ସରକାର ଏହାକୁ ସ୍ୱାଭାବିକ ପ୍ରତିକ୍ରିୟା ବୋଲି ଘୋଷଣା କରି ଏହି ନାରକୀୟ ଘଟଣାକୁ ସମର୍ଥନ କରିଛନ୍ତି । ଇତିହାସ ପୃଷ୍ଠାରେ ଏଭଳି ନାରକୀୟ ରାଷ୍ଟ୍ରୀୟ ହତ୍ୟା ଆଫ୍ରିକାର କିଛି ଦେଶରେ ଦେଖାଦେଇଥିଲା ।

ଏଇଭଳି ପରିସ୍ଥିତି ଉପୁଜିଥିଲା ସେତେବେଳେ ମଧ୍ୟ କିନ୍ତୁ ଲୋକଙ୍କ ଭିତରେ ସଚେତନତା ଏବଂ ଭ୍ରାତୃତ୍ୱ ଥିଲା ମଧ୍ୟ ସେଇପରି ।

ମୋ ବାପା ଥାଆନ୍ତି, ଫରେଷ୍ଟ ଅଫିସର । ଦିନେ ଜଣେ କେନ୍ଦୁପତ୍ର କଣ୍ଟ୍ରାକ୍ଟର ବାପାଙ୍କୁ ଆସି କହିଲା ଯେ ଆପଣ ହିନ୍ଦୁ, ତେଣୁ ଆପଣ ଆମକୁ ସମର୍ଥନ କରିବା ଉଚିତ, କରିବେ ନାଇଁ ? ବାପା ତାକୁ ପିଟି ପିଟି ବିଦା କରି ଦେଇଥିଲେ ହତାରୁ । ସମ୍ବଲପୁରରେ ମୁସଲମାନମାନଙ୍କ ସଂଖ୍ୟା ବେଶ୍ । ପରବର୍ତ୍ତୀ କାଳରେ ଜଣେ ଦୁଇଜଣ ପାକିସ୍ତାନ ଚାଲିଯାଇଥିଲେ ମଧ୍ୟ । କିନ୍ତୁ ସାମ୍ପ୍ରଦାୟିକ ଉତ୍ତେଜନାକୁ କେହି ବୃଦ୍ଧି କରିପାରି ନାହାନ୍ତି ବିସ୍ଫୋରକ ସ୍ତରକୁ । ରେଙ୍ଗାଲିର ଦୁର୍ଗାପୂଜା ଉତ୍ସବରେ ଜଣେ ମୁସଲମାନ ମଧ୍ୟ କର୍ମକର୍ତ୍ତା ହୋଇଛନ୍ତି ।

ଏବେ ଗୁଜରାଟ ଦଙ୍ଗାର ପ୍ରକୃତ ଚରିତ୍ର ଫୁଟି ବାହାରିଛି । ପ୍ରଚାରପତ୍ର ବଣ୍ଟା ଚାଲିଛି ଯେ ଆମେ ହିନ୍ଦୁମାନେ ସେମାନଙ୍କର ଦୋକାନରେ ଖାଇବା ନାହିଁ, ହୋଟେଲରେ ରହିବା ନାଇଁ, ସେମାନଙ୍କର ଦୋକାନରୁ ଜିନିଷ କିଣିବା ନାଇଁ ଇତ୍ୟାଦି । କହିବା ବାହୁଲ୍ୟ ଯେ ଗୁଜରାଟ ରାଜ୍ୟରେ ମୁସଲମାନମାନଙ୍କ ଭିତରେ ହିନ୍ଦୁମାନଙ୍କ ପରି ଛୋଟ ଦୋକାନୀଠାରୁ ଆରମ୍ଭ କରି ହୋଟେଲ ମାଲିକ ପର୍ଯ୍ୟନ୍ତ ଅଛନ୍ତି ଏବଂ ପ୍ରଚାରପତ୍ରର ଉଦ୍ଦେଶ୍ୟ ସୁସ୍ପଷ୍ଟ । କିନ୍ତୁ ଯାହା ଘଟିଗଲା ଗୁଜରାଟରେ ତାହା ସୁପରିକଳ୍ପିତ । ଏକ ଆଳ ଖୋଜା ଯାଉଥିଲା ଏହା କରିବା ପାଇଁ । ବ୍ୟବସାୟିକ ସ୍ୱାର୍ଥ ରହିଛି ମୂଳରେ । ସାବରମତୀ ନଦୀ କୂଳରେ ଥିବା ହଜାର ହଜାର କୁଡ଼ିଆକୁ ଭାଙ୍ଗିଦେଲେ, ସେଠାକାର ଲୋକଙ୍କୁ ଭଗାଇଦେଲେ ସେଠାରେ ବିଲ୍ଡରମାନେ ବହୁତଳ ପ୍ରାସାଦ କରିବେ । ସଂଖ୍ୟାଲଘୁମାନଙ୍କର ବ୍ୟବସାୟ ନଷ୍ଟହେଲେ ଆପଣାର ବ୍ୟବସାୟ ଚାଲିବ, ଏଇ ହେଉଛି ଉଦ୍ଦେଶ୍ୟ । ତାହାରି ଭିତରେ ସେହି ତିକ୍ତ ଅଂଧକାର ଭିତରେ ମଧ୍ୟ ଦେଖାଦେଇଛି ଆଶାର ପ୍ରଦୀପ । ହିନ୍ଦୁମାନେ ଆଶ୍ରୟ ଦେଇଛନ୍ତି ମୁସଲମାନମାନଙ୍କୁ, ମୁସଲମାନମାନେ ଆଶ୍ରୟ ଦେଇଛନ୍ତି ହିନ୍ଦୁଙ୍କୁ ।

ଗୁଣ୍ଡା, ତସ୍କର, ଲୁଣ୍ଠନକାରୀଙ୍କର ଧର୍ମ ନାହିଁ । ତାହାର ଏକମାତ୍ର ଧର୍ମ ହେଉଛି ଗୁଣ୍ଡାଗିରି, ଚୋରି, ଲୁଣ୍ଠନ । ଏଇକଥା ଏବେ କଲିକତାରେ କହିଛନ୍ତି ଗୁଜୁରାଟରୁ ଆସିଥିବା

ଜଣେ ମୁସଲମାନ ଦର୍ଜି । ସେ କହିଛନ୍ତି, ସମସ୍ତେ ବଦମାସ ନୁହନ୍ତି । ସବୁ ମଣିଷ ପଶୁ ପାଲଟିଯାଇ ନାହାନ୍ତି । ଅନେକଙ୍କ ଭିତରେ ମନୁଷ୍ୟତ୍ୱ ରହିଛି, ଯାହା ଧର୍ମର ନିଗଡ଼କୁ ଭାଙ୍ଗିଦେଇ ତିଷ୍ଠି ରହିଛି ।

କଟକର ସାମ୍ପ୍ରଦାୟିକ ଦଙ୍ଗାକୁ ସେଇଯୋଗୁଁ ମନ୍ଦିରମାର୍କା ଏବଂ ତାରାମାର୍କା ବିଡ଼ିର ସଂଘର୍ଷ ବୋଲି କୁହାଯାଏ । ଗୁଜରାଟରେ ସେଇ ପର୍ବ ଚାଲିଛି । ଏହା ସତ୍ତ୍ୱେ ମଣିଷ ଭିତରେ ମାନବିକତା ଲୋପ ପାଇ ନାହିଁ । ବହୁ ସ୍ଥାନରେ ହିନ୍ଦୁ ମୁସଲିମ ଏକାଠି ପରସ୍ପରକୁ ରକ୍ଷା କରିଛନ୍ତି ଆକ୍ରମଣକାରୀ ବିରୋଧରେ, ଅନେକ ସମୟରେ ନିଜର ଜୀବନକୁ ବିପନ୍ନ କରି ।

ଠିକ୍ ସେଇପରି ସେ ଦିନ ମଧ ରେଙ୍ଗାଲୀରେ ସେଇ ନାଟକ ଚାଲିଥିଲା । କେନ୍ଦୁପତ୍ର ବ୍ୟବସାୟୀଙ୍କ ମଧରେ ବିବାଦ, କାଠ କଣ୍ଟ୍ରାକ୍ଟରମାନଙ୍କ ମଧରେ ବିବାଦ, ତଳେଇ ବେପାରୀଙ୍କ ମଧରେ ବିବାଦକୁ ସାମ୍ପ୍ରଦାୟିକ ରୂପଦେବା ପାଇଁ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀ ସର୍ବଦା ଆଗ୍ରହୀ ।

ମୁସଲମାନ ପଡ଼ୋଶୀ ଥିବା ସତ୍ତ୍ୱେ ଆମେ କେବେ ଆତଙ୍କିତ ହୋଇ ନାହୁଁ । ବାପା ତାହା କରିବାକୁ ଦେଇ ନାହାନ୍ତି ଯଦିଓ ସେ ହିନ୍ଦୁ ଥିଲେ । ଜନ୍ମାଷ୍ଟମୀ, ଦୁର୍ଗାପୂଜା ପ୍ରଭୃତି ପାଳନ କରୁଥିଲେ । ଧାର୍ମିକ ସହନଶୀଳତା ମଧ ଥିଲା ବେଶ୍ । ଏହା ଆମ୍ଭମାନଙ୍କୁ ଗଭୀର ପ୍ରେରଣା ଦେଇଛି ଭବିଷ୍ୟତ୍‌ରେ ।

ବାପା ବଞ୍ଚିଥିବା ପର୍ଯ୍ୟନ୍ତ କଟକରେ ହିନ୍ଦୁ-ମୁସଲମାନ ଦଂଗା ବେଳେ ବା ଓଡ଼ିଆ ବଂଗାଳୀ ଗଣ୍ଡଗୋଳ ବେଳେ ଆମେ ବିପନ୍ନ ବ୍ୟକ୍ତିମାନଙ୍କୁ ନିଜ ଘରେ ଆଶ୍ରୟ ଦେବା ତାଙ୍କର ସମର୍ଥନ ଲାଭ କରିଛି ।

୧୯୪୩ ମସିହା । 'ଚେତାବନୀ' ନାମକ ଏକ ପୁସ୍ତକ ପ୍ରଥମେ ବଙ୍ଗଳା ଭାଷାରେ ଏବଂ ପରେ ଅନୂଦିତ ହୋଇ ବିଭିନ୍ନ ଭାଷାରେ ପ୍ରକାଶିତ ହେଲା । ବହିର ପ୍ରକାଶକ ଓ ଲେଖକ କିଏ ଥିଲେ କି ନାହିଁ ମୋର ମନେ ନାହିଁ । କିନ୍ତୁ ପୁସ୍ତକଟି ଚୋରାରେ ବିକ୍ରୟ ହେଉଥିଲା । ବହିଦୋକାନମାନଙ୍କରେ ମିଳୁ ନ ଥିଲା ।

ସେଥିରେ ଲେଖାଥିଲା ଯେ ଅମୁକ ଦିନ ସପ୍ତଗ୍ରହ କୂଟ ହେବ । ପ୍ରବଳ ବାତ୍ୟା ବହିବ ଏବଂ ବୃଷ୍ଟି ହେବ । ସେ ଦିନ ମଧ ପ୍ରଳୟ ହୋଇ ସୃଷ୍ଟି ଲୋପ ପାଇଯିବ । କେତେକ ବିଶିଷ୍ଟ 'ସାଧକ' ବା ସେଇଭଳି ବ୍ୟକ୍ତି ଏହାକୁ ସମର୍ଥନ କରୁଥିଲେ ଏବଂ କେତେକ ମଧ ଆଶ୍ୱାସନା ଦେଉଥିଲେ ଯେ ଯେଉଁମାନେ ସେଇଦିନ ଉକ୍ତ ବାବା ବା ମା'ଙ୍କ ପାଖରେ ରହିବେ, ସେଇମାନେ ହିଁ ବଂଚିଯିବେ । ଅନ୍ୟମାନେ ତ ଯିବେ ପ୍ରଳୟ ସାଙ୍ଗରେ ।

ଏଇପରି ଜଣେ ମା'ଥିଲେ ବାରାଣସୀରେ । ଓଡ଼ିଶାରେ ତାଙ୍କର ବହୁତ ଶିଷ୍ୟ ଥିଲେ । ସେମାନଙ୍କ ମଧରେ ମୋ ବଡ଼ବାପା ଜଣେ । ସେ ଜଣେ ବିଶିଷ୍ଟ ଅଫିସର ଥିଲେ । ହଠାତ୍ ଦିନେ ସେ ବାହାରିଲେ ବାରାଣସୀ ଏବଂ ସମସ୍ତଙ୍କୁ କହିଲେ ଯେ ଆଉ ଦେଖାହେବ ନାହିଁ । କାରଣ ସେ ମା'ଙ୍କ ପାଖରେ ରହିବେ । ତେଣୁ ବଂଚିଯିବେ । ଅନ୍ୟମାନେ ତ ଯିବେ ପ୍ରଳୟର ଗର୍ଭକୁ । ତାଙ୍କର ଜଣେ ସହକର୍ମୀ ଥିଲେ ସେ କହିଲେ-''ଆପଣ ଯାଉଛନ୍ତି, ଆଉ ତ

ଦେଖାହେବ ନାହିଁ । ତେବେ ଆପଣ ଆପଣଙ୍କର କଟକ ଘରଟା ମୋ ନାମରେ ଲେଖିଦେଇ ଯାଆନ୍ତୁ । ମରିଗଲେ ତ ଗଲି, ଯଦି ବଂଚିଗଲି ତା' ହେଲେ ଘରଟା ପାଇଯିବ ।''

ପ୍ରଳୟ ହେଲା ନାହିଁ ।

ସେ ଦିନ ସପ୍ତ ଗ୍ରହକୁଟ ଥିଲା । ତା' ପୂର୍ବରୁ ବର୍ଷା ଲାଗି ରହିଥିଲା । ଲୋକେ ଆତଙ୍କିତ ହୋଇ ପଡ଼ିଥିଲେ । ଭୋଗରାଗ ଠାକୁର ଅର୍ଚ୍ଚନା ସବୁ ଚାଲିଥିଲା । ଆମେ ଦି' ଭାଇ ସେ ଦିନ ଥିଲୁ ଝାରସୁଗୁଡ଼ାରେ, ରେଳଷ୍ଟେସନ ପାଖରେ । ଗାଡ଼ିସବୁ ବନ୍ଦ ହୋଇଥିଲା କି ନାହିଁ ମନେପଡୁ ନାହିଁ । କିନ୍ତୁ ଦୋକାନ ବଜାର ସବୁ ବନ୍ଦ ଥିଲା । ଯୁଦ୍ଧ ସମୟ । ଇମିତି ତ ରେଳଗାଡ଼ି ଆସେ ନାହିଁ । ଗାଡ଼ି ପାଇଁ ସିଗ୍‌ନାଲ ଦେଲା ପରେ ମିଲିଟାରୀ ସ୍ପେଶାଲ ଆସେ । ସୈନ୍ୟମାନେ, ପ୍ରାୟ ନିଗ୍ରୋ ସୈନ୍ୟମାନେ ଓହ୍ଲାନ୍ତି ଝାରସୁଗୁଡ଼ା ଷ୍ଟେସନରେ । ସହରଯାକ ଖେଦିଯାନ୍ତି । ସେତେବେଳେ ଝାରସୁଗୁଡ଼ା ସହରରେ ରାସ୍ତାକଡ଼ରେ ପାଇପ୍‌ଲାଇନ୍ ସବୁ ଥାଏ । ସେମାନେ ଶହ ଶହ ସଂଖ୍ୟାରେ ଉଲଗ୍ନ ହୋଇ ସେଇଠି ଗାଧୁଆ ପାଧୁଆ କରନ୍ତି । ତାଟିକବାଟ ସବୁ ପଡ଼ିଯାଏ । କିଏ ବାହାରକୁ ବାହାରିବ ?

ଯୁଦ୍ଧ ଅନେକ ଜନରବ ସୃଷ୍ଟି କରିଥାଏ । ଆଗରୁ ଲେଖିଚି ଯେ ଯୁଦ୍ଧ ସମୟରେ ଓଡ଼ିଶାର ରାଜଧାନୀ ଉଠିଗଲା ସମ୍ବଲପୁରକୁ । ରାଜଧାନୀ ଉଠିବାରେ ଏହା ଏକମାତ୍ର ଉଦାହରଣ । ଆଗରୁ ତ ଚଷାଖଣ୍ଡଠାରେ (ବାଲେଶ୍ୱରରେ) ସନ୍ତ୍ରାସବାଦୀମାନଙ୍କ ସହିତ ସଂଘର୍ଷ ଘଟିଯାଇଥାଏ । ଜର୍ମାନ ଯୁଦ୍ଧ ଜାହାଜମାନେ ପୂର୍ବ ଉପକୂଳ ଦେଇ ବ୍ରିଟିଶ୍‌ମାନଙ୍କ ବିରୋଧରେ ଅସ୍ତ୍ର ପଠାଇବେ ଏଇପରି ଏକ ପରିକଳ୍ପନା ଥିଲା । ତା'ପରେ କୁଜଙ୍ଗ ବୋମାମାଡ଼ । ଏହା ପରେ ବ୍ରିଟିଶ୍ ସରକାର ଅନୁଭବ କଲେ ଯେ ପୂର୍ବ ଉପକୂଳ ସୁରକ୍ଷିତ ନୁହେଁ । ଓଡ଼ିଶାରେ ଏକ ମିଳିତ ମନ୍ତ୍ରିମଣ୍ଡଳର ଗଠନ ହୋଇଥାଏ । ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି, ଶ୍ରୀ ଗୋଦାବରୀଶ ମିଶ୍ର ଏବଂ ଅବଦୁଲ ଶୋଭନ ଖାଁକୁ ନେଇ ମନ୍ତ୍ରିମଣ୍ଡଳ ଗଠିତ ହୋଇଥାଏ । ନୀଳକଣ୍ଠ ଦାସ, ଯଦୁମଣି ମଙ୍ଗରାଜ ପ୍ରଭୃତି ମନ୍ତ୍ରିମଣ୍ଡଳରେ ଯୋଗଦାନ କରି ନ ଥିଲେହେଁ ଶାସକ ଦଳର କାର୍ପଟଦାର ଥିଲେ । କୁଜଙ୍ଗର ଗାନ୍ଧୀ ନାମରେ ପରିଚିତ ନାରାୟଣ ବୀରବର ସାମନ୍ତ ମଧ୍ୟ ୧୯୪୨ ଆନ୍ଦୋଳନରେ ଯୋଗଦେଇ ନ ଥିଲେ । କୁହାଯାଉଥିଲା ଯେ ସେମାନେ ସୁଭାଷ ଚନ୍ଦ୍ର ବୋଷଙ୍କ ସହିତ ଯୋଗାଯୋଗ ସ୍ଥାପନ କରି ୧୯୪୨ ମସିହା ଭାରତଛାଡ଼ ଆନ୍ଦୋଳନରେ ଯୋଗଦେଇ ନ ଥିଲେ ଏବଂ ସୁଭାଷ ବୋଷ ଭାରତର ଓଡ଼ିଶା ଉପକୂଳରେ ପହଞ୍ଚିଲେ ତାଙ୍କୁ ସାହାଯ୍ୟ କରିବା ସକାଶେ ଏକ ବିଧିବଦ୍ଧ ସରକାର ପ୍ରସ୍ତୁତ ରହିବା ସେମାନଙ୍କର ଯୋଜନା ଥିଲା ବୋଲି କୁହାଯାଏ । ଏହାର ଐତିହାସିକ ପ୍ରମାଣ କିଛି ନାହିଁ । ମୁଁ ଦି' ଚାରିଥର ନାରାୟଣ ବୀରବର ସାମନ୍ତଙ୍କୁ ଏ ବିଷୟରେ ପଚାରିଥିଲି । ସେ କିଛି ନ କହି କେବଳ ହସି ଦିଅନ୍ତି । ତେବେ ତାଙ୍କର ନିଜର ଅଭିଜ୍ଞତା ସ୍ୱତନ୍ତ୍ର । କଂଗ୍ରେସ ଭିତରେ କରଣ-ବ୍ରାହ୍ମଣ ଲଢ଼େଇରେ ସେ ଶିକାର ନ ହୋଇ ବିହାର-ଓଡ଼ିଶା ଲେଜିସ୍‌ଲେଟିଭ୍ କାଉନସିଲ ପାଇଁ ପ୍ରାର୍ଥିତ୍ୱରୁ ଆପଣାର ଇଚ୍ଛାରେ ଓହରି ଯାଇଥିଲେ । କିନ୍ତୁ ସେ ତ ୧୯୩୬

ମସିହା ପୂର୍ବର କଥା । ଏବେ କୁନିଭାଇନା (ବିଧୁଭୂଷଣ ମିଶ୍ର)ଙ୍କୁ ସେ କଥା ପଚାରୁଥିଲି । ସେ ନିଜେ ୧୯୪୨ ଭାରତଛାଡ଼ ଆନ୍ଦୋଳନରେ ବ୍ରହ୍ମପୁର ଜେଲରେ ବନ୍ଦୀ ଥିଲେ । ସେ କହିଲେ ଯେ କିଛି ପରିମାଣରେ ଯୋଗସୂତ୍ର ନିଶ୍ଚୟ ଥିଲା ସେମାନଙ୍କର ସୁଭାଷବୋଷଙ୍କ ସହିତ । ବିଶେଷତଃ ପଣ୍ଡିତ ନୀଳକଣ୍ଠ ଦାସଙ୍କ ସହିତ । କିନ୍ତୁ କେତେ ଥିଲା ତାହା କହିହେବ ନାହିଁ ।

ଏ କଥା କିନ୍ତୁ ସତ୍ୟ ଯେ ସତ୍ୟବାଦୀ ଗ୍ରୁପ ବିରୋଧରେ ତୀବ୍ର ବିଦ୍ରୋହ ଦେଖାଦେଇଥିଲା । ଗୋପବନ୍ଧୁ ଦାସ ଆଉ ନ ଥିଲେ । ସତ୍ୟବାଦୀ ଗ୍ରୁପ ରକ୍ଷଣଶୀଳ, ଏଇଥିଲା ଯୁବଗୋଷ୍ଠୀର ଡାକରା । ଏଇ ସମୟରେ ସେମାନେ ଯୁଦ୍ଧକୁ ସମର୍ଥନ କରିବା ପାଇଁ ଜାତୀୟ ଯୁଦ୍ଧ ସାମ୍ମୁଖ୍ୟ ଗଠନ କଲେ । ଫ୍ରଣ୍ଟ (Front) ନାମକ ଇଂରାଜୀ ଶବ୍ଦର ଓଡ଼ିଆ ପରିଭାଷା ଥିଲା ସାମ୍ମୁଖ୍ୟ । ଆଗରୁ ଏପରି ଶବ୍ଦ ବ୍ୟବହୃତ ହୋଇ ନ ଥିଲା । ନୀଳକଣ୍ଠ ଦାସ ଏହାର ଜନକ ବୋଲି କୁହାଯାଏ ।

ଏଇ ସମୟ ୧୯୪୦ରୁ ୪୫ ମସିହା ପର୍ଯ୍ୟନ୍ତ । ଆମ ଘରେ କେହି ଝିଅ ନ ଥାନ୍ତି । କିଛି କାଳ ମୋ ବଡ଼ବାପା ଝିଅ ଭଉଣୀ ନିଶା (ବର୍ତ୍ତମାନ ପ୍ରଭାକର ପଟ୍ଟନାୟକଙ୍କ ସ୍ତ୍ରୀ, ଜଟଣୀର ସ୍ଥାୟୀ ବାସିନ୍ଦା ଏବଂ ଶ୍ରୀମା'ଙ୍କ ଭକ୍ତ) ଆମ ଘରେ ଥିଲା । ଏକୁଟିଆ ଘର ଥିଲା ମୋତିଝରଣ । ମାମୁ ଗୋବିନ୍ଦ ପଟ୍ଟନାୟକ ଆସନ୍ତି ଅନେକ ସମୟରେ, ରହନ୍ତି କିଛି କାଳ । ସାଥୀ ଦରକାର, କାରଣ ସାଙ୍ଗପିଲା କେହି ନାହାନ୍ତି । ନିଶା ଆସିଲା ପରେ ଜଣେ ସାଙ୍ଗ ମିଳିଗଲା । ସେ ମୋ ଠାରୁ କିଛି ସାନ ଏବଂ ମୋ ସାନଭାଇଠାରୁ କିଛି ବଡ଼ । ଧୁମ୍ ଦୋଳିଖେଳ ହୁଏ, କଣ୍ଢେଇକୋଳି ତୋଳା ହୁଏ । ଏଇ ସମୟରେ ମଉସାଙ୍କର ବଦଳି ହୁଏ କୁଅଁରମୁଣ୍ଡାରୁ ରେଢ଼ାଖୋଲ । ମାଉସୀ ଅନ୍ତଃସତ୍ତ୍ୱା । ସେତେବେଳେ ରେଢ଼ାଖୋଲ ଗଭୀର ଜଙ୍ଗଲ । ତେଣୁ ଡେଲିଭରି ପର୍ଯ୍ୟନ୍ତ ମାଉସୀ ଓ ପିଲାମାନେ ରହିଲେ ଆମ ଘରେ । ଡେଲିଭରି ଶବ୍ଦଟି ମୁଁ ଜାଣିକରି ଲେଖୁଛି କାରଣ ଏଇ ଶବ୍ଦଟା ମୁଁ ସେତିକିବେଳେ ଶିଖିଲି ।

ସମ୍ବଲପୁର ରହଣି କାଳରେ ସାମ୍ବାଦିକ ନୃସିଂହ ଗୁରୁଙ୍କ ସହିତ ବହୁବାର ଭେଟ ହୋଇଛି । ବାପାଙ୍କର ଯେଉଁଦିନ କୁପ୍ (Coup) ବା କାଠ ନିଲାମ ଥାଏ, ସେଇ ଦିନମାନଙ୍କରେ ତାଙ୍କୁ ନିଶ୍ଚିତ ଭାବରେ ଦେଖିବାକୁ ମିଳେ । ଚାଷୀମାନେ କ'ଣ ସୁବିଧା ପାଉଛନ୍ତି, ଜଙ୍ଗଲର କାଠ ଉପରେ କ'ଣ ସୁବିଧା ସ୍ଥାନୀୟ ଅଧିବାସୀମାନଙ୍କୁ ଦିଆଯିବ ସେ ସଂପର୍କରେ ଆଲୋଚନା କରନ୍ତି ବାପାଙ୍କ ସାଙ୍ଗରେ । ଆଣ୍ଠୁ ନ ଲୁଚୁଥିବା ଖଦଡ଼ ଧୋତି, ଉପରେ ଖଣ୍ଡେ ଚଦର ଏବଂ ଏକ ନେଳି ବ୍ୟାଗ ତାଙ୍କର ଭୂଷଣ ଥିଲା । ସେ 'ସମାଜ' କାଗଜର ପ୍ରତିନିଧି ମଧ୍ୟ ଥିଲେ ଏବଂ ଯେଉଁଠାକୁ ଯାଉଥିଲେ ସେଠାକାର ସମସ୍ୟା ଉପରେ ସମ୍ବାଦଟିଏ ଲେଖି ପୋଷ୍ଟକାର୍ଡ଼ରେ ପଠାଇ ଦିଅନ୍ତି । ଗାନ୍ଧିଜୀଙ୍କ ସାରଲ୍ୟ ଏବଂ ଆଦର୍ଶ ତାଙ୍କୁ ଅନୁପ୍ରାଣିତ କରିଥିଲା ।

୧୯୪୨ ଆନ୍ଦୋଳନରେ ଝାରସୁଗୁଡ଼ାର କଂଗ୍ରେସ ନେତା ଭାନୁଶଙ୍କର ଯୋଶୀ ପୁଲିସ ଆଖିରେ ଧୂଳିଦେଇ ବହୁ କାଳ ପଳାତକ ସାଜିଥିଲେ । ତାଙ୍କୁ ଧରିବା ପାଇଁ 'ହୁଲିଆ' ଜାରୀ

ହୋଇଥିଲା । ସେ ପରେ ଧରା ପଡ଼ିଥିଲେ । କିନ୍ତୁ ତାଙ୍କ ସଂପର୍କରେ ମୁଁ ଆଉ ବିଶେଷ କିଛି ଖବର ରଖିପାରି ନାହିଁ ।

ସେତେବେଳେ ନୂଆକରି ରେଡ଼ିଓ ମାର୍କେଟକୁ ଆସିଥାଏ । ବିଶାଳ ସାଇଜ ଏବଂ ଦାମ୍ ବି ବହୁତ । ସମ୍ବଲପୁର ସହରରେ ଦୁଇଟି ରେଡ଼ିଓ ଗୋଟିଏ ବନ୍ୟ ବିଭାଗର ପ୍ରବାଦ ପୁରୁଷ ଡକ୍ଟର ଏଚ୍.ଏଫ୍.ମୁନି ଏବଂ ଆଉ ଗୋଟିଏ ଜଙ୍ଗଲ ବିଭାଗର ଡି.ଏଫ୍.ଓ. ଶ୍ରୀ ଏମ୍.ଏଲ୍. ସେନଗୁପ୍ତଙ୍କର । ତେବେ ପଲିଟିକାଲ ଏଜେଣ୍ଟ ଶ୍ରୀ ଇସ୍କନ୍ଦର ମିର୍ଜା (ପରେ ପାକିସ୍ତାନର ରାଷ୍ଟ୍ରପତି) ଏବଂ ଶ୍ରୀ ବେଦୀ (ପରେ ଅଷ୍ଟ୍ରେଲିଆରେ ଆମର ହାଇକମିଶନର)ଙ୍କ ଘରେ ରେଡ଼ିଓ ଥିଲା କି ନାଇଁ କହିପାରିବି ନାହିଁ ।

ଡକ୍ଟର ଏଚ୍.ଏଫ୍. ମୁନି ଆୟର୍ଲାଣ୍ଡର ଲୋକ । ତେଣୁ ଭାରତବର୍ଷର ସ୍ୱାଧୀନତା ଆନ୍ଦୋଳନ ପ୍ରତି ତାଙ୍କର ପ୍ରଚ୍ଛନ୍ନ ଦରଦ ଥାଏ । ଥରେ ତାଙ୍କୁ ଓଡ଼ିଶାର ଗଭର୍ଣ୍ଣର ପଚାରିଲେ ଯେ ମୁଁ ଶୁଣୁଚି ତମର ଫରେଷ୍ଟ ଅଫିସରମାନେ ଅର୍ଥ ଉପୁରି ରୋଜଗାର କରୁଛନ୍ତି ? ମୁନି ତାଙ୍କୁ ସାଂଗେ ସାଂଗେ ଉତ୍ତରଦେଲେ ଯେ ତାଙ୍କ ଅଫିସରମାନଙ୍କ ମଧ୍ୟରୁ ସମସ୍ତେ ଏତେ ବୁଦ୍ଧିଆ ନୁହନ୍ତି । ଗଭର୍ଣ୍ଣର (ପୁଣି ସାର୍ ହଥୋର୍ଣ୍ଣ ଲୁଇ) ଯିଏ ଓଡ଼ିଶାର ଗଭର୍ଣ୍ଣର ହେବା ପୂର୍ବରୁ ସମ୍ବଲପୁରରେ କମିଶନର ଥିଲେ । ସାର୍ ହଥୋର୍ଣ୍ଣ ଲୁଇଙ୍କ ସ୍ମରଣଶକ୍ତି ଥିଲା ପ୍ରବଳ । ବିଶ୍ୱବିଦ୍ୟାଳୟରେ ଚାନ୍‌ସେଲର ଭାବରେ ତାଙ୍କର ଛପାଯାଇଥିବା ଭାଷଣକୁ ସେ ପୂରା ମନରୁ ପଢ଼ି ଦିଅନ୍ତି ବୋଲି ଶୁଣିଚି । ପରେ ସାର୍ ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍‌ଙ୍କୁ ଏଇଭଳି କରିବା ଦେଖିଛି ।

ଏଇ ସମୟରେ ସମ୍ବଲପୁରର କିଛି ବ୍ୟକ୍ତି ଆପଣାର କାର୍ଯ୍ୟ ଫଳରେ ସାରା ଦେଶରେ ପରିଚିତ ହୋଇଥିଲେ ।

ଯେଉଁମାନେ ମନେପଡ଼ନ୍ତି ସେମାନଙ୍କ ମଧ୍ୟରେ ଭାରତଚନ୍ଦ୍ର ନାୟକ ଅନ୍ୟତମ । ତାଙ୍କୁ କେହି ଭରତଚନ୍ଦ୍ର ନାୟକ ଡାକିଲେ ସେ ତାକୁ ସଂଶୋଧନ କରି ଦେଉଥିଲେ । ତାଙ୍କର ପାଳିତାକନ୍ୟା ଆଇ.ଏସ୍‌ସି. ପାସ୍ କରି ପଢ଼ିବାକୁ ଯିବ ପାଟନା ମେଡ଼ିକାଲ କଲେଜରେ । ସେତେବେଳେ ପାଟନା ମେଡ଼ିକାଲ କଲେଜରେ ଓଡ଼ିଶା ପାଇଁ ତିନୋଟି ସିଟ୍ । ପଣ୍ଡିତ ଗୋଦାବରୀଶ ମିଶ୍ର ଓଡ଼ିଶାର ଶିକ୍ଷାମନ୍ତ୍ରୀ । କିନ୍ତୁ କୌଣସି କାରଣରୁ ସେଇ ସିଟ୍‌ଟି ଉକ୍ତ କନ୍ୟାକୁ ଦିଆଗଲା ନାହିଁ । ମୋର ଠିକ୍ ମନେପଡୁ ନାହିଁ କାରଣଟା କ'ଣ । ଓଡ଼ିଶା ସରକାରଙ୍କ ଅଧୀନରେ ଚାକିରି କରୁଥିବା ଡେପୁଟି ମାଜିଷ୍ଟ୍ରେଟ୍ ଭାରତଚନ୍ଦ୍ର ନାୟକ ଆସି ଅନଶନରେ ବସିଲେ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ କେଶରପୁର ଘର ସାମନାରେ । ତିନି ଦିନ ପରେ ସିଟ୍‌ଟି ଉକ୍ତ କନ୍ୟାକୁ ମିଳିଥିଲା । ସେ ବର୍ତ୍ତମାନ ଏକ ପ୍ରତିଷ୍ଠିତ ଡାକ୍ତର ।

ଭାରତଚନ୍ଦ୍ର ନାୟକଙ୍କ ବଡ଼ଝିଅ ସୁଷମା ମେଡ଼ିକାଲ କଲେଜରେ ପଢ଼ିଲାବେଳେ ସମ୍ବଲପୁରର ଜଣେ ସହପାଠୀଙ୍କୁ ବିବାହ କରିବାକୁ ସ୍ଥିର କଲେ । କିନ୍ତୁ ଉକ୍ତ ବିବାହ ପ୍ରସ୍ତାବ ସମ୍ବଲପୁରରେ ପ୍ରବଳ ପ୍ରତିରୋଧର ସମ୍ମୁଖୀନ ହେଲା । ସେତେବେଳେ ନନ୍ଦପଡ଼ା ଓ

ଝାଡୁଆପଡ଼ା ଦୁଇ ସାହି ଭିତରେ ଆଦୌ ପଡୁ ନ ଥିଲା । ଶୀତଳଷଷ୍ଠୀ ଯାତ୍ରାରେ ଦୁଇ ସାହି ଭିତରେ ସଂଘର୍ଷ ହୁଏ । ସେମାନେ ଦୁଇ ବ୍ରାହ୍ମଣ ଗୋଷ୍ଠୀରେ ବିଭକ୍ତ– ଉତ୍କଳୀୟ ଓ କାନ୍ୟକୁବ୍ଜୀ । ବର ଓ କନ୍ୟା ଦୁଇ ଗୋଷ୍ଠୀର । ବିବାହ ହେବ କିମିତି ?

ଭାରତଚନ୍ଦ୍ର ନାୟକ କିନ୍ତୁ ନଛୋଡ଼ବନ୍ଧା । ସେମାନେ ବିବାହ କରିବାକୁ ସ୍ଥିର କରିଛନ୍ତି । ସେମାନେ ସାବାଳକ । ସେମାନଙ୍କର ନିଷ୍ପତ୍ତିରେ ବାଧା ଦେବାକୁ ଅନ୍ୟମାନେ କିଏ ? କିନ୍ତୁ ସମ୍ବଲପୁରରେ ଏହି ବିବାହ କଲେ ରକ୍ତପାତ ହୋଇପାରେ । ତେଣୁ ବିବାହ ପୁରୀରେ ହେଲା । ସେତେବେଳେ ଏହା ଚମକ ସୃଷ୍ଟି କରିଥିଲା । ମୁଁ ସେତେବେଳେ ନନ୍ଦପଡ଼ାରେ ରହୁଥିବାରୁ ଏହା ବେଶ୍ ଚର୍ଚ୍ଚାର ବିଷୟ ହୋଇଥିଲା ।

ଭାରତଚନ୍ଦ୍ର ନାୟକ ଥିଲେ ଉଗ୍ରଚଣ୍ଡା । ସେ ଅନୁଗୋଳରେ ଡେପୁଟି ମାଜିଷ୍ଟ୍ରେଟ ଥିଲେ । ତାଙ୍କ ହତାରେ ଡେପୁଟି କମିଶନରଙ୍କ ଗାଈ ସବୁ ପଶିଗଲେ । ସେ ସେମାନଙ୍କୁ ବାଡ଼େଇ ବାହାର କଲାବେଳକୁ ଡେପୁଟି କମିଶନର ଆସିଲେ ତା'ର ପ୍ରତିବାଦ କରିବା ପାଇଁ ଏବଂ ରୋକିବା ପାଇଁ । ହେଲା ମାଡ଼ ଡେପୁଟି କମିଶନରଙ୍କ ଉପରେ ।

ସେତେବେଳେ ଏହା ଚମକ ସୃଷ୍ଟି କରିଥିଲା । ଆଜି ଏହା ଉଲ୍ଲେଖ କରିବାର ଅନ୍ୟତମ କାରଣ ହେଉଛି ଯେ ଭାରତଚନ୍ଦ୍ର ନାୟକ ମନ୍ତ୍ରୀଙ୍କ ଘର ଆଗରେ ଅନଶନ କରିବା ସତ୍ତ୍ୱେ (ପୁଣି ଏକାକୀ) ଡେପୁଟି କମିଶନରଙ୍କୁ ବାଡ଼େଇବା ସତ୍ତ୍ୱେ ତାଙ୍କର ଚାକିରି ଯାଇ ନ ଥିଲା, ଯଦିଓ ଦେଶରେ ଗୋରା ସରକାର ଥିଲା । ଆଜି ହୋଇଥିଲେ କ'ଣ ହୋଇଥାନ୍ତା ? ଏ ପ୍ରଶ୍ନର ଉତ୍ତର ମୁଁ ପାଠକଙ୍କ ଉପରେ ଛାଡ଼ି ଦେଉଛି ।

ଭାରତଚନ୍ଦ୍ର ନାୟକଙ୍କ କନ୍ୟା ଆଖି ରୋଗରେ ପାଟନାରେ ଆକ୍ରାନ୍ତ ହେଲେ । ଡାକ୍ତର କହିଲେ ଯେ କେବଳ ଗୋଟିଏ ଜର୍ମାନ ତିଆରି ଔଷଧ ଅଛି । ତାହା ମିଳିଲେ ଆଖିକୁ ରକ୍ଷାକରି ହେବ । ସେତେବେଳେ ଜର୍ମାନ ସହିତ ଯୁଦ୍ଧ ସମୟ । ଜର୍ମାନ ଔଷଧ ମିଳିବ କେଉଁଠୁ ? ତଥାପି ଭାରତଚନ୍ଦ୍ର ପଣକଲେ ଯେ କୌଣସି ମତେ ଔଷଧ ଆଣିବେ । ଓହ୍ଲାଇଲେ ହାବଡ଼ା ଷ୍ଟେସନରେ । ଚାଲିଲା ଗୋଟିକ ପରେ ଗୋଟିଏ ଔଷଧ ଦୋକାନରେ ଖୋଜା । ଦିନ ଯାଇ ରାତି ହେଲା । ଯେଉଁଠି ରାତି ହେଲା ସେଇଠି ଦୋକାନ ପିଣ୍ଡାରେ ସେ ଶୋଇଲେ । ଦିନ ପରେ ଦିନ ବଢ଼ିବାକୁ ଲାଗିଲା । ହଠାତ୍ କିଛିଦିନ ପରେ ଦିନେ ଏକ ଔଷଧ ଦୋକାନରେ ଔଷଧ ଖୋଜିବା ବେଳେ କିଛି ଆମେରିକାନ ସୈନ୍ୟ ସେଠାରେ ପହଞ୍ଚିଲେ । ସେମାନଙ୍କ ମଧ୍ୟରୁ ଜଣେ କହିଲା ଯେ ତା ପାଖରେ ସେ ଔଷଧ ଅଛି । ସେ କିନ୍ତୁ ଔଷଧର ପ୍ରକୃତ ଦାମ୍ ଠାରୁ ବହୁତ ବେଶି ଦାମ ଶହେ ଟଙ୍କା ନେବେ । ଭାରତଚନ୍ଦ୍ର କୁଆଡ଼େ ତାଙ୍କ ହାତକୁ ତିନିଶହ ବଢ଼ାଇଦେଇଥିଲେ ଔଷଧ ପାଇଁ ।

ଔଷଧ ନେଇ ଫେରି ଭାରତଚନ୍ଦ୍ର ଭେଟିଲେ ଆଶ୍ଚର୍ଯ୍ୟାନ୍ୱିତ ଚିକିତ୍ସକ ଡାକ୍ତରଙ୍କୁ । କିମିତି ପାଇଲେ ସେ ଏଇ ଔଷଧ ? ଏଇ ଔଷଧ ତ ଏଇଭଳି ବହୁ ବ୍ୟକ୍ତିଙ୍କୁ ଭଲ କରିଦେବ ଦୁରାରୋଧ ରୋଗରୁ । ଝିଅ ଭଲ ହୋଇଥିଲା । ଭାରତଚନ୍ଦ୍ର କେବଳ ନିଜ ଝିଅକୁ ରୋଗମୁକ୍ତ କଲେ ନାହିଁ, ଅନେକ ରୋଗୀଙ୍କୁ ରୋଗମୁକ୍ତ ହେବାରେ ସାହାଯ୍ୟକାରୀ ହେଲେ ।

ଭାରତଚନ୍ଦ୍ରଙ୍କ ଦୁଇ ପୁଅ ଓ ବୋଧହୁଏ ବାର ଝିଅ । ବଡ଼ପୁଅ ଜୟଗୋପାଳ ସୁଦର୍ଶନ ଥିଲେ । ଓଡ଼ିଶା ସରକାରଙ୍କ ଅଧୀନରେ ଡେପୁଟି ମାଜିଷ୍ଟ୍ରେଟ ଥିଲାବେଳେ ଅକାଳରେ ତାଙ୍କର ବିୟୋଗ ହୋଇଯାଇଥିଲା । ସବା ଶେଷ ସନ୍ତାନ ହେଉଛି ପୁଅ । ସେ ନାମକୁ ବଦଳାଇ ବିଭୁରଂଜନ ଦାସ କରିଦେଇଥିଲା । ସେ ଥିଲା ମୋର ସହପାଠୀ । ପୃଥିବୀର କୁଆଡ଼େ କୁଆଡ଼େ ବୁଲି ସେ ଜାନକୀବଲ୍ଲଭ ପଟ୍ଟନାୟକଙ୍କୁ ଭେଟେ ଦିଲ୍ଲୀରେ ଏବଂ ଜାନକୀବାବୁ ତା'ର ନାମକୁ ସୁପାରିସ କରି ସମ୍ବଲପୁର ବିଶ୍ୱବିଦ୍ୟାଳୟର କୁଳପତି କରି ଦିଅନ୍ତି । ଅତ୍ୟନ୍ତ ଦୟନୀୟ ଅବସ୍ଥାରେ ତା'ର ପରଲୋକ ହୋଇଯାଏ ସମ୍ବଲପୁରରେ ।

ଭାରତଚନ୍ଦ୍ର ନାୟକଙ୍କୁ ମନେପଡ଼େ ଏଇଥିଯୋଗୁଁ ଯେ ମୋର ଟାଇଫଏଡ ବେଳେ ବାପା ଦାଦା ମିଶି ଖୋଜିଥିଲେ ଏକ ଟନିକ୍ । ଯାହା ସମ୍ବଲପୁରର ବିଶିଷ୍ଟ କଣ୍ଟ୍ରାକ୍ଟର ଶିବାଜି ନଥୁଭାଇ ଆଣିଦେଇଥିଲେ । ତାଙ୍କ ପୁଅ ବି ସେତିକିବେଳେ ଟାଇଫଏଡ୍ ରୋଗରେ ଆକ୍ରାନ୍ତ ହୋଇଥାଏ । ତା' ପାଇଁ ଟନିକ୍ ଖୋଜିଲାବେଳେ ସେ ଶୁଣନ୍ତି ବାପା ଦାଦାଙ୍କର ଟନିକ୍ ଖୋଜିବା କଥା ଏବଂ ଆଣିଦିଅନ୍ତି ସେ ଔଷଧ । ବାପା ଦାଦାଙ୍କର ଔଷଧ ଖୋଜିବାକୁ ଆଉ ପଡ଼େ ନାହିଁ ।

ଶିବାଜି ନଥୁଭାଇଙ୍କର ଥିଲା ଏକ କନ୍‌ଭର୍ଟିବଲ୍ ମୋଟରଗାଡ଼ି । ସେତେବେଳେ ଏପରି ମୋଟରଗାଡ଼ି ସମ୍ବଲପୁରରେ ନ ଥିଲା । ସେଇଯୋଗୁଁ ପଣ୍ଡିତ ନେହେରୁଙ୍କର ସମ୍ବଲପୁର ଗସ୍ତ ସମୟରେ ଏହା ତାଙ୍କ ପାଇଁ ବ୍ୟବହୃତ ହୋଇଥିଲା । ସେଥିପାଇଁ ପଣ୍ଡିତ ନେହେରୁ ମଧ ସମାଲୋଚିତ ହୋଇଥିଲେ ଗୋଟିଏ ସେକ୍ସନରେ ।

ଆଉ ଜଣେ ପ୍ରବାଦ ପୁରୁଷ ଥିଲେ ଡାକ୍ତର ସନାତନ ପୂଝାରୀ (ତାଙ୍କର ନାମ 'ଜୀବନର ବାଟେଘାଟେ'ର ପ୍ରଥମ ଖଣ୍ଡରେ ଭୁଲ୍‌ରେ ହୋଇଯାଇଛି ଜନାର୍ଦ୍ଦନ ପୂଝାରୀ) ସେ ମଧ ସେଇଭଳି ବହୁ କନ୍ୟା କିନ୍ତୁ ଗୋଟିଏ ପୁତ୍ରର ଜନକ ଥିଲେ । ସେ ଥିଲେ ପାଟନା ମେଡ଼ିକାଲର ଏକ ଇଣ୍ଟରଭିଉରେ ପ୍ରାର୍ଥୀ । ପାଟନା ମେଡ଼ିକାଲରେ ଆନାଟୋମି ବିଭାଗର ଡେମନଷ୍ଟ୍ରେଟର ଓ ପ୍ରଫେସର ଉଭୟ ପଦବୀ ପାଇଁ ଇଣ୍ଟରଭିଉ ହେଉଥିଲା । ଡାକ୍ତର ପୂଝାରୀଙ୍କୁ ୧୩ ଜଣିଆ ମେଡ଼ିକାଲ ବୋର୍ଡ଼ ମସ୍ତିଷ୍କ ଉପରେ ପ୍ରଶ୍ନ ପଚାରିଲେ । ତାଙ୍କର ଉତ୍ତରରେ ମୁଗ୍ଧ ବୋର୍ଡ଼ ସର୍ବସମ୍ମତିକ୍ରମେ ତାଙ୍କୁ ସିଧାସଳଖ ପ୍ରଫେସର ପଦବୀରେ ନିଯୁକ୍ତ କରିଥିଲା ।

ତାଙ୍କର ମଧ ଅକାଳରେ (କେହି କେହି କହନ୍ତି ଭୁଲ୍ ଔଷଧ ଯୋଗୁଁ) ପରଲୋକ ହୋଇଗଲା । ଏଭଳି ବିଶେଷଜ୍ଞ ଡାକ୍ତରଙ୍କ ପୁଅ ବହୁବର୍ଷ ଫେଲ ହେଲା ପରେ ଏବଂ ବହୁ କଷ୍ଟରେ ଏମ୍.ବି.ବି.ଏସ୍. ପାସ୍ କଲା ଏବଂ ପାସ୍ କରିବା ସତ୍ତ୍ୱେ ଡାକ୍ତରର କେବଳ ଡିଗ୍ରୀ ଯୋଗ୍ୟତା ହିଁ ତାଙ୍କର ଥିଲା । ଆମର ପାରିବାରିକ ବନ୍ଧୁ ଏବଂ ବାପାଙ୍କର ସହକର୍ମୀ ଜନାର୍ଦ୍ଦନ ପଣ୍ଡାଙ୍କ ଝିଅ ବୁଲଇକୁ ସେ ବିବାହ କରିଥିଲେ ।

ଆମର ଶିକ୍ଷକମାନଙ୍କ ମଧରେ ଯେଉଁମାନେ ଏ ପର୍ଯ୍ୟନ୍ତ ମୋର ସ୍ମୃତି ପଟରେ ଉଜଳି ରହିଛନ୍ତି ସେମାନଙ୍କ ମଧରେ ମନମୋହନ ପଟ୍ଟନାୟକ, କ୍ଷୀତିଶଚନ୍ଦ୍ର ଦେବ, ଗୋପାଳ କାନୁନଗୋ, ଅଧିରାଜ ମୋହନ ସେନାପତି ଏବଂ କୃଷ୍ଣଚନ୍ଦ୍ର ମହାନ୍ତି ଅନ୍ୟତମ ।

ମନମୋହନବାବୁଙ୍କ ସଂପର୍କରେ ମୁଁ ଆଗରୁ ଲେଖିଛି । ସେ ଏବଂ ତାଙ୍କ ଭଉଣୀ ମନୋରମା ଦେବୀ ଶିକ୍ଷୟିତ୍ରୀ (ପରେ ଇନ୍ସପେକ୍ଟର) ଦୁହେଁ ବିବାହ କରି ନ ଥିଲେ । ସେମାନଙ୍କ ଘର ଥିଲା ବିଚ୍ଛିନ୍ନାଞ୍ଚଳ ଓଡ଼ିଶାରେ, ଆନ୍ଧ୍ର (ସେତେବେଳେ ମାନ୍ଦ୍ରାଜ) ପ୍ରଦେଶରେ । ମନମୋହନବାବୁ ସମ୍ବଲପୁରର ସ୍ଥାୟୀ ବାସିନ୍ଦା ହୋଇ ରହିଗଲେ ମୃତ୍ୟୁ ପର୍ଯ୍ୟନ୍ତ । ଶହେବର୍ଷ ପରିଣତ ବୟସରେ ତାଙ୍କର ପରଲୋକ ହୋଇଯାଇଛି । ତାଙ୍କର ଦୁଇଜଣ ଗୁରୁଭକ୍ତ ଶିଷ୍ୟଙ୍କ ହେପାଜତରେ ସେ ଅବସର ସମୟ ବିତାଇଥିଲେ । ସେ ଆମକୁ ପଢ଼ାଇଥିଲେ ଇତିହାସ ଏବଂ ଇଂରାଜୀ ନାଟକ । ସେତେବେଳେ ଯୁଦ୍ଧ ସମୟ । ଫାସିବାଦ ଏବଂ ଫାସିବାଦୀମାନଙ୍କର ଚରିତ୍ର ସଂପର୍କରେ ତାଙ୍କର ମନୋମୁଗ୍ଧକର ନାଟକୀୟ ଢଂଗୀରେ ପାଠପଢ଼ା ମୋର ଏ ପର୍ଯ୍ୟନ୍ତ ମନେଅଛି । ସାମ୍ରାଜ୍ୟବାଦ ଏବଂ ଫାସିବାଦ ଭିତରେ ପାର୍ଥକ୍ୟକୁ ମଧ୍ୟ ସେ ପଢ଼ାଇଥିଲେ । ଅର୍ଦ୍ଧ ନିମୀଳିତ ଆଖି, ଅନର୍ଗଳ ଇଂରାଜୀରେ ତାଙ୍କର ଭାଷଣ ମୋ ଭଳି ବହୁ ଛାତ୍ରଙ୍କୁ ମୁଗ୍ଧ ଅନୁପ୍ରାଣିତ କରିଥିଲା ।

ଠିକ୍ ସେଇପରି ପ୍ରସିଦ୍ଧ ଚିତ୍ରଶିଳ୍ପୀ ଗୋପାଳ କାନୁନ୍‌ଗୋ । ସେ ଡ୍ରଇଂ ପଢ଼ାନ୍ତି କିନ୍ତୁ ଘରର ଉପର ମହଲାରେ ଆମକୁ ଶିକ୍ଷା ଦିଅନ୍ତି ସାମ୍ୟବାଦ ଏବଂ ସମାଜ ସଂପର୍କରେ । ସେତିକିବେଳେ କାଳିନ୍ଦୀଚରଣ ପାଣିଗ୍ରାହୀଙ୍କ ମାଟିର ମଣିଷ ଆମର ପାଠ୍ୟକ୍ରମ ଭିତରେ ଥିଲା । ଏହି ବହିର 'ସିଲହେଟ' ଚିତ୍ରଗୁଡ଼ିକ ଆଙ୍କିଥିଲେ ଗୋପାଳ କାନୁନ୍‌ଗୋ । ଗୋପାଳ କାନୁନ୍‌ଗୋ ପରବର୍ତ୍ତୀ କାଳରେ ଜ୍ଞାନକୋଷ ବା ଏନ୍‌ସାଇକ୍ଲୋପେଡିଆ ସଂକଳନ କରିବା ପାଇଁ ପ୍ରୋଜେକ୍ଟରେ ଯୋଗ ଦେଇଥିଲେ । ମାୟାଧର ମାନସିଂହଙ୍କ ସହିତ ତାଙ୍କର ମତଭେଦ ହେବା ହେତୁ ସେ ଇସ୍ତଫା ଦେଇଥିଲେ । ଯେପରି ଇସ୍ତଫା ଦେଇଥିଲେ ବୈକୁଣ୍ଠନାଥ ପଟ୍ଟନାୟକ ଅନୁରୂପ କାରଣରୁ ।

ତାଙ୍କର ପୁଅ ଚିତ୍ତରଂଜନ ମୋର ସହପାଠୀ ।

ପରବର୍ତ୍ତୀ କାଳରେ ଚିତ୍ତରଂଜନ ଆପଣାର କର୍ମଯୋଗୁଁ ଗୋପାଳ କାନୁନ୍‌ଗୋଙ୍କ ବ୍ୟଥାର ଏବଂ କ୍ଷତିର କାରଣ ହୋଇଥିଲା । ମୋର ମନେପଡ଼ୁଚି । ଥରେ ଗଂଗାଧର ରଥ ଏବଂ ମୁଁ ବୁଲୁଥିଲୁ ବାଲୁବଜାର ରାସ୍ତାରେ ପାଦରେ ଚାଲି ଚାଲି । ହଠାତ୍ ଗୋପାଳବାବୁଙ୍କ ସହିତ ଦେଖା ହୋଇଗଲା ଏକ ବହିଦୋକାନରେ । ଆମେ ଦୁହେଁ ତାଙ୍କୁ ଭୂମିଷ୍ଠ ପ୍ରଣାମ କଲୁ କାରଣ ସେ ଆମ ଦୁହିଙ୍କର କେବଳ ଶିକ୍ଷାଗୁରୁ ନ ଥିଲେ, ଥିଲେ ମଧ୍ୟ ଦୀକ୍ଷାଗୁରୁ, ସମାଜବାଦୀ ଦର୍ଶନର ଦୀକ୍ଷାଗୁରୁ । ଆମକୁ ଦେଖି ତାଙ୍କ ଆଖିରୁ ଲୁହ ଝରଝର ହୋଇ ବୋହିବାକୁ ଲାଗିଲା । ଗଙ୍ଗାଧରବାବୁ ସେତେବେଳକୁ ଜଣେ ପ୍ରତିଷ୍ଠିତ ଆଇନଜୀବୀ ଭାବରେ ସୁନାମ ଅର୍ଜନ କରିସାରିଲେଣି । ଗଙ୍ଗାଧରବାବୁ ତାଙ୍କ ଦୁଃଖର କାହାଣୀ ଶୁଣି ସରକାରଙ୍କ ପାଖରୁ ତାଙ୍କର ପ୍ରାପ୍ୟ ପାଇବା ପାଇଁ ସବୁପ୍ରକାର ଆଇନଗତ ସହାୟତା କରିବା ପାଇଁ 'ଗୁରୁଦକ୍ଷିଣା' ପ୍ରତିଶ୍ରୁତି ଦେଇଥିଲେ । କିନ୍ତୁ କାର୍ଯ୍ୟକାରୀ ହେବା ପୂର୍ବରୁ ତାଙ୍କର ଜୀବନାବସାନ ହୋଇଥିଲା ।

କୃଷ୍ଣଚନ୍ଦ୍ର ମହାନ୍ତି ଆମର ହେଡ଼ମାଷ୍ଟର ଥିଲେ । ସେ ପଢ଼ାନ୍ତି ବିଭିନ୍ନ ବିଷୟରେ । କିନ୍ତୁ ତାଙ୍କୁ ଦେଖିଲେ ସ୍କୁଲରେ ଭୟ ଖେଳିଯାଏ । ସବୁପ୍ରକାର ଗଣ୍ଡଗୋଳ ବନ୍ଦ ହୋଇଯାଏ । ତାଙ୍କର ପୁଅମାନଙ୍କର ନାମ ସେ ବଦଳାଇ ଦେଇ ସାଙ୍ଗିଆ କାନୁନ୍‌ଗୋ ରଖିଥିଲେ । କ'ଣ ପାଇଁ କହିପାରିବି ନାହିଁ । ତାଙ୍କର ବଡ଼ପୁଅ ଡକ୍ଟର ଦେବ କାନୁନଗୋ (ଅବସରପ୍ରାପ୍ତ ଭୂତତ୍ତ୍ୱବିତ୍) । ଦ୍ୱିତୀୟପୁତ୍ର ଡକ୍ଟର ମଧୁସୂଦନ କାନୁନଗୋ (ଅବସରପ୍ରାପ୍ତ ପ୍ରାଣିବିଜ୍ଞାନବିତ୍), ତୃତୀୟ ପୁତ୍ର ବିଧୁ (ଅବସରପ୍ରାପ୍ତ ସାମରିକ ଅଫିସର), ଚତୁର୍ଥ ପୁତ୍ର ଯଦୁ (ପ୍ରସିଦ୍ଧ ଡାକଟିକେଟ ସଂଗ୍ରାହକ) ଏବଂ ପଞ୍ଚମ ପୁତ୍ର ପୂର୍ଣ୍ଣ (ଜର୍ମାନୀରେ ସ୍ଥାୟୀ ବାସିନ୍ଦା ହୋଇ ରହିଯାଇଥିବା ଇଂଜିନିୟର) । ଉଲ୍ଲେଖ କରିବାର କାରଣ ହେଉଛି ଯେ ପୁଅମାନଙ୍କ ମଧ୍ୟରୁ କିଛି ସେହି ସ୍କୁଲରେ ପାଠ ପଢୁଥିଲେ । କିନ୍ତୁ ପ୍ରବଳ ପ୍ରତାପୀ ହେଡ଼ମାଷ୍ଟରଙ୍କ ପୁଅ ହେବା ସତ୍ତ୍ୱେ ସେମାନଙ୍କ ପାଇଁ କୌଣସି ସ୍ୱତନ୍ତ୍ର ସୁବିଧା ନ ଥିଲା । ମଧୁବାବୁ ମୋର ସମସାମୟିକ । ଏହା ମୋର ପ୍ରତ୍ୟକ୍ଷ ଅଭିଜ୍ଞତା ।

ଠିକ୍ ସେଇପରି ଅଧିରାଜ ମୋହନ ସେନାପତି । ପତଳା ମଣିଷ । କାଠି ଖଣ୍ଡେ ପରି । କିନ୍ତୁ ଶୃଙ୍ଖଳା ପ୍ରୟୋଗ କରିବାରେ ଧୁରନ୍ଧର । ପିଲା କେହି ବେଶି ଦୁଷ୍ଟହେଲେ ତା ମୁଣ୍ଡରେ ଗଧ ଟୋପି ପିନ୍ଧାଇ ସ୍କୁଲର ସବୁ କ୍ଲାସରେ ବୁଲାଇ ଆଣିବେ । ମୋର ମନେ ପଡୁଚି । ଯୁଦ୍ଧ ସମୟ । ସମ୍ବଲପୁର ଜିଲ୍ଲା ସ୍କୁଲ (ବର୍ତ୍ତମାନ ଯେଉଁଟା ଗଂଗାଧର ମେହେର କଲେଜ) ଘରେ ଓଡ଼ିଶା ସେକ୍ରେଟେରିଏଟ୍ ହେଉଥାଏ । ତା'ରି ପାଖରେ ଏକ ଅସ୍ଥାୟୀ ଧାଉଡ଼ି ଘରମାନଙ୍କରେ ସ୍କୁଲ ହେଉଥାଏ । କୌଣସି ଜଣେ ବରିଷ୍ଠ ଅଫିସରଙ୍କ ପୁତ୍ର ଭୀଷଣ ଦୁଷ୍ଟାମି କରିବା ଯୋଗୁଁ ତାକୁ ଗଧ ଟୋପି ପିନ୍ଧାଇ ବୁଲାଇବା ପାଇଁ ସ୍ଥିର କଲେ ଅଧିରାଜ ମୋହନ । କିନ୍ତୁ ଚାପ ଆସିଲା ଉପର ସ୍ତରରୁ । ବେଶ୍ ଚାପ । କିନ୍ତୁ ଅଧିରାଜ ମୋହନ ସେନାପତି ତାକୁ ଖାତିର କଲେ ନାହିଁ କି ଶୁଣିଲେ ନାହିଁ । ଚାପ ସତ୍ତ୍ୱେ ଟୋପିପିନ୍ଧା ହୋଇ ସେ ପିଲାକୁ ବୁଲା ହେଲା ।

ଏଇଠି ଏକ କାହାଣୀ ମୋର ମନେପଡୁଚି । ଥରେ ରାଜା ପଞ୍ଚମ ଜର୍ଜ ତାଙ୍କର ପୁଅକୁ ଦେଖିବା ପାଇଁ ପୁଅ ପଢୁଥିବା ସ୍କୁଲରେ ପହଞ୍ଚିଲେ । ରାଜାଙ୍କୁ ପାଛୋଟି ନେଲେ ହେଡ଼ମାଷ୍ଟର କିନ୍ତୁ ନମସ୍କାର କଲେ ନାହିଁ । ରାଜା ପୁଅର ସ୍କୁଲ ଦେଖି ଫେରିଲେ । ସେତିକିବେଳେ ପ୍ରଧାନଶିକ୍ଷକ ତାଙ୍କୁ ସାଲ୍ୟୁଟ କଲେ ।

କାରଣ କ'ଣ ଜାଣିବାକୁ ଚାହିଁବାରୁ ପ୍ରଧାନଶିକ୍ଷକ ଉତ୍ତରଦେଲେ ସ୍କୁଲର ଛାତ୍ରମାନଙ୍କ ଆଗରେ ପ୍ରଧାନଶିକ୍ଷକଙ୍କଠୁ ବଳି ଆଉ କେହି କ୍ଷମତାପନ୍ନ ବ୍ୟକ୍ତି ନାହାନ୍ତି ତାହା ଜଣାଇବା ତାଙ୍କର ଉଦ୍ଦେଶ୍ୟ ଥିଲା । କିନ୍ତୁ ବିଦାୟ ଦେଲାବେଳେ ସେ ପର୍ବ ସରି ଯାଇଥିଲା । ତେଣୁ ସେ ସାଲ୍ୟୁଟ କଲେ ରାଜାଙ୍କୁ ପାରମ୍ପରିକ ରୀତିରେ ।

ଅଧିରାଜ ମୋହନ ସେନାପତି ସେଇଭଳି ଏକ ପ୍ରଧାନଶିକ୍ଷକ ଥିଲେ । ତାଙ୍କର ଗୋଟିଏ ଝିଅ ଗାୟତ୍ରୀ ମୋର ସହପାଠିନୀ ଥିଲା । ତା'ର ପରଲୋକ ହୋଇଗଲା

ଅକାଳରେ । ବଡ଼ପୁଅ ଡାକ୍ତର ଯୋଗୀନ୍ଦ୍ର ମୋହନ ସେନାପତି ଏବଂ ସାନପୁଅ ଶ୍ରୀ ରବୀନ୍ଦ୍ର ମୋହନ ସେନାପତିଙ୍କ ସହ ସାମାଜିକ ସଂପର୍କ ବର୍ତ୍ତମାନ ପର୍ଯ୍ୟନ୍ତ ଅତୁଟ ରହିଛି ।

ରବୀନ୍ଦ୍ର ମୋହନ ସେନାପତି ଜଣେ ଦକ୍ଷ ଆଇ.ଏ.ଏସ୍. ଭାବରେ ପରିଚିତ । ସେ ଯାଜପୁର ଏସ୍.ଡି.ଓ. ଥିଲେ । କିଛିକାଳ ପରେ ମୋର ଅନ୍ୟତମ ବନ୍ଧୁ ରଘୁନାଥ ମିଶ୍ର ସେଠାରେ ଏସ୍.ଡି.ଓ. ହେଲେ । ଥରେ ମହା ବାରୁଣୀ ପଡ଼ିଥିଲା । ବନ୍ଧୁ ସୁଧାଂଶୁ ଭୂଷଣ ମିଶ୍ର (ଅବସରପ୍ରାପ୍ତ ଚିଫ୍ ସେକ୍ରେଟାରୀ)ଙ୍କର ମାଆ ବାରୁଣୀ ସ୍ନାନ କରିବାକୁ ଚାହିଁଲେ । ତତ୍କାଳୀନ କଟକ ଜିଲ୍ଲା କଲେକ୍ଟର ବନ୍ଧୁ ସତ୍ୟରଂଜନ ପାଲ, ତତ୍କାଳୀନ ଏସ୍.ପି., ଭି. ଆପ୍ପାରାଓ (ବର୍ତ୍ତମାନ ଅବସରପ୍ରାପ୍ତ), ମୁଁ, ସୁଧାଂଶୁଭୂଷଣ ମିଶ୍ର ଏବଂ ତାଙ୍କ ମାଆ ଆମେ ସବୁ ସାଙ୍ଗ ହୋଇ ଗଲୁ ଯାଜପୁର । ସୁଧାଂଶୁର ମାଆଙ୍କ ବାରୁଣୀ ସ୍ନାନ ପରେ ରଘୁନାଥ ମିଶ୍ରଙ୍କ କ୍ୱାର୍ଟର୍ସରେ ଆମେସବୁ ଗପ କରୁଥିଲାବେଳେ ମୁଁ ପଚାରିଲି ରଘୁନାଥ ମିଶ୍ରଙ୍କୁ– ରଘୁନାଥବାବୁ, ଆପଣ କ'ଣ ରବି ପରେ ଏଠାରେ ଏସ୍.ଡି.ଓ. ହେଉଛନ୍ତି ? ସେ ଉତ୍ତର ଦେଲେ, ନା, ରବିବାବୁଙ୍କ ପରେ ଛଅଜଣ ଗଲେଣି । କିନ୍ତୁ ଯାଜପୁରବାସୀଙ୍କ ପାଇଁ ତାଙ୍କ ପରେ ଆଉ କେହି ଏସ୍.ଡି.ଓ. ଆସି ନାହାନ୍ତି ।

ରବିର ବଦଳି ହୋଇଥିଲା, କିନ୍ତୁ ଲୋକ ତାଙ୍କୁ ଛାଡ଼ିବାକୁ ନାରାଜ । ତା'ର ଘର ଆଗରେ ଲୋକ ଜଗି ରହିଲେ । ବାଧହୋଇ ରବି ଏକ ଗୁପ୍ତ ବେଶରେ ଛତା ଖଣ୍ଡିଏ କାଖରେ ଜାକି ବୈତରଣୀ କୂଳ ଦେଇ ଖସିଆସିଲେ ସେଠାରୁ । ରବି ଅବସର ନେଲାପରେ ବର୍ତ୍ତମାନ ଓଡ଼ିଶା ଗଣ ପରିଷଦର ସଭ୍ୟ । ଏବେ କିନ୍ତୁ କହୁଥିଲେ ଯେ ସେ ଏକ ନୂଆ ଦଳ ଗଢ଼ିଛନ୍ତି ।

ଏଇପରି ଘଟଣା କେତେ ଘଟିଛି ମୁଁ ଜାଣେ ନାଇଁ । କିନ୍ତୁ ଡକ୍ଟର ହୃଷୀକେଶ ପଣ୍ଡାଙ୍କୁ ଗଜପତି ଜିଲ୍ଲା କଲେକ୍ଟର ପଦବୀରୁ ନ ଛାଡ଼ିବା ପାଇଁ ଲୋକେ ରାସ୍ତାଘାଟ ସବୁ ଅବରୁଦ୍ଧ କରି ଦେଇଥିଲେ ।

ଜନସାଧାରଣଙ୍କ ପ୍ରତି ଆପଣାର ଅଙ୍ଗୀକାରକୁ କାର୍ଯ୍ୟକାରୀ କଲେ ନିଷ୍ଠାର ସହିତ ଏହି ଫଳ ମିଳେ ।

ସେଇପରି ଗୁଣୁପୁର ଯାଇଥିଲି । ସେଠାରେ ଲୋକେ ଦୁଇଟି ବ୍ୟକ୍ତିଙ୍କୁ ମନେରଖିଛନ୍ତି । ଜଣେ ହେଲେ ଚିନ୍ମୟ ବସୁ । ଆଉ ଜଣଙ୍କର ନାମ ମନେପଡୁ ନାହିଁ । ଗୁଣୁପୁର ସହର ବଂଶଧାରା ନଈର ପତ୍ତନ ତଳେ ଅବସ୍ଥିତ । ବନ୍ୟାରେ ବୁଡ଼ିଯାଉଛି ସହର । ଜଣେ ଲୋକ କିନ୍ତୁ ସହର ଛାଡୁ ନାହିଁ, ସେ କହୁଛି ଯେ ସବୁ ଲୋକ ଯାଇସାରିବା ପରେ ସେ ଯିବ । ସେ ପହଁରି ପାରିବ । କାରଣ ସେ ମେଘନା, ତିସ୍ତା, ବ୍ରହ୍ମପୁତ୍ର ନଦୀରେ ପହଁରିଛି । ସେ ହେଉଛନ୍ତି ସେଠାକାର ଏସ୍.ଡି.ଓ. ଚିନ୍ମୟ ବସୁ । ମାର୍କଟୁଲି ଡାକୁଛନ୍ତି ବି.ବି.ସି.ରେ ଏସ୍.ଓ.ଏସ୍., ଏସ୍.ଓ.ଏସ୍. ଗୁଣପୁର ସହର ଖାଲି ହେବାରେ ଲାଗିଛି । ପାଣିରେ ବୁଡ଼ିଯାଉଛି ସହର । କେବଳ ଜଣେ ରହିଯିବ ସବା ଶେଷରେ ଯିବା ପାଇଁ । ସେ ହେଉଛନ୍ତି ଏସ୍.ଡି.ଓ. ଚିନ୍ମୟ ବସୁ । ସେ କଟକ ସହର ଏ.ଡି.ମ୍. ଥିଲାବେଳେ ପହଁରି ଯାଇଥିଲେ

ବାଙ୍କୀକୁ ପ୍ରଖରସ୍ରୋତ, ଭଉଁରୀ, ଉତ୍ତାଳ ଲହରୀକୁ କାଟି । ଗୁଣପୁରବାସୀ ସେଇପରି ମନେ ରଖିଛନ୍ତି ଆଉ ଜଣେ ଏସ୍.ଡି.ଓ.ଙ୍କୁ ଯେଉଁ ଅଫିସର ସବୁ ସରକାରୀ ଜିନିଷ ବିକ୍ରି କରିଦେଇଥିଲେ ନିଜ ପାଇଁ । ପିନ୍‌ଠାରୁ ଆରମ୍ଭ କରି ଆଲମିରା ପର୍ଯ୍ୟନ୍ତ ।

ଦେଉଳ ତୋଳାଇଲେ ନାଁ, ନଚେତ୍ ବାଟରେ ଝାଡ଼ାଫେରିଲେ ନାଁ । ଏଇ ଉକ୍ତିର ଯଥାର୍ଥତା ସେଦିନ ଦେଖିଛି ।

କିଛି ସମୟ ପାଇଁ ମୁଁ ରହୁଥିଲି ସମ୍ବଲପୁରର ନନ୍ଦପଡ଼ାରେ । ସେଇଠି ଆମର ଗୃହ ଶିକ୍ଷକ ଚିତ୍ରସେନ ପାଢ଼ୀ ଥିଲେ ଆମର ତତ୍ତ୍ୱାବଧାରକ । ଘର ଆଗରେ ରହୁଥିଲେ ଶିକ୍ଷକ କ୍ଷୀତିଶଚନ୍ଦ୍ର ଦେବ । ଓଡ଼ିଶା ସ୍କୁଲ ପାଠ୍ୟପୁସ୍ତକରେ ତାଙ୍କର ଲେଖା ଅନ୍ତର୍ଭୁକ୍ତ ଥିଲା ବେଶ୍ କିଛି କାଳ । ତାଙ୍କର ଝିଅ ଲିଲି ମୋ ଠାରୁ ଗୋଟିଏ ବର୍ଷ ତଳେ ପାଠ ପଢୁଥିଲା । କ୍ଷୀତିଶବାବୁ ବିରାଟ ଶରୀରର ମଣିଷ, ଘର ବାଲେଶ୍ୱର । ସେ ଆମକୁ ପଢ଼ାଉଥିଲେ ଭୂଗୋଳ, ଗଳ୍ପ କାହାଣୀ ପରି । ଘରେ ଭଲ ଖାଇବା ହେଲେ ଡାକିବେ ଆମ୍ଭମାନଙ୍କୁ ତାଙ୍କ ଘରକୁ । ତାଙ୍କ ପାଖରୁ ମୁଁ ଯେତିକି ଭୂଗୋଳ ଶିଖିଛି ତାହା ମୋର ଭବିଷ୍ୟତ୍ ଜୀବନ ପାଇଁ କୁଳାନ ହୋଇଛି, କାରଣ ଅନେକ କଥା ଆଜି ମଧ୍ୟ ଚିତ୍ର ପରି ମନେରହିଛି ସ୍ମୃତିରେ ।

ଆଗରୁ ଲେଖିଛି ଯେ ଯେଉଁ ଶିକ୍ଷକ ଭଲ ପଢ଼ାଉଛନ୍ତି ସେଇ ବିଷୟ ପ୍ରତି ଆଗ୍ରହ ବଢ଼ିଛି । ଯେଉଁ ଶିକ୍ଷକ ଭଲ ପଢ଼ାଇ ନାହାନ୍ତି ସେମାନେ ପଢ଼ାଉଥିବା ବିଷୟ ପ୍ରତି ଆଗ୍ରହ ହୋଇ ନାହିଁ ।

ଏଇ ସମୟ ଭିତରେ ଆମେ କିଛିଦିନ ମାନଗୋବିନ୍ଦ ଭୂୟାଁଙ୍କ ପାଖରେ ରହୁଥିଲୁ ମୋତିଝରଣରେ । ଆଜି ଯେଉଁଠି ଷ୍ଟାଡିୟମ୍ ନିର୍ମିତ ହୋଇଛି ସେଇ ପଡ଼ିଆ ଉପରେ ଅସ୍ଥାୟୀ ଘରସବୁ ତିଆରି ହୋଇଥିଲା ସେକ୍ରେଟେରିଏଟ୍‌ର କିରାଣିମାନଙ୍କ ପାଇଁ । ସେଇଠି ରହୁଥିଲେ ମାନଗୋବିନ୍ଦ ଭୂୟାଁ । ସେ କିଛି କାଳ ଆମର ଘରୋଇ ଶିକ୍ଷକ ଥିଲେ କିନ୍ତୁ ଘରର ଆତ୍ମୀୟ ହୋଇଯାଇଥିଲେ କିଛି ସମୟ ପରେ । ଆମେ ସେଇଠି ରହିବା ସମୟରେ ତିନି ଚାରୋଟି ଘଟଣା ଘଟିଥିଲା ଯାହା ଉଲ୍ଲେଖ କରିବା ଉଚିତ ହେବ । ସେଠାରେ କାହା ଘରେ ଚୋରି ହେଲା । ପିଲାମାନେ (ଯାହାଙ୍କ ଭିତରେ ମୋ ସାନଭାଇ ଅନ୍ତର୍ଭୁକ୍ତ) କୌଣସି ବ୍ୟକ୍ତିକୁ ସେଠାରେ ଦେଖିଥିବା କଥା କହିଲେ । ଚାଇଲ୍ଡ ଉଇଟ୍‌ନେସ୍ ବା ପିଲା ସାକ୍ଷୀ ଭୁଲ କହି ନ ପାରେ । ସେ ଲୋକଟି ଉପରେ ହେଲା ମାଡ଼ ସାତଦିନ ଧରି, ଅକଥନୀୟ ମାଡ଼ ।

ଯିଏ ବାଡ଼ଉଥିଲେ, ସେ ଆମ ଗାଁ ପାଖ ଲୋକ । ନାମ ଗୋପୀନାଥ ଦାସ । ସେ ଯେ ପରେ ମୋର ଜୀବନର ଏକ ନୂଆ ଅଧ୍ୟାୟ ପାଇଁ ଦାୟୀ ହେବେ ଏକଥା ମୁଁ ସେଦିନ ଜାଣି ନ ଥିଲି । ପରେ ଗୋପୀନାଥ ଦାସ ରାଜ୍ୟ ସରକାରଙ୍କ ଗୁଇନ୍ଦା ବିଭାଗକୁ ଗଲେ ଏବଂ ସେଠାରେ ଆପଣାର ପାରଦର୍ଶିତା ଦେଖାଇଲେ । ସେ ମାତ୍ର ଜଣେ ସବ୍-ଇନ୍ସପେକ୍ଟର ଥିଲେ, ପରେ ଇନ୍ସପେକ୍ଟର ହୋଇଥିଲେ । ବୋଧହୁଏ ଡି.ଏସ୍.ପି. ଭାବରେ ଅବସର ଗ୍ରହଣ କଲେ । ସେ ସବ୍-ଇନ୍ସପେକ୍ଟର ଥିଲେ ସତ୍ୟ କିନ୍ତୁ ରାଜନୀତିକ ଦଳମାନଙ୍କର ନୀତି, ଦର୍ଶନକୁ ପଢ଼ି

ରୀତିମତ ମୁଖସ୍ଥ କରି ଦେଉଥିଲେ । ପାର୍ଟିମାନଙ୍କର ସର୍ବଶେଷ ଡକୁମେଣ୍ଟ ବା ଦଲିଲ ତାଙ୍କ ଆଖିରୁ ବାଦ ପଡୁ ନ ଥିଲା ।

ଗୋପୀନାଥ ଦାସ ମୋର ପାରିବାରିକ ବନ୍ଧୁ ଥିଲେ । କିନ୍ତୁ ସେ ଥିଲେ ଟିପିକାଲ ପୁଲିସ । ପ୍ରଥମେ ପୁଲିସ, ଦ୍ୱିତୀୟରେ ପୁଲିସ ଏବଂ ସର୍ବଶେଷରେ ବି ପୁଲିସ । ସେଇଦିନର ମାତ୍ର ଦେଖିଲାପରେ ମୋର ପୁଲିସ ପ୍ରତି ଏକ ପ୍ରକାର ବିତୃଷ୍ଣା ଆସିଯାଇଥିଲା । ପୁଲିସ ସେତେବେଳେ ଥିଲା ଆତଙ୍କର ବସ୍ତୁ ।

ମାଛ ଖାଇବ ଇଲିଶି
 ଚାକିରି କରିବ ପୁଲିସି ।

ଏଇ ପ୍ରକାର ଢଗ ପ୍ରଚଳିତ ଥିଲା ଆମ ପିଲାଦିନରେ । ଦେଶ ସ୍ୱାଧୀନ ହୋଇଛି କିନ୍ତୁ ପୁଲିସର ଚରିତ୍ର ବଦଳି ନାହିଁ । କିନ୍ତୁ ପୁଲିସ କହିଲେ ଏସ୍.ପି., ଆଇ.ଜି., ଡି.ଆଇ.ଜି. ବା ଡି.ଜି.ଙ୍କୁ ବୁଝାଏନା । ପୁଲିସ କହିଲେ ବୁଝାଏ ଥାନାବାବୁ, ସବ୍-ଇନ୍ସପେକ୍ଟର ଏବଂ ଖୁବ୍ ବେଶି ହେଲେ ଇନ୍ସପେକ୍ଟର ପର୍ଯ୍ୟନ୍ତ ।

ଆକସ୍ମିକ ଭାବରେ ପୁଲିସ ବିଭାଗରେ ମୋର ବହୁ ବନ୍ଧୁ ଚାକିରି କରିଛନ୍ତି । ଏହା ମୋ ପାଇଁ ରେଭେନ୍ସା କଲେଜର ଦାନ । ଆକସ୍ମିକ ଭାବରେ ହେଉ ବା ଯେଉଁ ଦୃଷ୍ଟିରୁ ହେଉ ସର୍ବଭାରତୀୟ ପରୀକ୍ଷା ଦେଇଥିବା ବହୁ ଛାତ୍ର ଆଇ.ପି.ଏସ୍. ଏବଂ ରାଜ୍ୟସ୍ତରୀୟ ପରୀକ୍ଷା ଦେଇଥିବା ଅନେକ ଛାତ୍ର ଓ.ପି.ଏସ୍. ହୋଇଛନ୍ତି । ସେମାନଙ୍କ ଭିତରୁ କେତେ ପୁଲିସ ଚାକିରି କରିବା ପାଇଁ ପରୀକ୍ଷା ଦେଉଥିଲେ ବା କାମନା କରିଥିଲେ ତାହା ସ୍ୱତନ୍ତ୍ର କଥା । କିନ୍ତୁ ଯେଉଁ କାରଣରୁ ହେଉ ନା କାହିଁକି ସେମାନେ ଦୈବାତ୍ ପୁଲିସ ଚାକିରି କରିଛନ୍ତି ।

ପୁଲିସ ଚାକିରି କରି ନ ଥିଲେ ସେମାନଙ୍କ ଭିତରୁ ଅନେକ ଭଲ ସାହିତ୍ୟିକ, ଅଧ୍ୟାପକ, ଗବେଷକ ହୋଇପାରିଥାନ୍ତେ । ସେତେବେଳେ ବିଶ୍ୱବିଦ୍ୟାଳୟ ଗ୍ରାଣ୍ଟସ କମିଶନର ଦରମା ହାର ଶିକ୍ଷା ବିଭାଗରେ ଲାଗୁ ହୋଇଥିଲେ ଏମାନଙ୍କ ଭିତରୁ କେତେ ଆଇ.ପି.ଏସ୍ (ଏପରିକି ଆଇ.ଏ.ଏସ୍.) ହୋଇଥାନ୍ତେ କି ନାହିଁ ସେ ବିଷୟରେ ମୋର ସଂଦେହ ଅଛି । ନାମ ଲେଖିବି ନାହିଁ କାରଣ ତାଲିକା ବଡ଼ ହୋଇଯିବ । କିନ୍ତୁ ସେମାନେ କ'ଣ ପୁଲିସ ? ପୁଲିସ ହେଉଛନ୍ତି ଥାନାବାବୁ, ଅଫିସର ଇନ୍‌ଚାର୍ଜ ବା ଇନ୍ସପେକ୍ଟର ।

ମୋର ମନେପଡୁଛି । ଥରେ ମୋର ଜଣେ ବନ୍ଧୁ ମୋତେ ନିମନ୍ତ୍ରଣ କଲେ 'ଆତଙ୍କବାଦ' ଉପରେ ଏକ ସେମିନାରରେ ଅଂଶ ଗ୍ରହଣ କରିବା ପାଇଁ । ଦୁଇଜଣ ସାମ୍ବାଦିକ ଏବଂ ମୋ ଭଳି ଜଣେ ଅଣ-ସାମ୍ବାଦିକ (ଏବେ ମୁଁ ବିଧିବଦ୍ଧ ସ୍ତମ୍ଭକାର ହୋଇସାରିଲିଣି)ଙ୍କ ଛଡ଼ା ବାକି ସମସ୍ତେ ପୁଲିସ ଅଫିସର ବା ଅବସରପ୍ରାପ୍ତ ପୁଲିସ ଅଫିସର । ମୋର କହିବା ପାଇଁ ପାଳି ଆସିଲା । ମୁଁ ଅନେଇଲି ସମସ୍ତଙ୍କୁ ଏବଂ କହିଲି ଯେ ଦେଖନ୍ତୁ ଆପଣମାନଙ୍କ ସମସ୍ତଙ୍କ ସହିତ ମୋର ପରିଚିତି ସ୍ୱତନ୍ତ୍ର । ଆମେସବୁ ଦିନେ କଲେଜରେ ପାଠ ପଢୁଥିଲେ ଏବଂ ସ୍ୱପ୍ନ ଦେଖୁଥିଲେ ଏକ ସମୃଦ୍ଧିଶାଳୀ, ଉନ୍ନତ ଏବଂ ସାମ୍ୟର ଭାରତବର୍ଷ । ଆମେ

ସମସ୍ତେ ଆଜିର ଆବରଣକୁ ଉତାରି ଦେଇ ସେଦିନର ଆବରଣକୁ ପିନ୍ଧିବା ଏବଂ ଆଲୋଚନା କରିବା । ତା'ହେଲେ ହିଁ ଆତଙ୍କବାଦ ବିଷୟରେ ପ୍ରକୃତ ଆଲୋକପାତ ହୋଇପାରିବ ।

'ଆତଙ୍କବାଦ' ଏକ କ୍ରିୟା ନା ପ୍ରତିକ୍ରିୟା ? ଆତଙ୍କବାଦ କହିଲେ ବିଭିନ୍ନ ପ୍ରକାରର ଆତଙ୍କବାଦ ବୁଝାଏ । ସଂତ୍ରାସବାଦୀ ଆତଙ୍କବାଦ (ଯେପରି ଘଟୁଛି ନାଗାଲାଣ୍ଡ ବା ପଂଜାବରେ), ସୀମାପାର ଆତଙ୍କବାଦ (ଯେପରି ଘଟୁଛି କାଶ୍ମୀରରେ), ମାଫିଆ ଆତଙ୍କବାଦ (ଯେପରି ଘଟୁଛି ବଡ଼ ବଡ଼ ସହରରେ) ଏବଂ ସର୍ବୋପରି ନକ୍ସଲବାଦୀ ଆନ୍ଦୋଳନ, ଯାହାକୁ ଅପଣମାନେ ଆତଙ୍କବାଦ ବୋଲି କହୁଛନ୍ତି । ନକ୍ସଲବାଦୀ ଆନ୍ଦୋଳନ (ଆପଣମାନଙ୍କ ଭାଷାରେ ଆତଙ୍କବାଦ) ଅନ୍ୟମାନଙ୍କ ଠାରୁ ସ୍ୱତନ୍ତ୍ର । କିନ୍ତୁ ଯଦି ବି ସମସ୍ତଙ୍କୁ ଏକାଠି ବିଚାର କରାଯାଏ, ତା'ହେଲେ ବି ଏସବୁ କ୍ରିୟା ନା ପ୍ରତିକ୍ରିୟା ? କାଶ୍ମୀରରେ ଆତଙ୍କବାଦୀମାନେ ଜନ ସମର୍ଥନ ପାଉଛନ୍ତି କିମିତି ଏବଂ କାହିଁକି ପାଉଛନ୍ତି ? ଭଗତ ସିଂହର ପଂଜାବ କାହିଁକି ସଂତ୍ରାସବାଦର ଚରାଭୂଇଁ ପାଲଟିଲା ? କ'ଣ ପାଇଁ ଭାରତର ଉତ୍ତରପୂର୍ବ ରାଜ୍ୟମାନଙ୍କରେ ସଂତ୍ରାସବାଦୀମାନେ ସକ୍ରିୟ ? ପରିଶେଷରେ ନକ୍ସଲବାଦୀ ଆନ୍ଦୋଳନର ସାମାଜିକ, ରାଜନୀତିକ ଭିତ୍ତିଭୂମି କ'ଅଣ ?

ସେଦିନ ପୂର୍ବତନ ସିନିଅର ପୋଲିସ ଅଫିସର ଶ୍ରୀ ବିୟତ୍‌କେଶ ତ୍ରିପାଠୀ ପଂଜାବରେ ପୋଲିସର ଗଣହତ୍ୟା ସଂପର୍କରେ ଆପଣାର ନିଜସ୍ୱ ଅଭିଜ୍ଞତା ବର୍ଣ୍ଣନା କରି ଯେଉଁ ଭାଷଣ ଦେଲେ ତାହା ସମସ୍ତଙ୍କୁ ନିର୍ବାକ୍ କରିଦେଲା । ଭୁବନେଶ୍ୱରରେ ଅବସର ଜୀବନଯାପନ କରୁଥିବା ଶ୍ରୀ ତ୍ରିପାଠୀ କହିଲେ ଯେ ମୁଁ ଚୋର ଭୟରେ ଆତଙ୍କିତ ନୁହେଁ, ପୁଲିସ ଭୟରେ ଆତଙ୍କିତ, ଯଦିଓ ମୁଁ ଜଣେ ଅବସରପ୍ରାପ୍ତ ସିନିଅର ପୁଲିସ ଅଫିସର ।

ସେ ଦିନର ଆଲୋଚନା ଖୁବ୍ ଖୋଲା ମନରେ ହୋଇଥିଲା ଏବଂ ପ୍ରାୟ ସବୁ ପୋଲିସ ଅଫିସର ମତ ଦେଇଥିଲେ ଯେ ସାମାଜିକ ଅତ୍ୟାଚାର, ଆର୍ଥନୀତିକ ଶୋଷଣ, ରାଜନୀତିକ ଅବହେଳା ଯୋଗୁଁ ହିଁ ନକ୍ସଲବାଦୀ ଆନ୍ଦୋଳନ କୋରାପୁଟ (ଅବିଭକ୍ତ) ଜିଲ୍ଲାରେ ମୁଣ୍ଡ ଟେକୁଛି । ଏବଂ କେବଳ ପୁଲିସ ଆକ୍ସନ ଦ୍ୱାରା ତାହା ଦୂର ହୋଇପାରିବ ନାହିଁ । ଏଥିପାଇଁ ସମଗ୍ର ଶାସନକଳକୁ ସଜାଗ ଏବଂ ଲୋକାଭିମୁଖୀ କରିବାକୁ ହେବ । ଆଦିବାସୀ ହରିଜନମାନଙ୍କୁ ସାମାଜିକ ଅତ୍ୟାଚାର ଏବଂ ଆର୍ଥନୀତିକ ଶୋଷଣରୁ ମୁକ୍ତ କରିବାକୁ ହେବ । ମୁଁ ଏଇ ଅଂଶ ଲେଖିଲା ବେଳକୁ ସଦ୍ୟ ଫେରିଛି ରାୟଗଡ଼ା ଜିଲ୍ଲା ଗସ୍ତରୁ । ନକ୍ସଲବାଦୀମାନଙ୍କ ଦ୍ୱାରା ଅଧ୍ୟୁଷିତ ଅଂଚଳ ଦେଇ ଆମେ ଫେରୁଥିଲୁ । ବାଟରେ ଶୁଣିଲୁ ଯେ ଗଲା କାଲି ଏକ ଲାଣ୍ଡମାଇନ୍ ବିସ୍ଫୋରଣରେ ପ୍ରାଣ ହରାଇଛନ୍ତି ସାତଜଣ ମିଲିଟାରୀ ପୁଲିସ । ବାଟରେ ଏକ ହୋଟେଲରେ ଜଳଖିଆ ଖାଇଲାବେଳେ ଏକ ସଂବାଦ ଶୁଣିବାକୁ ମିଳିଲା । ହଠାତ୍ ଆମ ଗାଡ଼ିରେ ମୋତେ ଲକ୍ଷ୍ୟକରି ମୋର ଜଣେ ବନ୍ଧୁ ତାଙ୍କ ଗାଡ଼ି ଅଟକାଇ ଆମେ ଜଳଖିଆ ଖାଉଥିବା ଦୋକାନରେ ପହଞ୍ଚିଗଲେ । ଚାପା ଚାପା ଗଳାରେ ସେ କହିଲେ ଏଇ ବିସ୍ଫୋରଣ କଥା । ବୋଧହୁଏ ସେ କହିବାକୁ ଚାହୁଁଥିଲେ ସେଇ ବାଟରେ ନ ଯିବା ପାଇଁ, କିନ୍ତୁ ଆମ

ଭିତରେ କୌଣସି ଭାବାନ୍ତର ନ ଦେଖି ସେ ଆଶ୍ଚର୍ଯ୍ୟ ହେଲେ । ଦୀର୍ଘ ପଥ ଅତିକ୍ରମ କରି ଆସିଲାବେଳେ ବାଟରେ ଦୁଇ ଚାରିଟା ବଡ଼ ପୁଲିସ ଅଫିସରଙ୍କ ଗାଡ଼ି ଛଡ଼ା ଆଉ ରେଡ଼ଆଲର୍ଟର କୌଣସି ଲକ୍ଷଣ ଦେଖିଲୁ ନାହିଁ । କିନ୍ତୁ ଲୋକମାନେ ଏହି ଘଟଣାକୁ ଚାପା ଚାପା କଣ୍ଠରେ ଆଲୋଚନା କରୁଥାଆନ୍ତି । ଆତଙ୍କ ସ୍ପଷ୍ଟ– ଆତଙ୍କ ଖାଲି ନକ୍ସଲବାଦୀମାନଙ୍କ ତରଫରୁ ନୁହେଁ, ତା'ଠାରୁ ବେଶି ହିଂସ୍ର ମିଲିଟାରୀ ପୁଲିସର । କାରଣ କୁମ୍ବିଙ୍ଗ ଅପରେଶନ (combing operation) ଆରମ୍ଭ ହୋଇଛି । କେହି ଧରାପଡ଼ି ନାହାନ୍ତି ଏପର୍ଯ୍ୟନ୍ତ । ଧରା ପଡ଼ିବେ କି ନାଇଁ ସଂଦେହ, କିନ୍ତୁ ପୁଲିସ ଯେତିକି ଅସଫଳ ହେବ, ସେତିକି ହିଂସ୍ର ହେବ ଏବଂ ଦାଉ ସାଧିବ ସାଧାରଣ ଲୋକଙ୍କ ଉପରେ ।

ଫେରି ଘରେ ଟି.ଭି. ଖୋଲିଲା ବେଳକୁ ଇ.ଟି.ଭି.ର ଏକ ସାକ୍ଷାତ୍କାର ଚାଲିଛି ଦୁର୍ଗମ ଅରଣ୍ୟାନୀ ଭିତରେ ନକ୍ସଲବାଦୀ ନେତାଙ୍କ ସହିତ । ଟି.ଭି. ଯାଇପାରିଲା ତାଙ୍କୁ ଭେଟିବା ପାଇଁ କିନ୍ତୁ ପୁଲିସ ଟେର ପାଉ ନାହିଁ । ଏଥିରୁ ସେମାନଙ୍କ ଜନ ସମର୍ଥନ ସୁସ୍ପଷ୍ଟ ।

ଇଣ୍ଟରଭିଉ ଦେଉଥିବା ବ୍ୟକ୍ତି (ଯାହାଙ୍କର ମୁହଁ ଦେଖାଯାଉ ନ ଥିଲା) କହୁଥିଲେ ଯେ ଆମେ ଯାହା ଦାବି  କରିଛୁ, ତାହାର ଯଥାର୍ଥତା ସଂପର୍କରେ ଜାତୀୟ ବିତର୍କ ହେବା ଉଚିତ । ଆମର ଦାବି ଯଥାର୍ଥ କି ନୁହେଁ, ତାହାର ବିଚାର ଜନସାଧାରଣ କରନ୍ତୁ । ତା' ନ କରି ଆମକୁ ଗୁଳିର ସାମନା କରିବାକୁ ପଡୁଛି । ସେ କହିଲେ ଯେ ଚଳିତ ବର୍ଷ ଶେଷ ସୁଦ୍ଧା ଆମର ଦୁଇ ହଜାର ସୈନ୍ୟ ପ୍ରସ୍ତୁତ ହୋଇଯିବେ । ସେ 'ସୈନ୍ୟ' ଶବ୍ଦଟିକୁ ବ୍ୟବହାର କରିବା ପାଇଁ କୁନ୍ଥୁ କୁନ୍ଥୁ ହେଉଥିଲେ । କାରଣ ବୋଧହୁଏ ସେ ସଚେତନ ହୋଇ ଉଠୁଥିଲେ ଯେ ଭାରତୀୟ ସୈନ୍ୟ ଯେଉଁ ପ୍ରକାରର ମାରଣାସ୍ତ୍ରରେ ସଜ୍ଜିତ ତାହା ସେମାନଙ୍କର ନାହିଁ ।

ମୁଖ୍ୟ କଥା ଉଠୁଛି ସେମାନଙ୍କ ଦାବିରୁ । ଏ ପର୍ଯ୍ୟନ୍ତ ସେମାନେ ଯେଉଁ ଦାବି କରିଆସିଛନ୍ତି ତାହା ଅଯଥାର୍ଥ ବୋଲି କେହି କହି ନାହାନ୍ତି । ତେଣୁ ପ୍ରଶ୍ନଉଠୁଛି ଏହାର ସମାଧାନ କିପରି ହେବ ?

ଦୁଇଟି ବିକଳ୍ପ ରହିଛି । ଗୋଟିଏ ହେଉଛି ଅଧିକ, ଅତ୍ୟାଧୁନିକ ମାରଣାସ୍ତ୍ରରେ ପ୍ରସ୍ତୁତ ମିଲିଟାରୀ ପୁଲିସ ପଠାଯିବ ସେମାନଙ୍କର ମୁକାବିଲା ପାଇଁ । ତା'ର ଖର୍ଚ୍ଚ କେତେ ହେବ ତା'ର ହିସାବ ନ କରିବା ଭଲ । କାରଣ ଦେଖାଯିବ ଯେ ସେ ବାବଦରେ ଯେତିକି ଖର୍ଚ୍ଚ ହବ ସେତିକି ଖର୍ଚ୍ଚ ଠିକ୍ ଭାବରେ କଲେ ସେମାନଙ୍କର ଯଥାର୍ଥ ଦାବିର ବହୁଳାଂଶ ପୂରଣ କରାଯାଇପାରିବ ।

ସରକାରୀ ଆଭିମୁଖ୍ୟର ଏଇ ବିଚିତ୍ର ଦିଗ୍‌ଦର୍ଶନ ଅଛପା ନୁହେଁ ।

କୋରାପୁଟ ଜିଲ୍ଲାରେ ରହିଛି ବଂଗ ଶରଣାର୍ଥୀ ବସତି । ଡି.ଡି.କେ. ନାମକ ଏଇ ସଂସ୍ଥା ପାଇଁ ଏ ପର୍ଯ୍ୟନ୍ତ ଯେତେ ଅର୍ଥ ଖର୍ଚ୍ଚ ହୋଇଛି ସେଇତକ ଖର୍ଚ୍ଚ ଠିକ୍ ଭାବରେ କରିଥିଲେ, ସେଇ ଅର୍ଥରେ ବଂଗ ଶରଣାର୍ଥୀ ସମେତ ଆଦିବାସୀମାନଙ୍କର ପିଲାମାନେ ଦିଲ୍ଲୀ ସହରରେ ଯେକୌଣସି ପ୍ରତିଷ୍ଠିତ ଶିକ୍ଷାନୁଷ୍ଠାନମାନଙ୍କରେ ପାଠ ପଢ଼ି ପାରିଥାନ୍ତେ ଏବଂ ସେମାନଙ୍କର

ପରିବାର ମଧ୍ୟ ସ୍ୱଚ୍ଛଳ ହୋଇସାରନ୍ତେଣି କେଉଁ କାଳରୁ । କିନ୍ତୁ ଅର୍ଥ ବିନର୍ବ୍ୟୟ ଏବଂ ତୋଷରପାତ ହେତୁ ପଇସା ଖର୍ଚ୍ଚ ହେଲା କିନ୍ତୁ ଶରଣାର୍ଥୀ ଏବଂ ଆଦିବାସୀ ଯେଉଁ ତିମିରେକୁ ସେଇ ତିମିରେ ।

ଆଉ ଏକ ଉଦାହରଣ ।

କାଶ୍ମୀରରେ ୧୯୪୮ ମସିହାରୁ ୨୦୦୨ ମସିହା ଭିତରେ କାଶ୍ମୀରର 'ବିକାଶ' ପାଇଁ ଯେଉଁ ଅର୍ଥ ଖର୍ଚ୍ଚ କରିଛୁ ତାହା ବାଟମାରଣା ଓ ହରିଲୁଟ ହୋଇ ନ ଥିଲେ କାଶ୍ମୀରର ମାନଚିତ୍ର ବଦଳି ସାରନ୍ତାଣି । ଏହାଛଡ଼ା ସାମରିକ ଖର୍ଚ୍ଚ ତ ଅଛି । ତାକୁ ବାଦଦେଇ ମଧ୍ୟ ଯେତିକି ଅର୍ଥ ଖର୍ଚ୍ଚ ହୋଇଛି, ସେଥିରେ କାଶ୍ମୀରବାସୀଙ୍କୁ ଶିକାରା ଭିତରେ ଜୀବନଯାପନ କରିବାକୁ ପଡୁ ନ ଥାନ୍ତା ।

ତାହା ହୋଇ ନାହିଁ । କାହିଁକି ହୋଇ ନାହିଁ ତାହାର କୈଫିୟତ ସେମାନଙ୍କୁ ଦିନେ ଦେବାକୁ ହେବ । ସେଇପରି ନକ୍ସଲବାଦୀ ସମସ୍ୟା । ସ୍ୱାଧୀନତା ପାଇବାର ୫୬ ବର୍ଷ ବିତିଗଲା । ନିର୍ବାଚନରେ ସଂରକ୍ଷଣ ବ୍ୟବସ୍ଥା ଦଶବର୍ଷ ପାଇଁ ଥିଲା । କାରଣ ସେତିକି ସମୟ କୁଳାନ ବୋଲି ଧରା ଯାଇଥିଲା ଆର୍ଥନୀତିକ ଦୃଷ୍ଟିରୁ ଅନୁନ୍ନତ ଲୋକମାନଙ୍କୁ ଅନ୍ୟମାନଙ୍କ ସମାସ୍କନ୍ଦ ହେବା ପାଇଁ । କିନ୍ତୁ ବର୍ତ୍ତମାନ ମନେହେଉଚି ତାହା ଯେପରି ଅନନ୍ତକାଳ ପର୍ଯ୍ୟନ୍ତ ଚାଲିବ । କାରଣ ଶୋଷଣ ସେମିତି ରହିଛି । ମହାଜନମାନେ ଶୋଷଣ କରି ଚାଲିଛନ୍ତି । ଉନ୍ନୟନମୂଳକ କାମ ଯାହା ହେବାର କଥା ହେଉ ନାହିଁ । ସ୍କୁଲ ନାହିଁ, ଘର ଥିଲେ ଶିକ୍ଷକ ନାହିଁ । ଡାକ୍ତରଖାନା ନାହିଁ । ଡାକ୍ତରଖାନା ଥିଲେ ଡାକ୍ତର ନାହାନ୍ତି । ଯେଉଁ ଡାକ୍ତର ସେ ଅଂଚଳକୁ ଗଲେ ସେମାନେ ଆଉ ଆସିପାରୁ ନାହାନ୍ତି ।

ମୁଁ ଥରେ ମୋଟୁ ଗାଁରେ ପହଞ୍ଚିଲି । ସେଠାରେ ଜଣେ ଅର୍ଥୋପେଡିକ୍ ସ୍ପେଶିଆଲିଷ୍ଟ ଡାକ୍ତରଙ୍କୁ ଦେଖିଲି । କିନ୍ତୁ ଡାକ୍ତରଖାନା ନାହିଁ, କମ୍ପାଉଣ୍ଡର, ନର୍ସ କେହି ନାହାନ୍ତି । ଏଇ ସ୍ଥାନରେ ଜଣେ ଅର୍ଥୋପେଡିକ୍ ସ୍ପେଶିଆଲିଷ୍ଟ କ'ଣ କରିବ ? ସେ ହାତଗୋଡ଼ ବାନ୍ଧି ବସିଛନ୍ତି । ଆସିପାରୁ ନାହାନ୍ତି, କାରଣ ରିଲିଭର କେହି ମିଳୁ ନାହାନ୍ତି । ମୁଁ ଆସି ତତ୍‌କାଳୀନ ସ୍ୱାସ୍ଥ୍ୟମନ୍ତ୍ରୀଙ୍କୁ ଏହା କହିଲି ଏବଂ ହସ୍ତକ୍ଷେପ ଦାବି କଲି । ତାଙ୍କର ବଦଳି ହେଲା ।

ଠିକ୍ ଏବେ ନବରଂଗପୁରରେ ସେଇପରି ଅବସ୍ଥା ଦେଖିଲି । ସ୍ୱାମୀ ସ୍ତ୍ରୀ ଡାକ୍ତର । ନବବିବାହିତ ଅବସ୍ଥାରେ ସେମାନେ ଏଇ ଅଂଚଳରେ କାମ କରିବାକୁ ଚାହିଁଲେ । କୁହା ହୋଇଥିଲା ଦୁଇବର୍ଷ ପାଇଁ ଯାଅ । କିନ୍ତୁ ଆଉ ସେଠାରୁ ବଦଳି ହେଉ ନାହିଁ । ବଦଳି କେବେ କେବେ ହେଉଛି, ପୁଣି ବାତିଲ ହୋଇଯାଉଛି । କାରଣ ରିଲିଭର ମିଳୁ ନାହାନ୍ତି ।

ବାଲିଗୁଡ଼ା ଅଂଚଳରେ ଏଇପରି ଜଣେ ଡାକ୍ତରଙ୍କୁ ମୁଁ କିଛିବର୍ଷ ତଳେ ଦେଖିଥିଲି ଯେ ଦୀର୍ଘ ୧୩ ବର୍ଷ କାଳ ସେଇଠି ରହିଯାଇଛନ୍ତି ।

ମୋ ବାପା ଚାକିରି କଲାବେଳେ ଓଡ଼ିଶାରେ ଅନେକ ଅଂଚଳକୁ 'ଏଜେନ୍ସି ଅଂଚଳ' ବୋଲି କୁହାଯାଉଥିଲା । ଜଳବାୟୁ ଭାରି ଖରାପ । ଗମନାଗମନର ବାଟ ମଧ୍ୟ ଖୁବ୍ ଖରାପ ।

କିନ୍ତୁ ଚାକିରିର ସର୍ତ୍ତଥିଲା ଯେ ଦୁଇବର୍ଷ ସେଇ ଅଂଚଳରେ କାମ କରିବାକୁ ହେବ । ତେଣୁ ଅବିବାହିତ ଥିଲାବେଳେ ଅନେକ ସେଇ ଅଂଚଳକୁ ଆଗ ଚାଲି ଯାଉଥିଲେ । ଠିକ୍ ଦୁଇବର୍ଷ ପରେ ସେମାନଙ୍କର ବଦଳି କେବଳ ନିଶ୍ଚିତ ନୁହେଁ, ଆଉ ସେମାନେ ଏଜେନ୍ସି ଅଂଚଳକୁ ବଦଳି ହୋଇ ନ ଥିଲେ ।

ବର୍ତ୍ତମାନ ଅନେକ (ବିଶେଷତଃ ଯେଉଁମାନଙ୍କର ଉପରେ ପ୍ରଭାବ ଅଛି) ଯାଇ ନାହାନ୍ତି । ଯେଉଁମାନେ କର୍ତ୍ତବ୍ୟନିଷ୍ଠା ଯୋଗୁଁ ଯାଉଛନ୍ତି ସେମାନେ 'ବୋକା' ପାଲଟୁଛନ୍ତି ।

ଆଦିବାସୀମାନଙ୍କ ପାଇଁ ଉଦ୍ଦିଷ୍ଟ ଶତକଡ଼ା ୮୦ ଭାଗରୁ ଊର୍ଦ୍ଧ୍ୱ ବାଟମାରଣା ହୋଇଯାଉଛି ବୋଲି ସରକାର ସ୍ୱୀକାର କରୁଛନ୍ତି । ଏଇ ବାଟମାରଣା ଏକ ନୀତିରେ ପରିବର୍ତ୍ତିତ ହୋଇଗଲାଣି । ତେଣୁ ଆଦିବାସୀ ଉନ୍ନୟନ ଏକ ହରିଲୁଟ କାରବାରରେ ପରିଣତ ହୋଇଛି । ଲାଞ୍ଚନେଇ କାମ କରିବା ଏକ ସାଧାରଣ କଥା ହୋଇଛି । ଲାଞ୍ଚ ଦିଅ ନଚେତ ଚାପ ପକାଅ । ଏ ଦୁଇଟି ବ୍ୟତିରେକେ ଆଉ କିଛି ବିକଳ୍ପ ନାହିଁ ।

ଏଇ ଯେତେବେଳେ ଆଦିବାସୀମାନଙ୍କର ସମସ୍ୟା ଓ ପରିସ୍ଥିତି ତା'ହେଲେ ସେଇ ପୁଞ୍ଜୀଭୂତ ଅସନ୍ତୋଷ କେତେଦିନ ରହିବ ଜମାଟ ବାନ୍ଧି ?

ଦିନେ ନା ଦିନେ ବିସ୍ଫୋରକ ପରିସ୍ଥିତି ଉପୁଜିବାକୁ ବାଧ୍ୟ । ପୁଲିସ ଲଗାଇ, ବନ୍ଧୁକ ମୁନରେ ଏହାକୁ କିଛିକାଳ ପାଇଁ ଚପାଯାଇପାରେ । ପୁଣି ସେହି ପରିସ୍ଥିତି ଉପୁଯିବ ।

ଲାଣ୍ଡ୍‌ମାଇନ ବିସ୍ଫୋରଣ ବହୁ ଦେଶରେ ଆତଙ୍କ ସୃଷ୍ଟି କରିଚି । ଏହାକୁ ଜାଣିବା ପାଇଁ ଯନ୍ତ୍ର ଅଛି କିନ୍ତୁ ତାହା ସୀମିତ ପରିସ୍ଥିତିରେ ହିଁ କାର୍ଯ୍ୟକ୍ଷମ ହୋଇଥାଏ । ସାବଧାନୀ ଗାଡ଼ିରେ ସେ ଯନ୍ତ୍ର ଲାଗିଥିଲେ ମଧ୍ୟ ଧରିବା ପାଇଁ ଏହା ସବୁବେଳେ ସକ୍ଷମ ନୁହେଁ । ପୃଥିବୀର ବହୁ ଦେଶରେ ଲାଣ୍ଡମାଇନ୍ ବିସ୍ଫୋରଣ ବିରୋଧରେ ପ୍ରତିବାଦ ଉଠିଚି । କିନ୍ତୁ ଏ ପର୍ଯ୍ୟନ୍ତ ତାହା ସଫଳ ହୋଇପାରି ନାହିଁ ।

ବ୍ୟକ୍ତିର ହତ୍ୟାରେ ସାମାଜିକ ପରିବର୍ତ୍ତନ ସମ୍ଭବ ନୁହେଁ । ଏକଥା ନକ୍ସଲବାଦୀମାନେ ଜାଣନ୍ତି କି ନାଇଁ କହିପାରିବି ନାଇଁ । ତାଙ୍କର ଟାର୍ଗେଟ ଥିଲେ ସି.ଆର୍.ପି.ଏଫ୍. ସିପାହୀ, ଯେଉଁମାନେ ନିଜେ ସ୍ୱଳ୍ପ ବେତନଭୋଗୀ କିନ୍ତୁ ସେଇ ମୁହୂର୍ତ୍ତରେ ସେମାନେ ଥିଲେ ଆକ୍ରମଣ କରୁଥିବା ବାହିନୀ । ତାଙ୍କର ଟାର୍ଗେଟ ମଧ୍ୟ ଥିଲେ ଏସ୍.ପି. ଶ୍ରୀ ଶର୍ମା ଯେ ନିଜେ ଜଣେ Forward-looking ଅଫିସର ଭାବରେ ଖ୍ୟାତ । ସେଇ ସମୟରେ ସେ ଥିଲେ ଆକ୍ରମଣକାରୀ ବାହିନୀର ପ୍ରତୀକ । ତାଙ୍କର ଦୃଷ୍ଟିକୋଣ ଯେତେ ପ୍ରଗତିଶୀଳ ହୋଇଥାଉ ତାହା ଏକ ସ୍ୱତନ୍ତ୍ର ପ୍ରଶ୍ନ । କିନ୍ତୁ ଏଇମାନଙ୍କୁ ମାରି କ'ଣ ସେମାନେ ଦାବି କରିଥିବା ସମସ୍ୟାର ସମାଧାନ ହୋଇପାରିବ ? ଠିକ୍ ସେଇପରି ନକ୍ସଲବାଦୀମାନଙ୍କ ମଧ୍ୟରୁ କିଛି ସଭ୍ୟଙ୍କୁ ମାରି କ'ଣ ସେ ସମସ୍ୟାର ସମାଧାନ ହୋଇପାରିବ ?

ତେଣୁ ନକ୍ସଲବାଦୀମାନେ ଦାବି କରିଥିବା ସମସ୍ୟାର ସମାଧାନ ପାଇଁ ମଧ୍ୟ ଉଦ୍ୟମ ହେବା ଉଚିତ । ବିଜୁ ପଟ୍ଟନାୟକ ନକ୍ସଲବାଦୀମାନଙ୍କୁ ତାଙ୍କର ବଂଧୁ ବୋଲି କହୁଥିଲେ ।

ସେମାନେ ଯେଉଁ ଦାବି କରୁଛନ୍ତି ସେସବୁର ସମାଧାନ ପାଇଁ ଉଦ୍ୟମ, ପୁଲିସ ବ୍ୟବସ୍ଥା ସହିତ କରାଯିବା ଉଚିତ । କାରଣ ଏହା ଖାଲି ଏକ ଆଇନ୍ ଶୃଙ୍ଖଳା କାମ ନୁହେଁ । ଏହା ଏକ ଗଭୀର ସାମାଜିକ-ଆର୍ଥନୀତିକ-ରାଜନୀତିକ ସମସ୍ୟା । ଏକ ଦିଗରେ ବଂଧୁକ ମୁନରେ ଏହାର ଯେପରି ସମାଧାନ ହୋଇପାରିବ ନାହିଁ, ବ୍ୟକ୍ତିଗତ ପୁଲିସ-ସେନାକୁ ମାରି ମଧ ସେଇପରି ସାମାଜିକ-ଆର୍ଥନୀତିକ ସମସ୍ୟାର ସମାଧାନ ହୋଇପାରିବ ନାହିଁ ।

ଏକ ଗଭୀର ଅଂଧକାର ରାତିରେ ଚାରୁ ମଜୁମଦାରଙ୍କ ସହିତ ଚୌଦ୍ୱାରରେ ସାକ୍ଷାତ୍ । ସେ ଗଭୀର ଅସୁସ୍ଥ । ଶ୍ୱାସରୋଗୀ । ପାଖରେ ଅକ୍ସିଜେନ ସିଲିଣ୍ଡର । କୃଶକାୟ ଚେହେରା । କିନ୍ତୁ ସ୍ୱପ୍ନ ଯେତିକି, ନିଷ୍ଠା ବି ସେତିକି । ଆପଣଙ୍କ ବକ୍ତବ୍ୟ ସହିତ ମୁଁ ଏକମତ କିନ୍ତୁ ନୀତି ସହିତ ନୁହେଁ । କାରଣ ଏଇ ନୀତିର ବ୍ୟର୍ଥତା ଆପଣ ଯେପରି ଦେଖୁଛନ୍ତି, ମୁଁ ବି ସେଇପରି ଦେଖୁଛି । ସମସ୍ୟାର ସମାଧାନ ପାଇଁ ଗଭୀର ଜନ-ସଚେତନତା, ଜନ-ସଂଗ୍ରାମ ଆବଶ୍ୟକ ଯାହାର ବିହୁନେ ଏଇ ସଶସ୍ତ୍ର ସଂଗ୍ରାମ ସଂତ୍ରାସବାଦୀ ହୋଇଯିବାକୁ ବାଧ । ଚୌଦ୍ୱାର ଶିଳ୍ପାଞ୍ଚଳର ଏକ କର୍ମଚାରୀ କ୍ୱାର୍ଟର୍ସରେ ସେ ଆଶ୍ରୟ ନେଇଥାଆନ୍ତି ।

ଆଜି ମଧ ପରିସ୍ଥିତିର ପରିବର୍ତ୍ତନ ଘଟି ନାହିଁ ବିଶେଷ କିଛି । ଅସନ୍ତୋଷ ବଢ଼ିଛି, ନକ୍ସଲବାଦୀମାନେ ମଧ ବଢ଼ିଛନ୍ତି । ଏପରିକି ମାର୍କ୍ସବାଦୀମାନଙ୍କ ଦ୍ୱାରା ଛବିଶ ବର୍ଷରୁ ଊର୍ଦ୍ଧ୍ୱକାଳ ଶାସିତ ପଶ୍ଚିମବଂଗରେ ଏହା ବର୍ତ୍ତମାନ ବୃଦ୍ଧି ପାଇଛି ।

ସେଦିନ ପୁଲିସ ଅଫିସରମାନଙ୍କ ସମ୍ମିଳନୀରେ ଗୃହୀତ ହୋଇଥିବା ପ୍ରସ୍ତାବ ସରକାରଙ୍କୁ ଦିଆଯାଇଥିଲା । କ'ଣ ହେଲା ତାହାର ଭାଗ୍ୟ ତାହା ମୁଁ କହିପାରିବି ନାହିଁ ।

ପୁଣି ଏକ ସ୍ମୃତି । ପୁଲିସ ଇନ୍ସପେକ୍ଟରମାନଙ୍କର ଏକ ସେମିନାରରେ କହିବା ପାଇଁ ହଠାତ୍ ମୋତେ ନିମନ୍ତ୍ରଣ ମିଳିଲା । ମୁଁ ଆଶ୍ଚର୍ଯ୍ୟ ହେଲି । କାରଣ ବ୍ୟାରିକେଡର ଅପର ପଟରେ ମୁଁ ସବୁବେଳେ । ତଥାପି ଗଲି । ଦୈବାତ୍ ସେତିକିବେଳକୁ ଇନ୍ଦ୍ରଜିତ ଗୁପ୍ତ ଆମ ଦେଶର ଘରୋଇମନ୍ତ୍ରୀ । ସେ ଯାହା କହିଥିଲେ ପୁଲିସ ଅଫିସରମାନଙ୍କୁ ମୁଁ ସେଇଆ କହି ମୋର ବକ୍ତବ୍ୟ ଆରମ୍ଭ କଲି । ବ୍ୟାରିକେଡର ଅପର ପଟରେ ଠିଆ ହୋଇଥିବା ମଣିଷ ହିଁ ଉପଯୁକ୍ତ କଳନା କରିପାରିବ ଆରପଟର ମଣିଷର ! ମୋର ସେଇ ଅବସ୍ଥା ।

ଗୋପୀନାଥ ଦାସଙ୍କ ଦ୍ୱାରା ସେ ଦିନର ମାଡ଼ ମୋ ଭିତରେ ଏକ ଶିହରଣ ଏବଂ ଘୃଣା ସୃଷ୍ଟି କରିଥିଲା ପୁଲିସମାନଙ୍କ ପାଇଁ । ସାତଦିନ ମାଡ଼ ଖାଇସାରିଲା ପରେ ମଧ କୌଣସି ଫଳ ହେଲା ନାହିଁ । ସେ ଲୋକ ଚୋରି କରିଥିଲା କି ନାହିଁ ମୁଁ କହିପାରିବି ନାହିଁ ।

ଗୋପୀନାଥ ଦାସ କଟକରେ ଗୁଇନ୍ଦା ବିଭାଗରେ କାମ କଲେ । ମୋର ଆଇ.ଏ. ପରୀକ୍ଷା ସମୟ । ମୁଁ ରେଳବାଇ ମଜଦୁର ୟୁନିୟନ ଅଫିସରେ ବସି ପଢ଼ାପଢ଼ି କରୁଥାଏ ପରୀକ୍ଷା ପାଇଁ । ଅନେକ ସାଥୀ ଗିରଫ ହୋଇଗଲେଣି । ସୁତରାଂ ଅଫିସ ପରିଚାଳନା (ଯଦି ତାକୁ ପରିଚାଳନା କୁହାଯାଏ) ଦାୟିତ୍ୱ ପଡ଼ିଥାଏ ତରୁଣମାନଙ୍କ ଉପରେ । ହଠାତ୍ ଗୋପୀନାଥ ଦାସ ସେଠାରେ ହାଜର । ମୁଁ ତାଙ୍କୁ ଭଗାଇଦେଲି କିଛି ଗୁପ୍ତ କାରବାର ଯୋଗୁଁ

ନୁହେଁ ପରୀକ୍ଷା ପାଇଁ ପ୍ରସ୍ତୁତି ସକାଶେ ବ୍ୟସ୍ତଥିବା ଯୋଗୁଁ । ସେ କିନ୍ତୁ ଛକି ରହିଲେ ଯାଇ ବଚୁଭାଇ ଦୋକାନ ପାଖରେ କଲେଜଛକରେ । ମୁଁ ଚାଲିଲି ପରୀକ୍ଷାକୁ । ଅବଶ୍ୟ ହାତରେ କିଛି ପ୍ରଚାରପତ୍ର ଥିଲା କିନ୍ତୁ କୌଣସିଟା ବେଆଇନ୍ ନ ଥିଲା ବୋଧହୁଏ । ପ୍ରହ୍ଲାଦ ସେଠୀ, କେଶବାନନ୍ଦ ଦାସ ଏବଂ ମୁଁ ରହୁଥିଲୁ ପାଟରାସାହି ଲେବର ୟୁନିୟନ ଅଫିସରେ । ଘରର ଆରପାଖଟା ହେଉଛି ପ୍ରିଣ୍ଟିଂ ପ୍ରେସ । ୰ଘନଶ୍ୟାମ ଖଣ୍ଡୁଆଳ ତା'ର ଚାର୍ଜରେ । ସେ ଆମକୁ କମ୍ପୋଜିଂ, ଟ୍ରେଡଲରେ ପ୍ରିଣ୍ଟିଙ୍ଗ, ପ୍ରୁଫ୍ ରିଡିଂ ଦେଖାନ୍ତି । ପରବର୍ତ୍ତୀ ଜୀବନରେ ତାହା ବହୁତ ସାହାଯ୍ୟରେ ଆସିଛି ।

ଗୋପୀନାଥ ଦାସ ସଦଳବଳେ ମୋ ଉପରେ ଚଢ଼ଉ କଲେ ଏବଂ ମୋତେ ନେଇଗଲେ ଜି.ଆର.ପି. ଥାନାକୁ । ସେଇଠାରୁ କୋର୍ଟ ଚାଲାଣ । ୧୦୭ ଧାରାରେ ଗିରଫ । ଏକ ମୁଚାଲିକା ଲେଖି ଖଲାସ ହେବା ପାଇଁ ସର୍ତ୍ତରେ ସରକାରୀ ଚାକିରି କରୁଥିବା ମୋର ବାପା ଓ ଦାଦା କେହି ରାଜିହେଲେ ନାହିଁ । ୧୦୭ ଧାରାରେ ଗିରଫ କିଛିଦିନ ପରେ ଅଟକ ଆଇନ୍ ବଳରେ ବନ୍ଦୀ ହେବାର ଆଦେଶରେ ଲେଖା ଯାଇଥିଲା ମୋ ରହିବା ଘରୁ ବନ୍ଧୁକ, ଏଲ୍.ଏମ୍.ଜି. (ଯାହା କ'ଣ ମୁଁ ଦେଖି ନ ଥିଲି) ଧରାପଡ଼ିଛି ଇତ୍ୟାଦି । ଏସବୁ ଧରା ପଡ଼ିଥିଲେ ମୋତେ ତ ଅଟକବନ୍ଦୀ କରାଯିବା ପରିବର୍ତ୍ତେ ଅଦାଲତରେ ଦଣ୍ଡ ଦିଆଯାଇପାରିଥାନ୍ତା । କିନ୍ତୁ ତା' ନ କରି ଅଟକବନ୍ଦୀ କରାଗଲା କାହିଁକି ?

ଜେଲଖାନା ଥରେ ଗଲେ ସଂଶୟ, ଭୟ କଟିଯାଏ । ଏଇ ଲେଖା ଲେଖିଲା ବେଳକୁ ବିଶିଷ୍ଟ ଲେଖିକା ଅରୁନ୍ଧତୀ ରାୟ ଗୋଟିଏ ରାତି ତିହାର ଜେଲରେ କଟାଇଛନ୍ତି ଏବଂ ଫେରି କହିଛନ୍ତି ଯେ ତାଙ୍କର ଅନେକ ଭୟ କଟିଯାଇଛି । ଜେଲଖାନା ଭିତରେ ସମସାମୟିକ ଥିଲେ ଶିବାଜି ପଟ୍ଟନାୟକ, ପ୍ରହ୍ଲାଦ ସେଠୀ, ପୂର୍ଣ୍ଣଚନ୍ଦ୍ର ମହାପାତ୍ର ଓ ୰କଲ୍ୟାଣ ମଜୁମଦାର ପ୍ରଭୃତି । ଆମେ କନିଷ୍ଠ ପାଞ୍ଚଜଣ ମିଶି ଏକ ସଂଘ ଗଢ଼ିଥିଲୁ, ନାମ ଦିଆଯାଇଥିଲା ପାଞ୍ଚାଳୀ ସଂଘ । ଜେଲଖାନା ଭିତରେ ସମୟ କାଟିବା ପାଇଁ ଇମିତି ଅନେକ କଥା କରିବାକୁ ପଡ଼େ । ନ ହେଲେ ସମୟ କଟିବ କେମିତି ?

ପରବର୍ତ୍ତୀ କାଳରେ ଥରେ ଅକସ୍ମାତ୍ ଗୋପୀନାଥବାବୁଙ୍କ ସହ ସାକ୍ଷାତ୍ ହୁଏ ଅନୁଗୋଳର ଏକ ସଭାରେ । ସେ ଦିନ ସେ ହଠାତ୍ କାହିଁକି କେଜାଣି ସ୍ମୃତି ଉଖାରିଲା ପରି କହିଲେ ଯେ ଗିରିଜାବାବୁ ପ୍ରଭୃତିଙ୍କୁ ମୁଁ ଗିରଫ କରିଛି, କୌଣସି କାରଣ ନ ଥାଇ । ଆମେରିକା ସରକାରଙ୍କର ନିର୍ଦ୍ଦେଶରେ ଆମେ ଏହା କରିବାକୁ ବାଧ ହେଉଥିଲୁ । ସେ ଆମେରିକା ସରକାର କଥାଟା କେଉଁଠୁ ଆଣିଲେ ମୁଁ କହିପାରିବି ନାହିଁ । ସମୟ ଅତିକ୍ରାନ୍ତ ହୋଇଛି । ସେ ଅବସର ନେଲେଣି । ମୋର ଜୀବନର ଧାରା ବଦଳି ଯାଇଛି । ଏବେ ସେ ମୃତ ।

ମୋର ଗୃହଶିକ୍ଷକ ଥିଲେ ମାନଗୋବିନ୍ଦ ଭୂୟାଁ । ଇମିତି ମଣିଷଟିଏ ମିଳିବା କଠିନ । ଗୃହଶିକ୍ଷକ ହେଉ ହେଉ ସେ ଆମ ପରିବାରଭୁକ୍ତ ହୋଇଗଲେ । ଅର୍ଦ୍ଧନିମୀଳିତ ଆଖିରେ ସେ ପାଠ ପଢ଼ାନ୍ତି ଏବଂ ଗପ କହନ୍ତି । ନିଜେ ବି.ଏ. ପାସ୍ କରିପାରି ନାହାନ୍ତି କିନ୍ତୁ ପାଠ

ଇମିତି ଚମତ୍କାର ପଢ଼ାନ୍ତି ସବୁ ମନେ ରହିଯାଏ । ବି.ଏ. ପରୀକ୍ଷା ପ୍ରସ୍ତୁତ ହେଉଥିବା ଛାତ୍ରମାନଙ୍କୁ ସେ ସଫଳତାର ସହିତ ଟିଉସନ୍ କରିଛନ୍ତି ।

ମୋତିଝରଣ କଲୋନୀ । ଅନେକ ତରୁଣ ସଦ୍ୟ ଯୋଗ ଦେଇଥାଆନ୍ତି ଚାକିରିରେ । ସେମାନେ ସାଂସ୍କୃତିକ ସନ୍ଧ୍ୟା କରନ୍ତି, ନାଟକ କରନ୍ତି, ଗୀତ ଗାଆନ୍ତି । ଗୋଟିଏ ଗୀତ ମୋର ମନେପଡୁଛି । ଗୀତର କିଛି ଅଂଶ ଏଇପରି–

ତୋହରି ଦେଶର          ବାର ବରଷର
ଛାର ଛୁଆ ଚାଖଣ୍ଡକ
ସାତ ତାଳ ପାଣି          ପରେ ଦେଲା ଥୋଇ
ଗଢ଼ି ଯେଉଁ କୋଣାରକ
ଦେଖି ଲାଗିଲା ଚମକ
ସାରା ଦୁନିଆକୁ          ବାଳୁତ ବୁଦ୍ଧିଟା
ଲଗାଏ ଆଜି ଭେଲକ ।

ଏଇ ଗୀତର ଯେଉଁ ଶେଷ ପାରାଟି ସେମାନେ ଗାଆନ୍ତି ନାହିଁ କି ଗୀତଟି ମାଗିଲେ ବି ସେଇ ପାରାଗ୍ରାଫ୍‌ଟି ଦିଅନ୍ତି ନାହିଁ । ସେଇ ପାରାଗ୍ରାଫ୍‌ରେ ଯାହା ଥିଲା ମୁଁ ଉଦ୍ଧୃତ କରୁଛି ।

''ତେଲୁଗୁ ବଂଗାଳୀ ବିହାରୀଏ ମିଳି
ମାଆଙ୍କୁ ନେଲେଣି କାଟି''

ଓଡ଼ିଶାରେ ବସତି ସ୍ଥାପନ କରିଥିବା ବିହାରୀ, ବଂଗାଳୀ, ତେଲୁଗୁମାନଙ୍କ ଭିତରେ ଯେପରି କୌଣସି ଅସୂୟା ଜାତ ନ ହୁଏ ସେଥିପାଇଁ ସଚେତନ ଏଇ ଯୁବକମାନେ ସେ ପାରାଗ୍ରାଫ୍‌ଟି ଦିଅନ୍ତି ନାହିଁକି ବୋଲନ୍ତି ନାହିଁ ।

ଏହା ମୋତେ ଖୁବ୍ ଅନୁପ୍ରାଣିତ କରିଥିଲା ଏବଂ ଓଡ଼ିଆ କହିଲେ କାହାକୁ ବୁଝାଏ ତା'ର ନୂତନ ସଂଜ୍ଞା ମଧ୍ୟ ମୁଁ ପାଇଥିଲି । ଓଡ଼ିଶାରେ ରହିଥିବା ବହୁ ତଥାକଥିତ ଅଣଓଡ଼ିଆ ଓଡ଼ିଶାକୁ ସମୃଦ୍ଧ କରିବା ପାଇଁ ଆପଣାର ବିପୁଳ ଅବଦାନ ଦେଇଯାଇଛନ୍ତି । ଯେଉଁମାନେ ରାଧାନାଥ ରାୟଙ୍କୁ ବଙ୍ଗାଳୀ କହି ଓଡ଼ିଆର ଜାତୀୟ ଜୀବନକୁ କଳଙ୍କିତ କରିଛନ୍ତି ବୋଲି ଅଭିଯୋଗ କରିଛନ୍ତି ସେମାନଙ୍କ ସହିତ ମୁଁ ଯାଇପାରି ନାହିଁ ।

ଏବେ ମୁଁ ଦେଖୁଚି ଯେ ଓଡ଼ିଶାର ବହୁ ଅଣଓଡ଼ିଆ ଅଫିସର ଶୁଦ୍ଧ ଓଡ଼ିଆ କହୁଚନ୍ତି ଏବଂ ଓଡ଼ିଆ ବେଶ୍ ପଢ଼ିପାରୁଛନ୍ତି । ସେଦିନ ମୋତେ ଆଶ୍ଚର୍ଯ୍ୟ କରି କଟକର ତତ୍କାଳୀନ ଜିଲ୍ଲାପାଳ ଶ୍ରୀ ଏ.କେ.ବୈଷ୍ଣବ କହିଲେ ଯେ ମୁଁ ଅନେକ ସାହିତ୍ୟର ଉପନ୍ୟାସ, ଗଳ୍ପ ପଢ଼ିଛି, କିନ୍ତୁ ଫକୀରମୋହନଙ୍କର ଚରିତ୍ର ମିଳିବ କେଉଁଠି ? ଅନ୍ୟ ଦିଗରେ ଅନେକ ଅଧ୍ୟାପକ, କଳାକାର, ଡାକ୍ତର, ବିଶେଷଜ୍ଞ, ଅଫିସର ଓଡ଼ିଆରେ କହିପାରିବେ ନାହିଁ ବୋଲି କହୁଛନ୍ତି । ସେମାନଙ୍କ ମଧ୍ୟରୁ ଅଧିକାଂଶ ଯେଉଁ ଇଂରାଜୀ କହୁଛନ୍ତି ନ କହିଲେ ଭଲ । ସୁଷମା ସ୍ୱରାଜ କର୍ଣ୍ଣାଟକରୁ ପ୍ରାର୍ଥୀ ହେଲେ । ମାତ୍ର ଦିନ କେଇଟାରେ ସେ ଅନର୍ଗଳ କହିପାରିଲେ କନ୍ନଡ଼

ଭାଷାରେ । ଏହା କିନ୍ତୁ ଅନ୍ୟମାନଙ୍କ କ୍ଷେତ୍ରରେ ହେଉ ନାହିଁ । କାହିଁକି ହେଉ ନାହିଁ ତାହାର ବିଚାର ପାଠକମାନଙ୍କ ହାତରେ ।

ଠିକ୍ ସେଇପରି ଅନେକ ଇଂରାଜୀ ଭାଷାରେ ବିବାହ ବ୍ରତ ନିମନ୍ତ୍ରଣ ପତ୍ର ଛାପିବାକୁ 'ଷ୍ଟାଟସ ସିମ୍ବଲ' ବା ଆରିଷ୍ଟୋକ୍ରାସି ବୋଲି କୁହାଯାଉଛି । ଯଦି ଓଡ଼ିଆ ଭାଷା ଜାଣି ନ ଥିବା ବ୍ୟକ୍ତିମାନଙ୍କୁ ନିମନ୍ତ୍ରଣ କରାଯିବାର କଥା ସେମାନଙ୍କ ପାଇଁ ଇଂରାଜୀରେ କାର୍ଡ଼ ଛାପ । କିନ୍ତୁ ନିଜ ବନ୍ଧୁବାନ୍ଧବମାନଙ୍କ ପାଇଁ ଇମିତି ହେବ କାହିଁକି ? ଏହା ଏକ ନିଛକ ହୀନମନ୍ୟତାର ଲକ୍ଷଣ ଏଥିରେ କୌଣସି ସନ୍ଦେହ ନାହିଁ ।

ସମ୍ବଲପୁରରେ ଥିଲାବେଳେ ବ୍ରଜରାଜନଗରରେ କାଗଜକଳ ପ୍ରତିଷ୍ଠା ହୁଏ । ମହାତ୍ମା ଗାନ୍ଧୀଙ୍କଠାରୁ ଚିଠି ନେଇ ଆସିଥିଲେ ଘନଶ୍ୟାମ ଦାସ ବିରଳା ବିଶ୍ୱନାଥ ଦାସଙ୍କ ପାଖକୁ । ସେଇ ଅନୁସାରେ ବାଉଁଶ ଶହକୁ ପଇସାଟିଏ ହାରରେ ସେ ବାଉଁଶ ଲିଜ୍ ପାଇଲେ । ସମ୍ବଲପୁରରେ କାଗଜକଳ ପ୍ରତିଷ୍ଠା ହେଲା । କିନ୍ତୁ କାଗଜକଳର ଦୂଷିତଜଳ ଇବ ନଦୀର ପାଣିକୁ ବିଷାକ୍ତ କରିଦେଲା । ସେ ପାଣି ମଣିଷ ତ ଦୂରର କଥା ଗାଈ ଗୋରୁ ମଧ ପିଇପାରିଲେ ନାହିଁ । ସେ ପାଣି ବିଲରେ ମଡ଼ାଇଲେ ସବୁ ଫସଲ ନଷ୍ଟ ହୋଇଗଲା । ଏହା ବିରୋଧରେ ସମ୍ବଲପୁର ଅଞ୍ଚଳରେ ବିରାଟ ଜନଆନ୍ଦୋଳନ ଗଢ଼ିଉଠିଲା । କଂପାନୀ କୌଣସି କଥାକୁ, ନିର୍ଦ୍ଦେଶନାମାକୁ ଭୂକ୍ଷେପ କଲେ ନାହିଁ ।

କଂପାନୀ ପ୍ରାୟ ହିନ୍ଦୁମାନଙ୍କୁ ଚାକିରି ଦିଏ । ଯଦିଓ ଏଥିପାଇଁ କୌଣସି ଲିଖିତ ଆଦେଶ ନ ଥାଏ । କିନ୍ତୁ ଦୁଇଟି ବିଭାଗରେ ତାହା କାର୍ଯ୍ୟକାରୀ ହୁଏ ନାହିଁ । ଗୋଟିଏ ହେଉଛି ନୌକାମାନଙ୍କର ମଂଗୁଆଳ କାମ । ବଡ଼ ନୌକାମାନଙ୍କର ମଙ୍ଗୁଆଳମାନେ ପ୍ରାୟତଃ ମୁସଲମାନ । ସେମାନେ ଆସନ୍ତି ପୂର୍ବ ବଂଗରୁ । ମଂଗୁଆଳ କାମ ଏକ ବିଶେଷଜ୍ଞ କାମ । ବ୍ୟବସାୟ ଦୃଷ୍ଟିରୁ ଏହାର କୌଶଳ ପ୍ରାୟତଃ ମୁସଲମାନମାନେ ଆଦରି ନେଇଛନ୍ତି । ଆଉ ଗୋଟିଏ ହେଉଛି କେମିକାଲ ବିଭାଗ । ସେତେବେଳେ କୌଣସି ଏକ ବ୍ୟକ୍ତି ଭାରତ ସରକାରଙ୍କର ଉକ୍ତ ବିଭାଗରେ ମୁଖ୍ୟ ଥିଲେ । ତାଙ୍କୁ ଖୁସି କରିବାକୁ ହେଉ ବା ସେଇପରି କୌଣସି କାମ ହେଉ ଉକ୍ତ ବିଭାଗରେ କଂପାନୀ ପ୍ରାୟ ମୁସଲମାନମାନଙ୍କୁ ନିଯୁକ୍ତି ଦେଉଥିଲା । ସୁତରାଂ ବ୍ୟବସାୟ କଥା ଉଠିଲେ ସବୁ ଧର୍ମ କଥା ସେମାନେ ଭୁଲିଯାଆନ୍ତି । କେବଳ ନିଜର ବ୍ୟବସାୟ ପାଇଁ ସୁବିଧା ସଙ୍କାଶେ ଧର୍ମ କଥା ଉଠାନ୍ତି ।

କଲିକତାର ପ୍ରସିଦ୍ଧ ସାମ୍ପ୍ରଦାୟିକ ଦଙ୍ଗାରେ ଏହା ପ୍ରମାଣିତ ହୋଇଗଲା । ଜଣେ ତଥାକଥିତ ହିନ୍ଦୁ ଧନାଢ଼୍ୟ ବ୍ୟକ୍ତି ଘୋଷଣା କଲେ ଯେ ଜଣେ ମୁସଲମାନକୁ ମାରିଦେଲେ ସେ ଶହେ ଟଙ୍କା ଦେବେ । ଠିକ୍ ସେଇପରି ଜଣେ ଧନାଢ଼୍ୟ ମୁସଲମାନ ଘୋଷଣା କଲେ ଯେ ଜଣେ ହିନ୍ଦୁକୁ ମାରିଦେଲେ ସେ ଶହେ ଟଙ୍କା ଦେବେ । ରାମ ରହିମ୍‌ର ଯୁଦ୍ଧ ଚାଲିଲା କଲିକତାର ରାଜପଥରେ ।

କିନ୍ତୁ ଉକ୍ତ ଦୁଇଜଣ ଧନାଢ଼୍ୟ ବ୍ୟକ୍ତି ମିଶି ଗଲ୍‌ଫ (Gulf) ଖେଳିଲେ କଲିକତାର କ୍ଲବରେ, ଯେତେବେଳେ କଲିକତାର ରାଜପଥ ରଂଜିତ ହୋଇଗଲା ରାମ ରହିମ ରକ୍ତରେ ।

ଶୋଷଣ ଅତ୍ୟାଚାର ବିରୋଧରେ ମଣିଷର ଐକ୍ୟବଦ୍ଧ ସଂଗ୍ରାମକୁ ଭାଙ୍ଗିବା ପାଇଁ ଧର୍ମକୁ ବ୍ୟବହାର କରାଯାଇଛି । ଧର୍ମର ମହାମନ୍ତ୍ର ମଣିଷକୁ ଐକ୍ୟବଦ୍ଧ କରିଥିଲା ଦିନେ କିନ୍ତୁ ଆଜି ତାହା ବ୍ୟବହୃତ ହେଉଛି ମାନବିକତା ବିରୋଧରେ ଏବଂ ମଣିଷର ଐକ୍ୟବଦ୍ଧ ସଂଗ୍ରାମ ବିରୋଧରେ ।

ବୋଧହୁଏ କଲିକତା ହତ୍ୟାକାଣ୍ଡର ପ୍ରଭାବ ମୋର କିଶୋର ମନ ଉପରେ ଗଭୀର ରେଖାପାତ କରିଥିଲା । ଏହାର ଦୁଇଟି ପ୍ରଭାବ ଆଜି ବି ହେଜି ହୁଏ । ସାମ୍ପ୍ରଦାୟିକତାବାଦ ବିରୋଧରେ ବିତୃଷ୍ଣା ଜନ୍ମିଥିଲା ଏବଂ ଧର୍ମର ବ୍ୟବହାର ସଂପର୍କରେ ମଧ୍ୟ ଠିକ୍ ସେଇପରି ବିତୃଷ୍ଣା ଦେଖାଦେଇଥିଲା । ସବୁପ୍ରକାର ସାମ୍ପ୍ରଦାୟିକତା ବିରୋଧରେ ମୋର ମନୋଭାବ ସେଇଦିନୁ କଠୋର ହୋଇଛି ।

ବ୍ରଜରାଜନଗର କାଗଜକଳ ଓଡ଼ିଶାର ବୋଧହୁଏ ପ୍ରଥମ ବୃହତ୍ ଶିଳ୍ପ । ଏଇ ଲେଖା ଲେଖିଲାବେଳକୁ ଏଇ କାରଖାନା ବନ୍ଦ ହୋଇଯାଇଛି । ଏହାକୁ ପୁଣିଥରେ ଚଳାଇବା ପାଇଁ ଉଦ୍ୟମ ହେଉଛି ।

ଏଇ କଂପାନୀରେ ମୁଁ କିଛିଦିନ ଚାକିରି କରୁଥିଲି, ତାଙ୍କର ଭୁବନେଶ୍ୱର ଲିଆସନ କାର୍ଯ୍ୟ ଚଳାଇବା ମୋର ଦାୟିତ୍ୱ ଥିଲା । ସେତିକିବେଳେ ବ୍ରଜରାଜନଗର କାଗଜକଳ ପାଖରେ ଅବସ୍ଥିତ ହିମଗିରି ଜଙ୍ଗଲର ବାଉଁଶ ଲିଜ୍ ଦିଆଯାଉଥାଏ । ବିଜୁ ପଟ୍ଟନାୟକ ଓଡ଼ିଶାର ମୁଖ୍ୟମନ୍ତ୍ରୀ । ବ୍ୟବସାୟିକ ବୁଦ୍ଧି ପ୍ରଖର । ସେ ଓଡ଼ିଶାର ତିନୋଟି କାଗଜକଳ ଭିତରେ ସଉଦା ଆରମ୍ଭ କଲେ । ଯେହେତୁ ହିମଗିରି ବ୍ରଜରାଜନଗର କାଗଜକଳ ପାଖରେ ଅବସ୍ଥିତ, ସେଇ ଯୋଗୁଁ ସେମାନେ ଏତେ ପାଖରେ ଥିବା ବାଉଁଶ ଜଙ୍ଗଲକୁ ନେବାପାଇଁ ବେଶି ଆଗ୍ରହୀ । ଦର ଛିଣ୍ଡିଲା ଶହ ଏଗାର ଟଙ୍କାରେ । ବ୍ରଜରାଜନଗର କାଗଜକଳର ପାଟିରେ ମିଠା ଲାଗିଛି ବାଉଁଶ ଶହ ଏକ ପଇସାରେ ନେବାର । ସେମାନେ ଅସନ୍ତୁଷ୍ଟ କିନ୍ତୁ ଉପାୟ ନାହିଁ । ପଟ୍ଟା ନେଲେ କିନ୍ତୁ ଅସନ୍ତୁଷ୍ଟ ହୋଇ ।

ଦିନେ ଏହାର ଜେନେରାଲ ମ୍ୟାନେଜର ଧରିଓ୍ୱାଲ ବିଜୁ ପଟ୍ଟନାୟକଙ୍କୁ ଭେଟି ବିରଳା ବ୍ରଦର୍ସ ତରଫରୁ ଏହି ଅସନ୍ତୋଷ ପ୍ରକାଶ କଲେ । ବିଜୁ ପଟ୍ଟନାୟକ ଓଲଟି ଧରିଓ୍ୱାଲଙ୍କୁ ବିରଳା କଂପାନୀ ଛାଡ଼ି ଓଡ଼ିଶା ସରକାରଙ୍କର କୌଣସି କାରଖାନାରେ ଯୋଗଦେବା ପାଇଁ କହିଲେ ।

ତା'ପରେ ଧରିଓ୍ୱାଲ ଆରମ୍ଭ କଲେ କାହାଣୀ । ସେ କହିଲେ ଯେ ଆପଣ ତ ଖାଲି ଓଡ଼ିଶାର ମୁଖ୍ୟମନ୍ତ୍ରୀ ନୁହନ୍ତି, କଂଗ୍ରେସ ଦଳର ମଧ୍ୟ ଜଣେ ପ୍ରତିଷ୍ଠିତ ନେତା । ଆନ୍ଧ୍ର ଏବଂ ମଧ୍ୟପ୍ରଦେଶରେ ମଧ୍ୟ କଂଗ୍ରେସ ସରକାର ରହିଛି । ଆପଣ ଏକ ସମାନ ନୀତି ସ୍ଥିର କରି ବାଉଁଶ ଦରକୁ ସବୁ ରାଜ୍ୟରେ ସମାନ କରିଦିଅନ୍ତୁ । ନଚେତ୍ ମୋର ଭୟ ଯେ ଅମଲାଇ (ମଧ୍ୟପ୍ରଦେଶ) ଠାରେ ଆମେ ଯେଉଁ ନୂଆ କାରଖାନା ନିର୍ମାଣ କରୁଛୁ, ସବୁ ପୁଂଜି ସେଇଥିରେ ଲାଗିବ । ଓଡ଼ିଶାର କାଗଜକଳ ପୁରୁଣା ଧଡ଼ଡ଼ା ମେସିନ୍‌ରେ ଚାଲିବ କିନ୍ତୁ କେତେ କାଳ ?

ଚିନ୍ତିତ ବିଜୁ ପଟ୍ଟନାୟକ କହିଲେ ଯେ ମୁଁ କାଲି ଦିଲ୍ଲୀ ଯାଉଛି, ତୁମେ କେ.କେ. (କେ.କେ. ବିରଳା)କୁ କୁହ ଯେ ସେ ମୋତେ ଦମ୍ ଦମ୍ ଏୟାରପୋର୍ଟରେ ଦେଖା କରିବେ । ଖବର ମୁଁ ଦେଇଥିଲି । ଦେଖା କିନ୍ତୁ ହୋଇ ନ ଥିଲା । ବିଜୁ ପଟ୍ଟନାୟକ ସେଇଦିନରୁ ଶରବ୍ୟ ହେଲେ ମନୋପଲି କ୍ୟାପିଟାଲିଷ୍ଟ ବା ଏକଚାଟିଆ ବ୍ୟବସାୟୀମାନଙ୍କର । ମୋର ମନେ ହେଉଚି ।

ଏଇ ସମୟରେ କୌଣସି ଏକ ଦେୟ ଦେଇ ନ ଥିବା ଯୋଗୁଁ ତତ୍‌କାଳୀନ ବିଦ୍ୟୁତ୍ ମନ୍ତ୍ରୀ ପ୍ରହ୍ଲାଦ ମଲ୍ଲିକ ବିରଳାଙ୍କ ବ୍ୟାଙ୍କ ଆକାଉଣ୍ଟକୁ ଜବତ କରିବାପାଇଁ କୋର୍ଟରେ ଆବେଦନ କଲେ । ତାହା ତଳ କୋର୍ଟରେ ଗୃହୀତ ହୋଇଗଲା । କିନ୍ତୁ ବିଛା ମନ୍ତ୍ର ନ ଜାଣି ସାପ ଲାଞ୍ଜରେ ହାତ ମାରିବା ପରି ହେଲା । ବିରଳାଙ୍କ ବ୍ୟାଙ୍କ ଆକାଉଣ୍ଟ ଜବତ ଆଦେଶ ଚାଞ୍ଚଲ୍ୟ ସୃଷ୍ଟି କଲା । ଷ୍ଟକ ଏକ୍ସଚେଞ୍ଜରେ ବ୍ୟୁତ୍ପାତ ଦେଖାଦେଲା । ଧାଇଁଲେ କର୍ତ୍ତାମାନେ ଭୁବନେଶ୍ୱର । ବିଜୁଳି ସଂକ୍ରାନ୍ତୀୟ କାରବାର ମୋର ପରିସରଭୁକ୍ତ ନ ଥିଲା । ତାହା ଥିଲା ପଶୁଡାକ୍ତର ୰ଦେବେନ୍ଦ୍ର ନାଥ ରଥଙ୍କର ଦାୟିତ୍ୱ । ତେଣୁ ମୋର କିଛି କହିବାର ନ ଥିଲା । କାରଣ ତାହା ସଂପୂର୍ଣ୍ଣ ଅଜଣା ଥିଲା ମୋ ପାଇଁ । ବର୍ତ୍ତମାନ ଚାପ ପଡ଼ିଲା ଜେନେରାଲ ମ୍ୟାନେଜର ଧରିଓ୍ୱାଲଙ୍କ ଉପରେ । ତାଙ୍କର ଖୁବ୍ ପ୍ରିୟ ଥିଲେ ୰ଦେବେନ୍ଦ୍ର ନାଥ ରଥ । ପ୍ରହ୍ଲାଦ ମଲ୍ଲିକଙ୍କୁ ମୁଁ ଭେଟିଲି । ଫଇସଲା କଲି । କିନ୍ତୁ ଟେଲିଗ୍ରାମ ଗଲା ଦେବେନ୍ଦ୍ର ନାଥ ରଥଙ୍କ ନାମରେ କଲିକତା ହେଡ୍ ଅଫିସ୍‌କୁ । ଦେବେନ୍ଦ୍ର ନାଥ ରଥ ଆଉ ନାହାନ୍ତି । କିନ୍ତୁ ତାଙ୍କର ପ୍ରିୟ ବନ୍ଧୁ ଧରିଓ୍ୱାଲ ବର୍ତ୍ତମାନ ଦେବେନ୍ଦ୍ରବାବୁଙ୍କ ପରିବାର ବିରୋଧରେ ମୋକଦ୍ଦମାରତ । ବିଜୁ ପଟ୍ଟନାୟକଙ୍କ ବିରୋଧରେ ମତ ସୃଷ୍ଟି ହେଲା ମନୋପଲିଷ୍ଟମାନଙ୍କର ।

ଏ ସଂପର୍କରେ ଟାଟା କଂପାନୀର ପ୍ରଦତ୍ତ ବିବରଣୀ ଉଲ୍ଲେଖଯୋଗ୍ୟ । ଟାଟା କଂପାନୀର ଇତିହାସରେ ତାହାର କୌଣସି ପ୍ରତିନିଧି ପାଟନା ଯାଇ ମନ୍ତ୍ରିମଣ୍ଡଳର କାହାକୁ ଦେଖାକରି ନ ଥିଲେ । ମୁଖ୍ୟମନ୍ତ୍ରୀ ବା ମନ୍ତ୍ରୀ ଜାମସେଦପୁର ଆସନ୍ତି । ସେଇଠି ଦେଖାହୁଏ । କିନ୍ତୁ ଇନ୍ଦ୍ରଦୀପ ସିହ୍ନା (ଆମ ଓଡ଼ିଶାର ଗଙ୍ଗାଧର ମହାପାତ୍ରଙ୍କ ସହପାଠୀ) ନାମକ ଜଣେ ମନ୍ତ୍ରୀ ହେଲେ ବିହାରର ରାଜସ୍ୱ ମନ୍ତ୍ରୀ । ତାଙ୍କୁ ଦେଖା କରିବାକୁ ଟାଟା କଂପାନୀର ମ୍ୟାନେଜିଂ ଡାଇରେକ୍ଟରଙ୍କୁ ପାଟନା ଯିବାକୁ ପଡ଼ିଲା ଏବଂ ଅପେକ୍ଷା କରିବାକୁ ପଡ଼ିଲା ସାକ୍ଷାତ୍ ପାଇଁ ।

'ଊନବିଂଶ ଶତାବ୍ଦୀର ଏକ ଅଚଳ ଦର୍ଶନରେ ବିଶ୍ୱାସୀ' ଏଇ ମନ୍ତ୍ରୀଙ୍କୁ ଦେଖା କରିବାକୁ ଆମର ପ୍ରତିନିଧିଙ୍କୁ ଯିବାକୁ ହେଲା ପାଟନା । ଏହି କଥା ଟାଟା କଂପାନୀର ମ୍ୟାନେଜିଂ ଡାଇରେକ୍ଟର ଆପଣାର ବାର୍ଷିକ ବିବରଣୀରେ ପାଠକଲେ ଏବଂ ତାହାର ଫଳ ଯାହାହୁଏ ସେଇଆ ହେଲା ।

ବିଜୁ ପଟ୍ଟନାୟକ କିନ୍ତୁ ସେଇ 'ଊନବିଂଶ ଶତାବ୍ଦୀର ଅଚଳ ଦର୍ଶନ'ରେ ବିଶ୍ୱାସୀ ନ ଥିଲେ । ତଥାପି ତାଙ୍କୁ ସେଇ ଦଶା ଭୋଗ କରିବାକୁ ପଡ଼ିଲା । ଭାରତର ଏକଚାଟିଆ ପୁଞ୍ଜିପତି ଗୋଷ୍ଠୀ କୌଣସି ପ୍ରକାର ପ୍ରତିରୋଧ ବା ପ୍ରତିଦ୍ୱନ୍ଦ୍ୱିତା, କାହାକୁ ବି ଗ୍ରହଣ କରିପାରେ ନାହିଁ ଏହା ତାହାର ପ୍ରମାଣ ।

ଅମଲାଇରେ ସେ କାରଖାନା ଚାଲିଛି ବେଶ୍ କିନ୍ତୁ ଓଡ଼ିଶାର କାରଖାନା ଧୀରେ ଧୀରେ ବନ୍ଦ ହୋଇଗଲା ।

ବ୍ରଜରାଜନଗର କାଗଜକଳ ଦୂଷିତ ପାଣି ଇବ୍ ନଦୀରେ ଛାଡ଼ିଦିଏ ଏବଂ ଏହା ବିରୋଧରେ ସମ୍ବଲପୁରରେ ପ୍ରବଳ ଜନଆନ୍ଦୋଳନ ଗଢ଼ିଉଠେ । ପଣ୍ଡିତ ଲକ୍ଷ୍ମୀନାରାୟଣ ମିଶ୍ର ତାହାର ନେତା । କୃପାସିନ୍ଧୁ ଖୁଣ୍ଟିଆ ବୋଧହୁଏ ଓଡ଼ିଶାର ସର୍ବପ୍ରଥମ ଟ୍ରେଡ ୟୁନିଅନ ନେତା । ସେ କଲିକତାରେ ଟ୍ରେଡ ୟୁନିଅନ କାର୍ଯ୍ୟ କରୁଥିଲେ ଏବଂ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ହୋଇଥିଲେ । କଲିକତାରୁ କମ୍ୟୁନିଷ୍ଟ ପାର୍ଟିର ନିର୍ଦ୍ଦେଶରେ ସେ ଓଡ଼ିଶା ଆସି ପଟିଆରେ କୃଷକ ସଭାର କାର୍ଯ୍ୟ ଆରମ୍ଭ କରିଥିଲେ । କିନ୍ତୁ କୃଷକ ସଭା କାମ ତାଙ୍କୁ ପୋଷାଇଲା ନାହିଁ, ସେ ଫେରିଗଲେ କଲିକତା ଏବଂ ପୁଣି ଆସିଲେ ବ୍ରଜରାଜନଗର । ସେଇଠାରେ ତାଙ୍କ ନେତୃତ୍ୱରେ ଗଢ଼ିଉଠିଲା ଶ୍ରମିକ ୟୁନିଅନ୍ । ଏହି ୟୁନିଅନ୍‌ରେ ଦୁଇଜଣଙ୍କ କଥା ଏବେ ବି ମୋର ମନେଅଛି । ସେମାନେ ବର୍ତ୍ତମାନ ପର୍ଯ୍ୟନ୍ତ ଜୀବିତ ଅଛନ୍ତି । ଦୁର୍ଗା କର ଓ ହରମୋହନ ପଟ୍ଟନାୟକ ଶ୍ରମିକ ୟୁନିଅନର ଅନ୍ୟତମ ନେତା ଥିଲେ, କିନ୍ତୁ ସେମାନେ ନିଜେ ଶ୍ରମିକ ଥିଲେ କାରଖାନାର ।

୧୯୪୬ ମସିହା ନିର୍ବାଚନ ହେଉଛି ପରାଧୀନ ଭାରତର ଶେଷ ନିର୍ବାଚନ । ଓଡ଼ିଶାରେ ସେତେବେଳେ ଶ୍ରମିକମାନଙ୍କ ପାଇଁ ଗୋଟିଏ ସିଟ୍ ଥାଏ । ଏହି ସ୍ଥାନ ପାଇଁ ନିର୍ବାଚନରେ କଂଗ୍ରେସ ଦଳର ପ୍ରାର୍ଥୀ ହେଲେ ମହମ୍ମଦ ହନିଫ୍ ଏବଂ କମ୍ୟୁନିଷ୍ଟ ପାର୍ଟିରୁ ବୈଦ୍ୟନାଥ ରଥ । ଘମାଘୋଟ ଲଢ଼େଇ । ସେତେବେଳେ ଶିଳ୍ପ ଶ୍ରମିକ କହିଲେ ଓଡ଼ିଶାରେ ବ୍ରଜରାଜନଗର କାଗଜକଳର ଶ୍ରମିକ । କଟକରେ ପ୍ରେସ ଶ୍ରମିକ, ବାରଙ୍ଗ କାଚ କାରଖାନାର ଶ୍ରମିକ ଏବଂ ବିକ୍ଷିପ୍ତ କିଛି ଧାନକଳର ଶ୍ରମିକଙ୍କୁ ବୁଝାଉଥିଲେ । ସବୁଠାରୁ ବଡ଼ ଶ୍ରମିକ ଗୋଷ୍ଠୀ ହେଉଛନ୍ତି ବ୍ରଜରାଜନଗର କାଗଜକଳ ଶ୍ରମିକ । କଟକ ପ୍ରେସ ୱାର୍କସ ୟୁନିଅନ ଏବଂ ବାରଙ୍ଗ କାଚ କାରଖାନାର ଶ୍ରମିକ ୟୁନିଅନ କମ୍ୟୁନିଷ୍ଟ ପାର୍ଟି ନେତୃତ୍ୱରେ ପରିଚାଳିତ ।

ଏହି ନିର୍ବାଚନ କମ୍ୟୁନିଷ୍ଟ ପାର୍ଟି ପାଇଁ ସମ୍ମାନଜନକ ଥିଲା । କାରଣ ଏଇ ଗୋଟିଏ ସ୍ଥାନରେ ହିଁ କମ୍ୟୁନିଷ୍ଟ ପାର୍ଟି ଆପଣାର ପ୍ରାର୍ଥୀ ଦେଉଥିଲା । ଏବଂ ତାଙ୍କୁ ହରାଇବା ପାଇଁ ମାଲିକ ଗୋଷ୍ଠୀ ଏବଂ କଂଗ୍ରେସ ଦଳ ସବୁପ୍ରକାରର ଉଦ୍ୟମ କରିବା ସ୍ୱାଭାବିକ । ଏହି ନିର୍ବାଚନ ବେଳେ ମୋର ମନମୋହନ ମିଶ୍ରଙ୍କ ସହିତ ଭେଟ ହୁଏ । ତାଙ୍କର ଓଜସ୍ୱିନୀ ଭାଷଣ ଏବଂ ସଂଗୀତ ଗାନ ଶ୍ରୋତାମାନଙ୍କୁ ମନ୍ତ୍ରମୁଗ୍ଧ କରିପାରୁଥିଲା ।

ପରବର୍ତ୍ତୀ କାଳରେ ବ୍ରହ୍ମପୁର ନିର୍ବାଚନ ମଣ୍ଡଳୀର ଏକ ଉପନିର୍ବାଚନରେ ତ୍ରିମୁଖୀ ପ୍ରତିଦ୍ୱନ୍ଦ୍ୱିତା ହେଉଥାଏ । କମ୍ୟୁନିଷ୍ଟ ପାର୍ଟିରୁ ପ୍ରସିଦ୍ଧ ଶିକ୍ଷକ ବିନାୟକ ଆଚାର୍ଯ୍ୟ (ପରବର୍ତ୍ତୀ କାଳରେ କଂଗ୍ରେସ ଦଳର ବିଧାୟକ ଏବଂ ଓଡ଼ିଶାର ମୁଖ୍ୟମନ୍ତ୍ରୀ) କଂଗ୍ରେସ ଦଳରୁ ବୃନ୍ଦାବନ ନାୟକ (ତତ୍‌କାଳୀନ ବ୍ରହ୍ମପୁର ମ୍ୟୁନିସିପାଲିଟିର ଚେୟାରମ୍ୟାନ) ଏବଂ ସୋସାଲିଷ୍ଟ ପାର୍ଟିରୁ ରାମଚନ୍ଦ୍ର ମିଶ୍ର (ପରବର୍ତ୍ତୀ କାଳରେ ଆଡଭୋକେଟ ଜେନେରାଲ) ପ୍ରାର୍ଥୀ ଥିଲେ । ଶାସନକଳ

ନିର୍ବାଚନରେ ଅଂଶଗ୍ରହଣ କରିବା ବୋଧହୁଏ ସେଇଟା ସର୍ବପ୍ରଥମ ବୋଲି ମୋର ମନେହେଉଛି । ନିର୍ବାଚନର ପୂର୍ବଦିନ (ସେତେବେଳେ ୪୮ ଘଣ୍ଟା ପୂର୍ବରୁ ନିର୍ବାଚନ ପ୍ରଚାର ବନ୍ଦହେବା ନିୟମ ନ ଥିଲା) ଏବେ ସମାନ୍ତରାଳ ସଭା ବ୍ରହ୍ମପୁର ବାରାକ୍ସ ମଇଦାନରେ ହେଲା । ଏକ ପଟରେ କମ୍ୟୁନିଷ୍ଟ ପାର୍ଟିର ସଭା । ପ୍ରବଳ ଜନ ସମାଗମ । କମ୍ୟୁନିଷ୍ଟ ପାର୍ଟିର ପ୍ରବୀଣ ବକ୍ତା ମୋହନ ଦାସ ପ୍ରଥମ ବକ୍ତା । ସେ ବକ୍ତୃତା ସରିଲା ବେଳକୁ ସୋସାଲିଷ୍ଟ ପାର୍ଟିର ପାଞ୍ଚ ଛଅ ଜଣ ବକ୍ତା କହିସାରିଲେଣି । କାରଣ ମୋହନ ଦାସ୍ ଜଣେ ପ୍ରସିଦ୍ଧ ବକ୍ତା ଥିଲେ । ତା'ପରେ ଉଠିଲେ ଶ୍ରୀ ମନମୋହନ ମିଶ୍ର । ସୋସାଲିଷ୍ଟ ପାର୍ଟି ତା'ର ସବୁ ବକ୍ତାଙ୍କୁ ଏକାଠି କଲା । କିନ୍ତୁ ମନମୋହନ ମିଶ୍ରଙ୍କୁ ପାରିବ କିଏ ? ସେମାନଙ୍କର ସବୁ ବକ୍ତା ସରିଗଲେ କିନ୍ତୁ ମନମୋହନବାବୁ କହି ଚାଲିଛନ୍ତି ଏବଂ ଗୀତ ଗାଇଚାଲିଛନ୍ତି ।

ସେଇ ଉପନିର୍ବାଚନ ବେଳକୁ ଡକ୍ଟର ହରେକୃଷ୍ଣ ମହତାବ ଦିଲ୍ଲୀରେ । ସେ ଖବର ନେଉଥାନ୍ତି ଏବଂ ଶୁଣିଲେ ଯେ ନିଜେ ମୋହନ ଦାସ ନିର୍ବାଚନ ପରିଚାଳନା ଦାୟିତ୍ୱରେ । ସେ ତତ୍‌କାଳୀନ କଂଗ୍ରେସ ନେତୃବୃନ୍ଦଙ୍କୁ ସବୁ ଶକ୍ତି ଠୁଳ କରିବାକୁ ନିର୍ଦ୍ଦେଶ ଦେଲେ ଏବଂ ସବୁ କଂଗ୍ରେସ ମନ୍ତ୍ରୀ ଏମ୍.ଏଲ୍.ଏ. ନିର୍ବାଚନର ପ୍ରତ୍ୟେକ ବୁଥ୍ (ଭୋଟଗ୍ରହଣ କେନ୍ଦ୍ର)ରେ ଦାୟିତ୍ୱନେଲେ । ସରକାରୀ କଳ କିମିତି ବ୍ୟବହାର କରାଯାଏ ତା'ର ଏକ ଉଲଗ୍ନ ଦୃଷ୍ଟାନ୍ତ ଥିଲା ଉକ୍ତ ଉପନିର୍ବାଚନ । ବୃନ୍ଦାବନ ନାୟକ ସେ ନିର୍ବାଚନରେ ଜୟଲାଭ କଲେ କିନ୍ତୁ ଆପଣାର ବନ୍ଧୁ ବିନାୟକ ଆଚାର୍ଯ୍ୟଙ୍କୁ ପୁଣି ଥରେ ମ୍ୟୁନିସିପାଲ ହାଇସ୍କୁଲର ପ୍ରଧାନଶିକ୍ଷକ କଲେ । ସେଇପ୍ରକାର ଉଦାହରଣ ପରବର୍ତ୍ତୀ କାଳରେ ଆଉ ଦେଖାଗଲା ନାହିଁ । ବୃନ୍ଦାବନ ନାୟକ କଂଗ୍ରେସ ଦଳର ପ୍ରାର୍ଥୀ ଥିଲେ କିନ୍ତୁ କମ୍ୟୁନିଷ୍ଟ ପାର୍ଟିର ନେତା ✓ବିଜୟ ଚନ୍ଦ୍ର ଦାସଙ୍କ ପ୍ରତି ତାଙ୍କର ସମ୍ମାନ ଯେପରି ଥିଲା, ନିଜ ବନ୍ଧୁ ବିନାୟକ ଆଚାର୍ଯ୍ୟଙ୍କ ପ୍ରତି ଶ୍ରଦ୍ଧା ସେଇପରି ଥିଲା ।

ମନମୋହନ ମିଶ୍ରଙ୍କ ଭାଷଣ ଶୁଣିବା ପାଇଁ ପ୍ରବଳ ଜନସମାଗମ ହୁଏ । ଦୁର୍ଗା କର ଶ୍ରମିକ ଆନ୍ଦୋଳନର ଜଣେ ମୁଖ୍ୟ ବ୍ୟକ୍ତି ଥିଲେ । କଂପାନୀ ତାଙ୍କୁ ଫୁସୁଲାଇଲା ଯେ ସେ ଯଦି ଖାଲି ବେମାର ବୋଲି କହି ଡାକ୍ତରଖାନାରେ ଆଡମିଶନ ନେଇଯାଆନ୍ତି ତା'ହେଲେ ତାଙ୍କୁ ଲକ୍ଷେ ଟଙ୍କା ଦିଆଯିବ । ଦୁର୍ଗା କର ଦରମା ପାଉଥିଲେ ଦଶ ଟଙ୍କା କି ପନ୍ଦର ଟଙ୍କା ମାତ୍ର । କିନ୍ତୁ ଗର୍ବିତ ଶ୍ରମିକ ନେତା ତାକୁ ଉପେକ୍ଷା କରି ଉଡ଼େଇ ଦେଲେ ଏବଂ ଜନସଭାରେ ତାହାର ଘୋଷଣା ମଧ କଲେ । ଏହାର ପ୍ରତିକ୍ରିୟା ହେଲା ତୀବ୍ର ଏବଂ କୃପାସିନ୍ଧୁ ଖୁଣ୍ଟିଆ ନଈରେ ଗାଧୋଇବା ସମୟରେ ତାଙ୍କ ଉପରେ ଆକ୍ରମଣ କଲେ ଗୁଣ୍ଡାମାନେ । ସହର ଜଳେ କି ନ ଜଳେ ଅବସ୍ଥା ଉପନୀତ ହେଲା । ଉତ୍ତ୍ୟକ୍ତ ଜନସାଧାରଣଙ୍କୁ ଶାନ୍ତ କରିବା ପାଇଁ କମ୍ୟୁନିଷ୍ଟ ପାର୍ଟିର ନେତାମାନେ ଉଦ୍ୟମ କରି ସଫଳ ହେଲେ ।

ନିର୍ବାଚନରେ ବୈଦ୍ୟନାଥ ରଥ ଜୟଯୁକ୍ତ ହେଲେ । ସେ ହେଲେ ଓଡ଼ିଶାର ପ୍ରଥମ କମ୍ୟୁନିଷ୍ଟ ବିଧାୟକ । ପରବର୍ତ୍ତୀ କାଳରେ ସେ ରାଜ୍ୟସଭାକୁ ନିର୍ବାଚିତ ହୋଇଥିଲେ ଦୁଇବର୍ଷ

ପାଇଁ । ଏହି ସ୍ୱଳ୍ପ ସମୟ କାଳରେ ତାଙ୍କର ଭୂମିକା ଏପରି ଉଲ୍ଲେଖନୀୟ ଯେ ତାହା ରାଜ୍ୟସଭାର ତତ୍‌କାଳୀନ ସଭାପତି, ଉପ-ରାଷ୍ଟ୍ରପତି ରାଧାକ୍ରିଷ୍ଣନଙ୍କୁ ମୁଗ୍ଧ କରିଥିଲା ।

ରାଷ୍ଟ୍ରପତି ଭାବରେ ସେ ଆସିଥିଲେ ଓଡ଼ିଶା ପରିଭ୍ରମଣ ପାଇଁ । ତାଙ୍କ ସାଂଗରେ ଥିଲେ ପ୍ରସିଦ୍ଧ କଂଗ୍ରେସ ନେତା ୰ରାଧାକୃଷ୍ଣ ବିଶ୍ୱାସରାୟ । ସେତେବେଳକୁ ବୈଦ୍ୟନାଥ ରଥ ଅବସର ନେବା ଅନେକ ବର୍ଷ ହୋଇଗଲାଣି । ହଠାତ୍ ରାଧାକ୍ରିଷ୍ଣନ ପଚାରିଲେ ବିଶ୍ୱାସରାୟଙ୍କୁ ହୀରାକୁଦରେ । ବୈଦ୍ୟନାଥ ରଥଙ୍କ ଘର ଏଠାରୁ କେତେ ବାଟ ? କାହିଁକି ବୋଲି ପଚାରିବାରୁ ସେ କହିଲେ ଯେ ପାଖ ହୋଇଥିଲେ ତାକୁ ଦେଖିବାକୁ ଯାଇଥାନ୍ତି । ଆଶ୍ଚର୍ଯ୍ୟଚକିତ ବିଶ୍ୱାସରାୟ ତାଙ୍କୁ କହିଲେ ସେ ତ ଖୁବ୍ ଅଳ୍ପ ସମୟ ପାଇଁ ରାଜ୍ୟସଭାରେ ଥିଲେ । ଅବସର ନେଲେଣି ଅନେକ ଦିନରୁ । ଆପଣ ତାଙ୍କୁ କିମିତି ମନେ ରଖିଛନ୍ତି ?

ସେ କହିଲେ ଯେ ଦୁଇଟି କାରଣ ଯୋଗୁଁ ମୁଁ ତାଙ୍କୁ ମନେରଖିଛି । ଯେଉଁ ଖୁବ୍ କମ୍ ପାର୍ଲ୍ୟାମେଣ୍ଟ ସଭ୍ୟ ଆପଣାକୁ ପ୍ରସ୍ତୁତକରି ଗୃହ ମଧ୍ୟକୁ ଆସନ୍ତି ସେମାନଙ୍କ ମଧ୍ୟରେ ସେ ଜଣେ ଏବଂ ପଣ୍ଡିତ ନେହେରୁଙ୍କୁ ଆଦୌ ଭୟ ନ କରୁଥିବା ସଭ୍ୟମାନଙ୍କ ମଧ୍ୟରେ ସେ ଥିଲେ ଅନ୍ୟତମ ।

ଓଡ଼ିଶାର ଖୁବ୍ କମ୍ ପାର୍ଲ୍ୟାମେଣ୍ଟ ସଭ୍ୟ ପାର୍ଲ୍ୟାମେଣ୍ଟରେ ଆପଣାର ଆଲେଖ୍ୟ ରଖି ପାରିଛନ୍ତି । ଏହା ଓଡ଼ିଶା ପାଇଁ ଶୁଭଙ୍କର ନୁହେଁ । ଏହି ଲେଖା ଲେଖିଲାବେଳକୁ ଓଡ଼ିଶାର ଚାରୋଟି ରାଜ୍ୟସଭା ପଦବୀ ପାଇଁ ନିର୍ବାଚନ ସରି ଯାଇଛି । ଯେଉଁମାନେ ନିର୍ବାଚିତ ହୋଇଛନ୍ତି ସେମାନଙ୍କ ମଧ୍ୟରେ ସୁଶ୍ରୀ ଦେବୀ, ପ୍ରମିଳା ବହିଦାର (ବିଜୁ ଜନତା ଦଳ), ଜଗଦୀଶ ଲାଠ (ବିଜେପି) ଏବଂ ଦିଲୀପ ରାୟ (ସ୍ୱାଧୀନ) । ସେମାନେ ରାଜ୍ୟସଭାରେ ଓଡ଼ିଶା ପାଇଁ କିଭଳି ଆଲେଖ୍ୟ ରଖିଯିବେ ତାହା ଭବିଷ୍ୟତ୍ କହିବ । କିନ୍ତୁ ପ୍ରଥମ ଥର ପାଇଁ ରାଜ୍ୟସଭା ପାଇଁ ନିର୍ବାଚନରେ ସବୁପ୍ରକାର ହଟଚମଟ ଖେଳ ଦେଖିବାକୁ ମିଳିଲା ଏବଂ ସ୍ୱାଧୀନ ପ୍ରାର୍ଥୀ ଦିଲୀପ ରାୟ ବାଇଶଟି ପ୍ରଥମ ପ୍ରିଫରେନ୍ସ ଭୋଟ ଏବଂ ପରେ ବହୁ ଦ୍ୱିତୀୟ ପ୍ରିଫରେନ୍ସ ଭୋଟ ପାଇ ନିର୍ବାଚିତ ହେଲେ । ଅନ୍ତତଃ ଦୁଇ ତିନି ଜଣ କଂଗ୍ରେସ ସଭ୍ୟ, ୧୩ ଜଣ ବିଜେଡ଼ି ସଭ୍ୟ ଏବଂ ସାତଜଣ ବିଜେପି ସଭ୍ୟ ପାର୍ଟିର ହୁଇପ୍ ଉଲ୍ଲଙ୍ଘନ କରିଛନ୍ତି ବୋଲି ହିସାବରୁ ଜଣାଗଲା । ନେତୃତ୍ୱ ପ୍ରତି ଅସନ୍ତୋଷ ଏବଂ ପ୍ରଲୋଭନ ଉଭୟ କାମ କରିଛି ବୋଲି ଅଭିଯୋଗ । ଏହା କେବଳ ଓଡ଼ିଶାରେ ଘଟି ନାହିଁ । କର୍ଣ୍ଣାଟକର ପ୍ରସିଦ୍ଧ ମଦ୍ୟବେପାରୀ ବିଜୟ ମାଲ୍ୟା ମଧ୍ୟ ବିଜେପିର ବହୁ ସଭ୍ୟଙ୍କ ଭୋଟ ପାଇ ନିର୍ବାଚିତ ହୋଇଛନ୍ତି, ପାର୍ଟି ପ୍ରାର୍ଥୀ ବିରୋଧରେ । ଓଡ଼ିଶାର କଂଗ୍ରେସ ପ୍ରାର୍ଥୀ ନିଜ ଦଳର ସବୁ ଭୋଟ ପାଇପାରି ନାହାନ୍ତି ।

ସେତେବେଳର ନିର୍ବାଚନରେ ଯେ ପଇସାର ଖେଳ ନ ଥିଲା ତା' ନୁହେଁ । କିନ୍ତୁ କାଟୁ କରୁଥିଲା କମ୍ । ଧୀରେ ଧୀରେ ତାହା ବଢ଼ି ବର୍ତ୍ତମାନ ସମଗ୍ର ବ୍ୟବସ୍ଥାକୁ ଗ୍ରାସ କରିବାକୁ ବସିଛି । ଯେଉଁମାନେ ତାହା ଆରମ୍ଭ କରିଥିଲେ ବର୍ତ୍ତମାନ ସେଇମାନେ ତା'ର ଶିକାର ପାଲଟିଛନ୍ତି ।

ବ୍ୟତିକ୍ରମ ବି ଘଟିଛି ! ଦଶଟଙ୍କା ଦରମା ପାଉଥିବା ଦୁର୍ଗା କର ସେଦିନ ବିରାଟ ପ୍ରଲୋଭନକୁ ଉପେକ୍ଷା କରି ଗୋଡ଼ରେ ଦଳି ଯେଉଁ ସମ୍ମାନ ଲାଭକଲେ ତାହା ତାଙ୍କର ମାଲିକକୁ ମଧ୍ୟ ବିସ୍ମିତ କଲା ଏବଂ ତାଙ୍କର ସମ୍ମାନ ବୃଦ୍ଧି କଲା । ପରବର୍ତ୍ତୀ କାଳରେ ଦୁର୍ଗା କର ଯେତେବେଳେ ଯାଇଛନ୍ତି କଲିକତା, ସେତେବେଳେ ସେ ତତ୍‌କାଳୀନ କାଗଜକଳର ମ୍ୟାନେଜର ଥିଡ଼ାନୀଙ୍କର ଅତିଥି ହୋଇଛନ୍ତି । ତାଙ୍କର ଘର କଟକ ଜିଲ୍ଲା ପଦ୍ମପୁର ଗ୍ରାମରେ । ଏହି ଗ୍ରାମ ବାଣ ପାଇଁ ପ୍ରସିଦ୍ଧ । ଦୁର୍ଗା କରଙ୍କର ଶିକ୍ଷାଗତ ଯୋଗ୍ୟତା କିଛି ନାହିଁ । ଇଂରାଜୀ ସେ ପଢ଼ି ନାହାନ୍ତି । କିନ୍ତୁ ଯାହା ଶୁଣନ୍ତି ମନେ ରଖନ୍ତି । ତାଙ୍କର ସ୍ମରଣଶକ୍ତି ପ୍ରଖର । ସେ ସୋଭିଏଟ୍ ୟୁନିଅନ୍‌ରୁ ପ୍ରକାଶିତ ବହିସବୁ ବିକ୍ରି କରନ୍ତି । ଥରେ ସେ ଏଇପରି ଥୋକେ ବହି ନେଇ ପହଞ୍ଚିଲେ ପ୍ରସିଦ୍ଧ ରସାୟନବିତ୍ ଅଧ୍ୟାପକ ବଳଭଦ୍ର ପ୍ରସାଦଙ୍କ ପାଖରେ । ବଳଭଦ୍ର ପ୍ରସାଦ ବହି ଦେଖି ଫେରାଇ ଦିଅନ୍ତେ ଦୁର୍ଗା କର ତାଙ୍କୁ କହିଲେ ଏଇ ବହିଟି ନିଅନ୍ତୁ । ଏହି ବହି ମିଚୁରିନ୍ (Michurin)ଙ୍କ ଦ୍ୱାରା ଲିଖିତ ଏବଂ ସେ ଲାଇସେଙ୍କୋ (Lycenko)ଙ୍କ ଥିଓରିକୁ ଭୁଲ୍ ବୋଲି ପ୍ରମାଣିତ କରିଛନ୍ତି । ତା'ପରେ ସେ କହିଚାଲିଲେ ପ୍ରାଣୀର ବିକାଶ ଉପରେ ଉଭୟ ଲାଇସେଙ୍କୋ ଏବଂ ମିଚୁରିନ୍‌ଙ୍କ ତତ୍ତ୍ୱର ତୁଳନାତ୍ମକ ବିଶ୍ଳେଷଣ । ବିସ୍ମିତ ବଳଭଦ୍ର ପ୍ରସାଦ ତାଙ୍କର ଶିକ୍ଷାଗତ ଯୋଗ୍ୟତା କଥା ପଚାରିଲେ । ବିନୀତ ଭାବରେ ଦୁର୍ଗା କର ଉତ୍ତର ଦେଲେ ଯେ ସେ ଇଂରାଜୀ ପଢ଼ି ନାହାନ୍ତି କିନ୍ତୁ ପାର୍ଟି କ୍ଲାସରେ ଯାହା ପଢ଼ିଛନ୍ତି ତାହା ହିଁ ତାଙ୍କର ପାଥେୟ । ମୋର ମନେପଡୁଛି ସେ ଦିନ ବଳଭଦ୍ର ପ୍ରସାଦ କ୍ଲାସରେ ଏଇ ଶ୍ରମିକର ତାତ୍ତ୍ୱିକ ଜ୍ଞାନର ଭୂରି ଭୂରି ପ୍ରଶଂସା କରି, କମ୍ୟୁନିଷ୍ଟ ପାର୍ଟିର ପଲିଟିକାଲ କ୍ଲାସର ମାହାତ୍ମ୍ୟ କ'ଣ ତା ବୁଝାଇଥିଲେ । ଦୁର୍ଗା କର ତାଙ୍କର ପରିବାରର ସଭ୍ୟ ହୋଇଯାଇଥିଲେ ।

କମ୍ୟୁନିଷ୍ଟ ପାର୍ଟି (ଏବଂ କିଛି ପରିମାଣରେ ତତ୍‌କାଳୀନ ସୋସାଲିଷ୍ଟ ପାର୍ଟି)ର ପଲିଟିକାଲ କ୍ଲାସ ସେତେବେଳେ ଧାରାବାହିକ ହେଉଥିଲା । ମୋର ମନେପଡୁଛି ୰ଗୋବିନ୍ଦଚନ୍ଦ୍ର ମହାନ୍ତି, ୰ରାମକୃଷ୍ଣ ପତି, ୰ବିଜୟ ଚନ୍ଦ୍ର ଦାସ ଏବଂ ଗୁରୁଚରଣ ପଟ୍ଟନାୟକଙ୍କର ରାଜନୀତିକ କ୍ଲାସ । ଶରତ ପଟ୍ଟନାୟକଙ୍କର ସାଂଗଠନିକ ଶକ୍ତି, କ୍ୟାଡରମାନଙ୍କ ମ୍ୟାନେଜମେଣ୍ଟ ପ୍ରଭୂତ ଥିଲେ ହେଁ, ତାତ୍ତ୍ୱିକ କ୍ଲାସ ସେ ବେଶି ନେଉ ନ ଥିଲେ । ମୋର ମନେହୁଏ ତାତ୍ତ୍ୱିକ ଜ୍ଞାନ ତାଙ୍କର ଦୁର୍ବଳ ଥିଲା ଯେଉଁ ଯୋଗୁଁ ନିଜର ବିପର୍ଯ୍ୟୟରୁ ରକ୍ଷା ପାଇବା ପାଇଁ ସେ ଶେଷ ଜୀବନରେ ସତ୍ୟସାଇବାବାଙ୍କ ଭକ୍ତ ପାଲଟିଥିଲେ ।

କୃପାସିନ୍ଧୁ ଖୁଣ୍ଟିଆଙ୍କ ସହିତ ମୋର ଭେଟ ହୁଏ ସେଇଠି । ଟ୍ରେଡ ୟୁନିଅନ ସଂପର୍କରେ ତାଙ୍କର ଜ୍ଞାନ ଅଭିଜ୍ଞତା ଥିଲା ପ୍ରଭୂତ । ଶ୍ରମିକ ଶ୍ରେଣୀର ସ୍ୱାର୍ଥ ପାଇଁ ତାଙ୍କର ଆନୁଗତ୍ୟ ଥିଲା ଚରମ । ସେଥିରେ କୌଣସି ପ୍ରକାର ତ୍ରୁଟି ତାଙ୍କ ପାଇଁ ଥିଲା ଅସହ୍ୟ । ମୋର ମନେପଡୁଛି ଚୌଦ୍ୱାର ଲୁଗାକଳରେ ଧର୍ମଘଟ ଚାଲିଥାଏ । ଅପରପଟରେ ବୀରେନ୍ ମିତ୍ର ଏବଂ ବିଜୁ ପଟ୍ଟନାୟକ । କୌଣସି ଏକ ବିଷୟରେ ପାର୍ଟି ନେତୃତ୍ୱରେ ନିଭୃତ ଆଲୋଚନା ହୋଇଥାଏ କମ୍ୟୁନିଷ୍ଟ ପାର୍ଟି ଅଫିସରେ ପୂର୍ବଦିନ ରାତିରେ । ଧର୍ମଘଟ ସଂପର୍କରେ ଏକ ନିର୍ଦ୍ଦିଷ୍ଟ ମତ

ଦେଇଥାନ୍ତି କୃପାସିନ୍ଧୁ ଖୁଣ୍ଟିଆ । ପରଦିନ ସକାଳେ ବୀରେନ ମିତ୍ର ଯାଉଥିଲେ ସେଇ ବାଟରେ । ହଠାତ୍ ଦେଖାହେଲା କୃପାସିନ୍ଧୁ ଖୁଣ୍ଟିଆଙ୍କ ସହିତ । ଦୁହେଁ ପୁରାତନ ବନ୍ଧୁ । କୃପାସିନ୍ଧୁ ଖୁଣ୍ଟିଆଙ୍କୁ ବୀରେନ୍ ମିତ୍ର ପଚାରିଲେ ପୂର୍ବଦିନ ରାତିରେ ସେ ଦେଇଥିବା ମତ ସଂପର୍କରେ । ଖୁଣ୍ଟିଆ ସେହିଦିନ ପେଡ଼ିପୁଟୁଳା ବାନ୍ଧି ଚାଲିଗଲେ ଏବଂ ଆଉ କମ୍ୟୁନିଷ୍ଟ ପାର୍ଟିକୁ ଫେରି ନାହାନ୍ତି । ଜୀବନବୀମା ନା ସେଇଭଳି ଗୋଟାଏ କଂପାନୀର ଏଜେନ୍ସି କରୁଥିବା ସମୟରେ ତାଙ୍କର ପରଲୋକ ହୋଇଗଲା ।

ବୀରେନ୍ ମିତ୍ର ଜଣେ ଦୟାଳୁ ମଣିଷ । ଏଭଳି ଦୟାଳୁ ଲୋକ ମୋ ଜୀବନରେ ଖୁବ୍ କମ୍ ଦେଖିଛି । ଏକଦା କମ୍ୟୁନିଷ୍ଟଙ୍କର ସେ ଥିଲେ ବ୍ୟକ୍ତିଗତ ବନ୍ଧୁ । ମୋର ମନେପଡୁଛି, କମ୍ୟୁନିଷ୍ଟ ପାର୍ଟିର ପ୍ରବାଦ ପୁରୁଷ ପି.ସି. ଯୋଶୀ ଆସିଥାନ୍ତି ଓଡ଼ିଶା । ସେ ଚାହିଁଲେ ଅନୁଗୋଳ ଯାଇ ନବବାବୁଙ୍କ ସହିତ ସାକ୍ଷାତ୍ କରିବା ପାଇଁ । ସେତେବେଳେ ଟାକ୍ସି ନ ଥାଏ କଟକରେ । ଗାଡ଼ି ବି କମ୍ । ସେ ଯିବେ କେମିତି ? ମୁଁ ଯାଇ ବୀରେନ୍ ମିତ୍ରଙ୍କୁ କହିଲି । ପି.ସି. ଯୋଶୀଙ୍କ ନାମ ଶୁଣିବା ମାତ୍ରେ ସେ ବିଜୁ ପଟ୍ଟନାୟକଙ୍କୁ ଫୋନ କଲେ ଗୋଟାଏ ଜିପ୍ ପାଇଁ ଏବଂ ବିଜୁ ପଟ୍ଟନାୟକଙ୍କୁ ସେ ପି.ସି. ଯୋଶୀଙ୍କ ସଂପର୍କରେ ଅଧଘଣ୍ଟାଏ ବକ୍ତୃତା ଦେଲେ । ପି.ସି. ଯୋଶୀଙ୍କର ସାଂଗଠନିକ ଶକ୍ତି ଯେପରି ପ୍ରଭୂତ, ଠିକ୍ ସେଇପରି ଜ୍ଞାନର ପରିସୀମା ମଧ ବ୍ୟାପକ । ହସ୍ତତନ୍ତଠାରୁ ଶିଳ୍ପ କଳା ପର୍ଯ୍ୟନ୍ତ କଳାଠାରୁ ଆରମ୍ଭ କରି ଶିଳ୍ପ ପର୍ଯ୍ୟନ୍ତ ସବୁ ବିଷୟରେ ତାଙ୍କର ଜ୍ଞାନ ଅପରିସୀମ । ଜଣେ ବ୍ୟକ୍ତିକୁ ଆକର୍ଷଣ କରିବାରେ ତାଙ୍କପରି ଦକ୍ଷ ବ୍ୟକ୍ତି ମୁଁ ଦେଖି ନାହିଁ ।

ଆମେ ନବବାବୁଙ୍କୁ ଦେଖାକରି ଫେରିଥାଉ । ଢେଙ୍କାନାଳରେ ଏକ ଚା' ଦୋକାନରେ ବୈଷ୍ଣବ ପଟ୍ଟନାୟକଙ୍କ ବଡ଼ଭାଇ ଉଦୟନାଥ ପଟ୍ଟନାୟକଙ୍କ ସହିତ ସାକ୍ଷାତ୍ ହେଲା । ସ୍ୱାଭାବିକ ଭାବରେ ପି.ସି. ଯୋଶୀ ତାଙ୍କୁ ବୈଷ୍ଣବ ପଟ୍ଟନାୟକଙ୍କ କଥା ପଚାରିଲେ ଏବଂ ସେ ସହରରେ ଥିଲେ ତାଙ୍କୁ ଭେଟି ଥାଆନ୍ତେ ବୋଲି କହିଲେ । ବୈଷ୍ଣବବାବୁ ସେ ଦିନ ସହରରେ ଥିଲେ କିନ୍ତୁ ଉଦୟନାଥବାବୁ ମନାକରିଦେଲେ କାରଣ ତାଙ୍କର ତଥାପି ଭୟ ଥିଲା ପି.ସି. ଯୋଶୀଙ୍କର ପ୍ରଭାବ ବିସ୍ତାର ସଂପର୍କରେ ।

ବୈଷ୍ଣବ ପଟ୍ଟନାୟକ ୧୯୪୨ ମସିହା ଅଗଷ୍ଟ ମାସରେ ମଢ଼ି ଥାନା ଦଖଲ ପାଇଁ ସଶସ୍ତ୍ର ଆକ୍ରମଣ ଫଳରେ ଗୁଳିମାଡ଼ରେ ଆହତ ହୋଇ ଆସି କଟକରେ ପହଞ୍ଚିଲେ । ସେତେବେଳକୁ ନବବାବୁ ପ୍ରଭୃତି ଗିରଫ ହୋଇସାରିଲେଣି । ବାଖରାବାଦ୍ ସନ୍‌ସାଇନ୍ ପଡ଼ିଆରେ ଦୁଇରାତି କଟାଇଲା ପରେ ସେ କଲିକତା ଚାଲିଯାଆନ୍ତି । କାରଣ ତାଙ୍କୁ ଧରିବା ପାଇଁ ବହୁ ଟଙ୍କାର ପୁରସ୍କାର ଘୋଷଣା ହୋଇସାରିଥାଏ ଏବଂ ପୁଲିସ୍ ତାଙ୍କୁ ଧରିବା ପାଇଁ ତତ୍ପର ହୋଇ ଉଠିଥାନ୍ତି । ହାତ ପଚିଯାଉଛି । ଗୋଟାଏ ବୁଲେଟ ହାତ ଭିତରେ ରହିଯାଇଛି । କଲିକତାରେ ପହଞ୍ଚିବା ବେଳକୁ ହାତର ଅବସ୍ଥା ସାଂଘାତିକ । ଅଣ୍ଡର ଗ୍ରାଉଣ୍ଡରେ ତାଙ୍କର ଅସ୍ତ୍ରୋପଚାର ହେବ । କୌଣସି ନିଶ୍ଚେତକ ଦିଆଯାଇ ପାରିବ ନାହିଁ କାରଣ ମାଂସ ପଚି

ଯାଇଥିବା ହେତୁ ନିଶ୍ଚେତକ ଆଉ କାମ କରିବ ନାହିଁ । ଡାକ୍ତର ବୈଷ୍ଣବ ପଟ୍ଟନାୟକଙ୍କୁ କହିଲେ ଯେ ଆପଣ ତ ବୀର ଯୋଦ୍ଧା, ଆପଣ ଏଇତକ ନିଶ୍ଚୟ ସହ୍ୟ କରିପାରିବେ । ବୀର ବୈଷ୍ଣବ ପଟ୍ଟନାୟକ ସେଇ ଛଅଘଣ୍ଟା ଅପରେସନର କଷ୍ଟକୁ ସହିନେଲେ ଏବଂ କିଛି ଦିନପରେ ବମ୍ବେ (ବର୍ତ୍ତମାନ ମୁମ୍ବାଇ) ଚାଲିଗଲେ ପି.ସି. ଯୋଶୀଙ୍କ ପାଖକୁ, ଯାହାଙ୍କର ସହଯୋଦ୍ଧୃତ୍ୱ ସେ ଲାଭ କରିଥିଲେ ଢେଙ୍କାନାଳ ପ୍ରଜାମଣ୍ଡଳ ଆନ୍ଦୋଳନ ସମୟରେ । ପି.ସି. ଯୋଶୀଙ୍କ ସହିତ ଅନେକ ଦିନପରେ ସାକ୍ଷାତ୍ । ବୈଷ୍ଣବ ପଟ୍ଟନାୟକଙ୍କୁ ସେ ପ୍ରଥମେ ଖାଇବାକୁ କହିଲେ ଏବଂ ତା'ପରେ ପଚାରିଲେ ପରିବାରବର୍ଗଙ୍କ କଥା, ସହକର୍ମୀମାନଙ୍କ କଥା । ତା'ପରେ ଆରମ୍ଭହେଲା ରାଜନୀତିକ କଥାବାର୍ତ୍ତା । ପି.ସି. ଯୋଶୀଙ୍କର ଏହା ଥିଲା ଅପୂର୍ବ ସ୍ୱାତନ୍ତ୍ର୍ୟ । ସେ କଦାପି ପ୍ରଥମରୁ ରାଜନୀତି କଥାବାର୍ତ୍ତା କରନ୍ତି ନାହିଁ । ପ୍ରଥମେ ସବୁ ବ୍ୟକ୍ତିଗତ ପ୍ରଶ୍ନ ପଚାରି ସାରିଲା ପରେ ସେ ରାଜନୀତିକ କଥାବାର୍ତ୍ତା କରନ୍ତି ।

ଏଇଭଳି ଏକ ସ୍ୱାତନ୍ତ୍ର୍ୟ ନବବାବୁଙ୍କର ବି ଥିଲା । ୰ଡାକ୍ତର ଜର୍ଜ ପଟ୍ଟନାୟକ (୰ବିଜୁ ପଟ୍ଟନାୟକଙ୍କ ବଡ଼ଭାଇ)ସ୍ମୃତି ପଖାଳନ୍ତି । କଟକର 'ଆନନ୍ଦ ଭବନ'ର ଦୁଇଟି ଗେଟ୍ । ଗୋଟିଏ ଗେଟ୍‌ରେ ଲେଖାଥାଏ ଡାକ୍ତର ଜର୍ଜ ପଟ୍ଟନାୟକ, ଆର ଗେଟ୍‌ଟିରେ ଲେଖାଥାଏ ବିଜୁ ପଟ୍ଟନାୟକ । ଜର୍ଜ ପଟ୍ଟନାୟକଙ୍କର କଡ଼ା ତାଗିଦ୍ ଯେ ବିଜୁ ପଟ୍ଟନାୟକଙ୍କ ପାଖକୁ ଆସୁଥିବା କେହି ବ୍ୟକ୍ତି ତାଙ୍କ ଗେଟ୍ ଦେଇ ନ ଆସିବାକୁ । କହନ୍ତି, ସମସ୍ତଙ୍କୁ ପାରିଲି, କେବଳ ନବବାବୁଙ୍କୁ ପାରିଲି ନାହିଁ । ସେ ନିଶ୍ଚିତ ଭାବରେ ସେଇ ଗେଟ୍ ଦେଇ ଆସିବେ । ପଚାରିଲେ କହିବେ ମୁଁ ଲକ୍ଷ୍ମୀନାରାୟଣ ପଟ୍ଟନାୟକଙ୍କ ବୋହୂ, ନାତି-ନାତୁଣୀମାନଙ୍କୁ ଦେଖିବାକୁ ଆସିଛି । ପାଣି ପିଇବେ, କିଛି ସମୟ ବିଛଣାରେ ଗଡ଼ିବେ । ମୋ ସ୍ତ୍ରୀଙ୍କୁ ସୁଖଦୁଃଖ କଥା ପଚାରିବେ । କିଛି ସମୟ ବିଶ୍ରାମ ନେଇସାରିଲା ପରେ ପଚାରିବେ ଯେ ଦେଖିଲ ବିଜୁ ଅଛି କି ? ଏଭଳି ମଣିଷକୁ କିମିତି ପାରିବ ?

ପି.ସି. ଯୋଶୀ ସେଇଭଳି ଏକ ନେତା ଥିଲେ । ରାଜନୀତି ଛଡ଼ା ଜୀବନରେ ଅନ୍ୟ ବହୁ ବିଭାବକୁ କେବଳ ସ୍ପର୍ଶ କରି ନ ଥିଲେ ବ୍ୟୁତ୍ପତ୍ତି ମଧ୍ୟ ଲାଭ କରିଥିଲେ । ଶିଳ୍ପପତି ଜେ.ଆର୍.ଡି. ଟାଟା, ନୃତ୍ୟଶିଳ୍ପୀ ଉଦୟଶଙ୍କର, ରବିଶଙ୍କର, ସୁରକାର ସହୀର୍‌ଲୁଧନିଆଭି, ଅଭିନେତା ବଲରାଜ ସାହାନୀ, ଦୁର୍ଗାଖୋଟେ, ଫଟୋଗ୍ରାଫର ସୁନୀଲ ଜାହ୍ନା ଇତ୍ୟାଦି ବହୁ ବିଭାବର ବିଶିଷ୍ଟ ବ୍ୟକ୍ତି ସେମାନଙ୍କର ଆତ୍ମଜୀବନୀ ବା ସ୍ମୃତି ସଂଳାପରେ ପି.ସି. ଯୋଶୀଙ୍କ କଥା ଲେଖିଛନ୍ତି ।

ପି.ସି. ଯୋଶୀ ସକ୍ରିୟ ରାଜନୀତିରୁ ଅପସରି ଯାଇ ଜବାହରଲାଲ ବିଶ୍ୱବିଦ୍ୟାଳୟରେ ଗବେଷଣା କରୁଥାନ୍ତି ଜୀବନର ସାୟଂକାଳରେ । ହଠାତ୍ ଦେଖାହୁଏ । ତାଙ୍କ ସହିତ ମୋର ପରିଚିତି ସ୍ୱଳ୍ପ । ତେଣୁ ସେ ମୋର ନାମ ମନେରଖିବାର ପ୍ରଶ୍ନ ଉଠୁ ନାହିଁ ବୋଲି ଧରିନେଇଥିଲି । କିନ୍ତୁ ମୋତେ ଚକିତ କରି ସେ ମୋ ନାମ ମନେପକାଇ ଡାକିଲେ । ମୋ ସାଙ୍ଗରେ ମୋ ବନ୍ଧୁଙ୍କର ଝିଅ ଥିଲା । ଶ୍ୟାମସୁନ୍ଦର ମହାପାତ୍ରଙ୍କ ଝିଅ । ଶ୍ୟାମବାବୁ କେବେ ଛାତ୍ର ଅବସ୍ଥାରେ ବାମପନ୍ଥୀ ରାଜନୀତି କରୁଥିଲେ । ପରେ କଲିକତାରେ ସେ ବିଭିନ୍ନ ସଂଗଠନ ସହ ଜଡ଼ିତ ହୋଇଗଲେ । କିନ୍ତୁ ପି.ସି. ଯୋଶୀ ତାଙ୍କୁ ଠିକ୍ ମନେ ରଖିଛନ୍ତି । ଝିଅଟିର

ବାପାମାଆ ଭାଇ ପ୍ରଭୃତି ସମସ୍ତଙ୍କର ହାନିଲାଭ ବୁଝିସାରିଲା ପରେ, ସେ ମୋତେ ଅନେଇ ପଚାରିଲେ ମୋ ସ୍ତ୍ରୀ ଏବଂ ଝିଅ କଥା । ଉଦ୍ଭିଦ ଉପରେ ଗବେଷଣାର ଅଗ୍ରଗତି ସଂପର୍କରେ ପଚାରି ସାରିଲା ପରେ ସେ ଆରମ୍ଭ କଲେ ତାଙ୍କର ମନ୍ତବ୍ୟ ବୃକ୍ଷଲତାର ଔଷଧିଗୁଣ ସଂପର୍କରେ । କିପରି ଏକବିଂଶ ଶତାବ୍ଦୀରେ ଏହା ବିକଳ୍ପ ଔଷଧ ଭାବରେ ପରିଗଣିତ ହେବ ଏଥିପାଇଁ ଚରକ ଶୁଶ୍ରୁତଙ୍କଠାରୁ ଆରମ୍ଭକରି ଗ୍ରାମୀଣ କବିରାଜମାନଙ୍କର ଅବଦାନ ବିଷୟରେ ତାଙ୍କର ମନ୍ତବ୍ୟ ।

ତାହା ସରିଲା ପରେ ଚା' କପ୍ ସହିତ ଆରମ୍ଭ ହେଲା ରାଜନୀତି ଆଲୋଚନା । ଯଦି ଆଜି ଦେଶରେ ବୈପ୍ଳବିକ ପରିସ୍ଥିତି ଥାଆନ୍ତା ତା'ହେଲେ କ'ଣ ମୁଁ ଏଇ ଭଗ୍ନ ହୃଦୟରେ ଏଇଠି ବସି ଗବେଷଣା କରୁଥାନ୍ତି ? (ସେତେବେଳକୁ ତାଙ୍କର ପ୍ରଥମ ଷ୍ଟ୍ରୋକ ହୋଇଯାଇଥାଏ) ଏଇଭଳି ଏକ ପ୍ରତିଭା ସମୟର ବାତଚକ୍ରରେ କମ୍ୟୁନିଷ୍ଟ ପାର୍ଟିର ନେତୃତ୍ୱକୁ ଆସିଥିଲେ । ୧୯୪୮ ମସିହା ଫେବୃଆରୀ ମାସରେ ହୋଇଥିବା କମ୍ୟୁନିଷ୍ଟ ପାର୍ଟିର ଦ୍ୱିତୀୟ କଂଗ୍ରେସରେ ଯେ ଖସିପଡ଼ିଲେ ଆଉ ଫେରିପାରିଲେ ନାହିଁ । ତାଙ୍କୁ ଅନ୍ୟମାନେ ପ୍ରାୟ ମିଳିତ ଭାବରେ ଆସିବାକୁ ଦେଲେ ନାହିଁ । କାରଣ ତାଙ୍କର ସାଂଗଠନିକ ଶକ୍ତି ଏବଂ ଘଟଣା ଉପରେ ପର୍ଯ୍ୟବସିତ ଶାଣିତ ଯୁକ୍ତି ଆଗରେ ଅନ୍ୟମାନେ ତିଷ୍ଠି ପାରିବେ ନାହିଁ । ଏଇ ଭୟ ଦେଖାଦେଇଥିଲା ସମସ୍ତଙ୍କୁ ।

ବୀରେନ୍ ମିତ୍ର କମ୍ୟୁନିଷ୍ଟ ପାର୍ଟିର ବହୁ ବ୍ୟକ୍ତିଙ୍କ ବନ୍ଧୁ ଥିଲେ । ଠିକ୍ ସେଇପରି ସୋସାଲିଷ୍ଟ ପାର୍ଟିର ବିଶ୍ୱନାଥ ପଣ୍ଡିତ ପ୍ରଭୃତିଙ୍କ ସହ ତାଙ୍କର ବନ୍ଧୁତା ଥିଲା ବେଶ୍ । ମୋର ମନେପଡୁଚି । ସୋସାଲିଷ୍ଟ ପାର୍ଟିର ଜାତୀୟ କାଉନସିଲର ତିନିଦିନିଆ ବୈଠକ ବସୁଥାଏ ଭୁବନେଶ୍ୱରରେ । ସତୁରି ଅଶୀ ଜଣ ସଭ୍ୟ ଆସିବେ ଭୁବନେଶ୍ୱର । ସେମାନଙ୍କ ଭିତରେ କିଛି ବେଶ୍ ବଡ଼ ଧରଣର ନେତା ଥିଲେ । ସେଇପରି ୪/୬ ଜଣଙ୍କୁ ଷ୍ଟେଟ ଗେଷ୍ଟ କରିବା ପାଇଁ ପହଞ୍ଚିଲେ ବୀରେନ୍ ମିତ୍ରଙ୍କ ପାଖରେ । ବୀରେନ୍ ମିତ୍ର ହୁକୁମ ଦେଲେ ଯେ ସବୁ ସଭ୍ୟ ରାଜ୍ୟ ସରକାରଙ୍କ ଅତିଥି ହେବେ । କିନ୍ତୁ ବୀରେନ୍ ମିତ୍ର ମୁଖ୍ୟତଃ ରାଜନୀତିକ ବ୍ୟକ୍ତି । କମ୍ୟୁନିଷ୍ଟ ପାର୍ଟିର ଦୁର୍ଗାଚରଣ ମହାନ୍ତିଙ୍କ ସହିତ ତାଙ୍କର ନିବିଡ଼ ସଂପର୍କ । କଟକ ସହରରେ ଚାଉଳ ମିଳୁ ନ ଥାଏ, ଯାହା ମିଳେ ତାହା ଅଖାଦ୍ୟ । ଚାଉଳ ପାଇଁ କମ୍ୟୁନିଷ୍ଟ ପାର୍ଟି ତରଫରୁ ବିକ୍ଷୋଭ ପ୍ରଦର୍ଶନ କରାଯାଉଥାଏ । କମ୍ୟୁନିଷ୍ଟ ପାର୍ଟି ଛୋଟିଆ ପାର୍ଟି କିନ୍ତୁ ଏହାର କର୍ମୀମାନେ ବେଶ୍ ସଂଗ୍ରାମୀ । ଏଇପରି ଏକ ସଭା ହେଉଥାଏ ଗୌରୀଶଙ୍କର ପାର୍କରେ । ବୀରେନ୍ ମିତ୍ର ତାଙ୍କର ଦଳବଳ ଧରି ସେଇ ସଭା ଉପରେ ଆକ୍ରମଣ କଲେ ଏବଂ ନିଜେ ବୀରେନ୍ ମିତ୍ର ଦୁର୍ଗା ମହାନ୍ତିଙ୍କର ତଣ୍ଟି ଚିପି ରୁନ୍ଧି ଦେଲେ । ଏହା ସତ୍ତ୍ୱେ ବୀରେନ୍ ମିତ୍ର ପରବର୍ତ୍ତୀ କାଳରେ ପୁଣି ଦୁର୍ଗା ମହାନ୍ତିଙ୍କର ବନ୍ଧୁ ହୋଇଗଲେ । ବୀରେନ୍ ମିତ୍ରଙ୍କର ପ୍ରକୃତି ଏଇପରି । ଏଇ ସମୟରେ ମୋର ମନେପଡୁଛି ମାଧବ ସିଂହଙ୍କର କଥା ।

ମାଧବ ସିଂହ ବର୍ତ୍ତମାନ ଏକ ବିସ୍ମୃତ ଚରିତ୍ର । ଜାତୀୟ ଆନ୍ଦୋଳନ ଏବଂ ପରେ ସାମ୍ୟବାଦୀ ଆନ୍ଦୋଳନରେ ମାଧବ ସିଂହଙ୍କର ଭୂମିକା ଭୁଲିବା ଉଚିତ ନୁହେଁ । ତାଙ୍କର

ଆଦ୍ୟ ଜୀବନ ବିତିଥିଲା କଲିକତାରେ । ଦୁର୍ଦ୍ଧର୍ଷ ମାଧବ ସିଂହ ଦେଖିବାକୁ କଳା ମିଚିମିଚି, ହାତ ଲୁହା ଭଳି ଟାଣ । ଛଅଫୁଟ ଉଚ୍ଚ ଚେହେରା, ଦେଖିଲେ ଡର ମାଡ଼ିବ । ମାଧବ ସିଂହ ଡକାୟତ ଥିଲେ । ବୋଧହୁଏ ଜେଲଖାନା ଭିତରେ ତାଙ୍କର ଭେଟ ହେଲା କମ୍ୟୁନିଷ୍ଟ ପାର୍ଟିର 'କାକାବାବୁ' ନାମରେ ପରିଚିତ ମୁଜାଫର ଅହମ୍ମଦଙ୍କ ସହିତ । ସେ ଜାତୀୟବାଦୀ ପାଲଟିଗଲେ । ରତ୍ନାକର ବାଲ୍ମୀକିରେ ପରିଣତ ହେଲେ । ମାଧବ ସିଂହ ଫେରିଲେ ଓଡ଼ିଶା । ସ୍ୱରାଜ ଆଶ୍ରମ ପାଲଟିଲା ଘର । ମିଲିଟାରୀ ଫଉଜ ସ୍ୱରାଜ ଆଶ୍ରମର ଦୁଇମହଲା ଉପରୁ ତାଙ୍କୁ ଟେକି ତଳକୁ ପକାଇଦେଲେ, ତଳେ ପଥର ଗଦା । ତଥାପି ମାଧବ ସିଂହଙ୍କର କିଛି ହେଲା ନାହିଁ । ଡକ୍ଟର ହରେକୃଷ୍ଣ ମହତାବଙ୍କ ସହିତ ତାଙ୍କର ନିବିଡ଼ତା ଥିଲା । ପରବର୍ତ୍ତୀ କାଳରେ ନିଃସଙ୍ଗ ମାଧବ ସିଂହଙ୍କର ଚିକିତ୍ସା ପାଇଁ ଏବଂ ଶବଦାହ ପାଇଁ ମହତାବବାବୁ ସାହାଯ୍ୟ କରିଥିଲେ ସେଇ ନିବିଡ଼ତାକୁ ସ୍ମରଣକରି । ମାଧବ ସିଂହ ପରବର୍ତ୍ତୀ କାଳରେ କମ୍ୟୁନିଷ୍ଟ ପାର୍ଟିରେ ଯୋଗଦେଲେ । ଜଣେ ବିଚକ୍ଷଣ ବକ୍ତା ଏବଂ ଗାୟକ ଭାବରେ ତାଙ୍କର ସୁନାମ ଥିଲା । ବାରଙ୍ଗ ଷ୍ଟେସନରୁ ସେ ପଟିଆ ବନ୍ଧ ଉପରେ ଗୀତ ଗାଇ ଗାଇ ଗଲେ ସନ୍ଧ୍ୟା ସମୟରେ ତାହା ମଞ୍ଚେଶ୍ୱର ପାଖ ଗାଡ଼କଣ ରଙ୍ଗାମାଟିଆ ଗ୍ରାମକୁ ଶୁଭେ । ପଟିଆ ବନ୍ଧ ନିର୍ମାଣ ପାଇଁ ତାଙ୍କର ରହିଥିଲା ବିପୁଳ ଅବଦାନ ।

ମାଧବ ସିଂହ ଟ୍ରେଡ ୟୁନିଅନ କାର୍ଯ୍ୟରେ ମଧ ଅଂଶଗ୍ରହଣ କରିଥିଲେ । ବ୍ରଜରାଜନଗର କାଗଜକଳ ଧର୍ମଘଟ ଏବଂ ପରବର୍ତ୍ତୀ କାଳରେ ୧୯୪୬ ମସିହା ନିର୍ବାଚନରେ ଉଲ୍ଲେଖଯୋଗ୍ୟ ଭୂମିକା ଗ୍ରହଣ କରିଥିଲେ । ମାଧବ ସିଂହ ପଳାତକ ହେଲେ, ତାଙ୍କ ନାମରେ ୱାରେଣ୍ଟ ବାହାରିଲା । ପଳାତକ ଭାବରେ ସେ ରହୁଥିଲେ ତାଳଚେରରେ ଏକ ଶ୍ରମିକ ବସ୍ତି ଭିତରେ । ଦିନେ ହଠାତ୍ ସେ ଏକ ଲୁହା ଆରାମ ଚୌକିରେ ବସିପଡ଼ିଲାବେଳେ ଚୌକିର ଦୁଇ ପାତିଆ ଭିତରେ ରହିଥିବା ଏକ ପାହାଡ଼ିଆ ଚିତି ସାପ ଚାପି ହୋଇଗଲା । ରାଗରେ ସେ ସାପ ମାଧବ ସିଂହଙ୍କର ଜଙ୍ଘକୁ ତିନିଥର କାମୁଡ଼ି ଧରିଲା । ମାଧବ ସିଂହ ଆପଣାର ସବୁ ଶକ୍ତି ପ୍ରୟୋଗ କରି ତାକୁ ବାହାରକଲେ କିନ୍ତୁ ସେତେବେଳକୁ ତାଙ୍କ ଦେହରେ ବିଷ ଚରିବାକୁ ଆରମ୍ଭ କରିଥିଲା । ଚିତି ସାପ ଥରେ କାମୁଡ଼ିଲେ ଉକ୍ତ ବିଷ କୋଡ଼ିଏ ଜଣଙ୍କର ମୃତ୍ୟୁ ପାଇଁ ଯଥେଷ୍ଟ । ମାଧବ ସିଂହ ପଳାତକ । ସେ ଯଦି ଘରୁ ବାହାରି ଆସନ୍ତି ତା'ହେଲେ ତାଙ୍କର ଆଶ୍ରୟକର୍ତ୍ତାଙ୍କ ଗୋପନୀୟତା ଧରାପଡ଼ିଯିବ । ସେ ଓ ତାଙ୍କ ପରିବାର ପୁଲିସର ଆକ୍ରମଣର ଶିକାର ହେବେ । ସେ ତୁରନ୍ତ ପାଖରେ ଥିବା କାର୍ବାଇଟ ଲାଇଟକୁ ଆଣି ଜଂଘ ତଳେ ରଖିଦେଲେ ଏବଂ ପୋଡ଼ା ମାଉଁସ ବାହାର କରିବାକୁ ଲାଗିଲେ ପାଖରେ ଥିବା ତାଙ୍କର ଆଶ୍ରୟଦାତା ଏବଂ ତାଙ୍କର ପରିବାରବର୍ଗଙ୍କୁ ତଟସ୍ଥ କରି । ଏଇପରି ଭୟାବହ ନାଟକ ଚାଲିଲା ଦୁଇଘଣ୍ଟା ପର୍ଯ୍ୟନ୍ତ । ମାଧବ ସିଂ ବଂଚିଗଲେ । ପରେ ତାଙ୍କୁ ଏକ ଡାକ୍ତରଙ୍କୁ ଦେଖାଗଲା । ସେ ଆଶ୍ଚର୍ଯ୍ୟ ହେଲେ ଏଇ ଲୋକର ଶକ୍ତି ଦେଖି ।

ମାଧବ ସିଂହ ପଳାତକ ଥିଲାବେଳେ ଥରେ ପୁଲିସ ହାବୁଡ଼ରେ ପଡ଼ିଲେ । ଚାରିଜଣ ପୁଲିସ ତାଙ୍କ ଅଣ୍ଟାରେ ଦଉଡ଼ି ବାନ୍ଧି ଦେଇ ଚାଲିଲେ ବ୍ରାହ୍ମଣୀ ନଈ ଆଡ଼କୁ । ଭରା ବ୍ରାହ୍ମଣୀ

ନଦୀ କୂଳ ଖାଉଛି । ବ୍ରାହ୍ମଣୀ ହେଉଛି ଓଡ଼ିଶାର ହୋୟାଂହୋ ନଦୀ । ଭୀଷଣ କୂଳ ଖାଏ, ସ୍ରୋତ ମଧ ପ୍ରଖର । ନଦୀ କୂଳରେ ବନ୍ଦୀ ଓ ଚାରିଜଣ ସିପାହୀ ବସିଲେ । ମାଧବ ସିଂହ ପକେଟରୁ ଦୁଇଟି ସିଗାରେଟ୍ ବାହାରକଲେ । ଗୋଟିଏ ନିଜେ ପିଇଲେ ଆଉ ଦୁଇଟିକୁ ଅଧ ଅଧ କରି ପୁଲିସବାଲାଙ୍କୁ ଦେଲେ । ମାଧବବାବୁଙ୍କ ସିଗାରେଟରୁ ନିଆଁ ଲଗାଇ ଆଉ ଦୁଇଜଣଙ୍କୁ ମୁହଁରେ ଥିବା ଛୋଟ ସିଗାରେଟରେ ମୁହଁକୁ ମୁହଁ ଲଗାଇ ସିଗାରେଟରେ ନିଆଁ ଲଗାଇଲେ । ଏଇ ମୁହୂର୍ତ୍ତରେ ମାଧବ ସିଂହ ଦୁଇ ଲଗାଲଗି ହୋଇଥିବା ମୁଣ୍ଡକୁ ଏପରି ଜୋରରେ ମାରିଲେ ଯେ ଚାରିଜଣ ଯାକର ମୁଣ୍ଡ ପିଚି ହୋଇଗଲା, ମାଧବ ସିଂହ ଦୌଡ଼ି ପଳାଇଲେ । ଧର ଧର ପାଟି ଶୁଭିଲାବେଳକୁ ମାଧବ ସିଂହ ନଈ ମଝିରେ । କିଏ ଯିବ ନଈ ଭିତରକୁ ? ମାଧବ ସିଂହ ପହଁରି ପହଁରି ଜେନାପୁରରେ ଲାଗିଲେ ।

ମାଧବ ସିଂହଙ୍କର କୌଣସି କାରଣରୁ କମ୍ୟୁନିଷ୍ଟ ପାର୍ଟି ସହିତ ମତଭେଦ ହେଲା । ସେ ଏସ୍.ୟୁ.ସି. ଦଳରେ ଯୋଗଦେଲେ । କମ୍ୟୁନିଷ୍ଟମାନଙ୍କର ପ୍ରକୃତି ହେଉଛି ଯଦି ତାଙ୍କ ସାଙ୍ଗରେ ଅଛ ସବୁ ଠିକ୍ ଚାଲିଛି, କିନ୍ତୁ ତାଙ୍କଠାରୁ ଟିକିଏ ଅଲଗା ହୋଇଗଲେ ସେମାନେ ଭୁଲିଯାଆନ୍ତି, ସେ ଲୋକର ଅତୀତର କାର୍ଯ୍ୟକଳାପ, ତ୍ୟାଗ ପ୍ରତି ସେମାନଙ୍କର କୌଣସି ମମତା ରହେ ନାହିଁ । ମାଧବ ସିଂହଙ୍କର ଭାଗ୍ୟରେ ତାହାହିଁ ଘଟିଲା । ସେ ପାସୋର ହୋଇଗଲେ ସମସ୍ତଙ୍କର । ଦାରିଦ୍ର୍ୟ, ଅଭାବ, ବୟସ ସବୁ ତାଙ୍କୁ ଖାଇ ଗୋଡ଼ାଇଲା । ସେ ଦୁର୍ବିପାକ ଭିତରେ କଟକ ବଡ଼ଡାକ୍ତରଖାନାକୁ ଆସିଲେ ଚିକିତ୍ସା ପାଇଁ । ଆଖି ବୁଜିଦେଲେ ମଧ ସେଇଠି । ମହତାବବାବୁ ପୂର୍ବ ଦିନର କଥା ମନେପକାଇ ତାଙ୍କୁ ଆର୍ଥିକ ସାହାଯ୍ୟ ପଠାଇଥିଲେ ଏବଂ ଶବଦାହ କରିବା ପାଇଁ ମଧ ସାହାଯ୍ୟ କରିଥିଲେ ।

ଏଇ ଲେଖା ଲେଖିଲାବେଳକୁ ନୀଳଗିରି ପ୍ରଜା ଆନ୍ଦୋଳନର ପ୍ରବାଦପୁରୁଷ ବନମାଳୀ ଦାସ ଗୁରୁତର ଅସୁସ୍ଥ । ସେ ମନେ କରୁଛନ୍ତି ଯେପରି ଜୀବନର ସନ୍ଧ୍ୟା ଉପଗତ । ସେଇପରି ଚିଠି ମଧ ସେ ତାଙ୍କର ପ୍ରାକ୍ତନ ସହକର୍ମୀମାନଙ୍କୁ ଜଣାଇ ସାରିଲେଣି । ଚିକିତ୍ସା ପାଇଁ ତାଙ୍କୁ କଟକ ଅଣାଯିବା ପାଇଁ ଓ ତାଙ୍କୁ ଦେଖିବାକୁ ବନ୍ଧୁ ଶିବାଜି ପଟ୍ଟନାୟକ ଏବଂ ଜନାର୍ଦ୍ଦନ ପତି ଯାଇଥିଲେ ବୋଲି ଶୁଣି ଖୁବ୍ ଆନନ୍ଦ ଲାଗିଲା ।

ବନମାଳୀବାବୁ ସି.ପି.ଆଇ.ର ବିଭାଜନ ପରେ ସି.ପି.ଏମ୍.ର ଓଡ଼ିଶାରେ ଅନ୍ୟତମ ପ୍ରତିଷ୍ଠାତା ହେଲେ, ପରେ କିନ୍ତୁ ସେମାନଙ୍କ ସହିତ ମଧ ତାଙ୍କର ମତଭେଦ ହେଲା ଏବଂ ବନମାଳୀ ଦାସ ପାର୍ଟିରୁ ବହିଷ୍କୃତ ହେଲେ । ତାଙ୍କ ସହିତ ସି.ପି.ଏମ୍.ର ସମ୍ପର୍କରେ ତିକ୍ତତା ଦେଖାଗଲା ଏବଂ ତାଙ୍କୁ ପ୍ରକାଶ୍ୟରେ ବିଭିନ୍ନ ସଭାରେ ସି.ପି.ଏମ୍. ଆକ୍ରମଣ ଆରମ୍ଭକଲା । ଏଥିରେ ତତ୍କାଳୀନ ପାର୍ଟି ସଂପାଦକ ଶିବାଜି ପଟ୍ଟନାୟକ ସ୍ୱାଭାବିକ ଭାବରେ ମୁଖ୍ୟ ଭୂମିକା ଗ୍ରହଣକଲେ ଏବଂ ଏକଦା ବନମାଳୀ ଦାସଙ୍କର ସବୁଠାରୁ ନିକଟତମ ଶିବାଜି ପଟ୍ଟନାୟକଙ୍କ ସହିତ ତାଙ୍କର ବ୍ୟକ୍ତିଗତ ସଂପର୍କ ଖୁବ୍ ତିକ୍ତ ହୋଇଗଲା ।

ଏହା ସତ୍ତ୍ୱେ ଆଜି ଅସୁସ୍ଥ ପ୍ରାକ୍ତନ ସହଯୋଦ୍ଧାକୁ ଦେଖିବାକୁ ଶିବାଜି ଓ ଜନାର୍ଦ୍ଦନ ଯାଇଥିଲେ ଶୁଣି ଖୁବ୍ ଆନନ୍ଦ ଲାଗିଲା । ପରେ ବନମାଳୀବାବୁ ପୁଣି ସି.ପି.ଏମ୍.ରେ ଯୋଗ ଦେଇଛନ୍ତି ।

ଓଡ଼ିଶାର ଯେତେ ରାଜନୀତିକ କର୍ମୀ ବା ନେତା ଅଛନ୍ତି ସେ ସମସ୍ତଙ୍କ ମଧ୍ୟରେ ସବୁଠାରୁ କଠୋର ପରୀକ୍ଷା ଓ ତ୍ୟାଗ ହେଉଛି ବନମାଳୀ ଦାସଙ୍କର ।

ମାଟ୍ରିକ ପରୀକ୍ଷା ହଲରୁ ହିଁ ଯାଇଥିଲେ ପ୍ରଜାମଣ୍ଡଳର ନେତା ହୋଇ । ପ୍ରବଳ ଆନ୍ଦୋଳନ ମୁଣ୍ଡ ଟେକିଥିଲା ନୀଳଗିରିରେ ଏବଂ ନୀଳଗିରି ହିଁ ଭାରତବର୍ଷର ପ୍ରଥମ ଗଡ଼ଜାତ ଯାହା ମୂଳ ଭାରତ ସହିତ ମିଶ୍ରଣ ହୋଇଥିଲା ଏବଂ ସେଇ ମିଶ୍ରଣ ସବୁ ଗଡ଼ଜାତମାନଙ୍କର ମିଶ୍ରଣ ପାଇଁ ଦ୍ୱାର ଉନ୍ମୋଚନ କଲା । ସେଇ ରାଜ୍ୟ ହେଉଛି ନୀଳଗିରି । ଯାହାର ପ୍ରଜା ଆନ୍ଦୋଳନର ମହାରଥୀ ହେଉଛନ୍ତି ୰କୈଳାସ ଚନ୍ଦ୍ର ମହାନ୍ତି ଏବଂ ବନମାଳୀ ଦାସ । ଗଡ଼ଜାତ ମିଶ୍ରଣ କଥା କହିଲେ ସର୍ଦ୍ଦାର ପଟେଲଙ୍କ ନାମ ସ୍ୱାଭାବିକ ଭାବରେ ମନକୁ ଆସେ । କିନ୍ତୁ ଏହି ମହାଯଜ୍ଞ ଯେଉଁମାନେ ଆରମ୍ଭ କରିଥିଲେ ସେମାନଙ୍କର ନାମ ବିସ୍ମୃତ ହୋଇଯାଉଛି ।

ବନମାଳୀ ଦାସ ସେମାନଙ୍କ ମଧ୍ୟରୁ ଜଣେ । ଅନ୍ୟତମ ନେତା କୈଳାସ ଚନ୍ଦ୍ର ମହାନ୍ତି ଅନେକ ଦିନରୁ ଇହଲୋକରୁ ବିଦାୟ ନେଲେଣି ।

ନୀଳଗିରି ପ୍ରଜା ଆନ୍ଦୋଳନ ଏବଂ ନୀଳଗିରିର ମିଶ୍ରଣ ସେ ଦିନ କାବ୍ୟକବିତାରେ ମଧ୍ୟ ସ୍ଥାନ ପାଇଥିଲା ।

'ମୁକୁଟ ଏବଂ କୌପୀନ' ଶୀର୍ଷକ କବିତାରେ ଗୋଦାବରୀଶ ମହାପାତ୍ର ଲେଖିଲେ–

ସେ ପଟେ ଉଠଇ ତୋପ ବନ୍ଧୁକ
କଂପାଇ ବସୁମତୀ,
ଉଠଇ ଏ ପଟେ କୋଟି ଜନତାର
କଣ୍ଠ ତଟର ଗୀତି ।
ଏ କି କୋଳାହଳ ପଟାର ଯାତ୍ରୀ
କାହାର ଏ ଅଭିଯାନ ?
ଶୁଣିବ ଏ ପଟେ ରାଜ ମୁକୁଟକୁ
ସେ ପଟରେ କୌପୀନ ।
ଯୁଗଯୁଗାନ୍ତ ଅନ୍ଧାର ଗିରି
ଗହ୍ୱର ତଳେ ଥାଇ ।
ଲଭିବ ସିନ୍ଧୁ ସଂଗମ ବୋଲି
ଆସିଲା ସେ ନଦୀ ଧାଇଁ ।
ଏତେ ଦିନେ ସେଇ ନୀଳଗିରି
ଗିରି ଗହ୍ୱର ହୋଇ ପାରି ।
କଙ୍କାଳ କୁକ ରୁଦ୍ଧ ଜୀବନ
ମୁକ୍ତିର ଅଧିକାରୀ ।

ସେ ଦିନ ଯେତେବେଳେ ନୀଳଗିରି ରାଜ୍ୟ ଓ ପଲିଟିକାଲ ଏଜେଣ୍ଟଙ୍କ ସାକ୍ଷାତ୍ କରିବାକୁ ବନମାଳୀ ଦାସଙ୍କୁ ପଠାଗଲା ସେତେବେଳେ ସେ ଯୁବକ ମାତ୍ର । ମହତାବବାବୁ ତାଙ୍କୁ ହାତୀ ପିଠିରେ ବସାଇ ଆଶୀର୍ବାଦ କରି ପଠାଇଥିଲେ । କିଏ କହିବ ସେ ଫେରିବ କି ନାହିଁ ? ଏଇ ଥିଲା ପ୍ରଶ୍ନ ।

ନୀଳଗିରି ପ୍ରଜା ଆନ୍ଦୋଳନର ନେତା ବନମାଳୀ ଦାସ ଅଭିଯୁକ୍ତ ହେଲେ କମ୍ୟୁନିଷ୍ଟ ଷଡ୍‌ଯନ୍ତ୍ର ମୋକଦ୍ଦମାରେ । ସେ ଥିଲେ ସର୍ବକନିଷ୍ଠ ଅଭିଯୁକ୍ତ, ଭଗବତୀ ପାଣିଗ୍ରାହୀଙ୍କଠାରୁ ଶିଖିଲେ ହ୍ୟୁମର, ବିଜୟ ଚନ୍ଦ୍ର ଦାସଙ୍କ ଠାରୁ ଇଂରାଜୀ, ଅର୍ଥନୀତି । ଗୁରୁଚରଣ ପଟ୍ଟନାୟକ ତାଙ୍କୁ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ କରାଇଥିଲେ ।

ନୀଳଗିରି ମିଶ୍ରଣ ପୂର୍ବରୁ ସେଠାରେ ରାଜା ନୀଳଗିରିର ଆଦିବାସୀମାନଙ୍କ ଭିତରୁ କେତେକଙ୍କୁ ପ୍ରଜାମଣ୍ଡଳ ଉପରେ ଆକ୍ରମଣ କରିବାକୁ ମତାଉଥିଲେ । ସଶସ୍ତ୍ର ସଂଘର୍ଷ ଲାଗିଥିଲା ଏବଂ କମ୍ୟୁନିଷ୍ଟ ପାର୍ଟି ଏକ ଯୁବକ ଦଳକୁ ସଶସ୍ତ୍ର ତାଲିମ ଦେଇଥିଲେ । ଚନ୍ଦକା ଜଙ୍ଗଲ ଭିତରେ ଜଣେ ସାମରିକ ବିଭାଗରୁ ଚାକିରି ଛାଡ଼ି ଆସିଥିବା ଉଚ୍ଚ ସ୍ତରର ଅଫିସର ବିପୁଳ ଚୌଧୁରୀ ସେମାନଙ୍କୁ ଅସ୍ତ୍ର ଶିକ୍ଷା ଦେଉଥିଲେ । ସଶସ୍ତ୍ର ଆଦିବାସୀମାନଙ୍କ ସହିତ ସଂଘର୍ଷରେ ମୋର ଯାହା ମନେପଡୁଚି ଗୋପୀ ବ୍ରହ୍ମଚାରୀ ଆହତ ହୋଇଥିଲେ ।

ନୀଳଗିରି ମିଶ୍ରଣ ହେଲା, କିନ୍ତୁ ଲୋକଙ୍କର ସମସ୍ୟା ସମାଧାନ ହୋଇପାରିଲା କି ? ସେତେବେଳେ ଓଡ଼ିଶା କମ୍ୟୁନିଷ୍ଟ ପାର୍ଟି ଦାୟିତ୍ୱରେ ବିଶ୍ୱନାଥ ମୁଖର୍ଜୀ । ଆପଣାର ବିଚକ୍ଷଣ ବାଗ୍ମିତାରେ ଜନତାକୁ ସ୍ତବ୍ଧ ବି କରି ଦିଅନ୍ତି । ସେ ଭାଷଣ ଦେଲେ କିନ୍ତୁ ଲୋକଙ୍କର ଦାବୀ ବନମାଳୀ ଦାସଙ୍କଠାରୁ ଶୁଣିବୁ । ବନମାଳୀବାବୁ କିନ୍ତୁ କହିବାକୁ ନାରାଜ । ଲୋକଙ୍କର ସମସ୍ୟାର ସମାଧାନ ହୋଇପାରିବ ତ ?

କମ୍ୟୁନିଷ୍ଟ ପାର୍ଟି ଭିତରେ ଗଡ଼ଜାତ ମିଶ୍ରଣ ସଂପର୍କରେ ମତଭେଦ ଦେଖା ଦେଇଥିଲା । ଗୋଟିଏ ମତର ନେତା ଥିଲେ ଶରତ ପଟ୍ଟନାୟକ ଏବଂ ଅନ୍ୟ ମତର ନେତା ଥିଲେ ରାମକୃଷ୍ଣ ପତି । ଗଡ଼ଜାତ ମିଶ୍ରଣ ଉପରେ ନାରୀ ସେବା ସଦନ (କଟକ)ରେ ଏକ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା ଏବଂ ସେ ଦୁଇଜଣ ଦୁଇପ୍ରକାର ମତ ଦେଇ ପ୍ରଚାରପତ୍ର ବାଣ୍ଟିଲେ । ପରବର୍ତ୍ତୀ କାଳରେ ଏହା କମ୍ୟୁନିଷ୍ଟ ପାର୍ଟିର ସବୁଠାରୁ ବଡ଼ ବିପଦ– 'ଫାକ୍ସନାଲିଜିମ୍'କୁ ଜନ୍ମ ଦେଇଥିଲା ନୀତି ବା ତତ୍ତ୍ୱର ଆଳୁଆଳରେ ।

ବନମାଳୀ ଦାସ ବୋଧହୁଏ ଓଡ଼ିଶାର ଏକମାତ୍ର ରାଜବନ୍ଦୀ ଯେ ସେଲୁଲିଅର ଜେଲରେ ଦୀର୍ଘକାଳ ଧରି ଆବଦ୍ଧ ଥିଲେ ଏବଂ କୌଣସି ପ୍ରକାର ଖବରକାଗଜ, ବହି, କାଗଜପତ୍ର ତାଙ୍କୁ ଦିଆ ନ ଯିବା ହେତୁ ସେ ଆପଣା ସେଲ କାନ୍ଥରେ କୋଇଲାରେ ଲେଖି, ଲେଖିବାର କ୍ଷୁଧାକୁ ମେଣ୍ଟାଉଥିଲେ ।

କଣ ହେଲା ଗଡ଼ଜାତବାସୀଙ୍କର ?

ଗୋଦାବରୀଶ ମହାପାତ୍ର ଲେଖିଲେ–

''ମହା ଉତ୍କଳେ ଗଡ଼ଜାତ ଥାନେ ହୋଇଲେଣି ଏବେ ଠିଆ
ପଚିଶଟି ରାଜା, ପଚିଶ ବିରଳା
  ପଚିଶଟି ଯାଜୋଡ଼ିଆ
ରାଜା ଗଲେ ଏବେ ପୁଂଜିପତିର କୁଂଜେ ବାଜିଲା ବୀଣା
ରାଜନୀତି ହାଟ ବଜାରେ ଚାଲିବ
  ରାଜନୀତି ବିକା କିଣା
କହେ କୌପୀନ ଗଲା ଏ ମୁକୁଟ
  ଛାଡ଼ି ଦେଇ ତା'ର ଥାନ
ସେ ସ୍ଥାନ ଦଖଲ କରିବା ପାଇଁ କି
  ସମର ଲାଗିବ କାଲି ।
ସାମ୍ୟବାଦର ଶଙ୍ଖ ବଜାଇ ସମତା ଆଣିବ ବୋଲି
ଗିରିକନ୍ଦରେ, ଦେବ ମନ୍ଦିରେ, ଘନ ଅନ୍ଧାରେ କହ
କରିବାକୁ ହେବ ଆହୁରି ସମର ଦୁର୍ଦ୍ଦମ ଭୟାବହ ।''

ବନମାଳୀ ଦାସ ପୁଣି ଗିରଫ ହେଲେ ଏବଂ ନୀଳଗିରି ଜେଲରେ ତାଙ୍କୁ ବନ୍ଦୀ କରାଗଲା । ଇତିହାସର ଏହା ଏକ କ୍ରୁର ପରିହାସ ।

ବନମାଳୀ ଦାସ ହଠାତ୍ ଜେଲ୍‌ରୁ କାନ୍ଥ ଡେଇଁ ପଳାୟନ କଲେ । ଅବଶ୍ୟ ସେତେବେଳକୁ ସେ ପ୍ରାୟ ଅଧିକାଂଶ ୱାର୍ଡ଼ରକୁ ପାର୍ଟି ସଭ୍ୟ ବା ସମର୍ଥକ କରି ସାରିଥିଲେ । ଜେଲର ମଧ୍ୟ ସେଥିରୁ ମୁକ୍ତ ନ ଥିଲେ ।

ବନମାଳୀ ଦାସ ନୀଳଗିରି ଜେଲରୁ ପଳାୟନ ପରେ ତାଙ୍କୁ ଧରିବା ପାଇଁ ହୁଲିଆ ଜାରି ହେଲା ।

କିଛି ମାସ ପଳାତକ ରହିଲା ପରେ ସେ ଗୁରୁତର ଅସୁସ୍ଥ ହୋଇପଡ଼ିଲେ ଏବଂ ତାଙ୍କୁ ଖଟିଆରେ ବୋହି ଗ୍ରାମକୁ ଗ୍ରାମ ନିଆଗଲା । ଏହି ବାହକମାନଙ୍କ ମଧ୍ୟରେ କେବେ କେବେ ତାଙ୍କର ପତ୍ନୀ ମଧ୍ୟ ଅନ୍ତର୍ଭୁକ୍ତ ଥିଲେ । ପରିଶେଷରେ ସେ ଧରାପଡ଼ି ପ୍ରଥମେ ବାଲେଶ୍ୱର ଜେଲ ଏବଂ ପରେ କଟକ ଜେଲକୁ ସ୍ଥାନାନ୍ତରିତ ହେଲେ । ସେ କଟକ ଜେଲରେ ପହଞ୍ଚିବା ପରେ ଆରମ୍ଭ ହେଲା– ପାର୍ଟି ସହିତ ଗୁପ୍ତ ସଂପର୍କ ସ୍ଥାପନ ୱାର୍ଡ଼ରମାନଙ୍କ ଜରିଆରେ । ଏହା ଏପରି ଏକ ସ୍ତରରେ ପହଞ୍ଚିଲା ଯେ ୧୯୪୯ ମସିହା ବେଳକୁ ପାର୍ଟି ପାଇଁ ସାମଗ୍ରୀଠାରୁ ଅର୍ଥ ପର୍ଯ୍ୟନ୍ତ ଯୋଗାଣ ହେଲା ଜେଲରୁ ନିରାପତ୍ତା ଆଇନରେ ଗିରଫ ହୋଇଥିବା ବନ୍ଦୀମାନଙ୍କ ଦ୍ୱାରା । ଠିକ୍ ସେଇପରି ଜେଲ ଭିତରକୁ ପାର୍ଟିର କାଗଜପତ୍ର, ଦଲିଲ, ନିଷିଦ୍ଧ ହୋଇଥିବା ବହି, ଜେଲ କର୍ମଚାରୀଙ୍କଦ୍ୱାରା ଜେଲ ଭିତରକୁ ଗଲା । ପ୍ରାୟ ଷାଠିଏ ସତୁରି ବନ୍ଦୀଙ୍କର ଯେତିକି ଗଦି ଥିଲା ଶୋଇବା ପାଇଁ ସେସବୁ ଭର୍ତ୍ତି ହୋଇଗଲା ସେ 'ବେଆଇନ୍'

କାଗଜରେ । କିଛି ଜେଲ ୱାର୍ଡ଼ର ତ ନିଶ୍ଚିତ ଭାବରେ ସଂପୃକ୍ତ ଥିଲେ, କିଛି ତରୁଣ ଆସିଷ୍ଟାଣ୍ଟ ଜେଲର ମଧ୍ୟ ସଂପୃକ୍ତ ଥିଲେ । କିନ୍ତୁ ଏହା ଏପରି ଗୋପନୀୟ ଥିଲା ସେମାନେ କେହି ବିପଦର ସମ୍ମୁଖୀନ ହୋଇ ନ ଥିଲେ । ଆମର କେତେଜଣ ଆଟେଣ୍ଡାଣ୍ଟ ଏହା ସହିତ ଜଡ଼ିତ ଥିଲେ । ସେମାନଙ୍କ ନାମ ମନେପଡୁ ନାହିଁ । ସମୟ ସ୍ମୃତିକୁ ଖାଇଯାଉଛି । କିନ୍ତୁ କାଇରାମ ହୋ କଥା ଏପର୍ଯ୍ୟନ୍ତ ମନେଅଛି । ସେ ଥିଲା ଆମର ସବୁଠାରୁ ବିଶ୍ୱସ୍ତ ଆଟେଣ୍ଡାଣ୍ଟ । ବାପାକୁ ମାରି ସେ ଆଜୀବନ କାରାଦଣ୍ଡ ଭୋଗୁଥିଲା । କୋର୍ଟରେ ସେଇ ନିର୍ଭୀକ ଆଦିବାସୀ କହିଥିଲା ଯେ ବାପାକୁ ମାରିଛି, କାରଣ ମଦ୍ୟପ ବାପାର ମାଆ ଉପରେ ଅତ୍ୟାଚାର ସହ୍ୟ କରି ପାରି ନାହିଁ କି ପାରିବି ନାହିଁ । ବିଚାରପତି ବ୍ୟଥିତ ହୋଇଥିଲେ କିନ୍ତୁ ଆଇନ୍‌ର ଦଫା ଆଗରେ ସେ ମଧ୍ୟ ନିରୁପାୟ ! କାଇରାମକୁ ଆଜୀବନ କାରାଦଣ୍ଡ ହୋଇଥିଲା । ୧୯୪୯/୫୦ ମସିହାରେ ଆମର ୧୫ ନମ୍ବର, ୧୬ ନମ୍ବର ୱାର୍ଡ଼ ଚଢ଼ାଉ ହେଲା ଏବଂ ଅନେକ ଦଲିଲ, ଗୁପ୍ତ ପୁସ୍ତକ ଧରା ପଡ଼ିଗଲା । ଏହାର ପରିମାଣ ଏତେ ବେଶି ଥିଲା ଯେ ତଟସ୍ଥ ଜେଲକର୍ତ୍ତୃପକ୍ଷ ଅନୁସନ୍ଧାନ କମିଟି ସହିତ ଏକମତ ହେଲେ ଯେ ଏକ 'ସମାନ୍ତରାଳ ସଂସ୍ଥା' ଜେଲ ୱାର୍ଡ ଭିତରେ ଚାଲିଥିଲା । କାଇରାମ ଉପରେ ବହୁତ ପ୍ରେସର ବା ଚାପ ପଡ଼ିଲା, ଯାହା ଜାଣିଛି କହିଦେବା ପାଇଁ । ଆଜୀବନ କାରାବାସରୁ ମୁକ୍ତିଠାରୁ ଆରମ୍ଭ କରି ଧମକ ପର୍ଯ୍ୟନ୍ତ । ସେ କିନ୍ତୁ ନିର୍ବିକାର ଭାବରେ କହିଗଲା ଯେ ସେ କିଛି ଜାଣେ ନାହିଁ । ଜେଲରୁ ମୁକ୍ତିର ପ୍ରଲୋଭନ ମଧ୍ୟ ତାକୁ ପ୍ରଲୁବ୍ଧ କରିପାରିଲା ନାହିଁ । ଏଭଳି ତ୍ୟାଗ ବିରଳ ଏବଂ ଏହା ତା'ର ଆଦିବାସୀ ଚରିତ୍ରର ପ୍ରତିଫଳନ ।

ଠିକ୍ ସେଇପରି ଜେଲରେ ଆମକୁ ଜଣେ ଖିଅର କରୁଥିଲା । ତା'ର ନାମ ଭୀମ । ପ୍ରକୃତରେ ସେ ପ୍ରଚଣ୍ଡ ଶକ୍ତିଶାଳୀ ଥିଲା । ବାହୁରେ ଥିଲା ବିପୁଳ ବଳ । ଦେଖିବାକୁ ତ୍ରିପଣ୍ଡ କଳା, ମୁହଁରେ ବିରାଟ ନିଶ । ଅନ୍ଧାର ରାତିରେ ଦେଖାହୋଇଗଲେ ଭେଟଣା ହୋଇଯିବା ସ୍ୱାଭାବିକ । ପରବର୍ତ୍ତୀ କାଳରେ ବୋଧହୁଏ ୧୯୫୧ ମସିହାରେ ସେ ଜେଲରୁ ମୁକ୍ତି ପାଇଥିଲା । ହଠାତ୍ ଦିନେ ଅନୁଗୋଳ ରାସ୍ତାରେ ମୋର ସାକ୍ଷାତ୍ ହୁଏ । ସେ ମୋତେ ତେରଛେଇ କରି ଅନେଇଲା ଏପରି ଭାବରେ ଯେ ମୋ ପାଖରେ ଥିବା ବ୍ୟକ୍ତିମାନେ ଶଙ୍କିଗଲେ । ଭୀମାକୁ ଏତେ ଡର ! ହଠାତ୍ ଭୀମାର କର୍କଶ ସ୍ୱର ଶୁଭିଲା— ଆମ ଗିରିଜାବାବୁ ମ ! ସେ ଆସି ମୋ ଗୋଡ଼ ତଳେ ଏକ ସାଷ୍ଟାଙ୍ଗ ପ୍ରଣିପାତ କଲା । ସମସ୍ତେ ଆଶ୍ଚର୍ଯ୍ୟ ।

ଭୀମ ଆସିଲା ଆମ ଘରକୁ । ସେତେବେଳେ ଆମେ ଏକ ଅପନ୍ତରିଆ ଏବଂ ଏକୁଟିଆ ସ୍ଥାନରେ ଘର ତିଆରି କରିଥିଲୁ । ଘରର ଗୋଟାଏ ପାଖ ଶୀଘ୍ର ତିଆରି ସରିଥିଲା । ଆମେ ସେଇଠିକୁ ଉଠି ଆସିଥିଲୁ । ଏକଦମ ନିକାଞ୍ଚନ ଜାଗା । ଭୀମା ମୋ ବୋଉର ଗୋଡ଼ତଳେ ମୁଣ୍ଡିଆ ମାରି କହିଗଲା— ଆପଣ ନିର୍ଭୟରେ ରୁହନ୍ତୁ । ଆପଣଙ୍କ ଘରେ ଚୋରି ହେବ ନାହିଁ । ବାବୁ ନ ଥିଲେ ମଧ୍ୟ ମୁଁ ବୁଝି ଯାଉଥିବି ସବୁ କଥା । କିଛି ଭୟ ନାହିଁ । ମୋ ଜିମା ଆପଣଙ୍କ ଘର ଆଜିଠାରୁ । ଚୋରି ଆଦୌ ହେବ ନାହିଁ । ମୁଁ ସମସ୍ତଙ୍କୁ କହି ଦେଉଛି । ପ୍ରକୃତରେ ସେଇଦିନଠାରୁ ଆମ ଘରେ ଚୋରି ହୋଇ ନାହିଁ । ଭୀମା ଚୋରି କରେ । ଚୋରି

ସାମଗ୍ରୀରୁ ଅଧା ରଖିଦିଏ ଅନୁଗୋଳର ଆରାଧ୍ୟା ଦେବୀ ବୁଢ଼ୀଠାକୁରାଣୀଙ୍କ ପାଖରେ । ଥରେ ଆମର ଏକ ବଡ଼ ହରିଆନା ଗାଈ ହଜିଗଲା ରାତିରେ । ପାହାନ୍ତିଆରୁ ଦେଖାଗଲା ତାକୁ ବାନ୍ଧି ଭୀମା ଆଣି ବୋଉ ଜିମା ଦେଇଗଲା । କାରାଗାରର ସ୍ମୃତି ଅନେକ ଭୁଲି ଯାଇଥିଲେ କିନ୍ତୁ ଭୀମା ଭୁଲି ନ ଥିଲା । ସେ ମୋର ଚିରସ୍ମୃତି ହୋଇରହିବ ।

ଜେଲଖାନା ଭିତରେ ଏ ସବୁର କାର୍ପଟଦାର ଥିଲେ ବନମାଳୀ ଦାସ, ବୈଷ୍ଣବ ପଟ୍ଟନାୟକ ପ୍ରମୁଖ । ଥରେ ନିଷ୍ପତ୍ତି ହେଲା ଯେ ଜେଲଖାନା ଭିତରୁ ଛଅଜଣ ବନ୍ଦୀଙ୍କୁ ମୁକୁଳାଇ ନିଆଯିବ । ବୈଷ୍ଣବ ପଟ୍ଟନାୟକ ତୂଳୀ ଧରି ଚିତ୍ର ଆଙ୍କିବା ଆରମ୍ଭ କଲେ ।

ବୈଷ୍ଣବ ପଟ୍ଟନାୟକ ଏକଦା ଜଣେ ପ୍ରଖ୍ୟାତ ଶିଳ୍ପୀ ଥିଲେ । ଆଦ୍ୟ ଜୀବନରେ ସେ ରେଳବାଇରେ ପେଣ୍ଟର କାମ କରୁଥିଲେ । ଜୀବନର ରଥକୁ ବଦଳାଇବା ପାଇଁ ବଦ୍ଧପରିକର ବୈଷ୍ଣବ ପାଲଟି ଯାଇଥିଲେ ବିପ୍ଳବୀ । ତାଙ୍କ ନାମରେ ବହୁ ଗଳ୍ପ କାହାଣୀ ପ୍ରଚାରିତ । ୧୯୫୨ ମସିହା ନିର୍ବାଚନ । ନିର୍ବାଚନର ଅବ୍ୟବହିତ ପୂର୍ବରୁ ସେ ଖଲାସ ହୁଅନ୍ତି କାରାଗାରରୁ । ଅର୍ଥର ଖୁବ୍ ଅଭାବ । ତେଣୁ ସେସବୁ ଗ୍ରାମକୁ ଯିବା ସମ୍ଭବ ନୁହେଁ । କିନ୍ତୁ ଲୋକେ ତାହା ବିଶ୍ୱାସ କରିବାକୁ ନାରାଜ । ସେ ନିଶ୍ଚୟ ଆସିବ । ତା' ପାଦରେ ମନପବନ କଠଉ ଅଛି । ସେ ନିଶ୍ଚୟ ଆସିବ । ବାଧହୋଇ ଆମକୁ ଏକ ଗାଡ଼ି ଭଡ଼ା କରିବାକୁ ହେଲା । ସେତେବେଳେ ସେଇ ଟିକକ କରିବା ପାଇଁ ଆମର ଶକ୍ତି ନ ଥିଲା । କିପରି କାହାଣୀର ସୃଷ୍ଟି ହୁଏ ତା ମୁଁ ମୋର କ୍ଷୁଦ୍ର ଜୀବନରୁ ଜାଣିଛି । ବୈଷ୍ଣବ ପଟ୍ଟନାୟକଙ୍କ ଜୀବନ ଏକ ଦୀର୍ଘ ସଂଗ୍ରାମର ଜୀବନ । ତା ଭିତରୁ କଟିଛି ଅନେକ ଦିନ ପଳାତକ ଭାବରେ । ସୁତରାଂ କାହାଣୀ ସୃଷ୍ଟି ହେବା ସ୍ୱାଭାବିକ । ମୋର ମନେପଡୁଛି । ନିର୍ବାଚନ ସମୟରେ ବିଶ୍ୱନାଥ ମୁଖର୍ଜୀ ଯାଇଥିଲେ ଢେଙ୍କାନାଳରେ ବକ୍ତୃତା ଦେବା ପାଇଁ । ମାଇକ୍ ପାଇଁ ପଇସା ନ ଥିଲା । ତେଣୁ ବିଚକ୍ଷଣ ଶରତ ପଟ୍ଟନାୟକ ଏବଂ ଢେଙ୍କାନାଳ ପ୍ରଜାମଣ୍ଡଳର ଅନ୍ୟତମ ପ୍ରତିଷ୍ଠାତା ହରମୋହନ ପଟ୍ଟନାୟକ ଅନୁରୋଧ କଲେ ପ୍ରତିଦ୍ୱନ୍ଦ୍ୱୀ ପ୍ରାର୍ଥୀ ନାରାୟଣ ମିଶ୍ରଙ୍କୁ ତାଙ୍କର ସିନେମା ହଲ୍ର ମାଇକ୍ ଦେବା ପାଇଁ । ନାରାୟଣବାବୁ ନିଜେ ନିର୍ବାଚନରେ ପ୍ରାର୍ଥୀ । ସେ କିନ୍ତୁ ସମ୍ମତ ହେଲେ ଏବଂ ମାଇକ୍ ଦେଲେ । ଶରତ ପଟ୍ଟନାୟକ ସାଧାରଣ ସଭାରେ ଧନ୍ୟବାଦ ଦେଲେ ନାରାୟଣ ମିଶ୍ରଙ୍କୁ । ବୈଷ୍ଣବ ପଟ୍ଟନାୟକଙ୍କର ଐଶ୍ୱରିକ ପ୍ରଭାବ ସଂପର୍କରେ ପ୍ରଚାର ବଢ଼ିଗଲା । ଇମିତି ବି ହୁଏ !

ବୈଷ୍ଣବ ପଟ୍ଟନାୟକ ଜେଲରେ ଚିତ୍ର ଆଙ୍କିଲେ ଏକ ନିର୍ଜନ ସ୍ଥାନରେ ଅନେକ ଦିନଧରି । କଥାଟା ପ୍ରଚାର ହୋଇଗଲା ୱାର୍ଡ଼ରମାନଙ୍କ ପାଖରେ । କିନ୍ତୁ ସେ ଯେ ତା'ରି ଭିତରେ ଜେଲଖାନାର ଚାବିର ଡୁପ୍ଲିକେଟ ତିଆରି କରୁଛନ୍ତି ଏକଥା କିଏ ଜାଣିବ ?

ଷୋହଳ ନମ୍ବର ୱାର୍ଡ଼ରେ ବ୍ରଜକିଶୋର ପଟ୍ଟନାୟକ ଏବଂ ବନମାଳୀ ଦାସ ଥାଆନ୍ତି । ସେଇ ୱାର୍ଡ଼ରେ ମୁଁ ବି ଥାଏ । ଯେଉଁମାନଙ୍କ ନାମ ଜେଲଖାନାରୁ ଖସି ପଳାଇବା ପାଇଁ ସ୍ଥିର ହେଲା ସେମାନଙ୍କ ଭିତରେ ବ୍ରଜ ପଟ୍ଟନାୟକ ଏବଂ ବନମାଳୀ ଦାସ ଅନ୍ତର୍ଭୁକ୍ତ । କୌଣସି

କାରଣରୁ ମୁଁ ସେ ପଳାଇବା କଥା ଜାଣିପାରି ବନମାଳୀ ଦାସଙ୍କୁ ପଚାରିଲି । ସେ ବାଧହୋଇ ସ୍ୱୀକାର କଲେ ଏବଂ ମୋତେ କହିଲେ ଅନ୍ୟ ଏକ ଓ୍ୱାର୍ଡ଼କୁ ଚାଲିଯିବା ପାଇଁ । କାରଣ ସେମାନେ ତ ପଳେଇବେ, ଯେଉଁମାନେ ରହିଯିବେ ସେମାନଙ୍କ ଉପରେ ଅତ୍ୟାଚାର ହେବା ସୁନିଶ୍ଚିତ ଯଦିଓ ସେମାନେ ଏ ବିଷୟରେ କିଛି ଜାଣନ୍ତି ନାହିଁ । ମୁଁ କିନ୍ତୁ ସେଥିରେ ରାଜି ହେଲି ନାହିଁ । ବନମାଳୀବାବୁଙ୍କ ସବୁପ୍ରକାର ପ୍ରସ୍ତାବ ସତ୍ତ୍ୱେ ।

ପଳାଇବା ପାଇଁ ରାତି ସ୍ଥିର ହୋଇଗଲା । ଶିବାଜି ପଟ୍ଟନାୟକ (ଜେଲଖାନା ସହିତ ଆଗରୁ ପରିଚିତ) ପ୍ରଭୃତି ଜେଲ ବାହାରୁ ଯାଇ ଜେଲଖାନା ଭିତରେ ପହଞ୍ଚି ସାରିଥିଲେ । ୧୫,୧୬,୧୭ ନମ୍ବର ଓ୍ୱାର୍ଡ଼ ଏବଂ ନୂଆ ସେଲ ଜେଲଖାନା ଭିତରେ ଏକ ସ୍ୱତନ୍ତ୍ର ଜେଲ । ସେଇଠି ଅଛି ପୁରୁଣା ଜେଲଖାନାର ଗେଟ୍ ଭାବରେ ବ୍ୟବହୃତ ହେଉଥିବା ଗେଟ୍ ଘର ଏବଂ ଦୁଇଟି କୋଠରି । ସେମାନେ ସେଇଠି ପହଞ୍ଚି ଯାଇଥିଲେ । ରାମକୃଷ୍ଣ ପତି ସେତେବେଳେ ପାର୍ଟି ସେକ୍ରେଟେରୀ । ସେ ନିଜେ ଅଣ୍ଡରଗ୍ରାଉଣ୍ଡ ଡେନ୍ (Den) ବା ରହିବା ଘରେ ରେଡ଼ିଓ ଶୁଣୁଥିଲେ । ସେଇଦିନ ପ୍ରଚାରିତ ହେଲା ସଂବାଦ । ମାନ୍ଦ୍ରାଜ ହାଇକୋର୍ଟ କମ୍ୟୁନିଷ୍ଟ ପାର୍ଟି ଉପରୁ ବେଆଇନ୍ ଆଦେଶ ଉଠାଇଦେଇଛନ୍ତି ଏକ ଗୁରୁତ୍ୱପୂର୍ଣ୍ଣ ରାୟରେ । ଏହା ଶୁଣି ରାମକୃଷ୍ଣ ପତି ସାଙ୍ଗେ ସାଙ୍ଗେ କଟକ ଜେଲଖାନା ଭିତରୁ ପଳାୟନର ନିଷ୍ପତ୍ତିକୁ ବାତିଲ କରିଦେଲେ । ଏହା ଥିଲା ଯଥାର୍ଥ ଏବଂ ଠିକ୍ ରାଜନୀତିକ ନିଷ୍ପତ୍ତି ।

ଜେଲଖାନା ଭିତରେ ଥିଲାବେଳେ ଦୁଇଟି ଅନଶନ ଆମେ କରିଥିଲୁ । ପ୍ରଥମଟି ଚାଲିଥିଲା ୪୮ ଦିନ ଧରି । ମୋତେ ଯଦି କିଏ ପଚାରେ ଯେ ତୁ ଅନଶନରେ ମରିବୁ ନା ଗୁଳିଖାଇ ମରିବୁ ନା ପଳାତକ ହେବୁ, ମୁଁ ଶେଷ ଦୁଇଟିକୁ ବାଛିବି । କାରଣ ଅନଶନର ଯନ୍ତ୍ରଣା ତୀବ୍ର । ୫/୬ ଦିନ ପରେ ଭୋକ ମରିଯାଏ । ବାନ୍ତି ବନ୍ଦ କରିବାକୁ ଲୋକେ ଲେମ୍ବୁ ଖାଆନ୍ତି କିନ୍ତୁ ଅନଶନରେ ଲେମ୍ବୁ ପାଣି ପିଇ ପିଇ ଏପରି ଏକ ଅବସ୍ଥା ଉପୁଜେ ଯେ ଲେମ୍ବୁ ଶୁଙ୍ଘିଲେ ବାନ୍ତି ଲାଗେ । ରାତିରେ ନିଦ ହୁଏନା । ରାସ୍ତାରେ ଯାଉଥିବା ସାଇକେଲ ଘଣ୍ଟି ବୀଣା ବାଜିଲା ପରି ଶୁଭେ । ରାତି ଅଧରେ ଜଣେ ଲୋକ ଡାକି ଡାକି ଯାଏ ଖୁ... ଆ... ପେ... ଡ଼ା । ଖୁଆପେଡ଼ା ରାତି ଅଧରେ କିଏ କିଣେ । ପରେ ଜାଣିଲି ଯେ ଏହାସବୁ ଗୁଳି-ଖଟିଆଙ୍କ ପାଇଁ । ସେମାନେ ରାତି ଅଧରେ ଚିଲମ ଟାଣିଲା ବେଳେ ଏଇ ଖୁଆପେଡ଼ା ଲୋଡ଼ନ୍ତି । ୪୮ ଦିନ ଅନଶନ ସମୟରେ ମୁଁ ପ୍ରଥମ ଦଳରେ ନ ଥିଲି । ହଠାତ୍ ଦିନେ ହେଲା ଆମ ଉପରେ ଚଢ଼ଉ । ମନମୋହନ ମିଶ୍ର ଓ ରାମଚନ୍ଦ୍ର ମିଶ୍ର ଥିଲେ ଆମର ମୁଖପାତ୍ର । ସେମାନଙ୍କୁ ଅଫିସକୁ ଡକାଇ ନିଆଗଲା ଏବଂ ପରେ ପରେ ସତର ନମ୍ବର ଓ୍ୱାର୍ଡ଼ରେ ଚଢ଼ଉ ହେଲା ଅନଶନ ଆରମ୍ଭ ନ କରିଥିବା ବନ୍ଦୀମାନଙ୍କ ଉପରେ । କିନ୍ତୁ ବନ୍ଦୀମାନଙ୍କର ପାଲଟା ଆକ୍ରମଣରେ ସେମାନେ ତିଷ୍ଠି ରହିପାରିଲେ ନାହିଁ । ପନ୍ଦର ନମ୍ବର ଓ୍ୱାର୍ଡ଼କୁ ଅବରୁଦ୍ଧ କରି ଦିଆଗଲା ଏବଂ ସବୁ ବନ୍ଦୀ ଭିତରେ ରହି ଲୁହା କବାଟ ବନ୍ଦ କରିଦେଲେ । ବନ୍ଦୀମାନଙ୍କ ପାଇଁ ଉଦ୍ଦିଷ୍ଟ ସିମେଣ୍ଟ ପିଣ୍ଡିମାନଙ୍କୁ ମାଧବ ସିହଂ, ରାମମୂର୍ତ୍ତି, କଲ୍ୟାଣ ପ୍ରଭୃତି ହାତରେ

ଭାଙ୍ଗି ଖଣ୍ଡ ଖଣ୍ଡ ଇଟା ରଖିଲେ ସଜେଇ, ଆବଶ୍ୟକ ହେଲେ ମାରିବା ପାଇଁ । ଆହୁରି ଅନେକ ଜିନିଷ ସଜାଇ ରଖାଗଲା । ଏଇଭଳି ଅବରୁଦ୍ଧ ଅବସ୍ଥା ଚାଲିଲା ପାଞ୍ଚ ଛଅ ଦିନ । ଜେଲଖାନାର ପରିଦର୍ଶକମାନଙ୍କୁ ଡକାଗଲା– ସେମାନଙ୍କ ଭିତରେ ନିଶାମଣି ଦେବୀଙ୍କୁ ମୋର ମନେପଡୁଛି । (ଡକ୍ଟର ପ୍ରିୟମ୍ବଦା ହେଜମାଦୀଙ୍କ ମାଆ) । ତାଙ୍କ ଆଖିରୁ ଖାଲି ଲୁହ ଝରିଲା ଆମ ଅବସ୍ଥା ଦେଖି । ସରକାରଙ୍କୁ ଖବର ଦିଆଗଲା । ପରେ ଶୁଣିଲୁ ଯେ ଲୁହବୁହା ବାଷ୍ପ ପ୍ରୟୋଗ କରି ଶ୍ୱାସରୁଦ୍ଧ କରି ମାରିଦେବା ପାଇଁ ନିଷ୍ପତ୍ତି ସହିତ ଡକ୍ଟର ହରେକୃଷ୍ଣ ମହତାବ ଏବଂ ନବକୃଷ୍ଣ ଚୌଧୁରୀ ସମ୍ମତ ହେଲେ ନାହିଁ । ରାଜନୀତିକ ମତଭେଦ ସତ୍ତ୍ୱେ ତାଙ୍କର ଏକଦା ସହଯୋଦ୍ଧା ବହୁ ବ୍ୟକ୍ତି ଥିଲେ ଆମ ଭିତରେ । ବୋଧହୁଏ ତାହା କାମ କଲା । ଅନଶନ ଚାଲୁ ରଖିବା ପାଇଁ ଜେଲ କର୍ତ୍ତୃପକ୍ଷ ସମ୍ମତ ହେଲେ ଏବଂ ବ୍ୟାରିକେଡ୍ ଉଠାଇ ନିଆଗଲା । ଆଜି ମନେପକେଇଲେ ଆମର ସେଇ ବ୍ୟାରିକେଡ୍ ଗଠନ ତୁଛ । ଆଡ୍‌ଭେଞ୍ଚରିଜିମ୍ ବା ଦୁଃସାହସ ପରି ମନେହେଉଛି । ଏଇ ସମୟରେ ଚାଲିଥିବା ଅନଶନ ୪୮ ଦିନ ପରେ ସରିଲା । ଜେଲ ବାହାରର ବହୁ ବିଶିଷ୍ଟ ବ୍ୟକ୍ତି ନିବେଦନ କଲେ ଅନଶନ ଭଙ୍ଗ କରିବା ପାଇଁ । ଅନଶନ ପ୍ରତ୍ୟାହୃତ ହେଲା । ଜେଲ ବାହାରୁ ନେତୃତ୍ୱ ଆମକୁ ବାଣୀ ଶୁଣାଇଲେ– Continue till majority of you face death (ତମମାନଙ୍କ ଭିତରୁ ଅଧିକାଂଶ ନ ମଲାପର୍ଯ୍ୟନ୍ତ ଅନଶନ ଚାଲୁ ରଖ) । ଅନଶନକାରୀମାନଙ୍କ ତରଫରୁ ଉତ୍ତର ଦିଆଯାଇଥିଲା ପାର୍ଟି ନେତୃତ୍ୱକୁ– Stop sermonisation (ବାଣୀ ବନ୍ଦକର) । ଦୁଇଟି ବଡ଼ ଏବଂ ଗୋଟିଏ ଛୋଟ ଅନଶନ ଭିତର ଦେଇ ଯିବାକୁ ପଡ଼ିଛି । ପଳାତକ ଜୀବନ ଯାପନ କରିବାକୁ ପଡୁଛି । ରାଜନୀତିକ କାର୍ଯ୍ୟ ବା ସଂଗଠନ କେତେ ହୋଇଛି ସେ ବିଷୟରେ ମୋର ଆଜି ସନ୍ଦେହ ଜାତ ହୁଏ । ପୁଲିସର ସଣ୍ଢଆଣି ଆକ୍ରମଣରୁ ଉଧୁରିବା ପ୍ରଥମ ଏବଂ ମୁଖ୍ୟ କାର୍ଯ୍ୟ ହୋଇଛି । କିନ୍ତୁ ଅନଶନ ଏବଂ ପଳାତକ ଜୀବନ ଭିତରେ ମୁଁ ପଳାତକ ଜୀବନକୁ ହିଁ ବାଛିବି । ଅନଶନ ବା କାରାବାସରେ କୌଣସି ଉନ୍ମାଦନା ନ ଥାଏ ।

ବନମାଳୀ ଦାସ ଥାଆନ୍ତି କୋ-ଅର୍ଡ଼ିନେଶନ କମିଟିର ସଭ୍ୟ । ଜେଲଖାନାରେ ସର୍ବୋଚ୍ଚ ପାର୍ଟି କମିଟି । ତାଙ୍କର ମତଭେଦ ଆରମ୍ଭ ହୋଇଯାଇଥାଏ ପାର୍ଟି ନୀତି ସହିତ ପାର୍ଟି ଲାଇନ୍‌କୁ ବିରୋଧ କରନ୍ତି ଉଚ୍ଚ କମିଟିରେ ଏବଂ ଜେନେରାଲ ବଡ଼ିରେ ପାର୍ଟିଲାଇନକୁ ଠିକ୍ ବୋଲି ସାବ୍ୟସ୍ତ କରନ୍ତି ।

ସେ ବିବାହ କରିଥିଲେ ଯାମିନୀ ବୋଷଙ୍କୁ । ନିଜେ ବିବାହ ଠିକ୍ କରିଥିଲେ ଏବଂ ଯାମିନୀ ଦେବୀ ବନମାଳୀବାବୁଙ୍କ ସହଯୋଦ୍ଧୃତ୍ୱକୁ ଆପଣେଇ ନେଇଥିଲେ । ମଣିଷ ସବୁବେଳେ ସମାନ ରହିପାରେନା । ବିଶେଷତଃ ଯେଉଁମାନେ ଟେନ୍‌ସନ୍ ଭିତର ଦେଇ ଗତି କରନ୍ତି, ଯେଉଁମାନଙ୍କର ଜୀବନ କଠୋର ହୋଇଯାଏ ସେମାନେ ଅନେକ ସମୟରେ ଏପରି ଭୁଲ୍ କରନ୍ତି ଯାହା ସାଧାରଣ ମଣିଷର ଜୀବନରେ ଘଟେ ନାହିଁ । ପୃଥିବୀର ବହୁ ବିଶିଷ୍ଟ ଚିନ୍ତାନାୟକ, ଖେଳାଳି, ଦାର୍ଶନିକ, ଜନନାୟକ, ଲେଖକଙ୍କର ଜୀବନରେ ଏଇଭଳି ବିଚ୍ୟୁତି

ବା ତ୍ରୁଟି ଦେଖାଯାଏ । ସେମାନଙ୍କ ଜୀବନକୁ ଯେଉଁମାନେ ଆପ୍ରିସିଏଟ କରିପାରନ୍ତି ନାହିଁ ସେମାନେ ଖାଲି ସମାଲୋଚନା କରନ୍ତି । ଯାହାର ବାସ୍ତବତା ସହିତ କିଛି ସମ୍ପର୍କ ନ ଥାଏ । ସାଧାରଣ ମଣିଷର ଦୃଷ୍ଟିରେ ତାହା ବିଚାର କରାଯାଇପାରେନା ।

ପାର୍ଟି ଭିତରେ ସଂକଟ ତୀବ୍ର ହେବାକୁ ଲାଗିଛି । ତେଲେଙ୍ଗାନା ସଶସ୍ତ୍ର ଆନ୍ଦୋଳନ ଭାଙ୍ଗିପଡୁଛି । କମ୍ୟୁନିଷ୍ଟ ପାର୍ଟିର ବହୁ ନେତାଙ୍କର ପାର୍ଟି ନୀତି ସହିତ ମତଭେଦ ଘଟୁଛି । ବନମାଳୀ ଦାସ ସେଇ ସନ୍ତୁଳନରେ ସନ୍ତୁଳିତ । କେବଳ ସେତିକି ନୁହେଁ ତାଙ୍କୁ ଦ୍ୱୈତ ଭୂମିକା ଗ୍ରହଣ କରିବାକୁ ପଡୁଛି । ଉଚ୍ଚ କମିଟିରେ ପାର୍ଟି ନୀତି ସହିତ ତାଙ୍କର ମତଭେଦ ତୀବ୍ର ଏବଂ ତଳ କମିଟିର ସେ ଉକ୍ତ ନୀତିର ପ୍ରବକ୍ତା ।

ଏତିକିବେଳେ ତାଙ୍କୁ ଖବର ଦିଆଗଲା ଯେ ତାଙ୍କର ସ୍ତ୍ରୀ ଯାମିନୀ ଦାସ ଅନ୍ତଃସତ୍ତ୍ୱା । ବନମାଳୀ ଦାସ ନୀଳକଣ୍ଠ ପରି ଏହାକୁ କେବଳ ହଜମ କରି ସମସ୍ତଙ୍କ ଠାରୁ ଗୁପ୍ତ ରଖିଦେଲେ ନୁହେଁ, ନୀଳଗିରି ପାର୍ଟି ସଭ୍ୟମାନଙ୍କୁ ନିର୍ଦ୍ଦେଶ ଦେଲେ ଯେ ଯାମିନୀ ଦାସଙ୍କୁ ପାର୍ଟିରୁ ସସ୍‌ପେଣ୍ଡ କର କିନ୍ତୁ ହଇରାଣ କର ନାହିଁ । ମାନବିକତାର ଏଭଳି ଦୃଷ୍ଟାନ୍ତ ମୁଁ ଜୀବନରେ ଦେଖି ନାହିଁ ।

ଯାମିନୀ ଦେବୀଙ୍କୁ ପାର୍ଟି ବହିଷ୍କାର କଲା । ସେ ଯାଇ ତାଙ୍କ ବାପଘରେ ରହିଲେ । ବନମାଳୀବାବୁ ଜେଲରୁ ଖଲାସ ହେଲେ । ତାଙ୍କ ଭାଇମାନେ ତାଙ୍କର ବିବାହ ଅନ୍ୟତ୍ର କରାଇବାକୁ ଚାହିଁଲେ । ଏତିକିବେଳେ ପାର୍ଟି ଭିତରେ ଏକ ନାରୀକର୍ମୀଙ୍କର ଅଭ୍ୟୁଦୟ ହେଲା । ତାଙ୍କର ନାମ ମୁଁ ଭୁଲିଯାଇଛି । କିନ୍ତୁ ସେ ଖୁବ୍ ସକ୍ରିୟ ହୋଇଉଠିଲେ ଏବଂ ବନମାଳୀବାବୁଙ୍କୁ ଖାପଚାରେ ପକାଇବା ତାଙ୍କର ଲକ୍ଷ୍ୟଥିଲା । ସେ ପୁଲିସ ଦ୍ୱାରା ପ୍ରେରିତ ହୋଇଥିଲେ ବୋଲି ପରେ ଜଣାପଡ଼ିଲା । ବନମାଳୀବାବୁଙ୍କ ଶାଣିତ ଏବଂ ଧୂର୍ତ୍ତ ଆଖିରୁ ତାହା ଏଡ଼ାଇ ଯାଇପାରିଲା ନାହିଁ । ସେ ଉକ୍ତ ଭଦ୍ରମହିଳାର ଗତିବିଧି ଉପରେ ସନ୍ଦେହ ପ୍ରକାଶ କଲେ ।

ଏତିକିବେଳେ ଦିନେ ବନମାଳୀ ଦାସ ନୀଳଗିରିରୁ ଆସୁଥିଲେ ବାଲେଶ୍ୱର । ବନମାଳୀବାବୁଙ୍କ ମିତ୍ର ମଧ ଥିଲେ ପୁଲିସ ବିଭାଗରେ । ଜଣେ ବନ୍ଧୁ ପୁଲିସ ଅଫିସର ତାଙ୍କୁ କହିଲେ ଯାମିନୀ ଦାସ ବର୍ତ୍ତମାନ ପର୍ଯ୍ୟନ୍ତ ଉକ୍ତ ବ୍ୟକ୍ତି ସହିତ ସଂପର୍କ ରଖିଛନ୍ତି ବୋଲି ତାଙ୍କ ଭାଇ କହୁଥିଲେ । ବନମାଳୀବାବୁ ସେଇଠାରୁ ସିଧା ଫେରିଗଲେ ଘରକୁ ଏବଂ ଭାଇଙ୍କୁ ପଚାରିଲେ ସତ୍ୟାସତ୍ୟ । ଭାଇ ବାଧ ହୋଇ ସ୍ୱୀକାର କଲେ ଯେ ଏହା ସତ ନୁହେଁ । ବନମାଳୀବାବୁ ଆଉଥରେ ବିବାହ କରିବା ଉଚିତ ମନେକରି ସେ ଏଇଆ କହିଛନ୍ତି । ବନମାଳୀବାବୁ ଗଲେ ଯାମିନୀ ଦାସଙ୍କ ପାଖକୁ ଏବଂ ତାଙ୍କୁ ନେଇ ଆସିଲେ ଘରକୁ ଆପଣାର ସ୍ତ୍ରୀ ଭାବରେ ।

କହିବା ସହଜ କିନ୍ତୁ କରିବା କଠିନ । ଏପରି ପରିସ୍ଥିତିରେ ମାନବିକ ତଥା ମନସ୍ତାତ୍ତ୍ୱିକ ପ୍ରଶ୍ନ ଜଡ଼ିତ । ପୁରୁଷର ଦୋଷକୁ ନାରୀ କ୍ଷମା କରେ । ପୁରୁଷମାନଙ୍କର ଏହା ହେଉଛି ଦାବି । କିନ୍ତୁ ନାରୀର ଦୋଷକୁ ପୁରୁଷ କ୍ଷମା କରିବା ଖାଲି ନୁହେଁ ମାନବିକ ଦୃଷ୍ଟିରୁ କେତେ ପୁରୁଷ ଏହାକୁ ଗ୍ରହଣ କରନ୍ତି ? ରାମଚନ୍ଦ୍ର ତାହା ଗ୍ରହଣ କରି ନ ପାରି ସୀତାଙ୍କୁ ଅଗ୍ନି ପରୀକ୍ଷା ଦେବାକୁ କହିଥିଲେ ଏବଂ ପରେ ବନବାସକୁ ମଧ ପଠାଇଥିଲେ ।

ସେଇଯୋଗୁଁ ବନମାଳୀ ଦାସଙ୍କ ପ୍ରତି ମୋର ଏକ ସ୍ୱତନ୍ତ୍ର ଦରଦ ବା ଦୁର୍ବଳତା ରହିଛି । ଏହା ଖାଲି ମୋର ନୁହେଁ ଅନେକଙ୍କର ।

ନୀଳଗିରିରେ ଏକ ନାରୀ ଥାଏ, ଯାହାକୁ ଅନ୍ୟମାନେ ବେଶ୍ୟା ବା ଗଣିକା ବୋଲି କହନ୍ତି । ସେ ବନମାଳୀ ଦାସଙ୍କ ସହପାଠିନୀ । ତେଣୁ ପରସ୍ପରକୁ ତୁ ବୋଲି ସମ୍ବୋଧନ କରନ୍ତି । ବନମାଳୀ ଦାସ ସେଇ ନାରୀର ଗୃହକୁ ଗୁପ୍ତ ଦଲିଲ ରଖିବା ପାଇଁ ବାଛିଥିଲେ । ତା'ର କିଛି ଅସୁବିଧା ହେଉଛି କି ବୋଲି ପଚାରିଲେ ସେ କହେ ତୁ ଏକମାତ୍ର ବ୍ୟକ୍ତି ଯେ ଦିନରେ ଆସୁ । ଅନ୍ୟମାନେ ରାତିରେ ଆସନ୍ତି । ସେମାନେ ନୀତି ବଖାଣନ୍ତି, ତୁ ନୀତିକୁ କାର୍ଯ୍ୟକାରୀ କରୁ । ଗଣିକାର ଏଇ ମୂଲ୍ୟବୋଧ ହେଉଛି ପତିତର ମୂଲ୍ୟବୋଧ । ଯାହା ମୁଁ ପରେ ଅନୁଭବ କରିଛି କଲିକତାର ହାଡ଼କଟା ଲେନ୍‌ରେ, ଗଣିକା ବସ୍ତିରେ ।

ବନମାଳୀବାବୁଙ୍କର (ବୋଧହୁଏ ଚୀନ ସହିତ ସଂଘର୍ଷ ସମୟରେ) ଜେଲରେ ଥିବା ଅବସ୍ଥାରେ ଦେହ ଅସୁସ୍ଥ ହେଲା । ତାଙ୍କର କଟକ ବଡ଼ ଡାକ୍ତରଖାନାକୁ ସ୍ଥାନାନ୍ତରିତ ହେବାର କଥା । କିନ୍ତୁ ହେଉ ନାହିଁ । ଉପ-ମୁଖ୍ୟମନ୍ତ୍ରୀ ତଥା ଘରୋଇ ବିଭାଗ ମନ୍ତ୍ରୀ ନୀଳମଣି ରାଉତରାୟଙ୍କ ହସ୍ତକ୍ଷେପ ଆବଶ୍ୟକ । କିଏ ତାଙ୍କୁ ଯାଇ କହିବ ? ଅନ୍ୟମାନେ ରାଜି ହେଲେ ନାହିଁ । ବାଧ୍ୟହୋଇ ମୋତେ ଭେଟିବାକୁ ପଡ଼ିଲା । ସେତେବେଳେ ମୁଁ ଏକ କଂପାନୀରେ ଚାକିରି କରୁଥାଏ । ନୀଳମଣିବାବୁ ପ୍ରଥମେ ଭାବିଲେ ଯେ ମୁଁ କଂପାନୀ କାମରେ ଆସିଛି । ମୁଁ ତାଙ୍କୁ ବନମାଳୀ ଦାସଙ୍କ କଥା କହିଲି । ସେ ଜେଲ ବିଭାଗ ଏବଂ ପୁଲିସ ବିଭାଗର ଅଧ୍ୟକ୍ଷଙ୍କୁ ଫୋନ କରି ପଚାରିଲେ ଯେ ବନମାଳୀ ଦାସ ଅସୁସ୍ଥ ଥିବା ଖବର ତାଙ୍କୁ ଦିଆଯାଇ ନାହିଁ କାହିଁକି ? ତା ସହିତ ସେ ସାଂଗେ ସାଂଗେ ତାଙ୍କୁ କଟକ ବଡ଼ ଡାକ୍ତରଖାନାକୁ ସ୍ଥାନାନ୍ତରିତ କରିବାକୁ ନିର୍ଦ୍ଦେଶ ଦେଲେ । ବନମାଳୀବାବୁ ବଡ଼ଡାକ୍ତରଖାନା ଗଲେ । କିନ୍ତୁ ୱାର୍ଡ଼ରେ ରହିବା ପାଇଁ ଅସୁବିଧା ହେଲା । ତାଙ୍କୁ ଏକ କ୍ୟାବିନ୍‌କୁ ପଠାଇବା ଦରକାର ପଡ଼ିଲା । ପୁଣି ନୀଳମଣିବାବୁଙ୍କୁ ଭେଟିବାକୁ ପଡ଼ିଲା । କନିକା କଟେଜକୁ ସ୍ଥାନାନ୍ତରିତ କରିବା ପାଇଁ ସେ ନିର୍ଦ୍ଦେଶ ଦେଲେ । କନିକା କଟେଜ୍‌ରେ ଗୋଟିଏ ବଖରା ଘର । ତାରି ଭିତରେ ପୁଲିସ ଫଉଜ ତାଙ୍କର ବନ୍ଧୁକ ସବୁ ରଖିଲେ । ତାଙ୍କୁ ପୁଣି ଥରେ ଭେଟିବାକୁ ପଡ଼ିଲା । ସେ ପୁଲିସକୁ ତମ୍ବୁ ପକାଇ ରହିବା ସକାଶେ ନିର୍ଦ୍ଦେଶ ଦେଲେ । ବନମାଳୀବାବୁଙ୍କର ଅସୁସ୍ଥତା ବଢ଼ିଲା । ତାଙ୍କୁ ଦିଲ୍ଲୀ ପଠାଇବାକୁ ହେବ ଏବଂ ସେଥିପାଇଁ ଆବଶ୍ୟକ ପାରୋଲ (Parole) ବାଧ୍ୟହୋଇ ପୁଣି ଭେଟିଲି ନୀଳମଣିବାବୁଙ୍କୁ । ସେ ପାରୋଲ ଲାଗି ନିର୍ଦ୍ଦେଶ ଦେଲେ ଏବଂ ମୋତେ ପଚାରିଲେ ଯେ ତମର ବନମାଳୀ ପ୍ରତି ଏତେ ଦରଦ କାହିଁକି ?

ମୁଁ ଉତ୍ତର ଦେଲି ଯେ ସେ ରାଜନୀତିକ ବନ୍ଦୀମାନଙ୍କ ଭିତରେ ବୋଧହୁଏ ସବୁଠାରୁ ବେଶି ଦଣ୍ଡିତ ବା ସଫରର୍ (Sufferer) ।

ସେ ଆଖିରୁ ଲୁହ ପୋଛିଲେ ଏବଂ କହିଲେ ଯେ ମୋର ବି ତା' ପ୍ରତି ଦରଦ ସେଇଯୋଗୁଁ ଖୁବ୍ ବେଶି । ଅନେକ ଥର ଆମେ ଦିହେଁ ହାତକଡ଼ା ପିନ୍ଧି ଯାଇଛୁ ଏକାଠି ।

ଇଚ୍ଛା ହେଉଥିଲା କହିବା ପାଇଁ ଯେ ଇତିହାସର କ୍ରୂର ପରିହାସରେ ତାଙ୍କ ହାତରୁ ସେ କଡ଼ା ଏ ପର୍ଯ୍ୟନ୍ତ ଓହ୍ଲାଇ ନାହିଁ । କିନ୍ତୁ ତାଙ୍କ ଆଖିର ଲୁହ ଦେଖି କହିବାକୁ ମନ ବଳିଲା ନାହିଁ ।

ପୁରାତନ ରାଜନୀତିକ ସହଯୋଦ୍ଧୃତ୍ୱ ଯେ କିଭଳି କାମ କରେ ଏହା ତାହାର ବିରଳ ଉଦାହରଣ ।

ମୋର ମନେପଡୁଛି ।

ଜରୋରୀ ପରିସ୍ଥିତି ସମୟରେ ମହତାବବାବୁ ଏବଂ ନବକୃଷ୍ଣ ଚୌଧୁରୀ ଗିରଫ ହୋଇଥାଆନ୍ତି ପୂର୍ବ ରାତିରେ ।

ଏକଦା ନବକୃଷ୍ଣ ଚୌଧୁରୀଙ୍କର ପ୍ରଚଣ୍ଡ ବିରୋଧୀ ବନମାଳୀ ପଟ୍ଟନାୟକ ମୁଖ୍ୟମନ୍ତ୍ରୀଙ୍କୁ ଫୋନ କରି କହିଲେ ଯେ ମହତାବବାବୁ ସବୁପ୍ରକାର ପରିସ୍ଥିତିକୁ ସମ୍ଭାଳି ଯିବେ । କିନ୍ତୁ ନବବାବୁ ଭାରି ସ୍ପର୍ଶକାତର । ତାଙ୍କୁ ଥଣ୍ଡା ଜାଗାରେ ରଖିବ, ଖବରକାଗଜ, ବହି ପଢ଼ିବାକୁ ଦେବ, ବିଡ଼ି, ସିଗାରେଟ ଦେବ । ଏତିକି ତୁମକୁ ଅନୁରୋଧ ।

ମହତାବବାବୁ ଗଲେ ଭଂଜନଗର ଜେଲକୁ ଏବଂ ନବବାବୁ ଗଲେ ବାରିପଦା ଜେଲକୁ । ଦୁଇଟିଯାକ ସହର ଉତପ୍ତ ସହର । ନବବାବୁ କୌଣସି ସୁବିଧା ପାଇଲେ ନାହିଁ । ତାଙ୍କର ସ୍ୱାସ୍ଥ୍ୟ ଭଗ୍ନ ହେଲା ଏବଂ ସେ ଫେରିଲେ ଅର୍ଦ୍ଧମୃତ ହୋଇ ।

ମହତାବବାବୁ ପାରୋଲ୍‌ରେ ଆସିଥିଲେ । ତାଙ୍କୁ ଭୁବନେଶ୍ୱର ଜେଲକୁ ଛାଡ଼ିବାକୁ ଯାଇଥିଲେ ଏକମାତ୍ର ନରସିଂହ ତ୍ରିପାଠୀ, ଯେ କଂଗ୍ରେସ ବିରୋଧୀ ନେତା ଭାବରେ ପରିଚିତ ।

କେ.ଡି.ମାଲବ୍ୟ ଥାଆନ୍ତି କେନ୍ଦ୍ରମନ୍ତ୍ରୀ । ସେ ମୋତେ ପଚାରିଲେ ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀଙ୍କର କ'ଣ ଆଉ ବୟସ ଅଛି ବିପ୍ଳବ କରିବା ପାଇଁ ବା ସରକାର ଭାଙ୍ଗିବା ପାଇଁ ?

କିନ୍ତୁ କେନ୍ଦ୍ର ସରକାରରେ ପରା ଆପଣ ମନ୍ତ୍ରୀ ଏବଂ ଓଡ଼ିଶାରେ ପରା ଆପଣଙ୍କ ଦଳ ସରକାରରେ ? କେ.ଡି. ମାଲବ୍ୟ ଜଣେ ବାମପନ୍ଥୀ ଭାବାପନ୍ନ ବ୍ୟକ୍ତି ଏବଂ ନନ୍ଦିନୀ ଦେବୀଙ୍କ ସହିତ ତାଙ୍କର ବନ୍ଧୁତା ମଧ୍ୟ ସେଇ ଦୃଷ୍ଟିରୁ ।

ସେ କେବଳ ତଳକୁ ମୁହଁ ପୋତି କହିଲେ ଯେ ମୁଁ ସେ ବିଷୟରେ କିଛି ନ କହିଲେ ଭଲ । ତମେ ଶ୍ୟାମସୁନ୍ଦର (ମହାପାତ୍ର)ଙ୍କୁ ପଚାରୁନ । ଶ୍ୟାମବାବୁ ସେତେବେଳେ ଇନ୍ଦିରା ଗାନ୍ଧୀ ଏବଂ ସଂଜୟ ଗାନ୍ଧୀଙ୍କ ଖୁବ୍ ନିକଟର ଲୋକ । ଶ୍ୟାମବାବୁଙ୍କୁ ଅନେଇଲି ।

ଶ୍ୟାମବାବୁ ଖୁବ୍ ଭଲ ବକ୍ତା । କିନ୍ତୁ କଥାବାର୍ତ୍ତା କଲାବେଳେ ସେ ଧୀର, ଶାନ୍ତ ଭାବରେ କୁହନ୍ତି, ଭାଷଣର ଠିକ୍ ଓଲଟା । ଏକ ସ୍ମିତହାସ୍ୟର ରେଖା ତାଙ୍କ ମୁହଁରେ ଉକୁଟି ଲିଭିଗଲା ।

ଜରୋରୀ ଆଇନ୍ ଜାରିହେବା ଦିନର କଥା ।

ଶ୍ୟାମବାବୁ, ରବୀନ୍ଦ୍ର ମୋହନ ଦାସ, ବନମାଳୀ ପଟ୍ଟନାୟକ ସେ ଦିନ ଥିଲେ ସର୍କିଟ ହାଉସ୍‌ରେ । ସେଇଠି ଜୁଟିଲେ ଭୈରବ ଚନ୍ଦ୍ର ମହାନ୍ତି, ପ୍ରଦ୍ୟୁମ୍ନ ବଳ ପ୍ରଭୃତି । ମୁଁ ବି ଦୈବାତ୍ ଥିଲି ସେଇଠି ।

ରବୀନ୍ଦ୍ର ମୋହନ ଦାସ ସେ ଦିନ ଉତ୍‌କ୍ଷିପ୍ତ ଥିଲେ । ହାତକୁ ଟେକି ସେ ଦିନ କହିଲେ ମନେହେଉଛି ଦ୍ୱିତୀୟ ସ୍ୱାଧୀନତା ସଂଗ୍ରାମର ବେଳ ଆସିଗଲା ।

ବନମାଳୀ ପଟ୍ଟନାୟକ ତାଙ୍କ ସ୍ତ୍ରୀଙ୍କୁ (ସେ ଉପସ୍ଥିତ ଥିଲେ) କହିଲେ ଯେ ଦେଖ, ମୋର କ'ଣ ହେବ କହିପାରିବିନି । ସମୟ ସାଙ୍ଘାତିକ । ତମେ ମୋ ପାଇଁ ବ୍ୟସ୍ତ ହେବନି ।

ପ୍ରଦ୍ୟୁମ୍ନ ବଳଙ୍କ ବିରୋଧରେ ଓ୍ୱାରଣ୍ଟ ବାହାରି ସାରିଥାଏ । ସେ ଓ ମୁଁ ଦୁହେଁ ସାଙ୍ଗହୋଇ ଯାଇଥିଲୁ ସର୍କିଟ ହାଉସ । ସେ ପଳାତକ ହେବା ପୂର୍ବରୁ ଜାଣିବାକୁ ଚାହିଁଥିଲେ ସହଯୋଦ୍ଧାମାନଙ୍କର ମନୋଭାବ ।

ଶ୍ୟାମବାବୁ କହିଲେ ଯେ ଦେଖ କମ୍ୟୁନିଷ୍ଟ ପାର୍ଟି ଛାଡ଼ି ଆସି କଂଗ୍ରେସରେ ଯୋଗଦେବାବେଳେ ମୁଁ ଦେଶ ପାଇଁ ଭାବି କରି ନାହିଁ । ମୁଁ ଯାହା କରିଛି ନିଜ ପାଇଁ । ତେଣୁ ମୁଁ ରହିଲି ଏଷ୍ଟାବ୍ଲିଶମେଣ୍ଟ ପାଖରେ । ତୁମକୁ ମୋର ଶୁଭେଚ୍ଛା । ଏହା ଏକ ଫ୍ରାଙ୍କ ଷ୍ଟେଟମେଣ୍ଟ । ସେଇ ଯୋଗୁଁ ଭଲ ଲାଗିଲା ।

ଜରୋରୀ ପରିସ୍ଥିତି ଜାରି ହେବା ସନ୍ଧ୍ୟାରେ ବ୍ରଜମୋହନ ମହାନ୍ତିଙ୍କର ଘରେ ଏକ ବୈଠକ ହୁଏ । ସେଥିରେ ସୁରେନ୍ଦ୍ର ନାଥ ଦ୍ୱିବେଦୀ ମଧ୍ୟ ଯୋଗ ଦିଅନ୍ତି । ଜରୋରୀ ଆଇନ୍ ବିରୋଧରେ ତୀବ୍ର ବିରୋଧୀ ଭାଷଣ ହୁଏ । କିନ୍ତୁ ତା' ପରଦିନ କିଏ କୁଆଡ଼େ ଗଲେ ନ କହିଲେ ଭଲ ।

ତା' ଅପେକ୍ଷା ଶ୍ୟାମବାବୁଙ୍କ ଉକ୍ତି ସ୍ପଷ୍ଟ ଏବଂ ବୁଝିହୁଏ । ଅନ୍ୟମାନଙ୍କୁ ବୁଝି ହୁଏନା । ମୋର ମନେପଡୁଛି ଫାସିବାଦ ବିରୋଧୀ ସମ୍ମିଳନୀରେ କଟକରେ ଭୂପେଶ ଗୁପ୍ତଙ୍କ ଭାଷଣ ।

ଏକପଟରେ ମହାରାଣୀ ଗାୟତ୍ରୀ ଦେବୀ, ଆରପଟରେ ଶିଳ୍ପପତି ରାମନାଥ ଗୋଏଙ୍କା, ମଝିରେ ଚାଲିଛନ୍ତି ଟୋଟାଲ ରିଭଲ୍ୟୁସନାରୀ ଜୟପ୍ରକାଶ ନାରାୟଣ ।

ସେଇଟା ଜୟପ୍ରକାଶଙ୍କ ଆନ୍ଦୋଳନର ଏକ ଦୁର୍ବଳତା ନିଶ୍ଚୟ । କିନ୍ତୁ ସେଇଟା ତ 'ଟୋଟାଲ ରିଭଲ୍ୟୁସନ'ର ଆକଳନ ନୁହେଁ ।

ପଇତା ଛିଣ୍ଡାଇ ପକାଅ । ଅସବର୍ଣ୍ଣ ବିବାହ କର, ସ୍କୁଲ କଲେଜ ପରିତ୍ୟାଗ କର, ଗ୍ରାମକୁ ଯାଅ । ସେମାନଙ୍କ ସାଙ୍ଗରେ ରହି ଆନ୍ଦୋଳନ ପରିଚାଳନା କର ।

ଏ ତ ଗାନ୍ଧୀ ବା ମାଓ-ସେ-ତୁଙ୍ଗଙ୍କର ଡାକରା ପରି ।

ପରବର୍ତ୍ତୀ କାଳରେ ସେଇ ଭାରତୀୟ କମ୍ୟୁନିଷ୍ଟ ପାର୍ଟି ତା'ର ଭୁଲ ସଂଶୋଧନ କରିଛି ।

ଜରୋରୀ ପରିସ୍ଥିତି ସମୟରେ ତ୍ରିଲୋଚନ କାନୁନଗୋଙ୍କୁ ଗିରଫ କରାଗଲା ଏବଂ ସମ୍ବଲପୁର ଜେଲକୁ ପଠାଗଲା । ସେଇ ସମୟରେ ସେ ଅସୁସ୍ଥ ହେଲେ । ବନ୍ଧୁ ରାଜେନ୍ଦ୍ର ନାରାୟଣ ଦାସ ସେଠାରେ ଥିଲେ ଡି.ଆଇ.ଜି. ପୁଲିସ । ତାଙ୍କୁ ଚିଠି ଦେଲି ଜଣଙ୍କ ହାତରେ । ସେ ଯାହା କାମ ଦରକାର ଚୁପ୍‌ଚାପ କରିଦେଲେ । ବନ୍ଧୁତା କେବଳ ନୁହେଁ ତ୍ୟାଗର ଝଲକ ଏ ସବୁ କାମ ପାଇଁ ସାହାଯ୍ୟକାରୀ ହେଉଥିଲା ।

ସେତିକିବେଳେ ବନ୍ଧୁ ୰ପ୍ରହ୍ଲାଦ ମଲ୍ଲିକ ଥାଆନ୍ତି ବନ୍ଦୀ କେଉଁଝର ଜେଲରେ । ଦି'ଚାରିଦିନ ପୂର୍ବରୁ ତାଙ୍କ ସ୍ତ୍ରୀ ହେମା ତାଙ୍କୁ ଭେଟିଥିଲେ ଜେଲରେ । ତାଙ୍କର କେତେକ ବ୍ୟକ୍ତିଗତ କାମ ଥିଲା । ସେ ତାଙ୍କ ସ୍ତ୍ରୀକୁ କହିଲା ମୋତେ ଦେଖାକରିବା ପାଇଁ । ଏହା ସେ କହିଲେ ଜଣେ ପୁଲିସ ଗୁଇନ୍ଦା ସମ୍ମୁଖରେ । ସେ ଜଣକ ମୋର ବନ୍ଧୁ ଥିଲେ । ସେ ମୋତେ (ଏବଂ ସରକାରଙ୍କୁ) ଜଣାଇ ଦେଇଥିଲେ ପ୍ରହ୍ଲାଦ ମଲ୍ଲିକଙ୍କ ବକ୍ତବ୍ୟ । ଦିନେ ସନ୍ଧ୍ୟାରେ ହେମା ଆସି ପହଞ୍ଚିଲେ ଆମ ଘରେ । ଦୈବାତ୍ ସେତିକିବେଳକୁ କଟକର ଜିଲ୍ଲାପାଳ ସତ୍ୟରଂଜନ ପାଲ ଏବଂ ଏସ୍.ପି. ଆପ୍ପାରାଓ ଆମ ଘରେ ବସି ଚା' ପିଉଥିଲେ । ହେମା ସେମାନଙ୍କୁ ଦେଖି ଅପ୍ରତିଭ ହେଲେ ଏବଂ 'ମୁଁ ଆପଣଙ୍କୁ ଅସୁବିଧାରେ ପକାଇଲି ବୋଲି କହିଲେ ।' ମୁଁ ତାଙ୍କୁ ପାଲ ଏବଂ ଆପ୍ପାରାଓଙ୍କ ସହିତ ପରିଚୟ କରାଇଦେଲି ଏବଂ କହିଲି ଯେ ମୋ ପାଇଁ ତମେ ମନ୍ତ୍ରୀ ପ୍ରହ୍ଲାଦ ମଲ୍ଲିକ ବା ବନ୍ଦୀ ପ୍ରହ୍ଲାଦ ମଲ୍ଲିକଙ୍କର ପତ୍ନୀ ନୁହଁ, ତମେ ମୋର ବନ୍ଧୁ ଏବଂ ସହପାଠୀ ପ୍ରହ୍ଲାଦ ମଲ୍ଲିକଙ୍କର ପତ୍ନୀ । ତମେ କୁହ କ'ଣ ଦରକାର ତମର ? ସେ ତାଙ୍କର ସମସ୍ୟା କହିଲେ ଏବଂ ପାଲ୍ ତାଙ୍କର ଯାହା କରିବାର କଥା କରିବା ପାଇଁ ପ୍ରତିଶ୍ରୁତି ଦେଲେ । ଆପ୍ପାରାଓ ନନ୍ଦିନୀ ଦେବୀଙ୍କର ଖୁବ୍ ପ୍ରିୟପାତ୍ର । ମୁଁ ତାଙ୍କୁ କହିଲି ଦେଖ ଆପ୍ପାରାଓ, ଏଇ ହତା ଭିତରେ ତୁମେ ଆପ୍ପାରାଓ, ଏଇ ହତା ବାହାରକୁ ଗଲେ ତମେ ଏସ୍.ପି. । ଏଇ ହତା ଭିତରେ ଯାହାସବୁ ଘଟିଗଲା ସେ ବିଷୟରେ ଆଉ ଯେପରି କେହି ନ ଜାଣନ୍ତି । ଆଜି ଗର୍ବର ସହିତ ସ୍ମରଣ କରାଯାଇପାରେ ଯେ ଆପ୍ପାରାଓ ସେ କଥା ରକ୍ଷା କରିଥିଲେ ।

ଆପ୍ପାରାଓ ଜରୁରୀ ପରିସ୍ଥିତି ପରେ ଦିଲ୍ଲୀକୁ ଯାଇ ବୈଦେଶିକ ବିଭାଗରେ ଅବସ୍ଥାପିତ ହୋଇଥିଲେ । ଥରେ ମୁଁ ଦିଲ୍ଲୀ ଯାଇଥାଏ । ପ୍ରଦ୍ୟୁମ୍ନ ବଳଙ୍କ ଘରେ ରହୁଥାଏ । ସେ ଦିନ ମୁଁ ଏବଂ ଆପ୍ପାରାଓ ଏକାଠି ଦିଲ୍ଲୀ ବୁଲିବାକୁ ସ୍ଥିର କଲୁ । କୁଆଡ଼େ ଯିବା ? ଚାଲଯିବା ସମରେନ୍ଦ୍ର କୁଣ୍ଡୁଙ୍କ ଘରକୁ । ସେ ବୈଦେଶିକ ବିଭାଗର ରାଷ୍ଟ୍ରମନ୍ତ୍ରୀ । ତାଙ୍କର ଆପ୍ପାରାଓ ସହିତ ଚାକ୍ଷୁଷ ପରିଚୟ ନ ଥାଏ । ଆମେ ଯାଇ ପହଞ୍ଚିଲୁ । ସମରେନ୍ଦ୍ର କୁଣ୍ଡୁଙ୍କ ସହିତ ମୋର ବିବାଦ ଯେତିକି ବନ୍ଧୁତା ବି ସେତିକି । ସେ ମୋତେ ଦେଖି କୁଣ୍ଢାଇ ପକାଇଲେ, କାରଣ ଜରୁରୀ ପରିସ୍ଥିତି ପରେ ଏହା ଥିଲା ମୋର ତାଙ୍କ ସହିତ ପ୍ରଥମ ସାକ୍ଷାତ୍ । ହଠାତ୍ ସେ ପଚାରିଲେ ସେ ମୋ ସହିତ ଯାଇଥିବା ବନ୍ଧୁଙ୍କ ପରିଚୟ । ମୁଁ ତାଙ୍କୁ କହିଲି, ଏ ହେଉଛନ୍ତି ଆପ୍ପାରାଓ । କେଉଁ ଆପ୍ପାରାଓ ! ତାଙ୍କର ବିସ୍ମୟଜଡ଼ିତ ପ୍ରଶ୍ନ । କଟକର ପ୍ରସିଦ୍ଧ ଏସ୍.ପି. । ସେ ହଁ କଲେ । ଆପଣ ବର୍ତ୍ତମାନ ଦିଲ୍ଲୀରେ, କେଉଁ ବିଭାଗରେ ? ସମରେନ୍ଦ୍ର କୁଣ୍ଡୁଙ୍କ ପ୍ରଶ୍ନ । ତାଙ୍କୁ ବିସ୍ମିତ କରି ସେ କହିଲେ ଯେ ମୁଁ ଆପଣଙ୍କ ବିଭାଗରେ ହିଁ ରହିଛି । ମୋ ବିଭାଗରେ ? ହସି ହସି କହିଲେ କୁଣ୍ଡୁଦା, ଆପଣ ଆସିଛନ୍ତି ମୋର ବନ୍ଧୁ ଗିରିଜା ସହିତ ? ଚାଲନ୍ତୁ, ଚାଲନ୍ତୁ, ଏମିତି ଏକ ମିଳନ ସହଜରେ ଜୁଟେ ନାହିଁ । କୁଣ୍ଡୁଦା ଆମକୁ ନେଇ ଖୁଆଇଲା ପାଖ ଏକ ରେଷ୍ଟୁରାଣ୍ଟରେ ।

ଫେରିଲାବେଳେ ଆସ୍ପାରାଓ କହିଲେ- ଆପଣ ଶତ୍ରୁ ମିତ୍ର, ଉଭୟଙ୍କୁ କେବଳ ବନ୍ଧୁ କରିପାରନ୍ତି ନାହିଁ ଅନ୍ୟମାନଙ୍କୁ ମଧ୍ୟ ଟାଣି ନିଅନ୍ତି ସେଇ ବନ୍ଧୁତା ଭିତରକୁ ।

ତ୍ରିଲୋଚନ କାନୁନଗୋ ଜେଲରୁ ଖଲାସ ପରେ ତାଙ୍କୁ କଟକ ପୌରସଂସ୍ଥା ନିର୍ବାଚନରେ ପ୍ରାର୍ଥୀ ହେବା ସ୍ଥିର କରାଗଲା । ସେ କଂଗ୍ରେସ ଦଳରୁ ହିଁ ଟିକଟ ନେଇ ଲଢ଼ିବା ପାଇଁ ଜିଦ୍ ଧରି ବସିଲେ । ତାଙ୍କୁ ଟିକଟ ନ ଦେବା ପାଇଁ ଉଦ୍ୟମ ଅପର ପଟରୁ ବେଶ୍ ଚାଲିଲା । କିନ୍ତୁ ସେ ଜୟଲାଭ କଲେ ।

ତାଙ୍କର ନିର୍ବାଚନ ପାଇଁ ଅର୍ଥ ଦରକାର । ସଂଗ୍ରାହକ ମଧ୍ୟରେ ମୁଁ ଜଣେ । କଟକ ସହରର ଜଣେ ବିଶିଷ୍ଟ ବ୍ୟବସାୟୀଙ୍କ ପାଖରେ ମୁଁ ଯାଇ ପହଞ୍ଚିଲି । ତାଙ୍କର ନାମ ମୁଁ କହିବି ନାହିଁ । କାରଣ ମୋର ଏଇ ବକ୍ତବ୍ୟ ତାଙ୍କୁ ସାହାଯ୍ୟ ନ କରୁ ପଛକେ କ୍ଷତିରେ ନ ପକାଉ ! ସେ ଖୁବ୍ ଧନୀ ବ୍ୟକ୍ତି । ସେ ତାଙ୍କର ଟଙ୍କା ବାକ୍ସର ତ୍ର ଟାଣିଆଣି ମୋ ହାତକୁ ପଚାଶ ହଜାର ଟଙ୍କା ବଢ଼ାଇଦେଲେ ଏବଂ କହିଲେ ଏହା ମୋର ପ୍ରାଥମିକ ଦାନ । ତ୍ରିଲୋଚନବାବୁଙ୍କ ପାଇଁ ଯେତେ ଟଙ୍କା ଦରକାର ହେବ ମୁଁ ଦେବି । କିନ୍ତୁ ସର୍ତ୍ତ ଗୋଟିଏ । ତ୍ରିଲୋଚନବାବୁ କଂଗ୍ରେସ ଦଳରୁ ଲଢ଼ିବେ ନାହିଁ ବାକି ଯେଉଁ ଦଳରୁ ସେ ଲଢ଼ିଲେ ଆମର କୌଣସି ଆପତ୍ତି ନାହିଁ ।

ମୁଁ ତ୍ରିଲୋଚନଙ୍କୁ ନ ପଚାରି ଟଙ୍କା ଗ୍ରହଣ କରିପାରିଲି ନାହିଁ । ସେ କିନ୍ତୁ ମୋର ଚାପ ତ୍ରିଲୋଚନଙ୍କ ଉପରେ ବଢ଼ିବା ଆଶାରେ ସେ ଟଙ୍କାକୁ ଫେରାଇ ନବାକୁ ନାରାଜ । ଆଉ ପଚାଶ ହଜାର ବାହାର କରି ଏକ ଥଳିରେ ନୋଟ ସବୁ ଭର୍ତ୍ତି କରି ମୋତେ ଦେଲେ ଏବଂ କହିଲେ ଆପଣ ନେଇଯାଆନ୍ତୁ ଏବଂ ଦେଖନ୍ତୁ ତ୍ରିଲୋଚନବାବୁ ଯେପରି କଂଗ୍ରେସ ପ୍ରାର୍ଥୀ ନ ହୁଅନ୍ତି । ମୋ ପକ୍ଷରେ ତାହା ଗ୍ରହଣ କରିବା ଅସମ୍ଭବ । ମୁଁ ଫେରିଲି ଏବଂ ତ୍ରିଲୋଚନଙ୍କୁ କହିଲି । ତ୍ରିଲୋଚନ କଂଗ୍ରେସ ଦଳରେ ଥାଇ ଜେଲ ଯାଇଛନ୍ତି । ନେତୃତ୍ୱ ବିରୋଧରେ ତାଙ୍କର ବିଦ୍ରୋହ, କଂଗ୍ରେସ ଦଳ ବିରୋଧରେ ନୁହେଁ । ତେଣୁ ସେ କଂଗ୍ରେସ ଦଳରୁ ହିଁ ପ୍ରାର୍ଥୀ ହେବେ । ଦାତାର ପ୍ରସ୍ତାବକୁ ତ୍ରିଲୋଚନ ଗ୍ରହଣ କରିବାକୁ ଆପଣାର ଅକ୍ଷମତା ପ୍ରକାଶ କଲେ ।

ସେ କଂଗ୍ରେସ ଦଳରୁ ହିଁ ପ୍ରାର୍ଥୀ ହେଲେ ଏବଂ ଜୟଲାଭ କଲେ । ପୌରସଂସ୍ଥା ଚେୟାରମ୍ୟାନ୍ ଭାବରେ ସେ ପ୍ରତିଶ୍ରୁତି ଦେଇଥିଲେ ଯେ କଟକ ସହରରୁ ମଶା ଲୋପ କରିବେ ନଚେତ୍ ଇସ୍ତଫା ଦେବେ ।

ଗୁରୁ ଡକ୍ଟର ସଦାଶିବ ମିଶ୍ରଙ୍କୁ ସେ ଏଇ ପ୍ରତିଶ୍ରୁତି ଦେଇଥିଲେ ଏବଂ ତାଙ୍କର କାର୍ଯ୍ୟ ସଫଳ ହୋଇଛି କି ନାଇଁ ତା ସେ ପରୀକ୍ଷା କରୁଥିଲେ ମୋର ସାନପୁଅ ଉପରେ । ପୁଅର ବୟସ ୮/୧୦ ବର୍ଷ ହୋଇଥାଏ । ସେ ହଠାତ୍ ଆସି ପହଞ୍ଚିବେ ଏବଂ ପଚାରିବେ ମଶା କାମୁଡୁଛନ୍ତି ?

ମଶାବଂଶ ଲୋପ ପାଇଥିଲେ ଏବଂ ତ୍ରିଲୋଚନ କାନୁନଗୋ କଟକ ସହରରେ ଏଇ ଗୋଟିଏ କାମ ପାଇଁ ବହୁକାଳ ସ୍ମୃତି ହୋଇ ରହିବେ ।

ଜରୋରୀ ପରସ୍ଥିତି ସମୟ । ଆଇ.ଜି. ଥାଆନ୍ତି ନରସିଂହ ସ୍ୱାଇଁ । ସେ ନନ୍ଦିନୀ ଦେବୀଙ୍କ ଖୁବ୍ ପାଖ ଲୋକ । ଦିନେ କୌଣସି ଏକ ସମସ୍ୟା ନେଇ ନୀଳମଣିବାବୁ ମୋତେ ପଠାଇଲେ ତାଙ୍କ ପାଖକୁ । ସେ କାମଟି କରିଦେଲେ କିନ୍ତୁ ମୋତେ ତାଗିଦ୍ କଲେ ଯେ ଏହା ଯେପରି ପ୍ରଘଟ ନ ହୁଏ ।

ଏଭଳି ଅନେକ ଘଟଣା ମନେପଡ଼େ । ଅନେକ ବ୍ୟକ୍ତି ଜରୋରୀ ପରିସ୍ଥିତିର ବିରୋଧ କରି ଜେଲ ଯାଇଥିଲେ । ମୋର ମନେପଡୁଛି ।

ରାଧାନାଥବାବୁଙ୍କ ପାଖରେ ବସିଥିଲି । ଖବର ପହଞ୍ଚିଲା ଯେ ଶ୍ରୀ ଭୀମସେନ ସାଚାର (ଓଡ଼ିଶାର ପୂର୍ବତନ ରାଜ୍ୟପାଳ), ସାମ୍ବାଦିକ କୁଳଦୀପ ନାୟାର ଏବଂ ଲୋକସେବକ ମଣ୍ଡଳର ଅନ୍ୟତମ ସଭ୍ୟ ଶ୍ରୀ ସେବକ୍‌ରାମ୍ ସତ୍ୟାଗ୍ରହ କରି ଜେଲ ଯାଇଛନ୍ତି । ରାଧାନାଥବାବୁ ବ୍ୟଥିତ ହେଲେ, ବ୍ୟସ୍ତ ହେଲେ, ବିବ୍ରତ ବି ଥିଲେ । କିନ୍ତୁ ଗୋଟାଏ କିଛି ନୂଆ କରିବାର ବୟସ ତାଙ୍କର ଆଉ ନ ଥିଲା ଯଦିଓ ଜରୋରୀ ପରିସ୍ଥିତିର ନାୟକ ନାୟିକାମାନଙ୍କୁ ସେ ଆଦୌ ଭଲପାଇ ନ ଥିଲେ ।

ଜରୋରୀ ଅବସ୍ଥାର ଅବସାନ ପରେ ରାଧାନାଥବାବୁ ତାଙ୍କର ସହକର୍ମୀ ଶ୍ରୀ ସେବକ୍‌ରାମ୍ ଙ୍କୁ ପଚାରିଲେ । ଆପଣ ସତ୍ୟାଗ୍ରହ କରି କାରାବରଣ କଲେ । ଆମକୁ ଖବର ଦେଲେ ନାହିଁ । ସେ ହସି ହସି କହିଲେ ଯେ ଦେଶ ଜଳୁଥିଲା ବେଳେ ଆଉ କାହାକୁ ଖବର ଦେବାର ବା କହିବାର ସମୟ ଥିଲା କେଉଁଠି ? ଆପଣଙ୍କ ବୟସ ସଂପର୍କରେ ଆମେ ସବୁ ସଚେତନ ଥିଲୁ । ତେଣୁ ଖବର ଦେଇଥାନ୍ତି କାହିଁକି ?

ବୌଦ୍ଧ ଏବଂ ଜୈନ ଦର୍ଶନ ସଂପର୍କରେ ଏକ ଆନ୍ତର୍ଜାତିକ ସେମିନାର ପାଇଁ ପ୍ରସ୍ତୁତି ଚାଲିଥାଏ । ଉର୍ଦ୍ଦୁ ଲାଇବ୍ରେରୀ ଉପର ମହଲାରେ ଆମର ଅଫିସ । ସେପର୍ଯ୍ୟନ୍ତ ୟୁନିଭର୍ସ ଗଢ଼ା ହୋଇ ନାହିଁ । ଶୀତଦିନ । ଦିନେ କାମ ସରୁ ସରୁ ବହୁତ ରାତି ହୋଇଗଲା । କଟକର ତତ୍‌କାଳୀନ ଜିଲ୍ଲାପାଳ ଶ୍ରୀ ସତ୍ୟରଂଜନ ପାଲ, ସହକର୍ମୀ ସନ୍ତୋଷ ରାୟ ଚୌଧୁରୀ, ରାଜନୀତିକ କର୍ମୀ ଓ ଚଳଚ୍ଚିତ୍ର ଅଭିନେତା ହରୀଶ ମହାପାତ୍ର ଓ ମୁଁ ଥିଲୁ ଅଫିସରେ । ଶୀତ ରାତି, ରିକ୍ସା ମିଳିଲା ନାହିଁ । ଆମେ ହରୀଶ ମହାପାତ୍ରଙ୍କୁ ତାଙ୍କ ଘରେ ଛାଡ଼ିଦେଇ ଆସିଲୁ । ରାତି ଏଗାରଟା ହେବ । ହଠାତ୍ ରାତି ବାରଟା କି ଗୋଟାଏ ହେବ ଫୋନ୍ ବାଜିଲା । ଏତେ ରାତିରେ ଫୋନ୍ ! ହରୀଶ ମହାପାତ୍ର ଫୋନ କରୁଛନ୍ତି ଲାଲବାଗ ଥାନାରୁ । ତାଙ୍କୁ ଗିରଫ କରାଯାଇଛି । ସେ କୁଆଡ଼େ ସରକାରଙ୍କୁ ଭାଙ୍ଗିବା ପାଇଁ ଷଡ୍‌ଯନ୍ତ୍ର କରୁଥିଲେ, ଏଇ ଅପରାଧରେ । ମୁଁ ଆଚମ୍ବିତ ହେଲି ଏବଂ ପାଲଙ୍କୁ ଫୋନ କଲି । ସେ ନିଶ୍ଚୟ ଦସ୍ତଖତ କରିଛନ୍ତି ଗିରଫଦାରୀ ଆଦେଶରେ । ପ୍ରତିଦିନ ମେଞ୍ଚା ମେଞ୍ଚା ଆଦେଶ ସେ ଦସ୍ତଖତ କରିବାର ମୁଁ ଦେଖିଛି । ଏସ୍.ପି. ଦସ୍ତଖତ କରାଇ ନିଅନ୍ତି । ଏସ୍.ପି. ଆଣନ୍ତି ନିର୍ଦ୍ଦେଶନାମା ମୁଖ୍ୟମନ୍ତ୍ରୀଙ୍କଠାରୁ । ଥରେ ମୁଁ ଓ ପାଲ୍ ଯାଉଥିଲୁ ଭୁବନେଶ୍ୱର । କାଠଯୋଡ଼ି ପୋଲ ଉପରେ ପଛରୁ କିଏ ଗାଡ଼ିର ହର୍ଣ୍ଣ ଖୁବ୍ ଜୋର୍‌ରେ ବଜାଇବାର ଶୁଣି ପଛକୁ ଫେରି ଅନେଇ ଦେଖେ

ଯେ ଏସ୍.ପି. ଆପ୍ପାରାଓ ପଛଗାଡ଼ିରୁ ହାତ ଠାରି ସେ ଗାଡ଼ି ଅଟକାଇବାକୁ କହୁଛନ୍ତି । ଗାଡ଼ି ଅଟକିଲା । ଆପ୍ପାରାଓ ମେଞ୍ଚାଏ ଗିରଫଦାରୀ ଆଦେଶ ଦସ୍ତଖତ କରାଇବେ ପାଲଙ୍କ ହାତରେ । ମୁଁ ଗାଡ଼ିରୁ ଓହ୍ଲାଇ ଚାଲିଲି କାଠଯୋଡ଼ି ପୋଲ ଉପରେ । ଆପ୍ପାରାଓ ମନାକରିବା ପୂର୍ବରୁ ମୁଁ ଏହା କଲି । ମୁଁ ସିନା ଚାଲିଲି, କିନ୍ତୁ କଲେକ୍ଟର ଓ ଏସ୍.ପି.ଙ୍କୁ ଏକାଠି ଦେଖି ଗୋଟିକ ପରେ ଗୋଟିଏ ଗାଡ଼ି ଅଟକିବାକୁ ଲାଗିଲା । ଗୋଟିଏ ସ୍ତରରେ ଆପ୍ପାରାଓ ଚିହ୍ନିକି ସେମାନଙ୍କ ଭିତରୁ ଜଣକୁ ତାଙ୍କ ବାଟରେ ଯିବାକୁ କହିଲେ । ସେମାନଙ୍କ ଭିତରୁ ଯେଉଁମାନେ ଯାଉଥିଲେ ଭୁବନେଶ୍ୱର ଆଡ଼କୁ, ସେମାନେ ମୋତେ ବାଟରେ ଭେଟି ଆପ୍ପାରାଓ ଉତ୍କ୍ଷିପ୍ତ ହେବାର କାରଣ ପଚାରିଲେ । ତାଙ୍କର ଗୁପ୍ତ କାଗଜ ଓ ଦସ୍ତଖତ ଭିତରକୁ ନ ପଶିବା ପାଇଁ ତ ମୁଁ ଚାଲିଆସିଲି । ଆପଣମାନେ କାହିଁକି ତା ଭିତରକୁ ନାକ ଭର୍ତ୍ତିକରିବାକୁ ଗଲେ କି ?

ହରୀଶ ମହାପାତ୍ରଙ୍କର ଗିରଫ ସମ୍ବାଦ ପାଲଙ୍କୁ ଲଜ୍ଜିତ କଲା । ହରୀଶ ଷଡ଼ଯନ୍ତ୍ର କରୁ ନାହାନ୍ତି ତା'ର ସାକ୍ଷୀ ତ ସେ ନିଜେ । ଯାହାହେଉ ତାଙ୍କର ହସ୍ତକ୍ଷେପ ଫଳରେ ହରୀଶ ମୁକ୍ତ ହେଲେ ଜେଲଖାନାରୁ ଦୁଇ ଚାରିଦିନ ଭିତରେ ।

ମାଳତୀ ଦେବୀଙ୍କୁ ଗିରଫ କରାଗଲା । ଗଡ଼ଜାତ ଆନ୍ଦୋଳନ, ସ୍ୱାଧୀନତା ଆନ୍ଦୋଳନର ମହାନ୍ ନେତ୍ରୀ ସେ । ସେ ଦିନ ତାଙ୍କୁ ଜର ହୋଇଥାଏ । ତାତି ଫୁଟୁଥିଲା ଦିହରେ । ପୁଲିସ ପହଞ୍ଚିଲା ତାଙ୍କୁ ଗିରଫ କରିବା ପାଇଁ । ଗାଡ଼ି କୁଆଡ଼େ ନ ଥିଲା । ବିଶ୍ୱାସଯୋଗ୍ୟ ହୁଏନା । ପୁଲିସ ତାଙ୍କୁ ଗିରଫ କରି ଆଣିବ କୌଣସି ମାଜିଷ୍ଟ୍ରେଟଙ୍କ ପାଖକୁ । ସେ ତାଙ୍କୁ ଜେଲ ପଠାଇବେ । ମାଳତୀ ଦେବୀ କ'ଣ ଏଇ ଫୁଟନ୍ତା ତାତିରେ ଚାଲିକରି ଯିବେ ?

ସେତେବେଳେ କଟକ ଜେଲ୍‌ରେ ଜେଲର୍ ଥାଆନ୍ତି ଜଣେ ବଙ୍ଗାଳୀ ବ୍ୟକ୍ତି । କି ସରକାର ମନେପଡୁନି । ତାଙ୍କ ବାପା ଥିଲେ କଟକରେ ଶିକ୍ଷକ ଏବଂ ସେ ଥିଲେ ଚୌଧୁରୀ ପରିବାରର ବନ୍ଧୁ । ମାଳତୀ ଦେବୀ ତାଙ୍କୁ ଫୋନ କଲେ । ସେ ଜେଲ୍ ଭ୍ୟାନଟିକୁ ପଠାଇଦେଲେ । ଏଇଟା ତାଙ୍କର ଅପରାଧ ।

ତାଙ୍କୁ କୈଫିୟତ ମଗାଗଲା, ସେ କିନ୍ତୁ ଡରିବାର ଲୋକ ନୁହନ୍ତି । ସେ ଉତ୍ତର ଦେଲେ ମାଳତୀ ଦେବୀ ଦେଶର ଜଣେ ମହାନ୍ ନେତ୍ରୀ । ସେ ଜଣେ ମହିଳା ଏବଂ ଅସୁସ୍ଥ । ଏହାଛଡ଼ା ସେ ମୋର ପାରିବାରିକ ବନ୍ଧୁ । ମୁଁ ମନା କରିବାର ବାଟ ନ ଥିଲା । ନିଜର ଗାଡ଼ି ଥିଲେ ମୁଁ ତାଙ୍କୁ ନେଇ ଆସିଥାନ୍ତି ନିଜେ । ପାଲଙ୍କୁ ହସ୍ତକ୍ଷେପ କରିବାକୁ ପଡ଼ିଲା । ଜେଲର ସରକାର ଜଣେ ଐତିହାସିକ । ପାଲଙ୍କର ଇତିହାସ ପ୍ରତି ଦରଦ ବହୁତ ।

ଏହା ସହିତ ମନେପଡୁଛି ଆଉ ଗୋଟିଏ ଘଟଣା ।

ନନ୍ଦିନୀ ଦେବୀଙ୍କୁ ଗିରଫ କରାଯିବ । ମୁଁ ନୀଳମଣି ରାଉତରାୟଙ୍କ କଟକ ଘରେ ପହଞ୍ଚିଲା ବେଳକୁ ପ୍ରବଳ ଗହଳି । କଟକ ସହରର ବହୁ ଜଣାଶୁଣା ବ୍ୟକ୍ତି ହାଜର । ସେମାନଙ୍କର ଦାବି ହେଉଛି ନନ୍ଦିନୀ ଦେବୀଙ୍କୁ ରାତିରେ ଗିରଫ କରାଯିବ, ଥାନା ହାଜତରେ

ରଖାଯିବ ଏବଂ ଜେଲକୁ ପଠାଇ ଦିଆଯିବ । ପ୍ରବଳ ଚାପ ନୀଳମଣିବାବୁଙ୍କ ଉପରେ । ନୀଳମଣିବାବୁ କିନ୍ତୁ ନାରାଜ, ବିଲକୁଲ ନାରାଜ ।

ନନ୍ଦିନୀ ଦେବୀ ଜଣେ ମହିଳା, ପୂର୍ବତନ ମୁଖ୍ୟମନ୍ତ୍ରୀ, କାଳିନ୍ଦୀବାବୁଙ୍କ ଝିଅ, ଭଗବତୀ ବାବୁଙ୍କ ଝିଆରୀ । ତାଙ୍କୁ ମୁଁ ରାତିରେ ଗିରଫ କରିପାରିବି ନାହିଁ । ନୀଳମଣିବାବୁ ତାଙ୍କ ମତରେ ଅଟଳ । ମୁଁ ପଡ଼ିଗଲି ଅସୁବିଧାରେ । ମୁଁ ପହଞ୍ଚିଲା ପରେ ମୋ ଉପରେ ଦାୟିତ୍ୱ ପଡ଼ିଗଲା ମତ ଦେବାପାଇଁ ।

ମୁଁ ନୀଳମଣିବାବୁଙ୍କ ସହିତ ଏକମତ ବୋଲି ପ୍ରକାଶ କରିବା ସାଂଗେ ସାଂଗେ ହେଲା ମୋ ଉପରେ ଚଢ଼ଉ । କଟକ ସହରର ଜଣେ ବଡ଼ପାଟିଆ କୁହାଳିଆ ନେତା ମୋ ଉପରେ ନିଆଁବାଣ ହୋଇ କହିଲେ– ଏଇଟା ପରା ପିଲାଦିନୁ ନନ୍ଦିନୀ ସହିତ ଲଟର ପଟର ହେଉଥିଲା । ସେ କିମିତି ରାଜି ହେବ ?

ପିଲାଦିନେ ନନ୍ଦିନୀ ଦେବୀ ମୋର ସହଯୋଦ୍ଧା ଥିଲେ । ବୟସରେ ବଡ଼ । ତାଙ୍କ ସହିତ ନିବିଡ଼ତା ବଢ଼ିବାର ବହୁ କାରଣ ରହିଛି । ସେ କଥାକୁ ପରେ ଆସିବା କିନ୍ତୁ ଏହା ଭିତରେ ମହାନଦୀରେ ବହୁତ ପାଣି ବୋହିଯାଇଛି । ସେ କ୍ଷମତାର ଶିଡ଼ିରେ ବହୁତ ଉପରକୁ ଉଠି ଯାଇଛନ୍ତି । ମୁଁ ରହିଛି ସେଇପରି ତଳେ । ସେ ନିଜେ ମନେରଖିଛନ୍ତି କି ନାଇଁ ସେଇ ନିବିଡ଼ତା, ସେ ବିଷୟରେ ମୋର ସନ୍ଦେହ ରହିଛି ।

କିନ୍ତୁ ତାଙ୍କ ପାଇଁ ଆମେ ଯେଉଁ ଗୀତ ଗାଉଥିଲୁ ତା' ମୋର ମନେଅଛି ।

''ଏକ ପରିବାର ନନ୍ଦିନୀ ଦୁଲାଳୀ
ଆଜି ଲକ୍ଷ ମାତା ପିତାର ସଞ୍ଚାଳି
ଲକ୍ଷେ ପରିମାଣେ ଭରି ପରମାୟୁ
ଢାଳି ବଂଚାଇବୁ ତୁମ ପରମାୟୁ
ତୁମ ଶୃଙ୍ଖଳା ଧମନୀରେ ବରଷୁ
ଲକ୍ଷ ନାଡ଼ିର ଲହୁ କଣିକା
କହ ଜାତି ଲଲାଟର ରକ୍ତଟୀକା,
କହ ମଜୁର ଚାଷୀର ମୁକ୍ତିଶିଖା ।

ମନମୋହନ ମିଶ୍ର ଏଇ କବିତା ଲେଖିଥିଲେ ନନ୍ଦିନୀ ଦେବୀଙ୍କ ଉପରେ ।

ଅନଶନରତା ନନ୍ଦିନୀ ଦେବୀଙ୍କ ଉପରେ ଲିଖିତ ଏଇ କବିତାକୁ ଗାନ କରୁଥିଲେ ଅନେକ ସଂଗ୍ରାମୀ ଯୁବକ ଯୁବତୀ କଟକର ରାଜରାସ୍ତାରେ ।

କିନ୍ତୁ ସେ ତ ଗଲାଦିନର କଥା । ସମୟ ବଦଳି ଯାଇଛି ।

ମୋର ମନେପଡୁଛି ।

ଇନ୍ଦିରାଗାନ୍ଧୀ ଆସିଥିଲେ ଓଡ଼ିଶା ଗସ୍ତରେ । ପୂର୍ବତନ ପ୍ରଧାନମନ୍ତ୍ରୀଙ୍କୁ ଷ୍ଟେଟ୍‌ଗେଷ୍ଟ କରିବା ପାଇଁ ରାଜ୍ୟ ସରକାର ବାଧ । ଏକଥା କିନ୍ତୁ ସରକାରରେ ଥିବା କିଛି ଗୋଷ୍ଠୀ ଭୁଲିଗଲେ । ଇନ୍ଦିରା ଗାନ୍ଧୀ ଆସୁଥିଲେ କଟକ ।

କାଠଯୋଡ଼ି ନଦୀ ପାଖରେ ହେଲା ପ୍ରତିରୋଧ । ପ୍ରତିରୋଧ ତ ଖାଲି ନୁହେଁ, ପ୍ରତିଶୋଧର ବହ୍ନି ଦ୍ୱାରା ପ୍ରଜ୍ୱଳିତ ପ୍ରତିରୋଧ । ବହୁଲୋକ ଆହତ ହେଲେ । ୟୁନିଭର୍ସରେ ବସିଛି, ହଠାତ୍ କ୍ଷତବିକ୍ଷତ ମତଲୁବ ଅଲ୍ଲୀ ଆସି ପହଞ୍ଚିଲେ । ତାଙ୍କଠାରୁ ସବୁ ଶୁଣିଲି । ଆହତ ଅବସ୍ଥାରେ ଲକ୍ଷ୍ମଣ ମଲ୍ଲିକ, ହରିହର କରଣ ପ୍ରଭୃତି ଡାକ୍ତରଖାନାରେ । ସେମାନେ ମୋର ପାରିବାରିକ ବନ୍ଧୁ । ସେମାନଙ୍କୁ ଦେଖିବାକୁ ଗଲୁ ରାଧାନାଥବାବୁଙ୍କ ସାଙ୍ଗରେ । ଜାନକୀବାବୁଙ୍କ ସୁରକ୍ଷା ପାଇଁ ମତଲୁବ ଅଲ୍ଲୀ ନିବେଦନ କଲେ । ମୁଁ ନୀଳମଣିବାବୁଙ୍କୁ ଫୋନ କଲି । ସେ ଜାନକୀବାବୁଙ୍କ ସୁରକ୍ଷା ଯୋଗାଇଦେଲେ । ଇନ୍ଦିରା ଗାନ୍ଧୀଙ୍କୁ ଷ୍ଟେଟଗେଷ୍ଟ କରିବା ଯଥାର୍ଥ ବୋଲି ସେ ବିବୃତି ଦେଲେ ।

ରାଜନୀତିକ ମତଭେଦ ଗୋଟିଏ କଥା । ବ୍ୟକ୍ତିଗତ ଶତ୍ରୁତା ଅଲଗା କଥା । ଇନ୍ଦିରା ଗାନ୍ଧୀଙ୍କ ଅନେକ ଅପକର୍ମ ପାଇଁ ସଂଜୟ ଗାନ୍ଧୀ ଦାୟୀ । ସଂଜୟ ଗାନ୍ଧୀଙ୍କୁ ଦେଖାକରିବା ପାଇଁ ସୁଯୋଗ ଦେବା ସକାଶେ ମୁଁ ଅନେକ ବିଶିଷ୍ଟ ନେତାଙ୍କୁ ଶ୍ୟାମସୁନ୍ଦର ମହାପାତ୍ରଙ୍କ ପାଖରେ ଅଧିଆ ପଡ଼ିଥିବା ଦେଖିଛି । ଇନ୍ଦିରାଗାନ୍ଧୀଙ୍କ ପାଖରେ ସିନିଅର କଂଗ୍ରେସ ନେତାମାନଙ୍କର ଏଇ ଦୟନୀୟ ଅବସ୍ଥା ଦେଖି ମୁଁ ତଟସ୍ଥ ହୋଇଛି ।

ମୋର ଏକଦା ବନ୍ଧୁ ଏବଂ ସହଯୋଦ୍ଧା ମୋହନ କୁମାର ମଙ୍ଗଲମ୍ କମ୍ୟୁନିଷ୍ଟ ପାର୍ଟି ଛାଡ଼ି କଂଗ୍ରେସରେ ଯୋଗ ଦେଇଥାନ୍ତି । ମାନ୍ଦ୍ରାଜ ପ୍ରଦେଶରେ ଆଡ଼ଭୋକେଟ୍ ଜେନେରାଲ ହେବାପରେ ସେ କେନ୍ଦ୍ରରେ ମନ୍ତ୍ରୀ ହୋଇଥାନ୍ତି । ସେ କିନ୍ତୁ ଇନ୍ଦିରାଗାନ୍ଧୀଙ୍କ ସହ ସମାସ୍କନ୍ଧ ଭାବରେ କଥାବାର୍ତ୍ତା କରନ୍ତି ।

ଥରେ ତାଙ୍କ ପାଖରେ ବସିଥିଲି ଅଫିସରେ । ଫୋନ ଆସିଲା ରାକ୍ସ ଟେଲିଫୋନ୍‌ରେ । ସେପଟରେ ସଂଜୟ ଗାନ୍ଧୀ । ମୋହନ ଏପଟରୁ ଉତ୍ତର ଦେଲେ ଜେନେରାଲ ଲାଇନ୍‌ରେ ଆସ । ଏହା ତମର ଲାଇନ ନୁହେଁ ଏବଂ ସାଂଗେ ସାଂଗେ ଇନ୍ଦିରା ଗାନ୍ଧୀଙ୍କୁ ଫୋନକରି କହିଲେ ଯେ ପୁଅକୁ (ଇଂରାଜୀରେ କହିଲେ) (Tell your Brat to follow rules. Rax line is not meant for him) କୁହ, ନିୟମ ମାନୁ, ରାକ୍ସ ଲାଇନ ତା ପାଇଁ ନୁହେଁ ।

ଇନ୍ଦିରା ଗାନ୍ଧୀ ଆସିଥିଲେ ଭୁବନେଶ୍ୱର ଭାରତୀୟ ବିଜ୍ଞାନ କଂଗ୍ରେସକୁ ଉଦ୍‌ଘାଟନ କରିବା ପାଇଁ । ଝିଅ, ପୁଅ ମୋତେ କହିଲେ ଇନ୍ଦିରା ଗାନ୍ଧୀଙ୍କ ସହିତ ସାକ୍ଷାତ୍ କରାଇ ଦେବାପାଇଁ । ମୁଁ କିଏ, ଇନ୍ଦିରା ଗାନ୍ଧୀ କିଏ ? ତେଣୁ ମୁଁ ଉତ୍ତର ଦେଲି ଯେ ତମେସବୁ ତାଙ୍କୁ ଏକ ଚିଠି ଲେଖ । ସେମାନେ ଲେଖିଲେ ଏବଂ ବିଜ୍ଞାନ କଂଗ୍ରେସ ଦେଖିବାକୁ ଗଲେ ଭୁବନେଶ୍ୱର । ମୁଁ ଘରେ ଏକୁଟିଆ । ହଠାତ୍ ଫୋନ୍ ବାଜିଲା । ଶୁଣିଲାବେଳକୁ ଖୋଦ୍ ଇନ୍ଦିରାଗାନ୍ଧୀ ଫୋନ୍‌ରେ । ଝିଅକୁ ଖୋଜିଲେ । ସେ ଭୁବନେଶ୍ୱର ବିଜ୍ଞାନ କଂଗ୍ରେସକୁ ଯାଇଛି ତାଙ୍କୁ ଦେଖିବା ପାଇଁ ଶୁଣି ସେ କହିଲେ ଯେ ଠିକ୍‌ଅଛି । ମୁଁ ତାକୁ ଖୋଜି ଡକାଇ ପଠାଉଛି । ଫଳ ଯାହାହୁଏ । ବିଜ୍ଞାନ କଂଗ୍ରେସର ମାଇକ୍ ତୁହାକୁ ତୁହା ଡାକଛାଡ଼ିଛି । ମା' ଓ ପିଲାମାନେ ସମସ୍ତେ ରାଜଭବନକୁ ଡକା ହୋଇଗଲେ । ଇନ୍ଦିରାଗାନ୍ଧୀ ସେମାନଙ୍କୁ ଭେଟିଲେ ।

୧୯୫୧ ମସିହାର କଥା । ସାରା ଭାରତରୁ ପ୍ରାୟ ହଜାରରୁ ଉର୍ଦ୍ଧ୍ୱ ଅଟକବନ୍ଦୀ ଯାଇଥାନ୍ତି ଦିଲ୍ଲୀକୁ । ସୁପ୍ରିମ କୋର୍ଟରେ ସେମାନଙ୍କର କେଶ୍ । ସେମାନଙ୍କ ଭିତରେ ଥାଆନ୍ତି ମୋହନ କୁମାର ମଙ୍ଗଳମ୍ । ତାଙ୍କୁ ଦେଖାକରିବାକୁ ଆସିଲେ ଜେଲକୁ ତାଙ୍କ ବଡ଼ଭାଇ ବ୍ରିଗେଡିଅର କୁମାର ମଙ୍ଗଳମ୍ । ତାଙ୍କୁ ଗାର୍ଡ଼ ଅଫ୍ ଅନର ଦିଆଗଲା ଜେଲ୍ ଗେଟ୍‌ରେ ।

ବନ୍ଦୀମାନଙ୍କ ଭିତରୁ କେବଳ ଦୁଇଜଣ ଖଲାସ ହେଲେ । ଜଣେ ହେଲେ ମୋହନ କୁମାର ମଙ୍ଗଳମ୍ ଏବଂ ଆସାମର ଜଣେ ଛାତ୍ର । ସେ ନିଶ୍ଚିତ ଭାବରେ କିଛି କିଛି ପୁଲିସ୍‌କୁ ହତ୍ୟା କରିଛି ଏବଂ ଯେଉଁଲୋକ ତାକୁ ଧରାଇ ଦେଇଛି ତାକୁ ମାରିବା ପାଇଁ ଉଭୟ ବୋମା ଏବଂ ଗୁଳିଭରା ରିଭଲଭର ଲୁଚାଇ ରଖିଆସିଛି ବୋଲି ସ୍ୱୀକାର କରୁଥିଲା । ସେ ବିପ୍ଲବୀ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ଥିଲା, ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ନୁହେଁ । ବିଶିଷ୍ଟ ଓକିଲ ନାମ୍ବିଆର ତାକୁ ଦେଖି ବ୍ୟଥିତ ହେଲେ କିନ୍ତୁ କ'ଣ କରାଯିବ । ସେଥିପାଇଁ ଚିନ୍ତିତ ଥିଲେ । ପରିଶେଷରେ ଉକ୍ତ ବାଳକକୁ ସେ ଉପଦେଶ ଦେଲେ କୋର୍ଟରେ ସବା ପଛ ବେଞ୍ଚରେ ବସିବା ପାଇଁ ଏବଂ ସେ ଯାହା କହିବେ ତାହା ମାନିବାପାଇଁ ।

ଲୋକାରଣ୍ୟ କୋର୍ଟ, ବନ୍ଦୀ ଏବଂ ସେମାନଙ୍କର ଶୁଭେଚ୍ଛୁ ଓକିଲଙ୍କଦ୍ୱାରା । ସେ ପିଲାଟି ବସିଛି ପଛ ବେଞ୍ଚରେ । ତା'ର ନାମ ଡକାହେବା ମାତ୍ରେ ସେ ଠିଆହେଲା କିନ୍ତୁ ତାହା କୋର୍ଟକୁ ଭଲକରି ଦେଖାଗଲା ନାହିଁ । ନାମ୍ବିଆର ଏଇ ସୁଯୋଗ ଖୋଜୁଥିଲେ । ସେ ପିଲାକୁ କହିଲେ ଯେ ତମକୁ କୋର୍ଟ ଭଲକରି ଦେଖିପାରୁ ନାହାନ୍ତି ତମେ ବେଞ୍ଚ ଉପରେ ଠିଆ ହୋଇଯାଅ । ସେ ପିଲା ଠିଆ ହୋଇଗଲା । ଏହା କୋର୍ଟକୁ ବିଚଳିତ କଲା । ମୁଖ୍ୟ ବିଚାରପତି (ବୋଧହୁଏ କାନିଆ ବୋଲି ମନେପଡୁଛି) ନାମ୍ବିଆରଙ୍କୁ ପଚାରିଲେ ଏଇ ପିଲାଟି ତା'ର ସ୍କୁଲକୁ ଫେରିଯିବା ଉଚିତ ନୁହେଁ କି, ଶ୍ରୀ ନାମ୍ବିଆର ? ନାମ୍ବିଆର ବିନୀତ ଭାବରେ କହିଲେ ଯେ ମୁଁ ସେଇଆ ଚାହୁଁଛି । ହଠାତ୍ ଡକ୍ଟର କାନିଆ କହିଲେ ଯେ ସେ ପିଲା ଗୋଟାଏ ବଣ୍ଡ ଲେଖିଦେଇ ପାରିଲେ ତ ଯାଇପାରନ୍ତା ? ନୁହେଁ କି ?

ନାମ୍ବିଆର ଧରିଥିଲେ ହାତରେ ଏକ ବିଶାଳ ଆଇନ୍ ବହି । ବହିଟି ହାତରୁ ଖସି ତଳେ ପଡ଼ି ଏକ ବିରାଟ ଶବ୍ଦ ହେଲା ଏବଂ ବିନୀତ ଭାବରେ ନାମ୍ବିଆର ନିବେଦନ କଲେ, ''ମାନ୍ୟବର ବିଚାରପତି ଯଦି ଏହା କହିବେ ତା'ହେଲେ ମୁଁ ନ୍ୟାୟ ପାଇବି କେଉଁଠୁ ?''

ଅପ୍ରତିଭ ମୁଖ୍ୟ ବିଚାରପତି ପିଲାକୁ ସାଂଗେ ସାଂଗେ ମୁକ୍ତି ଦେଇଥିଲେ । ନାମ୍ବିଆରଙ୍କ ନାଟକୀୟ ଯୁକ୍ତିର ବିଜୟ ହେଲା ।

ରାଜନୀତିକ ସମୟ ବଦଳି ଯାଇଥିଲା । ମୋହନ କୁମାର ମଙ୍ଗଳମ୍‌ଙ୍କ ବାପା ସେତେବେଳେ ଇଣ୍ଡୋନେସିଆରେ ଆମର ରାଷ୍ଟ୍ରଦୂତ । ଭାଇ ସାମରିକ ବାହିନୀର ବ୍ରିଗେଡିଅର (ପରେ ଜେନେରାଲ) ।

ମୋହନଙ୍କ ପାଖକୁ ତାଙ୍କର ବାପା ଲେଖିଥିବା ଚିଠି ଏବଂ ତାଙ୍କ ଚିଠିର ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କ ଉତ୍ତର ରହିଯାଇଥିଲା ୰ରାମଚନ୍ଦ୍ର ମିଶ୍ରଙ୍କ ଫାଇଲରେ । ସେ ଚିଠିର ବିଷୟବସ୍ତୁ ଉଲ୍ଲେଖ କରାଯିବା ଉଚିତ, ଆଗାମୀ ପିଢ଼ି ପାଇଁ ।

ମୋହନ କୁମାର ମଙ୍ଗଲମ୍ ଥିଲେ ତେଲେଙ୍ଗାନା ସଶସ୍ତ୍ର ବିଦ୍ରୋହର ଅନ୍ୟତମ ନାୟକ । ସୈନ୍ୟବାହିନୀର ଗୁଳିରେ ତାଙ୍କର ମୃତ୍ୟୁ ହୋଇଯାଇଛି ବୋଲି ସମ୍ବାଦ ପ୍ରଚାରିତ ହେଲା । ଏ ବିଷୟରେ ତାଙ୍କର ବାପା ମା' ଜାଣିଲେ ସରକାରୀ ସୂତ୍ରରୁ ନୁହେଁ, ବ୍ୟକ୍ତିଗତ ସୂତ୍ରରୁ । କ୍ରୁଦ୍ଧା ମୋହନ କୁମାର ମଙ୍ଗଲମଙ୍କ ମାଆ ଏକ ଚିଠି ଲେଖିଲେ ସର୍ଦ୍ଦାର ପଟେଲଙ୍କୁ ଯେ ସେ କିପରି ଏହି ସମ୍ବାଦ ତାଙ୍କୁ ଜଣାଇଲେ ନାହିଁ । କ୍ରୁଦ୍ଧା ମାଆ ସର୍ଦ୍ଦାର ପଟେଲଙ୍କୁ ପ୍ରଶ୍ନକଲେ ଦେଶପ୍ରେମ କାହାରି ଏକଚାଟିଆ ନୁହେଁ ଏବଂ ମୋ ପରିବାର ମଧ୍ୟ ଭାରତର କୌଣସି ପରିବାରଠାରୁ ଊଣା ନୁହେଁ । ଆପଣ ଏକମତ ହେବେ ଯେ ମୋହନର ମତ ସ୍ୱତନ୍ତ୍ର ହୋଇପାରେ କିନ୍ତୁ ତାହାର ଦେଶପ୍ରେମ ଅନ୍ୟ କାହାରିଠାରୁ ଊଣା ନୁହେଁ । ସର୍ଦ୍ଦାର ପଟେଲ ତାଙ୍କର ଉତ୍ତରରେ ଲେଖିଥିଲେ ଯେ ସେ ଚିଠି ଆଗରୁ ଦେଇ ନ ଥିବାରୁ ଦୁଃଖିତ ଏବଂ ସେଥିଲାଗି କ୍ଷମା ଚାହୁଁଛନ୍ତି । ମୋହନଙ୍କ ମୃତ୍ୟୁ ସଂବାଦ ଥିଲା ଅସମର୍ଥିତ ଏବଂ ଏପରି ସଂବାଦ ଦେବାର ବିଶେଷତଃ ତାଙ୍କ ମାଆବାପାଙ୍କୁ ଦେବାର ସାହସ କରିପାରି ନ ଥିଲେ । ମୋହନ ବା ତାଙ୍କର ପରିବାରର ଦେଶପ୍ରେମକୁ କେହି ଅସ୍ୱୀକାର କରିବାର ପ୍ରଶ୍ନ ଉଠୁ ନାହିଁ । ସୋବରାୟନ (ମୋହନଙ୍କ ବାପା) ପରିବାରର ଦେଶପ୍ରେମ ମଧ୍ୟ ଅତୁଳନୀୟ ଏକଥା ସେ ସ୍ୱୀକାର କରନ୍ତି ।

ଏଇ ଚିଠି ଦୁଇଟି ସହିତ ଡକ୍ଟର ସୋବରାୟନ ଏକ ଚିଠି ଲେଖିଥିଲେ ମୋହନଙ୍କୁ । ସେଥିରେ ଲେଖିଥିଲେ ଯେ ହଙ୍ଗେରୀର ବୈଦେଶିକ ମନ୍ତ୍ରୀ ମୋର ବନ୍ଧୁ ଡକ୍ଟର କ୍ଲିମେଣ୍ଟିସଙ୍କ ମୃତ୍ୟୁ ମୋତେ ବ୍ୟଥିତ କରିଛି । ଆମେ ପାଠ ପଢୁଥିଲୁ ଏକା ସାଂଗରେ ଇଂଲଣ୍ଡରେ । ଫାସିବାଦ ଓ ସାମ୍ରାଜ୍ୟବାଦ ବିରୋଧୀ ସଂଗ୍ରାମରେ ସେ ଥିଲା ଆମର ସହଯୋଦ୍ଧା । ତା'ର ତ୍ୟାଗ ଏବଂ ସାହସ ଥିଲା ଆମ ପାଇଁ ଆଦର୍ଶ । ସେ ଯେ ଫାସିବାଦୀମାନଙ୍କର 'ଚର' ପାଲଟିବ ଏବଂ ସେଇଯୋଗୁଁ ସେ ମୃତ୍ୟୁଦଣ୍ଡରେ ଦଣ୍ଡିତ ହେବ ଏଇ ବିଶ୍ୱାସ ମୁଁ କରିପାରୁ ନାହିଁ ।

ଡକ୍ଟର କ୍ଲିମେଣ୍ଟିସ ନିର୍ଦ୍ଦୋଷ ବୋଲି ପରେ ଜଣାପଡ଼ିଲା କିନ୍ତୁ ସେତେବେଳକୁ ସେ ଫାଶି କାଠରେ ଝୁଲି ସାରିଥିଲେ ।

ପୂର୍ବ ୟୁରୋପୀୟ ସମାଜବାଦୀ ରାଷ୍ଟ୍ରମାନଙ୍କରେ ଘଟୁଥିବା ଘଟଣାବଳୀ ଏଇଥିରୁ ପ୍ରମାଣିତ ହୁଏ । ଆମେରିକା ବା କୌଣସି ବହିଃଶତ୍ରୁର ଆକ୍ରମଣ ବା ଷଡ଼ଯନ୍ତ୍ର ଯୋଗୁଁ ନୁହେଁ ସମାଜବାଦର ଏଇ ମୂଲ୍ୟବାନ୍ ପରୀକ୍ଷା ଭୁଶୁଡ଼ି ପଡ଼ିଲା ଆପଣାର ଭାରରେ ।

ଗୁନ୍ଥର (Gunther) ଲେଖିଥିଲେ ସମାଜବାଦୀ ସୋଭିଏଟ ୟୁନିଅନରେ ଶ୍ରେଣୀ ଲୋପପାଇଛି କନ୍ତୁ ଗୋଟିଏ ଶ୍ରେଣୀ ଅଛି । ସେମାନେ ହେଉଛନ୍ତି ଶିଶୁ । ସେମାନଙ୍କ ପାଇଁ ସ୍ୱତନ୍ତ୍ର ସୁବିଧା ଦେବାରେ ସମାଜବାଦୀ ସୋଭିଏଟ ୟୁନିଅନ ଆଦୌ ହେଳା କରି ନାହିଁ ।

କିନ୍ତୁ ପରବର୍ତ୍ତୀ କାଳରେ ସମାଜବାଦୀ ରାଷ୍ଟ୍ରରେ ଏକ ନୂତନ ଶ୍ରେଣୀର ଜନ୍ମଲାଭ ହେଲା, ଯାହାକୁ ମିଲୋଭାନଜିଲାସ ନାମକରଣ କଲେ (The New class) ।

ପାର୍ଟିଆପାର୍ଟିଚିକ୍‌ମାନଙ୍କୁ ନେଇ ଏକ ନୂତନ ଶ୍ରେଣୀ ଗଠନ ହେଲା ଏବଂ ଅନ୍ୟ ସମସ୍ତେ ପାଲଟିଗଲେ ରୋବଟ୍ । ଇତିହାସର ଏହା ହେଲା ସବୁଠାରୁ ବଡ଼ କ୍ରୁର ପରିହାସ ।

୧୯୫୭ ମସିହାରେ ମୁଁ ସୋଭିଏଟ ୟୁନିଅନ, ୟୁଗୋସ୍ଲୋଭିଆ, ଚୀନ ପରିଭ୍ରମଣରେ ଯାଇଥିଲି । ଅନେକ ପ୍ରଶ୍ନ ମୋ ମନରେ ଉଙ୍କି ମାରିଥିଲା । କିମିତି ଗୋଟାଏ ମାଗ୍ନିଫିସେଣ୍ଟ କିନ୍ତୁ ମେକାନିକାଲ ସମାଜ ସୃଷ୍ଟି ହୋଇଛି ବୋଲି ମୋର ମନେହେଲା । ଫେରି ଦିଲ୍ଲୀରେ ସାଥୀ ୰ ଭୂପେଶ ଗୁପ୍ତଙ୍କୁ ସବୁ କହିଲି । ତାଙ୍କ ସହିତ ମୋର ସଂପର୍କ ଥିଲା ଖୁବ୍ ଭଲ । ସେ ଗମ୍ଭୀର ହୋଇ ସବୁ ଶୁଣିଲେ ଏବଂ କହିଲେ ପାର୍ଟିକୁ ଲେଖିକରି ଦିଅ, ପାର୍ଟି ବନ୍ଧୁମାନଙ୍କ ସହିତ ଆଲୋଚନା କର କିନ୍ତୁ ଏ ସଂପର୍କରେ ସଭାସମିତିରେ କିଛି କୁହ ନାହିଁ କାରଣ କେବଳ କିଛି ତ୍ରୁଟି ପାଇଁ ସମାଜବାଦର ଏଇ ବିରାଟ ପରୀକ୍ଷାକୁ କ୍ଷତିଗ୍ରସ୍ତ କରିବା ଉଚିତ ନୁହେଁ ।

ସେତେବେଳେ ମୁଁ ପାର୍ଟିର ଏକ କନିଷ୍ଠ ସଭ୍ୟ ମାତ୍ର । ତଥାପି ଯେତିକି ଠିକ୍ ବୋଲି ଭାବିଥିଲି ଲେଖିକରି ଦେଇଥିଲି । ତତ୍‌କାଳୀନ କଂଗ୍ରେସ ନେତା ଏବଂ ବହୁ କମ୍ୟୁନିଷ୍ଟମାନଙ୍କର ବନ୍ଧୁ ବୀରେନ୍ ମିତ୍ର ମୋତେ ଏ କଥା ପଚାରିଥିଲେ ଯେ ମୁଁ କୁଆଡ଼େ ସମାଜବାଦର ଏଇ ବିରାଟ ପରୀକ୍ଷା ସହିତ ଏକମତ ନୁହେଁ । ସେ କିପରି ଜାଣିଲେ ମୁଁ କହିପାରିବି ନାହିଁ ।

ମୋର କିଛି କହିବାର ନ ଥିଲା । କିନ୍ତୁ ବ୍ରଜରାଜନଗର କାଗଜକଳ ଧର୍ମଘଟ ୰ ଦୟାନନ୍ଦ ଶତପଥୀ ୰ ଲକ୍ଷ୍ମଣ ପୂଝାରୀ, ଦୁର୍ଗାପ୍ରସାଦ ନାୟକ (ପରେ ଅଧ୍ୟାପକ) ହିଁ ମୋର ସମାଜବାଦୀ ଚିନ୍ତାର ପ୍ରେରଣାର ଉତ୍ସ ।

ସମ୍ବଲପୁରରେ ମୋର ସହପାଠୀମାନଙ୍କ ଭିତରେ ପରବର୍ତ୍ତୀ କାଳରେ ସାରା ଭାରତରେ ଖ୍ୟାତି ଅର୍ଜନ କରିଥିବା ଚିତ୍ରଶିଳ୍ପୀ ୰ ଯଦୁନାଥ ସୂପକାର ଅନ୍ୟତମ । ମୋର ଡ୍ରଇଂ ଆଦୌ ହେଉ ନ ଥିଲା । ଚିତ୍ରଶିଳ୍ପୀମାନେ ଚିତ୍ର ଆଙ୍କିଲେ ବର୍ତ୍ତମାନ ବି ଚକିତ ହୋଇ ଅନାଇ ରହେ ।

ଛାତ୍ରାବସ୍ଥାରୁ ଗୋପାଳ କାନୁନ୍‌ଗୋ, ପରବର୍ତ୍ତୀ କାଳରେ ମୁରଲୀଧର ଟାଲି, ବିମ୍ବାଧର ବର୍ମା, ବିଭୂତି କାନୁନ୍‌ଗୋ ପ୍ରଭୃତିଙ୍କ ସଂସ୍ପର୍ଶରେ ଆସିଛି । ବୟସରେ କନିଷ୍ଠ କିନ୍ତୁ ଖ୍ୟାତନାମା ଚିତ୍ରଶିଳ୍ପୀ ଦୀନନାଥ ପାଠୀ, ଅନନ୍ତ ପଣ୍ଡା, ଶିବ ପାଣିଗ୍ରାହୀ, ବ୍ୟୋମକେଶ ମହାନ୍ତିଙ୍କ ସହିତ ସଂପର୍କ ନିବିଡ଼ ହୋଇଛି । ପୃଥିବୀର ଚାରୋଟି ଆର୍ଟ ଗ୍ୟାଲେରୀମାନଙ୍କ ମଧ୍ୟରୁ ଦୁଇଟି ଦେଖିବାର ସୁଯୋଗ ମିଳିଛି । ମସ୍କୋର ଟ୍ରେଟୟାକଭ ଆର୍ଟ ଗ୍ୟାଲେରୀ, ଡ୍ରେସଡେନର ମ୍ୟୁଜିୟମ ଦେଖିଛି । ପାବଲୋ ପିକାଶୋଙ୍କ ସହ ଭେଟ ହୋଇଛି । ସେମାନଙ୍କର କଳାକୃତି ଦେଖି ମୁଗ୍ଧହୋଇଛି । କିନ୍ତୁ ତାହାର ସୂକ୍ଷ୍ମତା ବୁଝିପାରି ନାହିଁ ।

ପାବଲୋ ପିକାଶୋଙ୍କ ସାଙ୍ଗରେ ଭେଟ ହୋଇଛି ସିନା, ପଚାରି ପାରି ନାହିଁ ଯେ ଆପଣଙ୍କ ଚିତ୍ରସବୁ କିପରି ଏତେ ମୂଲ୍ୟବାନ୍ ହେଲା ଏବଂ କାହିଁକି ହେଲା ?

ସେ ନିଜେ ଦୁଇଟି ଉତ୍ତର ଦେଇଥିଲେ । ପ୍ରଥମ ଉତ୍ତର ବୋଧହୁଏ ୯୦/୯୨ ବର୍ଷ ବୟସରେ । ଗୋଟିଏ ସାନଛୁଆ ପ୍ରକୃତିକୁ ଯେମିତି ଦେଖେ ମୁଁ ତା'ରି ଆଖିରେ ହିଁ ପ୍ରକୃତିକୁ ଆଙ୍କିଛି ।

ପିଲାଦିନେ ଯେଉଁ ସବୁ ସ୍ଥାନ ଦେଖିଥିଲି, ଅନେକ ଦିନ ବ୍ୟବଧାନ ପରେ ଯେତେବେଳେ ସେଇ ସ୍ଥାନ ଦେଖିବାକୁ ଗଲି, କିମିତି ଭିନ୍ନ ମନେହେଲା । ଯେଉଁ ମନ୍ଦିରସବୁ ଆଖିକୁ ବହୁତ ଉଚ୍ଚ ଜଣାପଡୁଥିଲା, ସେସବୁ ମନ୍ଦିର ସେତେ ଉଚ୍ଚ ନୁହେଁ । ଯେଉଁ ପାହାଡ଼ ଉପରେ ଆମେ ରହିଥିଲୁ ତାହା ଯେତିକି ଉଚ୍ଚ ମନେ ହେଉଥିଲା (ଯେଉଁଠି ଗୋପାଳ କାନୁନଗୋ ଚିତ୍ର ଆଙ୍କୁଥିଲେ) ତାହା ସେତେ ଉଚ୍ଚ ବୋଲି ମନେ ହେଉ ନାହିଁ । ଯେଉଁ ଘରସବୁ ବିରାଟ ବିରାଟ ବୋଲି ମନରେ ରେଖାପାତ କରିଥିଲା ତାହା ସେତେ ବିରାଟ ନୁହେଁ । ଏତିକି ପାର୍ଥକ୍ୟ ମନେହେଉଛି । ଆଉ ତ କିଛି ମନେ ହେଉ ନାହିଁ ପାର୍ଥକ୍ୟ ଥିଲାଭଳି । ଆକାଶ ସେତିକି ନୀଳ, ସୂର୍ଯ୍ୟ ସେତିକି ପ୍ରଖର, ଚନ୍ଦ୍ର ସେତିକି ସ୍ନିଗ୍ଧ ମନେ ହୋଇଛି । ପିକାଶୋଙ୍କ କଥା ମନେପଡ଼ିଛି । ମନେପଡ଼ିଛି ତାଙ୍କର ଚିତ୍ରସବୁ ।

ପିକାଶୋ ଆଉ ଏକ ଉତ୍ତର ଦେଇଥିଲେ ମୃତ୍ୟୁର କିଛିଦିନ ପୂର୍ବରୁ । ମୁଁ ମୋର ଯାହା ଇଚ୍ଛା ତାହା ଆଙ୍କିଛି । ମୋର ପବ୍ଲିସିଟି ତମକୁ ବୋକା ବନେଇଛି ଏବଂ ମୋର ଚିତ୍ର ବିକ୍ରି ହୋଇଛି ବହୁତ ମୂଲ୍ୟରେ ।

ପିକାଶୋ ହେଉଛନ୍ତି ପିକାଶୋ । ମୋର କଳ୍ପନାର ବାହାରେ ତାଙ୍କର ଚିତ୍ରସବୁ ଯେପରି କଳ୍ପନାର ବାହାରେ ତାଙ୍କର ଜୀବନ ।

ଫ୍ରାନ୍ସର ପତନ ଘଟିଛି, ଫାସିଷ୍ଟ ହିଟଲର ଦଖଲ କରିଯାଇଚି ଫ୍ରାନ୍ସ । ପ୍ରଗତିଶୀଳ ନେତାମାନେ ପଳାତକ ସାଜିଛନ୍ତି ବା ଦେଶଛାଡ଼ି ବିଦେଶକୁ ଚାଲିଯାଇଛନ୍ତି । କିନ୍ତୁ ପିକାଶୋ ଫ୍ରାନ୍ସ ଛାଡ଼ିବାକୁ ନାରାଜ । ସେ ରହିଛନ୍ତି ପ୍ୟାରିସ୍ ସହରରେ । କ'ଣ ହେବ ତାଙ୍କର ? ସମଗ୍ର ବିଶ୍ୱ ଆତଙ୍କିତ । କିନ୍ତୁ ହିଟଲର ତାଙ୍କୁ ସ୍ପର୍ଶ କରି ନାହିଁ, ତାଙ୍କର ବିଶ୍ୱବ୍ୟାପୀ ଜନପ୍ରିୟତା ଯୋଗୁଁ ।

ଚିତ୍ରକଳାର ସବୁ ସ୍ତରକୁ ସେ ଅତିକ୍ରମ କରିଯାଇଛନ୍ତି ତାଙ୍କର ତୂଳୀରେ । କ୍ୟୁବିଜିମ୍, ସରରିଏଲିଜମ୍, ବିଭିନ୍ନ ଡାଇମେନସନାଲ ଚିତ୍ର (ଏପରିକି ଫୋରଥ ଡାଇମେନ୍ସନାଲ ଚିତ୍ର) ସବୁ ସ୍ତରରେ ସେ ଆପଣାର ସାଫଲ୍ୟ ପ୍ରତିପାଦନ କରିଛନ୍ତି ।

ଥରେ ଜଣେ ଚିତ୍ରକର ଜବାହରଲାଲଙ୍କ ଚିତ୍ର ଆଙ୍କୁଥିଲେ । ଜବାହରଲାଲ ତାଙ୍କୁ ସିଟିଙ୍ଗ୍ ଦେଇଥିଲେ ଚିତ୍ର ଆଙ୍କିବା ପାଇଁ । ଚିତ୍ର ସରିଲା । ଜବାହରଲାଲ ଦେଖିଲେ ଯେ ଚିତ୍ରଶିଳ୍ପୀ ତାଙ୍କ ମୁହଁ ଉପରେ ଗୁଡ଼ାଏ ବର୍ଗକ୍ଷେତ୍ର (Square) ଦେଇଛନ୍ତି । ଜବାହରଲାଲ ନେହେରୁ ଚିତ୍ରଶିଳ୍ପୀଙ୍କୁ ପଚାରିଲେ Am I that split personality ? ଚିତ୍ରଶିଳ୍ପୀ ତାଙ୍କୁ କହିଲେ ମୁଁ ଆପଣଙ୍କ ଚିତ୍ର ଆଙ୍କୁ ଆଙ୍କୁ ଯେପରି ଅନୁଭବ କଲି ସେଇପରି ଆଙ୍କିଛି ।

ଜବାହରଲାଲ କିପରି ବ୍ୟକ୍ତିତ୍ୱ ଥିଲେ ତାହା କ'ଣ ଏଇ ଚିତ୍ରରେ ରୂପାୟିତ ହୋଇଛି ? ଆପଣା ଜେଲରେ ବନ୍ଦୀ ଥିବା ଅଧ୍ୟାପକ ହୀରେନ ମୁଖାର୍ଜୀଙ୍କୁ ସେ ଲେଖିଥିଲେ– Sensitive people suffer most. You and I are included in it. ଚିତ୍ରଶିଳ୍ପୀମାନଙ୍କ ସଂସ୍ପର୍ଶରେ ଆସି ସେମାନଙ୍କ ଦ୍ୱାରା ଅଙ୍କିତ ପ୍ରକୃତିର ଚିତ୍ରକୁ ଦେଖିବାକୁ ଚେଷ୍ଟା କରିଛି ।

ପ୍ରୋଷିତଭର୍ତ୍ତୃକା (ଯାହାର ସ୍ୱାମୀ ବିଦେଶରେ ଥାଏ) ବା ପଲ୍ଲୀବଧୂ ଚିତ୍ର ବୁଝି ହୋଇଛି । ଯେପରି ବୁଝିହୋଇଛି ଗୋପାଳ କାନୁନ୍‌ଗୋଙ୍କ ଦ୍ୱାରା ଅଙ୍କିତ ସିଲହଟ ଚିତ୍ର ବା ମୁରଲୀଧର ଟାଲିଙ୍କ ଦ୍ୱାରା ଅଙ୍କିତ ଐତିହାସିକ ଚିତ୍ରସବୁ । କିନ୍ତୁ ମଡ଼ର୍ଣ୍ଣ ଆର୍ଟ ଦେଖି ମୁଗ୍ଧ ହୋଇଚି ସତ୍ୟ ମାତ୍ର ବୁଝିପାରି ନାହିଁ । କଳ୍ପନାକୁ ହୁଏତ ଆହୁରି ଫେଇଥିଲେ ତାହା ଜଣା ପଡ଼ିଥାନ୍ତା କିନ୍ତୁ ହୁଏତ ମୋର କଳ୍ପନା ସେତିକି ଫେଇ ହୋଇ ନାହିଁ । ଦେଖିଚି ଦୀନନାଥ ପାଠୀ, ବ୍ୟୋମକେଶ ମହାନ୍ତି, ଶିବ ପାଣିଗ୍ରାହୀ, ଡାକ୍ତର ଯଦୁନାଥ ପ୍ରସାଦ ଦାସଙ୍କ ଚିତ୍ରସବୁ । ଅଜିତ ରାୟ ଏବଂ ମୁରଲୀଧର ଟାଲିଙ୍କ ଚିତ୍ର ଦେଖିଛି । କିଛି ବୁଝି ହୋଇଛି, ଅନ୍ୟଗୁଡ଼ିକ ବୁଝି ହୋଇ ନାହିଁ । ମନ ଭିତରେ ଉଦ୍‌ବେଳନ ସୃଷ୍ଟି କରିଛି କିନ୍ତୁ ତାହା ଦାନା ବାନ୍ଧି ନାହିଁ । ଟ୍ରିଟୟାକର୍ ଆର୍ଟ ଗ୍ୟାଲେରୀ ବା ଡ୍ରେସଡେନ ଆର୍ଟ ମ୍ୟୁଜିୟମକୁ ଦିନ ଦିନ ଧରି ଦେଖିଚି । କିମିତି ଦର୍ଶକସବୁ ସେଗୁଡ଼ିକୁ ଦେଖିବା ଦିନେ ଦୁଇ ଦିନ ଭିତରେ ସାରିଦିଅନ୍ତି ମୁଁ କହିପାରିବି ନାହିଁ ।

ଆମେ ଜର୍ମାନୀ ପରିଭ୍ରମଣ କରୁଥାଉଁ । ଆମ ପାଇଁ ଡ୍ରେସଡେନ ସହର ଦେଖିବା ସକାଶେ ଗୋଟିଏ ଦିନ ଧାର୍ଯ୍ୟ ହୋଇଥାଏ । ତା' ଭିତରେ ଡ୍ରେସଡେନ ମ୍ୟୁଜିୟମ ଦେଖିବା ପାଇଁ ମାତ୍ର ଦୁଇଘଣ୍ଟା । ପୃଥିବୀର ଚାରୋଟି ବିଶିଷ୍ଟ ଆର୍ଟ ମ୍ୟୁଜିୟମ ଭିତରେ ଡ୍ରେସଡେନ ଅନ୍ୟତମ । ଦ୍ୱିତୀୟ ମହାଯୁଦ୍ଧ ସମୟରେ ଏହାର ସବୁ କଳାକୃତିକୁ ସଂରକ୍ଷିତ କରିବା ପାଇଁ ମାଟିତଳ ସୁଡ଼ଙ୍ଗରେ ରଖାଯାଇଥିଲା । ତାହା ଫଳରେ ମାନବ ଜାତି ଅଧିକ ଦରିଦ୍ର ହୋଇଯାଇ ନାହିଁ । ଏହାକୁ ଦେଖିବା ପାଇଁ ମାତ୍ର ଦୁଇଘଣ୍ଟା ସମୟ ! ମୋର ମନକୁ ଏହା ଘେନିଲା ନାହିଁ । ଦୈବାତ୍ ସେତେବେଳକୁ ମୁଁ ପ୍ରତିନିଧି ଦଳର ନେତା । ତେଣୁ ମୁଁ ଆମର ସେକ୍ରେଟେରୀଙ୍କୁ ଏହା କହିଲି । ତାଙ୍କର ନାମ ମୋର ମନେପଡୁ ନାହିଁ କିନ୍ତୁ ସେ ବମ୍ବେ (ବର୍ତ୍ତମାନ ମୁମ୍ବାଇ) ସହରର ମେୟର ଥିଲେ ଏକଦା । ବେଶ୍ ହାସ୍ୟରସିକ ଲୋକ । ସେ ଆମେ ଯାଉଥିବା ବସ୍‌ର ମାଇକ ଧରିଲେ ଏବଂ କହିଚାଲିଲେ ବନ୍ଧୁଗଣ, କିଛି ବ୍ୟସ୍ତ ହୁଅନ୍ତୁ ନାହିଁ । ଆମେ ଡ୍ରେସଡେନ ସହରକୁ ଯାଉଥାଇଁ । ଏଇଠି ରହିଛି ଆନ୍ତର୍ଜାତିକ ପ୍ରସିଦ୍ଧି ଲାଭ କରିଥିବା ମ୍ୟୁଜିୟମ ବା ଆର୍ଟ ଗ୍ୟାଲେରୀ, ଯାହାର କାନ୍ଥ ଦେଖି ଆପଣମାନେ ବୁଝିଯିବେ ସବୁ । କାରଣ ଭିତର ଦେଖିବା ପାଇଁ ଆମର ସମୟ ନାହିଁ । କଥାଟା ଠିକ୍ ବାଜିଥିଲା ଠିକ୍ ସ୍ଥାନରେ । ରହିବା ଚାରିଦିନ ହୋଇଯାଇଥିଲା ଏବଂ ଆର୍ଟ ଗ୍ୟାଲେରୀ ପାଇଁ ପୂରା ଦୁଇଦିନ ସମୟ ସ୍ଥିରୀକୃତ ହେଲା । କିନ୍ତୁ ଦୁଇଦିନ କ'ଣ କୁଳାନ ହୁଏ ଏଇଥିପାଇଁ । ଆମେ ମଡ଼ର୍ଣ୍ଣ ଆର୍ଟ ଗ୍ୟାଲେରୀକୁ ବାଦ ଦେଲୁ, କେବଳ ପିକାଶୋଙ୍କୁ ଛାଡ଼ । ପିକାଶୋ ତ କଳାର ସବୁ ସମୟକୁ ଅତିକ୍ରମ କରି ଯାଇଛନ୍ତି ସାଫଲ୍ୟର ସହିତ । କ୍ୟୁବିଜିମ୍‌ଠାରୁ ଆରମ୍ଭ କରି ଥ୍ରୀ ଡାଇମେନସନାଲ ପର୍ଯ୍ୟନ୍ତ ।

ଯେପରି ଚଳଚ୍ଚିତ୍ର ଜଗତର ଚାର୍ଲି ଚାପ୍‌ଲିନ ଯେ ନିର୍ବାକ୍‌ଠାରୁ ସବାକ୍ ପର୍ଯ୍ୟନ୍ତ ଚଳଚ୍ଚିତ୍ରର ସବୁ ସମୟକୁ ଅତିକ୍ରମ କରିଛନ୍ତି ସାଫଲ୍ୟର ସହିତ । ଭାରତବର୍ଷର ଚଳଚ୍ଚିତ୍ର ଜଗତର ଅଶୋକକୁମାରଙ୍କ ପାଖରେ ସେଇ ପ୍ରତିଭାର ଝଲକ ଦେଖାଯାଏ । ନିର୍ବାକ ଠାରୁ ଆରମ୍ଭ କରି ସବାକ୍ ପର୍ଯ୍ୟନ୍ତ ନିଜେ ଅଭିନୟ ସହିତ ଗୀତ ଗାଇବାଠାରୁ ଆରମ୍ଭକରି

ବ୍ୟାକ୍‌ଗ୍ରାଉଣ୍ଡ ମ୍ୟୁଜିକ୍ ପର୍ଯ୍ୟନ୍ତ ସବୁ ସ୍ତରରେ ସେ ଆପଣାର ସାଫଲ୍ୟର ଅଭିଲେଖ ରଖିଯାଇଛନ୍ତି ।

ଡ୍ରେସ୍‌ଡେନ୍ ଆର୍ଟ ଗ୍ୟାଲେରୀ । ଆଗରୁ ଟ୍ରିଟୟାକଭ ଆର୍ଟ ଗ୍ୟାଲେରୀ ଦେଖିବାର ସୁଯୋଗ ମିଳିଥିଲା । ଫ୍ରାନ୍ସର ଲୁଭ୍ରେ ମ୍ୟୁଜିୟମ ବା ଲଣ୍ଡନର ବ୍ରିଟିଶ ମ୍ୟୁଜିୟମ ଦେଖିବାର ସୁଯୋଗ ମିଳି ନାହିଁ । କିନ୍ତୁ ଲୁଭ୍ରେ ମ୍ୟୁଜିୟମରେ ରହିବା ପାଇଁ ତିନିଜଣ ଉତ୍କଳୀୟ ଶିଳ୍ପୀଙ୍କ ଦ୍ୱାରା ଅଙ୍କିତ ଚିତ୍ର ପଠାଇବାର ସୁଯୋଗ ମୋତେ ମିଳିଥିବାରୁ ମୁଁ ଗର୍ବିତ ।

ମୁଁ ଓଡ଼ିଆ, ମୁଁ ଭାରତୀୟ ଏବଂ ସେଇଯୋଗୁଁ ହିଁ ମୁଁ ଆନ୍ତର୍ଜାତିକ । ମୋର ସ୍ୱାଭିମାନ ମୋର ଜାତୀୟତାକୁ ପୁଷ୍ଟ କରିଛି, ବିରୋଧ କରି ନାହିଁ ଠିକ୍ ସେଇପରି ମୋର ଜାତୀୟତା ମୋର ଆନ୍ତର୍ଜାତିକତାର ବିରୋଧୀ ନୁହେଁ । ଦେଶପ୍ରେମର ସଂକୀର୍ଣ୍ଣ ବୟାନ ମୋର ରୁଚିସମ୍ମତ ନୁହେଁ । ବ୍ରିଟିଶ ସରକାର ବିରୋଧରେ ଭାରତବର୍ଷର ଜନସାଧାରଣଙ୍କର ସଂଗ୍ରାମକୁ ଯେଉଁ ଇଂରେଜମାନେ ସମର୍ଥନ କରୁଥିଲେ ସେମାନେ ଦେଶପ୍ରେମୀ ନା ଦେଶଦ୍ରୋହୀ ? ଜର୍ମାନୀରେ ଉଗ୍ର ଜାତୀୟତାବାଦ ଫାସିବାଦ ବିରୋଧରେ ଯେଉଁମାନେ ସଂଗ୍ରାମ କରୁଥିଲେ ସେମାନେ ଦେଶପ୍ରେମୀ ନା ଦେଶଦ୍ରୋହୀ ? କିଛିକାଳ ପାଇଁ କିଛି ସ୍ଥାନରେ ସେମାନଙ୍କୁ ଦେଶଦ୍ରୋହୀ କୁହାଯାଉଛି । ଯେପରି ଇଂଲଣ୍ଡରେ ବ୍ରିଟିଶ-ସାମ୍ରାଜ୍ୟବାଦ ବିରୋଧୀ ଇଂରେଜମାନଙ୍କୁ ବା ଜର୍ମାନୀରେ ଫାସିବାଦ ବିରୋଧୀ ଜର୍ମାନୀମାନଙ୍କୁ । କିନ୍ତୁ ଇତିହାସ ପ୍ରମାଣିତ କରିଛି ଯେ ସେମାନେ ହେଉଛନ୍ତି ପ୍ରକୃତ ଦେଶପ୍ରେମୀ ଏବଂ ବେଶି ସମ୍ମାନିତ ଦେଶପ୍ରେମୀ ।

ଓଡ଼ିଶାର କଳା, ସାହିତ୍ୟ, ସଂସ୍କୃତି ଯଦି ଜାତୀୟ ଆନ୍ତର୍ଜାତୀୟ ସ୍ତରକୁ ସମ୍ପ୍ରସାରିତ ହୁଏ, ତାହାର ଅଧିକ ସ୍ୱୀକୃତି ମିଳେ ତା'ହେଲେ ତାହା ପ୍ରତ୍ୟେକ ଓଡ଼ିଆ ପାଇଁ ଆନନ୍ଦର କଥାହେବ । ଏଥିରେ କାହାରି ସହିତ ପ୍ରତିଦ୍ୱନ୍ଦ୍ୱିତା ହେବାର ବା କାହାରି ସ୍ୱାର୍ଥ ହାନି ହେବାର ପ୍ରଶ୍ନ ଉଠୁ ନାହିଁ ।

ଓଡ଼ିଆ ଶିଳ୍ପୀମାନଙ୍କର କୃତିକୁ ଫ୍ରାନ୍‌ସ ଦେଶର ଲୁଭ୍ରେ ମ୍ୟୁଜିୟମକୁ ପଠାଇଲା ବେଳେ ଏହି ଚିନ୍ତା ହିଁ ମୋ ପାଇଁ ଆନନ୍ଦର, ଗର୍ବର କଥା ହୋଇଛି ।

ସେଦିନ ଡ୍ରେସଡେନ ଆର୍ଟଗ୍ୟାଲେରୀ ମଡ଼ର୍ଣ୍ଣ ଆର୍ଟ ସେକ୍ସନକୁ ବାଦ ଦେଲାବେଳେ ଯାହା କାରଣ ଥିଲା ଟ୍ରେଟିଆକଭ୍ ଆର୍ଟ ଗ୍ୟାଲେରୀ ଦେଖିଲାବେଳେ ଠିକ୍ ସେଇ କାରଣ ହିଁ ଥିଲା । ଆମେ ଯେଉଁସବୁ ଦର୍ଶକ ଥିଲୁ ସେମାନଙ୍କ ଭିତରୁ କେହି ଶିଳ୍ପୀ ନ ଥିଲେ । ଜଣେ ସାଧାରଣ ଦର୍ଶକର ଆଖିରେ ମଡ଼ର୍ଣ୍ଣ ଆର୍ଟ ବୁଝିବା କଠିନ ।

ଗୋଟିଏ ଗପ ମନେପଡ଼ିଲା ଏବଂ ସେଇ ଗଳ୍ପଟିକୁ ହିଁ ମୁଁ ପ୍ରତିନିଧି ଦଳକୁ କହି ନିଷ୍କୃତି ନେବାରେ ସାହାଯ୍ୟ କରିଥିଲି । ଗଳ୍ପଟି ହେଉଛି ଏଇପରି । ଦଳେ ପିଲା ଏକ ପ୍ରସିଦ୍ଧ ଆର୍ଟ ଗ୍ୟାଲେରୀ ଦେଖିବାକୁ ଯାଇଥିଲେ । ଯେତେବେଳେ ମଡ଼ର୍ଣ୍ଣ ଆର୍ଟ ଗ୍ୟାଲେରୀ ପଡ଼ିଲା ଗୋଟିଏ ପିଲା ଆଉ ଗୋଟିଏ ପିଲାକୁ କୁଣ୍ଢେଇଧରି କହିଲା, ଭାଇରେ, ଚାଲ ପଳାଇବା । ନଚେତ୍ କେହି ଆସି ଦେଖିଲେ କହିବ ଯେ ଆମେ ହିଁ ଏ ଚିତ୍ରସବୁ ନଷ୍ଟ କରିଦେଇଛୁ ।

ପରବର୍ତ୍ତୀ କାଳରେ ୟୁନିଭର୍ସ ତରଫରୁ ଅନେକ ବହି ପ୍ରକାଶିତ ହୋଇଛି । ପ୍ରାୟ ସବୁ ବହିର ଚିତ୍ର ୟୁନିଭର୍ସର ବନ୍ଧୁଶିଳ୍ପୀ ଶିବ ପାଣିଗ୍ରାହୀ ଆଙ୍କିଛନ୍ତି ଗଭୀର ଶ୍ରଦ୍ଧାର ସହିତ । ସେଦିନ ମୋର ଆତ୍ମଜୀବନୀର ପ୍ରଥମ ଅଂଶ ଜୀବନର ବାଟେଘାଟେର ପ୍ରକାଶନ ହେଉଥାଏ । ମୋ ଦେହ ବହୁତ ଖରାପ ହୋଇ ଆସିଲାଣି । ବନ୍ଧୁ ଶିଳ୍ପୀ ବ୍ୟୋମକେଶ ମହାନ୍ତି (ଯାହାଙ୍କୁ ମୁଁ ଡାକେ ବାଇଆ ବ୍ୟୋମକେଶ ବୋଲି କାରଣ ଶିଳ୍ପୀର ପାଗଳାମି ତାଙ୍କ ପାଖରେ ବେଶ୍ ବେଶୀ) କହିଲେ ଯେ ସେ ଏଇ ବହିର ମଲାଟ ଚିତ୍ର ଆଙ୍କିବେ । ପାରିବାରିକ ବନ୍ଧୁ, ପୁଣି ପ୍ରତିଷ୍ଠିତ ଶିଳ୍ପୀ ! ସେ ଆଙ୍କିଲେ ଏକ ମଡ଼ର୍ଣ୍ଣ ଆର୍ଟ । ସମସ୍ତେ ପସନ୍ଦକଲେ, ପ୍ରଶଂସା କଲେ କିନ୍ତୁ ସେଇଟା କ'ଣ କେହି କହିପାରିଲେ ନାହିଁ ।

ଅଧ୍ୟାପକ ଡକ୍ଟର ରାଧାନାଥ ରଥ ଏକ ପତ୍ରିକା ପ୍ରକାଶନ କରିବା ପାଇଁ ସ୍ଥିର କଲେ । ନାମ ଦିଆଗଲା ସାମ୍ମୁଖ୍ୟ । ପ୍ରସିଦ୍ଧ ଚିତ୍ରଶିଳ୍ପୀ ବନ୍ଧୁ ଅସୀତ ମୁଖର୍ଜୀଙ୍କୁ ତା'ର ମଲାଟ ପାଇଁ ଏକ ଚିତ୍ର ଆଙ୍କିବାକୁ ଅନୁରୋଧ କରିଥିଲେ ଏବଂ ତାହା ରକ୍ଷାକରି ଅସୀତବାବୁ ଏକ ସୁନ୍ଦର ଚିତ୍ର ଆଙ୍କି ଦେଇଥିଲେ । କିନ୍ତୁ ସେ ଚିତ୍ରକୁ କେହି ବୁଝିପାରିଲେ ନାହିଁ । ଅଧ୍ୟାପକ ରାଧାନାଥ ରଥ ଜଣେ ମନସ୍ତତ୍ତ୍ୱବିତ୍ । ସେ କୌଣସି ଏକ ସକାଳେ ଉକ୍ତ ଚିତ୍ରଟିକୁ ରଖି ପାଖରେ ଏକ ମନ୍ତବ୍ୟ ବହି ରଖିଦେଲେ । ଏ ଚିତ୍ରକୁ ଦେଖି ଆପଣଙ୍କର କ'ଣ ମନେହେଉଛି ? ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ଆସିଥିବା ସବୁ ବ୍ୟକ୍ତି ନାରୀ ପୁରୁଷ ଯୁବା ବୃଦ୍ଧ ସମସ୍ତେ ଲେଖିଲେ । ସନ୍ଧ୍ୟାବେଳକୁ ଦେଖାଗଲା ଯେ କାହାରି ମନ୍ତବ୍ୟ ସହିତ ଅନ୍ୟର ମନ୍ତବ୍ୟ ମେଳ ଖାଉ ନାହିଁ । ଡକ୍ଟର ରଥ ସେଇଟିକୁ ଅସୀତବାବୁଙ୍କୁ ଦେଖାଇଲେ । ଅସୀତବାବୁ ବେଶ୍ ମଉଜିଆ ଲୋକ । ସେ କହିଲେ ସେଇ ତ ମୋର ଚିତ୍ରର ସାଫଲ୍ୟ ଏବଂ ତାହା ହିଁ ତ ଆପଣଙ୍କର ସାମ୍ମୁଖ୍ୟ !

ଶିଳ୍ପୀ ଉପେନ୍ଦ୍ର ମହାରଥୀଙ୍କ କଥା । ତାଙ୍କର ଘର ବାଣପୁର । ବୋଧହୁଏ ମାୟାଧର ମାନସିଂହ ଓ ସେ ଏକା ଗାଁର । ମାୟାଧର ମାନସିଂହ 'ଶଙ୍ଖ' ନାମକ ଏକ ପତ୍ରିକା ପ୍ରକାଶ କରୁଥାନ୍ତି ସମ୍ବଲପୁରରେ । ସେ ଥିଲେ ଇଷ୍ଟର୍ଣ୍ଣ ଷ୍ଟେଟସ ଏଜେନ୍ସିର ଶିକ୍ଷା ପରାମର୍ଶଦାତା । ବାମଣ୍ଡା ରାଜାଙ୍କ ପୃଷ୍ଠପୋଷକତାରେ ଏହା ପ୍ରକାଶ ପାଉଥାଏ । ସେଥିରେ ସେ ଲେଖିଥିଲେ ଉପେନ୍ଦ୍ର ମହାରଥୀଙ୍କ କଥା । ଏଇ ପ୍ରଖ୍ୟାତ ଶିଳ୍ପୀ କିଭଳି ଲିନୋଟାଇପର ଟାଇପ ପ୍ରସ୍ତୁତ କରିବାରେ ଆପଣାର କଳାକୁ ବିନିଯୋଗ କରି ଚାଲିଛନ୍ତି, କିନ୍ତୁ ତାଙ୍କର ପ୍ରତିଭାର କୌଣସି ସ୍ୱୀକୃତି ମିଳୁ ନାହିଁ । ଏଇ ଖେଦ ପ୍ରକାଶ କରିଥିଲେ ସଂପାଦକ । ଉପେନ୍ଦ୍ର ମହାରଥୀଙ୍କୁ ସ୍ୱୀକୃତି ମିଳିଥିଲା ପରେ । ସେ ବିହାର ଲେଜିସଲେଟିଭ କାଉନସିଲର ସଭ୍ୟ ହେଲେ । ସାଞ୍ଚି (ବିହାର)ରେ ଶାନ୍ତିସ୍ତୂପ ନିର୍ମାଣ କଲେ ନିପନ ବୌଦ୍ଧ ସଂଘ ଏବଂ ଏହାର ସଭାପତି ଫୁଜି ମହାରାଜଙ୍କ ସାହାଯ୍ୟରେ । କେବଳ ସେତିକି ନୁହେଁ ତାଙ୍କରି ନେତୃତ୍ୱରେ ଗଢ଼ାହେଲା ଧଉଳିଗିରିରେ ପ୍ରସିଦ୍ଧ ଶାନ୍ତିସ୍ତୂପ ।

ଓଡ଼ିଶାରୁ ଦୁଇଜଣ ଶିଳ୍ପୀ ସୁଦର୍ଶନ ଏବଂ ରଘୁ ମହାରଣାଙ୍କ ପାଇଁ ନୂତନ ଦିଗ୍‌ବଳୟ ଉନ୍ମୋଚିତ ହେଲା ।

କଳିଙ୍ଗ ନିପନ ବୌଦ୍ଧ ସଂଘ ଗଠିତ ହେଲା । ନିତ୍ୟାନନ୍ଦ କାନୁନ୍‌ଗୋ, ରାଧାନାଥ ରଥଙ୍କ ପରଲୋକ ପରେ ଏହା କେଉଁ ପରିସ୍ଥିତିରେ ଅଛି କହିପାରିବି ନାହିଁ ।

କିନ୍ତୁ ଧଉଳିଗିରିରେ ଶାନ୍ତିସ୍ତୂପ ନିର୍ମାଣରେ ଅସୂୟା ପରବଶ ହୋଇ କେତେକ ବ୍ୟକ୍ତି ସେଠାରେ ଏକ ଭୋଟିଭ ସ୍ତୂପ (Votive Stupa)କୁ ଶିବଲିଙ୍ଗ ବୋଲି ଆଖ୍ୟାଦେଇ ଏକ ଶିବମନ୍ଦିର ନିର୍ମାଣ କଲେ, ଯାହାର କୌଣସି ଯାଥାର୍ଥ୍ୟ ନ ଥିଲା । ଏହି ଶିବଲିଙ୍ଗ ଯେ ଏକ ବୌଦ୍ଧ ସ୍ତୂପ ଏଥିରେ କୌଣସି ସନ୍ଦେହ ନାହିଁ, କାରଣ ଏହାର ପାଦଦେଶରେ ବୁଦ୍ଧ ଧାରଣୀ ପରିଦୃଷ୍ଟ ହେଉଥିଲା ବହୁବର୍ଷ ପର୍ଯ୍ୟନ୍ତ । ପରେ ତାକୁ ସିମେଣ୍ଟ ପ୍ଲାଷ୍ଟରରେ ପୋତି ଦିଆଯାଇଛି ।

ଏହି ଧଉଳି ପାହାଡ଼ର ପାଦଦେଶର କଳିଙ୍ଗ ନିପନ ବୌଦ୍ଧ ସଂଘ ଦଶ ଏକର ଜମି ନେଇଥିଲା ଏକ ମେଡ଼ିକାଲ କଲେଜର ପରିକଳ୍ପନା କରି । ବନ୍ଧୁ ଶ୍ରୀ ବିଜୟକୃଷ୍ଣ ମହାନ୍ତି (ଆଡ୍‌ଭୋକେଟ)ଙ୍କ ଅନୁରୋଧରେ ଜଣେ ସ୍ଥାପତ୍ୟ ଶିଳ୍ପୀ (ତାଙ୍କର ନାମ ମନେପଡୁ ନାହିଁ) ନକ୍ସା ବି ଆଙ୍କି ସାରିଥିଲେ ।

ଏଇ ନକ୍ସାଟି ଧରି ମୁଁ ବାରବାଟୀ ଷ୍ଟାଡିୟମ ରାସ୍ତାରେ ଯାଉଥିଲି ବଡ଼ି ସକାଳୁ ପାଦରେ ଚାଲି ଚାଲି । ସେପଟରୁ ଆସୁଥିଲେ ଗାଡ଼ିରେ ୰ ଆର୍‌.କେ. ପାଢ଼ୀ, ପୁଲିସ ବିଭାଗର ଶେଷ ପ୍ରବାଦପୁରୁଷ । ଗାଡ଼ି ଅଟକାଇ ମୋତେ ପଚାରିଲେ ଏତେ ସକାଳୁ କୁଆଡ଼େ ଯାତ୍ରା ? ମୁଁ ହାତରେ ଧରିଥିବା ନକ୍ସାର ଏକ ଟ୍ରେସିଙ୍ଗ କରିବା ପାଇଁ କିଲା ଫୋର୍ଟ ଭିତରେ ଥିବା ପୂର୍ତ୍ତବିଭାଗ ଅଫିସକୁ ଯାଉଛି ବୋଲି କହିବାରୁ, ସେ ଏଇ ନକ୍ସା ସଂପର୍କରେ ପଚାରିଲେ । ଏକ ଡାକ୍ତରଖାନାର ନକ୍ସା ଶୁଣି ସେ ସେଇଟିକୁ ଗାଡ଼ିର ବନେଟ ଉପରେ ଥୋଇ ବହୁ ସମୟ ଧରି ଦେଖିଲେ । ଖୁସିହୋଇ କହିଲେ ଯେ ମୁଁ ଆଜି ଯାଉଛି ବ୍ରହ୍ମପୁର ରୋଟାରୀ ସମ୍ମିଳନୀରେ ଯୋଗଦେବା ପାଇଁ । ଫେରିଲେ ମୁଁ ତୁମର ଏଇ କାର୍ଯ୍ୟରେ ଯୋଗଦେବି ନିଶ୍ଚୟ । ମୁଁ ଖୁସିହୋଇ ଫେରିଲି କିନ୍ତୁ ଯାହା ଘଟିଗଲା ତାହା କରୁଣ ଏବଂ ସବୁଦିନପାଇଁ ମନେରହିବ । ସେଇ ରାତିରେ ଆର୍‌.କେ. ପାଢ଼ୀଙ୍କର ପରଲୋକ ହୋଇଗଲା ବ୍ରହ୍ମପୁରରେ ।

ମୋତେ କିମିତି ଗୋଟାଏ ଚମକ ଲାଗିଲା । ଡାକ୍ତରଖାନା କାମଟି ମଧ୍ୟ ଆଉ ବେଶି ଆଗେଇ ପାରିଲା ନାହିଁ । ସେ ଜମି କ'ଣ ହେଲା ତାହା ମୁଁ କହିପାରିବି ନାହିଁ ।

ଶ୍ରୀ ଆର୍‌.କେ.ପାଢ଼ୀ ପୁଲିସ ବିଭାଗର ସର୍ବଶେଷ ପ୍ରବାଦପୁରୁଷ । ଶେଷ ବୋଲି କହିବି ନାହିଁ । କହିଲେ ସେ ହିଁ ମନେ ପଡ଼ିବେ । ପୁରୀ ଏମାରମଠ ଉପରେ ଆମେସବୁ ବସିଥାଉଁ । ବୋଧହୁଏ କୌଣସି ଏକ ରଥଯାତ୍ରା ସମୟ । ମନେପଡୁଛି ହୋମ୍ ସେକ୍ରେଟେରୀ ପଦ୍ମନାଭ ମିଶ୍ର, ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ, ଆର୍‌.କେ. ପାଢ଼ୀ ବସିଥାନ୍ତି । ମୁଁ ବି ଦୈବାତ୍ ସେଠାକୁ କିଛି ସମୟ ପାଇଁ ଯାଇଥିଲି । ମୋର ସ୍ଥାନ କିନ୍ତୁ ଥିଲା ସିଂହଦ୍ୱାର ପାଖ ମଠ ଉପରେ । ଆର୍‌.କେ. ପାଢ଼ୀଙ୍କ କନିଷ୍ଠପୁତ୍ର ସେଇଠି ପହଞ୍ଚିଲେ । ସେ ତାଙ୍କ ପୁତ୍ରକୁ ପଦ୍ମନାଭ ମିଶ୍ର ଏବଂ ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶଙ୍କୁ ପରିଚୟ କରାଇଦେଲେ । ପଦ୍ମନାଭ ବାବୁ ତାଙ୍କୁ

ପଚାରିଲେ Is he your last son ? ଆର୍.କେ. ପାଢ଼ୀ ଉତ୍ତରଦେଲେ, ପଦ୍ମନାଭ ! ତମେ ମୋର ସହପାଠୀ, ବର୍ତ୍ତମାନ ତମେ ମୋର ବସ (Boss) କିନ୍ତୁ ଏହାବୋଲି ତମେ ମୋର ପୌରୁଷତ୍ୱ ଉପରେ ଆଘାତ ହାଣିପାରିବ ନାହିଁ । ତମେ କହିପାର latest କିନ୍ତୁ last ବୋଲି କହିବା ଉଚିତ ନୁହେଁ । ହସରେ ସମସ୍ତେ ଗଡ଼ିଗଲେ କିନ୍ତୁ ଆର୍.କେ. ପାଢ଼ୀଙ୍କ ମୁହଁରେ ହସର ଏକ ମ୍ଳାନରେଖା ମାତ୍ର ।

ଶ୍ରୀ ଆର୍.କେ. ପାଢ଼ୀଙ୍କ ସଂପର୍କରେ ମୋର ଗୋଟିଏ ଦୁଇଟି ଘଟଣା ମନେପଡୁଛି । ସେ ଗାଡ଼ିରେ ଫେରୁଥିଲେ ତାଙ୍କର ଗସ୍ତରୁ ରାଣୀହାଟ ବକ୍ରକବାଟି ରୋଡ଼ରେ । ଟ୍ରାଫିକ ପୋଲିସର ହାତ ଦେଖା ସତ୍ତ୍ୱେ ତାଙ୍କ ଗାଡ଼ି ତାକୁ ନ ମାନି ଚାଲିଗଲା । ବେଶ୍ ଟ୍ରାଫିକ୍ ଥିଲା ଏବଂ ଗାଡ଼ି ଦ୍ରୁତ ଗତିରେ ଥିଲା । ଦୁର୍ଘଟଣା ହୁଏତ ଘଟିଲା ନାହିଁ କିନ୍ତୁ ଅନେକ ଅସୁବିଧା ହେଲା । ମୁଁ ଏହା ଲେଖି ତାଙ୍କ ପାଖକୁ ଏକ ଚିଠି ଲେଖିଲି । ତାଙ୍କ ଗାଡ଼ି ସେଦିନ ଟ୍ରାଫିକ୍ ପୋଲିସ୍‌କୁ ମାନିଥିଲେ ତାଙ୍କର ସମ୍ମାନ ବଢ଼ିଥାନ୍ତା, ଟ୍ରାଫିକ୍ ପୋଲିସ୍‌ର ସମ୍ମାନ ଲୋକ ଚକ୍ଷୁରେ ବଢ଼ିଥାନ୍ତା ଏବଂ ସର୍ବୋପରି ଲୋକେ ଅଧିକ ସଚେତନ ହୋଇଥାନ୍ତେ । ଚିଠି ଲେଖିବାର ସପ୍ତାହକ ପରେ ହଠାତ୍ ଦିନେ ଶ୍ରୀ ପାଢ଼ୀ ନିଜେ ହାଜର ହଷ୍ଟେଲ ରୁମ୍‌ରେ ।

ମୁଁ ଦୁଃଖ ପ୍ରକାଶ କରିବାକୁ ଆସିଛି । ସେଦିନ ମୁଁ ଗାଡ଼ିର ପଛ ସିଟ୍‌ରେ ଶୋଇପଡ଼ିଥିଲି । ଡ୍ରାଇଭର ଭୁଲ୍ କରିଛି । ସେଥିପାଇଁ ଦଣ୍ଡିତ ମଧ୍ୟ ହୋଇଛି ।

ଆମ କଲୋନୀର ନଅ ନମ୍ବର କ୍ୱାର୍ଟର୍ସରେ ଜଣେ ଆଇ.ପି.ଏସ୍. ଅଫିସର ରହୁଥିଲେ । ତାଙ୍କର ନାମ କି ସାଇଗଲ ମନେପଡୁନି । ସୁଦର୍ଶନ ଯୁବକ । ଘରେ ତାଙ୍କର ସ୍ତ୍ରୀ ଏବଂ ଦୁଇଟି ସାନପିଲା । ସେ ଚିତ୍ର ଆଙ୍କନ୍ତି ଅବସର ସମୟରେ । ବନ୍ଧୁପ୍ରିୟ । ବନ୍ଧୁ ଗହଣରେ ମଦ୍ୟପାନ ମଧ୍ୟ କରନ୍ତି । ତାଙ୍କର ହୃଦରୋଗ ଥିଲା କିନ୍ତୁ ତାହା କଲୋନୀରେ କେହି ଜାଣନ୍ତି ନାହିଁ । କାରଣ କଲୋନୀର କାହାରି ସହିତ ତାଙ୍କର ସାମାଜିକ ସଂପର୍କ ନ ଥିଲା । ସେ ଅଫିସରୁ ଫେରି ଚିତ୍ର ଆଙ୍କନ୍ତି, ସନ୍ଧ୍ୟାରେ କେହି ବନ୍ଧୁ ଆସିଲେ ଆପଣାର ଲନ୍‌ରେ ବସି ଗପ କରନ୍ତି । ସେ କିନ୍ତୁ ଥିଲେ ବେଶ୍ ମେଟିକୁଲସ (meticulous) । ରାତିରେ ହଠାତ୍ ଦରକାର ପଡ଼ିଲେ କେଉଁ କେଉଁ ଲୋକଙ୍କୁ ବା ଅନୁଷ୍ଠାନକୁ ଫୋନ କରିବ ତାହାର ତାଲିକା ସେ ଟେବୁଲ ଉପରେ ରଖିଥିଲେ । ଦେହର କେଉଁ ଅଂଗକୁ ଦେଖାଇଲେ କ'ଣ ଔଷଧ ଦେବ ତାହାର ମଧ୍ୟ ଏକ ତାଲିକା ଟେବୁଲ ଉପରେ ଥିଲା । ସେ ଦିନ ସନ୍ଧ୍ୟାରେ ଜଣେ ପଦସ୍ଥ ପୁଲିସ ଅଫିସର ତାଙ୍କ ଘରକୁ ଆସିଥିଲେ । ଦୁହେଁ କିଛି ମଦ୍ୟପାନ କରିଥିଲେ । ସେଇ ରାତିରେ ବର୍ଷା ଓ ପବନ ହଠାତ୍ ହୋଇଥିଲା । ଉକ୍ତ ଅଫିସର ଯାଇଥିଲେ ବାଥରୁମ୍‌କୁ । ସେଠାରେ ସାପଟାଏ ଦେଖିଥିଲେ । କି ସାପ କହିହେବ ନାହିଁ । ସେ ତାକୁ ଚଟିରେ ପିଟିପିଟି ମାରିଦେଇ ଫିଙ୍ଗି ଦେଇଥିଲେ ବାହାରକୁ । ତା'ର କିଛି କ୍ଷଣକ ପରେ ତାଙ୍କର ହୃଦଯନ୍ତ୍ରରେ ଯନ୍ତ୍ରଣା ହେଲା । ମହାକାଳ ଆସିଲାବେଳେ ସବୁ ନିୟମ ଗଣ୍ଡଗୋଳ ହୋଇଯାଏ । ଠିକ୍ ସେଇଆ ହେଲା । ଔଷଧ କାମ କଲା ନାହିଁ । ସେତେବେଳେ ଟେଲିଫୋନ ମାନୁଆଲ

ଏକ୍ସଚେଞ୍ଜରେ ଚାଲୁଥିଲା । ଫୋନ ରିସିଭର ଯେତେ ଚିପିଲେ ବି କେହି ଧରିଲେ ନାହିଁ । ଭଦ୍ରମହିଳା କଲୋନୀରେ କାହାକୁ ଜାଣନ୍ତି ନାହିଁ । ସେ ଆଉ କ'ଣ କରିବେ କାନ୍ଦିବା ଛଡ଼ା ! ପାହାନ୍ତିଆ ସମୟ ! ମୁଁ ତ ବାରଣ୍ଡାରେ ଶୁଏ । ମୋର ନିଦ ଭାଙ୍ଗିଗଲା ସେଇ କାନ୍ଦରେ । ମୁଁ ଉଠି ଦୌଡ଼ିଲି । ମୋ ସ୍ତ୍ରୀ ବି ମୋ ପଛେ ପଛେ ଚାଲିଲେ । ମୁଁ ଡାକ୍ତର କିଶୋର ମିଶ୍ର (ବନ୍ଧୁ)ଙ୍କୁ ଡକାଇ ପଠାଇଲି । ଆମ କଲୋନୀରେ ଜଣେ ଡାକ୍ତର ବି ଥିଲେ । ଏଇ କଲୋନୀରେ ପରେ ଡାକ୍ତର ସବ୍ୟସାଚୀ ଦାସ ଆସି ରହିଲେ କିଛିବର୍ଷ । ସେ ସମଗ୍ର କଲୋନୀର ଡାକ୍ତର ପାଲଟିଗଲେ । ବର୍ତ୍ତମାନ ସେ ମୈତ୍ରୀ ସରଣୀର ଲାୟନ୍ସ କ୍ଲବ ଡାକ୍ତରଖାନା ପାଖରେ ରହୁଛନ୍ତି । ବର୍ତ୍ତମାନ ବି ସେ ଆମ ସମସ୍ତଙ୍କର ଡାକ୍ତର । କିନ୍ତୁ ସେଦିନ ଯେଉଁ ଡାକ୍ତର ଆମ କଲୋନୀରେ ରହୁଥିଲେ ତାଙ୍କୁ ଡକାଇ ପଠାଇବା ସତ୍ତ୍ୱେ ଏବଂ ତିନିଥର ଧାଇଁବା ସତ୍ତ୍ୱେ ସେ ଆସି ନ ଥିଲେ । ଡାକ୍ତର କିଶୋର ମିଶ୍ର କିନ୍ତୁ ସାଙ୍ଗେ ସାଙ୍ଗେ ପହଞ୍ଚିଗଲେ । ଅନ୍ୟ ଡାକ୍ତରମାନଙ୍କୁ ମଧ୍ୟ ଡକାଇ ପଠାଗଲା । ସେମାନେ ସବୁ ଚେଷ୍ଟାକଲେ କିନ୍ତୁ ସବୁ ଶେଷ ହୋଇଯାଇଥିଲା । ବର୍ତ୍ତମାନ ପ୍ରଶ୍ନଉଠିଲା ଯେ ଶବଦାହ ହେବ କେଉଁଠି ? କଟକରେ ନା ତାଙ୍କ ଗ୍ରାମ ପଂଜାବ ସହରର କେଉଁ ଅଖ୍ୟାତ ଅଞ୍ଚଳରେ ? ସେ ଗାଁକୁ ଶବ ଯିବ କିପରି ? କେତେ ସମୟ ଲାଗିବ ? ତାଙ୍କର ସ୍ତ୍ରୀ କହିଲେ ପଂଜାବ ନେବା ପାଇଁ । ଚଉଦୁଆର ବିମାନ ଘାଟୀରୁ ବିମାନ ଠିକ୍‌ହେଲା ପୁଲିସ ବିଭାଗ ଦ୍ୱାରା । କିନ୍ତୁ ଶବ ପହଞ୍ଚିବ କେତେବେଳେ ? କ'ଣ ହୋଇଥିବ ଅବସ୍ଥା ସେତେବେଳକୁ ଶବର ? ତାଙ୍କ ସ୍ତ୍ରୀଙ୍କୁ ବୁଝାଇବାର ଦାୟିତ୍ୱ ମୋତେ ଆର୍.କେ. ପାଢ଼ୀ ଦେଲେ । ସ୍ତ୍ରୀଙ୍କୁ ବହୁ ସମୟ ବୁଝାଇଲା ପରେ ସେ ରାଜି ହେଲେ କଟକରେ ଶବ ସତ୍କାର ପାଇଁ । ପୁଲିସ ରାଷ୍ଟ୍ରୀୟ ମର୍ଯ୍ୟାଦା ସହ ତାଙ୍କର ଶବ ସତ୍କାର କଲେ । ଏଥିପାଇଁ ମୋତେ ଆର୍.କେ. ପାଢ଼ୀ ପୁଲିସ ବିଭାଗ ତରଫରୁ ଧନ୍ୟବାଦ ଦେଲେ । କିଛି ମାସ ପର୍ଯ୍ୟନ୍ତ ତାଙ୍କ ସ୍ତ୍ରୀ ମୋତେ ଓ ମୋ ସ୍ତ୍ରୀଙ୍କୁ ଚିଠି ଲେଖୁଥିଲେ ପଂଜାବରୁ । କ୍ରମେ ତାହା ବନ୍ଦ ହୋଇଗଲା ।

ତାଙ୍କ ବିଷୟରେ ମୁଁ ଆଉ କିଛି ଜାଣି ନାହିଁ । ଏଇ କଲୋନୀରେ ୧୦ ନମ୍ବର କ୍ୱାର୍ଟର୍ସରେ ରହୁଥିଲେ ଶ୍ରୀ ଭ୍ରମରବର ଜେନା । ଖୁବ୍ ମେଳାପୀ ଏବଂ ଥଟ୍ଟା ପରିହାସରେ ଓସ୍ତାଦ୍ । ସେ ନୟାଗଡ଼ରେ ଏସ୍.ଡି.ଓ. ଥିଲେ । ସେଠାରେ ଏକ କଲେଜ ପ୍ରତିଷ୍ଠା କରିବାରେ ସେ ଅଗ୍ରଣୀ ଥିଲେ । କଲେଜର ପରିକଳ୍ପିତ ନୂତନ କ୍ୟାମ୍ପସ୍‌ର ଶିଳାନ୍ୟାସ ପାଇଁ ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କୁ ନିମନ୍ତ୍ରଣ କରାଯାଇଥିଲା ଏବଂ ସେ ତାହା ଗ୍ରହଣ ମଧ୍ୟ କରିଥିଲେ । କିନ୍ତୁ ଆସିଲେ ନାହିଁ । ତେଣୁ ବାଟରେ ଯାଉଥିବା ଏକ ଅର୍ଦ୍ଧପାଗଳ ବା ପାଗଳକୁ ଡାକି ତା' ହାତରେ ଶିଳାନ୍ୟାସ କରାଇଥିଲେ ସେ ।

ସେଇ କାରଣରୁ ତାଙ୍କ ପ୍ରତି ମୋର ଏକ ଦରଦ ଥିଲା । ରଣପୁର ନିର୍ବାଚନ ମଣ୍ଡଳୀରେ ନିର୍ବାଚନ ଫଳ ଘୋଷଣାରେ ତାଙ୍କର ନିରପେକ୍ଷତା ଏବଂ ସାହସ ମଧ୍ୟ ସେଇ ଦରଦକୁ ବଢ଼ାଇ ଦେଇଥିଲା ।

ମୋର ବନ୍ଧୁ ଶ୍ରୀ ଯୋଗେନ୍ଦ୍ର କୁମାର ଦାସ (ବର୍ତ୍ତମାନ ଅବସରପ୍ରାପ୍ତ ଆଇ.ଏ.ଏସ୍.) ଅସୁସ୍ଥ ଥାଆନ୍ତି । ସେ ଯାଉଛନ୍ତି ଭେଲୋର ଚିକିତ୍ସା ପାଇଁ । ଯୋଗେନ୍ଦ୍ର କୁମାର ଦାସ (ଆମର

ଯୋଗେନ୍ଦା) ଛାତ୍ରସଂଘର ପ୍ରାଦେଶିକ ସେକ୍ରେଟେରିଏଟ୍‌ର ସଭ୍ୟ ଥିଲେ । ସେ ଏକ ବିଚିତ୍ର ଛାତ୍ର ଥିଲେ । ସିନେମା ଯେମିତି ଦେଖନ୍ତି, ଛାତ୍ରସଂଘର କାର୍ଯ୍ୟ ସେମିତି କରନ୍ତି ଏବଂ ବିଳମ୍ବିତ ରାତ୍ରିରେ ପାଠ ପଢ଼ନ୍ତି । ଏମ୍.ଏସ୍‌ସି.ରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇଥିଲେ । ଆଇ.ଏ.ଏସ୍. ପାଇଁ ମନୋନୀତ ହୋଇଥିଲେ । କିନ୍ତୁ ରାଜ୍ୟ ସରକାରଙ୍କ ଗୁଇନ୍ଦା ବିଭାଗର ପ୍ରତିକୂଳ ମନ୍ତବ୍ୟ ଯୋଗୁଁ ସେ ତାହା ପାଇବାରୁ ବଞ୍ଚିତ ହେଲେ । ପରେ ଓ.ଏ.ଏସ୍. ହେଲେ ଏବଂ ଯଥା ସମୟରେ ଆଇ.ଏ.ଏସ୍. ହେଲେ ପ୍ରମୋଶନ ପାଇ । ତାଙ୍କର ମସ୍ତିଷ୍କରେ ଟ୍ୟୁମର ଚିକିତ୍ସା ପାଇଁ ଗଲେ ଭେଲୋର । ତାଙ୍କୁ ଟ୍ରେନ୍‌ରେ ବସାଇ ତତ୍‌କାଳୀନ କଟକ ଜିଲ୍ଲାପାଳ ଶ୍ରୀ ସତ୍ୟରଂଜନ ପାଲ ଏବଂ ମୁଁ ଫେରୁଥିଲୁ ଷ୍ଟେସନରୁ । ବର୍ତ୍ତମାନ ଯେଉଁଟା ଗୋପବନ୍ଧୁବାଗ ସେଇଠି ଏକ ପୋଖରୀ ଥିଲା । ପୋଖରୀର ଚାରିପଟରେ ଶହ ଶହ ଲୋକ ପ୍ରତିଦିନ ଝାଡ଼ା ଫେରୁଥିଲେ । ତାହାରି ଭିତରେ ରହିଥିଲା ଗୋପବନ୍ଧୁ ଦାସଙ୍କ ପ୍ରତିମୂର୍ତ୍ତି । 'ସମାଜ' ସମ୍ପାଦକ ରାଧାନାଥ ରଥ ପ୍ରତିଦିନ ଇମିତି ଦୃଶ୍ୟ ଦେଖି ବ୍ୟଥିତ ହେଉଥିଲେ । ସେଇ ପାହାନ୍ତିଆରେ ଆମେ ଫେରିଲା ସମୟରେ ଏଇ ଦୃଶ୍ୟକୁ ମୁଁ ସତ୍ୟରଂଜନ ପାଲଙ୍କୁ ଦେଖାଇଲି ଏବଂ ଗୋଟିଏ କିଛି କରିବା ପାଇଁ ଅନୁରୋଧ କଲି । ଆମେ ଦିହେଁ ଆସି ଭ୍ରମରବର ଜେନାଙ୍କୁ ଉଠାଇଲୁ ନିଦରୁ । ସେଠାରେ ଗୋଟିଏ ପାର୍କ କଲେ କେମିତି ହୁଅନ୍ତା ? ଏଇ ଥିଲା ମୋର ପ୍ରସ୍ତାବ । ଭ୍ରମରବାବୁ ସମ୍ମତି ପ୍ରଦାନ କଲେ ଏବଂ ସେଇ ସକାଳେ ହିଁ କାମ ଆରମ୍ଭ ହେଲା । ଦୁର୍ଗା ନନ୍ଦ ବର୍ତ୍ତମାନ ଏକ ବଡ଼ କଣ୍ଟ୍ରାକ୍ଟର । ସେ ମ୍ୟୁନିସିପାଲିଟିର କର୍ମଚାରୀ ଥିଲେ ସେତେବେଳେ । ତାଙ୍କର ତତ୍ତ୍ୱାବଧାନରେ କାମ ଦ୍ରୁତ ଗତିରେ ଆଗେଇ ଚାଲିଲା । ସତ୍ୟରଂଜନ ପାଲ ଜିଲ୍ଲା କଲେକ୍ଟର, ନଳୀନିକାନ୍ତ ପଣ୍ଡା ଆର.ଡି.ସି. । କାମ ଚାଲିଥିଲାବେଳେ ହଠାତ୍ ଦେଖାଗଲା ଯେ ପାର୍କର ପୁଲିସ କଲୋନୀ ପଟରେ ଖୁଣ୍ଟି ମରାଯାଉଛି କ'ଣ ଗୋଟାଏ ନିର୍ମାଣ ହେବା ପାଇଁ । ଶୁଣାଗଲା ଯେ ଆର୍.ଡି.ସି. ନିର୍ଦ୍ଦେଶ ଦେଇଛନ୍ତି ସେଠାରେ ଗୋଟାଏ ହୋଟେଲ ହେବା ପାଇଁ କୌଣସି ଏକ ପ୍ରାଇଭେଟ ପାର୍ଟି ଦ୍ୱାରା । ସେ ପାଲା ଚାଲିଲା କିଛିଦିନ । କିନ୍ତୁ ସେ ପରିକଳ୍ପନା ବନ୍ଦ ହୋଇଗଲା । ପାର୍କ ଥରେ ପୂରା ତିଆରି ହୋଇଗଲେ ତେଣିକି ଭାଙ୍ଗିବା କଷ୍ଟ । ସେଇଆ ହେଲା । ଗୋପବନ୍ଧୁବାଗ ବର୍ତ୍ତମାନ ସେଠାରେ ରହିଛି । କଟକ ସହର ବାସୀଙ୍କ ପାଇଁ ନିଶ୍ୱାସ ପ୍ରଶ୍ୱାସ ନେବାପାଇଁ ରହିଥିବା ସ୍ଥାନ ମଧ୍ୟରୁ ଗୋଟିଏ ।

ସେଇ ପାର୍କ ପାଖରେ କଟକ ପୌରସଂସ୍ଥା ତରଫରୁ ଏକ ଗେଷ୍ଟ ହାଉସ ନିର୍ମାଣ ହେଲା । ତାହା ନିର୍ମାଣ ହେବାପରେ ସେଇଟିକୁ ଜଣେ ପ୍ରଖ୍ୟାତ ମହିଳା ମାସକୁ ମାତ୍ର ଗୋଟିଏ ଟଙ୍କା ଭଡ଼ାରେ ନେବାପାଇଁ ଚାହିଁଲେ । ପ୍ରାୟ ସବୁ ସ୍ଥିର ହୋଇସାରିଥିଲା । କଟକ ପୌରସଂସ୍ଥାର ବୋଧହୁଏ ଏକ୍‌ଜିକ୍ୟୁଟିଭ୍ ଅଫିସର ଥିଲେ କଲ୍ଲୋଳ ଘୋଷ ଏବଂ ଅତିରିକ୍ତ ଏକ୍‌ଜିକ୍ୟୁଟିଭ୍ ଅଫିସର ଥିଲେ ଗୋପବନ୍ଧୁ ଦାସ । ମୋର ଯାହା ମନେପଡୁଛି, ସେମାନେ ଉଭୟ ବ୍ୟଥିତ ଥିଲେ ଏଥିପାଇଁ । ମୁଁ ଥାଏ ଓଡ଼ିଶା ପର୍ଯ୍ୟଟନ କର୍ପୋରେଶନରେ ଜଣେ ଡାଇରେକ୍ଟର । ବନ୍ଧୁ ଯୁଗଳ କିଶୋର ପଟ୍ଟନାୟକ ଥାଆନ୍ତି ପର୍ଯ୍ୟଟନ ମନ୍ତ୍ରୀ ଏବଂ ପର୍ଯ୍ୟଟନ

କର୍ପୋରେଶନର ଚେୟାରମ୍ୟାନ । ଏହି ଅତିଥିଶାଳାକୁ ପର୍ଯ୍ୟଟନ କର୍ପୋରେଶନ ନେବାପାଇଁ ମୁଁ ଏକ ଚିଠି ଲେଖିଲି କଟକ ପୌରସଂସ୍ଥାକୁ । ସେମାନେ ରାଜି ହୋଇଗଲେ ଏବଂ ମୁଁ ତାକୁ ଦଖଲକୁ ନେଇଗଲି । ସେତିକିବେଳେ କଟକରେ ଏକ ଜାତୀୟ କ୍ରୀଡ଼ା ପ୍ରତିଯୋଗିତା ହେଉଥାଏ ଏବଂ ସେମାନେ ଖେଳାଳିମାନଙ୍କ ରହିବା ପାଇଁ ଘର ଖୋଜୁଥାନ୍ତି । ସେମାନଙ୍କୁ ଅନ୍ୟ ପାନ୍ଥନିବାସମାନଙ୍କରେ ଭଡ଼ା ସହିତ ସମାନ ଭଡ଼ାରେ ଘର ଦିଆଗଲା ଏବଂ ମ୍ୟାନେଜିଂ ଡାଇରେକ୍ଟରଙ୍କୁ କହି ଜଣେ ମ୍ୟାନେଜର ଏବଂ କିଛି ଷ୍ଟାଫଙ୍କୁ ସେଠାରେ ରଖାଗଲା ତତ୍ତ୍ୱାବଧାରକ ଭାବରେ । ତା'ପରେ ମୁଁ ଯୁଗଳବାବୁଙ୍କୁ ନିମନ୍ତ୍ରଣ କଲି ସେଠାକୁ ଆସିବା ପାଇଁ । ସେ ଆସିଥିଲେ ଘର ଦେଖିବା ପାଇଁ କିନ୍ତୁ ଦେଖିଲେ ଯେ ଘର ନିଆସରିଚି ଏବଂ ପର୍ଯ୍ୟଟନ କର୍ପୋରେଶନ ଭଡ଼ା ଦେବା ଆରମ୍ଭ କରିଛି । ସେ ବିସ୍ମୟର ସହିତ ଅନେଇଲେ ମୋତେ ଏବଂ କିମିତି ଏ ଘର ମୁଁ ନେଇପାରିଲି ବୋଲି ପଚାରିଲେ ।

ସେପଟରେ ଉକ୍ତ ମହିଳା ଘର ନେବାପାଇଁ ପ୍ରବଳ ଚେଷ୍ଟା ପରେ ଖୋଳତାଡ଼ କଲାବେଳେ ଘର ନିଆସରିଚି ପର୍ଯ୍ୟଟନ କର୍ପୋରେଶନ ଦ୍ୱାରା ଏବଂ ଏକ ପ୍ରେସ ସମ୍ମିଳନୀ ବି ହୋଇସାରିଲାଣି ! ସେ ମୋ ଉପରେ ରାଗି କ୍ଷୁବ୍ଧ । ତା'ର କିଛି କାଳ ପରେ ସେ ମୋ ଠାରୁ ହଠାତ୍ ଦରକାର ପଡ଼ିଛି ବୋଲି କହି ଏକହଜାର ଟଙ୍କା ନେଇ ଫେରାଇ ନାହାନ୍ତି । କିନ୍ତୁ କଟକରେ ପାନ୍ଥନିବାସ ହୋଇପାରିଛି ସବୁଦିନ ପାଇଁ ।

ଠିକ୍ ସେଇପରି, କଟକ ସହରରେ ଏକ ରିଙ୍ଗ୍‌ରୋଡ୍ ପାଇଁ କଟକବାସୀଙ୍କର ବହୁଦିନର ଦାବି ପୂରଣ ହୋଇଛି । ରିଙ୍ଗ୍‌ରୋଡ୍ ନିର୍ମାଣ ହୋଇଛି । କିନ୍ତୁ ଏହାର ନାମକରଣ କ'ଣ ହେବ ? ବନ୍ଧୁ ରଘୁନାଥ ମିଶ୍ର କଟକ କଲେକ୍ଟର । ତାଙ୍କ ଉପରେ ଚାପ ପଡ଼ିବାକୁ ଆରମ୍ଭ କରିଛି । ଚାପ ବେଶି ପଡ଼ିବା ପୂର୍ବରୁ ସେ ଏଥିରୁ ମୁକ୍ତ ହେବାକୁ ଚାହାନ୍ତି । ଦିନେ ସେ ମୋତେ ପଚାରିଲେ ଯେ କଟକ ନଗରୀର ସହସ୍ରବାର୍ଷିକୀ ପାଳନର ସେକ୍ରେଟେରୀ ଭାବରେ ମୋର କିଛି ପ୍ରସ୍ତାବନା ଅଛି କି ? ମୁଁ ତାଙ୍କୁ ବାଇମୁଣ୍ଡି ମାର୍ଗ ଏବଂ ବାରବାଟୀ ମାର୍ଗ ନାମରେ ଏହାକୁ ନାମିତ କରିବା ପାଇଁ ପ୍ରସ୍ତାବନା ଦେଲି ଏବଂ ତା'ହେଲେ କାହାର କିଛି ଆପତ୍ତି ରହିବ ନାହିଁ ବୋଲି ମଧ୍ୟ କହିଲି । ସେ ଆନନ୍ଦର ସହିତ ସମ୍ମତି ଦେଲେ ଏବଂ ସେଇଦିନ ହିଁ ଏଇ ରିଙ୍ଗ୍‌ରୋଡ୍‌ର ନୂତନ ନାମକରଣ କଲେ ।

ଭ୍ରମରବର ଜେନାଙ୍କର ମଧ୍ୟ ସେଇପରି ଦିନେ ହାର୍ଟଆଟାକ୍ ହେଲା । କିନ୍ତୁ ଯେହେତୁ କଲୋନୀର ସମସ୍ତଙ୍କ ସହିତ ପରିଚିତ ଥିଲା ସେଇଯୋଗୁଁ ସେ ବଞ୍ଚିଗଲେ ସେ ଥର । ଡାକ୍ତର କିଶୋର ଚନ୍ଦ୍ର ମିଶ୍ର ଆମର ପାରିବାରିକ ବନ୍ଧୁ । ସେ ମଧ୍ୟ ସେ ଦିନ ପହଞ୍ଚିଥିଲେ ଏବଂ ଭ୍ରମରବାବୁଙ୍କୁ ତୁରନ୍ତ ଚିକିତ୍ସା ଦେଇ ଡାକ୍ତରଖାନାକୁ ନେଇ ଯାଇଥିଲେ । କିଛି ବର୍ଷ ପରେ ଭ୍ରମରବାବୁଙ୍କ ହଠାତ୍ ପରଲୋକ ହୋଇଗଲା । ଓଡ଼ିଶା ସେକ୍ରେଟେରୀଏଟ୍‌ରେ କୌଣସି ଏକ ବୈଠକରେ ଯୋଗଦେବା ସମୟରେ ।

ରଣପୁର ନିର୍ବାଚନମଣ୍ଡଳୀରେ ଭୋଟଗଣତି ଦୁଇଥର ହୋଇଥିଲା ଏବଂ ଦ୍ୱିତୀୟ ଗଣତିରେ ୰ରାମଚନ୍ଦ୍ର ରାମ ଜୟଲାଭ କରିଥିଲେ ପାଞ୍ଚୋଟି ଭୋଟରେ । ପ୍ରତିଦ୍ୱନ୍ଦ୍ୱୀ ଜରିପଡ଼ା ଜମିଦାର ରଘୁରାୟ ମୋକଦ୍ଦମା କଲେ ହାଇକୋର୍ଟରେ । ରାମଚନ୍ଦ୍ର ରାମ ହାଇକୋର୍ଟ ବାରର ସଭ୍ୟ ହୋଇଥିବାରୁ କାଳେ କୋର୍ଟ ତାଙ୍କ ପ୍ରତି ଅନୁକମ୍ପା ପ୍ରଦର୍ଶନ କରିବ ସେଇଯୋଗୁଁ ସେ ବାର କାଉନସିଲ୍‌ର ତତ୍‌କାଳୀନ ସଭାପତି ୰ବାଞ୍ଛାନିଧି ମହାପାତ୍ର ଏବଂ ସଂପାଦକ ରଙ୍ଗନାଥ ମିଶ୍ରଙ୍କୁ ନିଯୁକ୍ତ କଲେ ଆପଣାର ଓକିଲ ଭାବରେ । ରାମଚନ୍ଦ୍ର ରାମ ଓକିଲ ଭାବରେ ଆଣିଲେ ବଙ୍ଗଳାର ବିଶିଷ୍ଟ ବାରିଷ୍ଟର ସ୍ନେହାଂଶୁ ମୁଖାର୍ଜୀଙ୍କୁ ।

ସେ ତ ଜବାବ ସୁଆଲ ନୁହେଁ ରୀତିମତ ନାଟକ । ଆଇନ୍‌ର ନାଟକ । ସ୍ନେହାଂଶୁ ମୁଖର୍ଜୀଙ୍କୁ ପ୍ରତିବାଦରେ ଇଣ୍ଟରପ୍ଟ (interrupt) କଲେ ବାଞ୍ଛାନିଧି ବାବୁ । ଏଭଳି ପରିସ୍ଥିତି ହେଲା ଯେ ଆପଣାର ବିନୟ ଓ ଚତୁର ବ୍ୟବହାରରେ ସ୍ନେହାଂଶୁ କିଣିନେଲେ କୋର୍ଟର ମନକୁ । ଗୋଟାଏ ସ୍ତରରେ ବାଞ୍ଛାନିଧିବାବୁ ବାଧହୋଇ କହି ପକାଇଲେ ମନ କଥା । ରାମଚନ୍ଦ୍ର ରାମ ଏଇ କୋର୍ଟରେ ଆଇନଜୀବୀ । ତେଣୁ ଆପଣମାନଙ୍କର କିଛି ଅନୁକଂପା ବା ଦୁର୍ବଳତା ଥାଇପାରେ ତାଙ୍କ ପ୍ରତି । ଉତ୍ତର ମିଳିଲା ଯଦି ତାହା ହିଁ ସତ୍ୟ ତା' ହେଲେ ଅନୁକଂପା ବା ଦୁର୍ବଳତା ରହିବା କଥା ପ୍ରଥମେ ବାର୍‌ର, ତା' ପରେ ବେଞ୍ଚର । ବାଞ୍ଛାନିଧିବାବୁ ଯାହାକୁ ଇଂରାଜୀରେ କହନ୍ତି ଅବଷ୍ଟ୍ରକ୍ସନ (obstruction) କରିବା ଆରମ୍ଭ କଲେ । କୋର୍ଟ ବାଧହୋଇ ଅନୁମତି ଦେଲା ସ୍ନେହାଂଶୁଙ୍କୁ ତାଙ୍କର ବକ୍ତବ୍ୟ ଶେଷ କରିବା ପାଇଁ ।

ସେ ଦିନ କୋର୍ଟରେ ସ୍ନେହାଂଶୁ ଆପଣାର ବକ୍ତବ୍ୟ ରଖିଲାବେଳେ କହିଲେ ଯେ ମି.ଲର୍ଡ଼, ଥରେ ମୁଁ ଏବଂ ଜଷ୍ଟିସ୍ ଡାଉସନ (Dowson) ସ୍କଟଲାଣ୍ଡରେ ଘୋଡ଼ାରେ ବୁଲିବାକୁ ଯାଉଥିଲୁ । ସେ କହିଲେ Acharya, Do you think judges dicide cases, they simply dispose off them. ଲର୍ଡ଼ ଡାଉସନ ଥିଲେ ପ୍ରିଭି କାଉନସିଲର ସଭାପତି । ମୁଁ ପଚାରିଲି ମୋର ଭଗ୍ନୀପତି ଓ ଆଇନ୍‌ଶିକ୍ଷା ଗୁରୁ ମାଧବାନନ୍ଦ ଦାସଙ୍କୁ । ସାର୍, ଏତେବଡ଼ କଥାଟିଏ ସେ କେମିତି କହିପାରିଲେ । ମାଧବାନନ୍ଦବାବୁ ମୁହଁରେ ସେଇ ଦୁଷ୍ଟାମିର ମୁରୁକିହସା ଏବଂ ବକ୍ତବ୍ୟ । କୋର୍ଟ ତୁମକୁ ଯଦି ଭୟ କରୁଥାଏ ତମେ ଯାହା ଇଚ୍ଛା ତାହା କହିପାରିବ ।

ମାଧବାନନ୍ଦବାବୁ ଏବଂ ଆଡଭୋକେଟ ବିଜୟ ରାୟ ମୋତେ ଠିକ୍ ଏଇକଥା କହିଥିଲେ ଯେତେବେଳେ ପ୍ରସିଦ୍ଧ ବାରିଷ୍ଟର ପି.ଆର୍. ଦାସ୍ ଓଡ଼ିଶା ହାଇକୋର୍ଟରେ ଯୁକ୍ତି କରୁ କରୁ କହିଲେ ଯେ, If A is A, B is B if A would have been B, B would not have been created. Hence mine is mine, mine is not quarry If mine would have been quarry, the word quarry would not have been created. Primary English would teach you this.ବିଜୟ ରାୟ ଆଣିଥିଲେ ପି.ଆର. ଦାସଙ୍କୁ ।

ପି.ଆର. ଦାସ ଆସିଥିଲେ କୋର୍ଟକୁ ଏକ ଧଳା ଟ୍ରାଉଜର ପିନ୍ଧି, ଗୋଡ଼ରେ ଥିଲା କଳା ବାଟା ରବର ଗାଧୁଆ ଚପଲ । ଆପ୍ରନଟାକୁ ମୋଡ଼ ମୋଡ଼ କରି ଧରିଯାଆନ୍ତି ।

ପ୍ରସିଦ୍ଧ ଆଇନଜ୍ଞ ସି.କେ. ଦପ୍ତରୀ ବେଶ୍ କୌତୁକପ୍ରିୟ । ଥରେ କୌଣସି ଏକ କେଶ୍‌ରେ ସେ ଆପଣାର ବକ୍ତବ୍ୟ ରଖିଲାବେଳେ ଗୋଟାଏ ରେଫରେନ୍ସ ବହିକୁ କୋର୍ଟକୁ ଦେଲେ । ଯେଉଁ ବିଚାରପତି ବହିଟିକୁ ତାଙ୍କ ହାତରୁ ନେଲେ ସେ ଦେଖିଲେ ଯେ ବହିରେ ଗୋଟାଏ ଓଡ଼ଶ ଅଛି । ସେ କୌତୁକର ସହିତ କହିଲେ ଯେ, Mr. Dafftory, A bug has travelled with the book. ସଂଗେ ସଂଗେ ଦପ୍ତରୀ ଉତ୍ତର ଦେଲେ Me. Lord, I cannot help it. They have always travelled from Bar to the bench.

ଆଜିକୁ ପ୍ରାୟ ପନ୍ଦର କୋଡ଼ିଏ ବର୍ଷ ତଳେ ଦପ୍ତରୀ ଆସିଥିଲେ ଓଡ଼ିଶା ହାଇକୋର୍ଟକୁ । ମୋକଦ୍ଦମା ସରିଲା ପରେ ସେ ଡାକିଲେ ଚାଲଯିବା ବାର୍‌କୁ । ପ୍ରଥମତଃ ଓଡ଼ିଶା ହାଇକୋର୍ଟ ପାଖରେ ବାର୍ ନାହିଁ । ତା'ପରେ ଦପ୍ତରୀଙ୍କ ସାଙ୍ଗରେ ଯିବ କିଏ ? ସେତେବେଳେ ଅଧିକାଂଶ ସିନିଅର ଓକିଲ ମଦ୍ୟପାନ କରୁ ନ ଥିଲେ । ତରୁଣମାନଙ୍କର ଯିବା ପାଇଁ ସାହସ କୁଳାଇଲା ନାହିଁ । ସହାସ୍ୟରେ ଦପ୍ତରୀ ଉତ୍ତର ଦେଲେ I thought that the Bar inside is poor, but it seems the Bar outside also is poor.

ୟୁନିଭର୍ସରେ ଏକ ବହି ଉନ୍ମୋଚନ କରିବାକୁ ଆସିଥାନ୍ତି ପ୍ରିଭି କାଉନସିଲର ଚେୟାରମ୍ୟାନ୍ ଲର୍ଡ଼ ଟେମ୍ପଲଷ୍ଟୋନ । ସାଙ୍ଗରେ ଆସିଥାନ୍ତି ଜଷ୍ଟିସ ରଙ୍ଗନାଥ ମିଶ୍ର । ଓଡ଼ିଶାର ହାଇକୋର୍ଟ ସାଂସ୍କୃତିକ ଐତିହ୍ୟ ନାମକ ଏକ ଇଂରାଜୀ ପୁସ୍ତକ ଉନ୍ମୋଚିତ ହେଉଥାଏ । ଜଷ୍ଟିସ୍ ହରିହର ମହାପାତ୍ରଙ୍କ Commemorative Volume ଭାବରେ ଏ ବହିଟି ଉନ୍ମୋଚିତ ହେଉଥାଏ । ସେ ବିଷୟରେ ଜଷ୍ଟିସ ମହାପାତ୍ର କିଛି ଜାଣି ନ ଥାନ୍ତି । ବହି ଉନ୍ମୋଚନ ହେବାର କିଛିଦିନ ପୂର୍ବରୁ ତାଙ୍କୁ ଆମେ ଜଣାଇଦେଲୁ ଯେ ସେ ଏ ସଭାରେ ସଭାପତିତ୍ୱ କରିପାରିବେ ନାହିଁ । ସେ ୟୁନିଭର୍ସର ସଭାପତି କିନ୍ତୁ ସଭାପତିତ୍ୱ କରିପାରିବେ ନାହିଁ କିମିତି ? ସେ ବିସ୍ମିତ ହୋଇ ହସି ହସି ପଚାରିଲେ ତମେ ମୋତେ ଏହା ଭିତରେ ସଭାପତି ପଦରୁ ବାହାର କରି ଦେଲଣି କି ? ଆମ ତରଫରୁ ଉତ୍ତର ଦିଆଗଲା ଯେ ତାଙ୍କ କଥା କ'ଣ ଆମେ ସବୁବେଳେ ମାନିବାକୁ ବାଧ୍ୟ ? ସେ ଆହୁରି ବିସ୍ମିତ ହୋଇ ଅନେଇଲେ ଏବଂ ଉମେଶ/ସନ୍ତୋଷ ତାଙ୍କୁ ବହିର ଏକ ନମୁନା ଆଣି ଦେଖାଇଲେ । ମନମୋହନ ମିଶ୍ର ତାଙ୍କର ଜୀବନୀ ଲେଖିଛନ୍ତି କାବ୍ୟିକ ଇଂରାଜୀରେ । ତାଙ୍କର ଏକ ସଦ୍ୟ ଫଟୋ ଉଠାଇଛନ୍ତି ଏଚ.ଏନ୍.ଦାସ ତାଙ୍କର ଅଜାଣତରେ । ସେଇଟି ଛପା ହୋଇଛି ସେ ବହିରେ । ଜଷ୍ଟିସ୍ ମହାପାତ୍ର କେବଳ ଏତିକି କହିଲେ ଯେ ତମେମାନେ ମୋ ବିରୋଧରେ ଏକ ଷଡ଼ଯନ୍ତ୍ର କରିଦେଇଛ ନା ଏହା ଭିତରେ !

ବହିର ଉନ୍ମୋଚନ ଉତ୍ସବରେ ସଭାପତିତ୍ୱ କଲେ ଡକ୍ଟର ଏଲ୍. ଏସ୍. ସିଙ୍ଗଭି । ସେତେବେଳେ ସେ ଆମର ହାଇକମିଶନର ଇଂଲଣ୍ଡରେ । ବର୍ତ୍ତମାନ ବି.ଜେ.ପି. ଦଳର ଜଣେ ଏମ୍.ପି. । ବହିର ଉନ୍ମୋଚନ ଉତ୍ସବରେ ଟେମ୍ପିଲଷ୍ଟୋନଙ୍କୁ ଲକ୍ଷ୍ୟକରି କହିଲି ଯେ ଯେଉଁ ଦେଶରେ ପଥରରେ ଟେମ୍ପଲ ଗଢ଼ା ହୋଇଛି, କଳା ଫୁଟିଛି ପଥରର ବୁକୁରେ ସେଇ ଦେଶର ସାଂସ୍କୃତିକ ପରମ୍ପରା ଉପରେ ଲିଖିତ ପୁସ୍ତକକୁ ଟେମ୍ପିଲଷ୍ଟୋନ ନାମକ ବ୍ୟକ୍ତି

ଉନ୍ମୋଚନ କରିବା ଯଥାର୍ଥ ଏବଂ ଉଚିତ । ଏହା ସହିତ ଉପରେ ଲେଖା ଯାଇଥିବା ଗୋଟିଏ ଦୁଇଟି anecdotes (ଆନିକ୍‌ଡୋଟ୍)କୁ ମଧ କହି ଦେଇଥିଲି କଥା ଛଳରେ । ସେ ଉତ୍ତର ଦେଇ କହିଥିଲେ ଯେ ଯେଉଁ ଦେଶରେ ପଥରରେ ମନ୍ଦିର ତିଆରି ହୋଇଛି, ସ୍ଥାପତ୍ୟରେ କାବ୍ୟ ଝରୁଛି ତାହା ଆଗରେ ମୁଁ ନମ୍ରତାର ସହିତ ଆପଣାର ଅର୍ଘ୍ୟ ନିବେଦନ କରୁଛି ସେଇ ମଣିଷ ପାଖରେ ଯେ ଏହାର ଉତ୍ତରାଧିକାରୀ ।

ଜଷ୍ଟିସ ମହାପାତ୍ରଙ୍କର ଜୀବନ ସଂକ୍ଷିପ୍ତ ହୋଇ ଆସୁଥିଲା ଏ ବିଷୟରେ ଅନେକ ସଚେତନ ଥିଲେ । ତାଙ୍କର ପେଟର ପେରିଟୋନିଆନ ଜୋନ୍ ବା ଶୂନ୍ୟ ସ୍ଥାନରେ ଏକ ଟ୍ୟୁମର ଦେଖାଯାଇଥିଲା । ୯୪ ବର୍ଷ ବୟସରେ ଆଉ ତା'ର ଅସ୍ତ୍ରୋପଚାର ସମ୍ଭବ ନୁହେଁ । ତେଣୁ କେବଳ ମୃତ୍ୟୁକୁ ହିଁ ଅପେକ୍ଷା କରିବା ଛଡ଼ା ଉପାୟ କ'ଣ ଅଛି ? ଏହି କ୍ରୁର ବାସ୍ତବତାକୁ ଗ୍ରହଣ କରି ବହିଟି ପ୍ରକାଶିତ ହୋଇଥିଲା ।

ଅନ୍ୟ କେତେକ ଅନୁଷ୍ଠାନ ମଧ ସେଇପରି ଅଭିନନ୍ଦନିକା ପ୍ରକାଶ ପାଇଁ ଚାହିଁଥିଲେ କିନ୍ତୁ ମହାକାଳ ତାହା କରାଇଦେଲା ନାହିଁ ।

ମନେପଡୁଛି ।

ମୁଁ କଲେଜରେ ପଢୁଥାଏ । ଶିବାଜି ଓ ମୁଁ ରହୁଥାଉଁ କଲେଜ ଛକରେ ଥିବା (ବର୍ତ୍ତମାନ ପ୍ରଜାପତି ବ୍ରହ୍ମାକୁମାରୀ ଆଶ୍ରମର ପାଖଘର) ଏକ ଦି' ମହଲା କୋଠାର ଉପର ମହଲାରେ । ଶିବାଜି (ଶିବାଜି ପଟ୍ଟନାୟକ, ସି.ପି.ଏମ୍. ନେତା) ମୁଁ ଦୁହେଁ ରହୁଥିଲୁ ସେଇ ଅଫିସରେ ।

କଟକ ଆସନ୍ତି, କଲିକତାର ପ୍ରସିଦ୍ଧ ଆଡ୍‌ଭୋକେଟ ବାରିଷ୍ଟର ସାଧନ ଗୁପ୍ତ । ସେ ଛଅମାସର ହୋଇଥିଲାବେଳେ ଆପଣାର ଦୃଷ୍ଟିଶକ୍ତି ହରାଇଥିଲେ ବସନ୍ତ ରୋଗରେ । ପାଠପଢ଼ି ଏମ୍.ଏ୍. ପାସ୍ କଲାପରେ ବାରିଷ୍ଟର ହୋଇ ଓକିଲାତି କରୁଥିଲେ କଲିକତାରେ । ପରେ ସେ ପାର୍ଲ୍ୟାମେଣ୍ଟର ସଭ୍ୟ ହୋଇଥିଲେ ମଧ । ଦଣ୍ଡକାରଣ୍ୟ ସମସ୍ୟା ଉପରେ ତାଙ୍କର ଭାଷଣ ଏପରି ଚମତ୍କାର ହୋଇଥିଲା ଯେ ଷ୍ଟେଟ୍‌ସମାନ ଖବରକାଗଜ ଲେଖିଥିଲା ଯେ Divine eyed ସାଧନ ଗୁପ୍ତ ମନ୍ତ୍ରୀଙ୍କ ଅପେକ୍ଷା ବେଶି ତଥ୍ୟ ଜାଣନ୍ତି ଏହା ପ୍ରମାଣ କରିଛି ତାଙ୍କର ବକ୍ତୃତା ଏବଂ ତଥ୍ୟ ଉପସ୍ଥାପନା ।

ସାଧନ ଗୁପ୍ତ ଆସିଥାଆନ୍ତି ৺ ବିଜୟଚନ୍ଦ୍ର ଦାସଙ୍କ ମୋକଦ୍ଦମା ଲଢ଼ିବା ପାଇଁ । ପାରଳା ମହାରାଜା ଓ ବିଜୟଚନ୍ଦ୍ର ଦାସ ଥିଲେ ଲୋକସଭା ପାଇଁ ପରସ୍ପର ପ୍ରତିଦ୍ୱନ୍ଦ୍ୱୀ । ପାରଳା ମହାରାଜାଙ୍କୁ ହରାଇ ବିଜୟଚନ୍ଦ୍ର ଦାସ ଜୟଯୁକ୍ତ ହେଲେ । ତାଙ୍କ ବିରୋଧରେ ପାରଳା ମହାରାଜା ମୋକଦ୍ଦମା କଲେ ହାଇକୋର୍ଟରେ ଏବଂ ତାଙ୍କ ତରଫରୁ ଓକିଲ ଆସିଲେ ଶ୍ରୀ ପାନାଲାଲ, ଯେ ଆନ୍ତର୍ଜାତିକ କୋର୍ଟରେ ବିଚାରପତି ଥିଲେ । ଦୁଇ ଓକିଲ ଲଢ଼ିଲେ ମୋକଦ୍ଦମା ଏବଂ ଶୁଣାଣି ସରିଲା ପରେ ଏକ ସଭାରେ ଦୁହେଁ ଭାଷଣ ଦେଲେ । ସେଇ ରାତିରେ ଫେରିଯିବାର ଥିବାରୁ ସେ ଭାଷଣ ଆଗ ସଂକ୍ଷେପରେ ସାରି କହିଲେ ଯେ ସାଧନ ମୋ ଠାରୁ ବେଶି ଯୋଗ୍ୟ ଉତ୍ତରାଧିକାରୀ ଆମର ପରମ୍ପରା ଓ ଇତିହାସର ।

ସାଧନ ଗୁପ୍ତ କେବଳ ମୋକଦ୍ଦମାରେ ଜିତିଲେ ନୁହେଁ, ତା'ର ଖୁବ୍ ଅଳ୍ପଦିନ ବ୍ୟବଧାନରେ ଦୁହେଁ ଏକ ଉପନିର୍ବାଚନରେ ପରସ୍ପର ପ୍ରତିଦ୍ୱନ୍ଦ୍ୱୀ ହେଲେ । ସାଧନ ଗୁପ୍ତ କମ୍ୟୁନିଷ୍ଟ ପାର୍ଟି ତରଫରୁ ପ୍ରାର୍ଥୀହୋଇ ଜୟଲାଭ କଲେ ।

ସାଧନ ଗୁପ୍ତ ପରେ ପଶ୍ଚିମବଙ୍ଗର ଆଡ଼ଭୋକେଟ ଜେନେରାଲ ହୋଇଥିଲେ କିଛିବର୍ଷ ପାଇଁ । ସାଧନ ଭଲ ବକ୍ତୃତା ଦିଅନ୍ତି ଏବଂ ଗାଆନ୍ତି ମଧ୍ୟ ବେଶ୍ ଭଲ । ସେ କଟକ ଆସିଥିଲେ ବିଂଶ ଶତାବ୍ଦୀର ତୃତୀୟ ଦଶକରେ । ହଠାତ୍ ସେଦିନ କଲେଜଛକ ଦେଇ ଯାଉ ଯାଉ ପଚାରିଲେ ସେ ବଡ଼ଗଛଟା ତଥାପି ଅଛି ନା ନାହିଁ ? କଲେଜ ରାସ୍ତା ଏତେ ଚଉଡ଼ା ନ ଥିଲା ଏବଂ ଠିକ୍ କଲେଜ ଛକର ମୁହଁ ଉପରେ ଏକ ବିରାଟକାୟ ଗଛ ଥିଲା । ବର୍ତ୍ତମାନ ତାହା ଆଉ ନାହିଁ । ରେଭେନ୍ସା କଲେଜ ବଟାନିକାଲ ଗାର୍ଡ଼ନରେ ପଶୁ ପଶୁ ସେ ମୋତେ ପଚାରିଲେ ଆମେ ବୋଧହୁଏ ବଟାନିକାଲ ଗାର୍ଡ଼ନ ଭିତରକୁ ଆସିଗଲେ ନା ? ସେ ଆଗଥର ବି ସେଇ ଗାର୍ଡ଼ନ ଭିତରକୁ କୁଆଡ଼େ ଆସିଥିଲେ ବୁଲିବା ପାଇଁ । ଶୀତଦିନ ଆରମ୍ଭ ହୋଇଯାଇଥିଲା । ସେଇଟା ଥିଲା ଶୁକ୍ଳପକ୍ଷ । ହଠାତ୍ ରାତି ଦଶଟା ବେଳେ ସାଧନ କହିବେ ଚାଲଯିବା ଯୋବ୍ରା ମହାନଦୀ କୂଳକୁ । ସେଇଠି ପହଞ୍ଚି ଗୀତ ଗାଇଲେ ସେ ବେଶ୍ କିଛି ସମୟ ଧରି । ସେ ରହୁଥାନ୍ତି କଲେଜଛକ ଡାକ ବଂଗଳାରେ । ସେ ଡାକବଂଗଳା ଆଉ ନାହିଁ । ସେଇଠି ସି.ଡି.ଏ. ମାର୍କେଟ ତିଆରି ହୋଇଛି । ତାହା ଥିଲା ରେଭେନ୍ସା କଲେଜକୁ ପରୀକ୍ଷା ଇତ୍ୟାଦି ପାଇଁ ଆସୁଥିବା ଅଧ୍ୟାପକମାନଙ୍କ ପାଇଁ ରହିବା ସ୍ଥାନ । ପରିଷ୍କାର ଏବଂ ଶସ୍ତା । ତାକୁ ଭାଙ୍ଗିଦେବାର କୌଣସି ଯାଥାର୍ଥ୍ୟ ନ ଥିଲା । ସେ ଘର ଥାଇ ମଧ୍ୟ ମାର୍କେଟ କଂପ୍ଲେକ୍ସ ହୋଇପାରିଥାନ୍ତା ଟିକିଏ ପ୍ଲାନିଂ କରିଥିଲେ । କିନ୍ତୁ ପ୍ଲାନିଙ୍ଗକୁ ପଚାରୁଛି କିଏ ?

ସାଧନ ଗୁପ୍ତଙ୍କ ପରେ ବଂଗଳାର ଆଡ଼ଭୋକେଟ ଜେନେରାଲ ହେଲେ ନରନାରାୟଣ ଗୁପ୍ତ । ଆଗ ଓଡ଼ିଶାରେ ଏଫ୍.ଏନ୍.ଗୁପ୍ତ ଦ୍ୱାରା ତିଆରି ପେନସିଲ ଲୋକପ୍ରିୟ ଥିଲା । ବୟସ୍କ ଲୋକମାନଙ୍କର ମନେଥିବ । ସେଇ ଏଫ୍.ଏନ୍. ଗୁପ୍ତଙ୍କର ପୁଅ (ବା ନାତି ?) ନରନାରାୟଣଙ୍କ ସହିତ ମୋର ପରିଚିତି ହୁଏ ମସ୍କୋ ସହରରେ । ଆମେ ଏକା ସାଂଗରେ ଫେରୁ ଭାରତବର୍ଷକୁ । ଦିଲ୍ଲୀରେ ହଠାତ୍ ଆମ ପାଖରେ ଜୁଟିଲେ ଜଣେ ଜ୍ୟୋତିଷ କିନ୍ତୁ ପାମିଷ୍ଟ । ନରନାରାୟଣଙ୍କ ହାତ ଦେଖି ସେ କଣ ପ୍ରଶ୍ନ ଅଛି ବୋଲି ପଚାରିଲେ । ନରନାରାୟଣ ଉତ୍ତର ଦେଇ କହିଲେ ଯେ ଦେଖିଲେ ମୁଁ କମ୍ୟୁନିଷ୍ଟ ପାର୍ଟିର ସଦାବେଳିଆ କର୍ମୀ (whole timer) ହୋଇ ପାରିବି କି ନାହିଁ ? ପାମିଷ୍ଟଙ୍କର ହାତ ଦେଖା ସରିଯାଇଥିଲା ଏତିକିରେ । କମ୍ୟୁନିଷ୍ଟ ପାର୍ଟିର ସଦାବେଳିଆ କର୍ମୀ ଥିଲା ଗୌରବର ସନ୍ତକ । ପରବର୍ତ୍ତୀ କାଳରେ ତାହା ରହିଲା ନାହିଁ । ଧନାଢ଼୍ୟ ପାର୍ଟି ସଭ୍ୟ ବା ସମର୍ଥକଙ୍କର ସେମାନେ ବୋଲକରା ପାଲଟିଲେ । ହୋଲ୍ ଟାଇମର୍‌ମାନଙ୍କୁ ପାର୍ଟି ଓ୍ୱେଜ୍ (party wage) ମିଳିଲା ନାହିଁ । ସେମାନେ ଦାନ ଖଇରାତି ଉପରେ ନିର୍ଭର କଲେ । ଫଳରେ ପାର୍ଟି ହୋଲଟାଇମର୍ ହେବା ପାଇଁ କାହାରି ସାହସ ପାଇଲା ନାହିଁ ।

କଟକରେ କଲେକ୍ଟର ଥାଆନ୍ତି ବିନୋଦ ଝା । ବ୍ରେନ୍ ଟ୍ୟୁମର ରୋଗରେ ଆକ୍ରାନ୍ତ ହୋଇ ସେ ଅବସର ନେଇଗଲେ ଆଗରୁ । ବିହାରର ଲୋକ, ଟିପିକାଲ ବିହାରୀ । ବୁଝିଗଲେ ସେ ହଟିବା ଲୋକ ନୁହନ୍ତି । କଟକ ପୌରସଂସ୍ଥାର ଶତବାର୍ଷିକୀ ହେଉଥାଏ । ତାଙ୍କୁ ମୁଁ ଯାଇ ଭେଟିଲି ଏକ ମ୍ୟାପ ସହିତ । କଟକର ଗୋଟିଏ ନର୍ଦ୍ଦମା ହେଉଛି ମୁଖ୍ୟ ଯାହା ଷ୍ଟର୍ମ ୱାଟର ଚାନେଲ ଭାବରେ ନାମିତ । ମହାନଦୀରୁ ତାହା ବାହାରି କାଠଯୋଡ଼ିରେ ପଡ଼ିଛି । ସେ ନାଳର ଦୁଇ ପାଖ ବେଶ୍ କିଛି ସରକାରୀ ଏନ୍‌କ୍ରୋଚ୍‌ମେଣ୍ଟର ଶିକାର ହୋଇଛି । ନାଳର ଦୁଇ ପାଖରେ ଦୁଇଟି ରାସ୍ତା ଖୋଲିଗଲେ ଏବଂ ମଝି ନାଳକୁ ସିମେଣ୍ଟ ଲଗାଇ ପକ୍କା କରିଦେଇ ତାକୁ କଭର୍ କରିଦେଲେ କଟକର ମୁଖ୍ୟରାସ୍ତାର ଟ୍ରାଫିକ୍ କେତେ କମିଯାଆନ୍ତା ? ସେ ଦେଖିଲେ ଏବଂ କହିଲେ ମୁଁ ଚେଷ୍ଟାକରିବି । ଦେଖାଯାଉ କେତେ ସଫଳ ହେଉଛି ! କାମ ଆରମ୍ଭ ହେଲା ପ୍ରଭାତ ସିନେମାଠାରୁ ଛତ୍ରବଜାର ପର୍ଯ୍ୟନ୍ତ । ରାସ୍ତା ହୋଇଗଲା । ସବୁ ଚାପକୁ ବିନୋଦ ଏଡ଼ାଇ ଦେଇଗଲେ । ଏହା ଫଳରେ ବର୍ତ୍ତମାନ ଡି. ଆର୍.ଡି.ଏ. ଗେଷ୍ଟ ହାଉସ, ୱାର୍କିଂ ଉଇମେନ୍ସ ହଷ୍ଟେଲ ପ୍ରଭୃତି ଯେଉଁ ଜମିରେ ହୋଇଛି ସେ ଜମିସବୁ ଆବାଦ ହୋଇଗଲା । କିନ୍ତୁ ଏ କାର୍ଯ୍ୟ ସଂପୂର୍ଣ୍ଣ କରିବା ପାଇଁ ବିନୋଦ ଝା ରହିଲେ ନାହିଁ କଟକ କଲେକ୍ଟର ପଦବୀରେ ।

ଠିକ୍ ସେଇପରି ମନେପଡୁଛି ଐତିହାସିକ ୟୁନିଅନ କ୍ଲବ କଥା । ଏହି କ୍ଲବର ଇତିହାସକୁ ହେଜିଲେ ଜଣାପଡ଼େ କେବଳ ଗୋରାମାନଙ୍କ ପାଇଁ ଉଦ୍ଦିଷ୍ଟ କଟକ  କ୍ଲବ ବିରୋଧରେ ଜାତୀୟତାବାଦୀମାନେ ୟୁନିଅନ କ୍ଲବ ପ୍ରତିଷ୍ଠା କରିଥିଲେ । ସେମାନଙ୍କ ମଧ୍ୟରେ ଜାତୀୟ ଗୌରବ ମଧୁସୂଦନ ଦାସ, ଦେଶପ୍ରାଣ ଲକ୍ଷ୍ମୀନାରାୟଣ ପଟ୍ଟନାୟକ ଏବଂ ତତ୍‌କାଳୀନ ପ୍ରସିଦ୍ଧ ଆଇନଜୀବୀ ସୁବାରାଓ ଅଗ୍ରଗଣ୍ୟ । ଏକଦା ଏହି କ୍ଲବର ପ୍ରସିଦ୍ଧି ବେଶ୍ ଥିଲା ଏବଂ ଉନ୍ନତ ଧରଣର କ୍ରୀଡ଼ା ସାମଗ୍ରୀ ସହିତ ଏହି କ୍ଲବର ପରିବେଷିତ ଖାଦ୍ୟ ଉତ୍କୃଷ୍ଟ ଏବଂ କମ୍ ଦରର ଥିଲା । କିନ୍ତୁ ଗୋଟାଏ ସମୟରେ ନାନା ଗ୍ରୁପ ବିବାଦରେ ଜଡ଼ିତ ହୋଇ ଏହି କ୍ଲବର ମା' ବାପା ଆଉ କେହି ନ ଥିଲେ । ଘର ଭାଙ୍ଗି ପଡ଼ିଥିଲା । କ୍ଲବ ଜମିର ଗୋଟାଏ ଅଂଶ ଭଂଜକଳା ମଣ୍ଡପ ନେଇ ଯାଇଥିଲେ କିନ୍ତୁ ସେମାନଙ୍କ ପାଇଁ ମଧ ଜମି କୁଳାନ ହେଉ ନ ଥିଲା । କାରଣ ଏହାର ଗୋଟାଏ ଅଂଶକୁ ଜଣେ 'ତଳିଆ' କିନ୍ତୁ ଶକ୍ତିଶାଳୀ କର୍ମଚାରୀ ମାଡ଼ି ବସିଥିଲେ । ଷ୍ଟର୍ମ ୱାଟର ଚାନେଲକୁ ସଂଯୋଗ କରୁଥିବା ଏହାର ନାଳର ବାଟ ନ ଥିବାରୁ ଏହା ଏକ କ୍ଷୁଦ୍ର ପୋଖରୀରେ ପରିଣତ ହୋଇଥିଲା । ସତ୍ୟରଂଜନ ପାଲ ଥାଆନ୍ତି କଲେକ୍ଟର । ତାଙ୍କୁ ମୁଁ ଏକଥା କହିଲି ଏବଂ ପୌରସଂସ୍ଥା ତରଫରୁ ସାହାଯ୍ୟ ଲୋଡ଼ିଲି । ସେ ସମ୍ମତି ଦେଲେ ଏବଂ ୟୁନିୟନ କ୍ଲବର ଘର ମରାମତି, ନାଳ ତିଆରି, ମଧୁସୂଦନ ଦାସଙ୍କ ଏକ ପ୍ରତିମୂର୍ତ୍ତି ନିର୍ମାଣ ହୋଇଗଲା ପୌରସଂସ୍ଥା ତରଫରୁ । ସେଇ ସମୟଟା ହେଉଛି ସଂଜୟ ଗାନ୍ଧୀଙ୍କର ଯୁଗ । ସେ କଟକ ଆସିବାର କାର୍ଯ୍ୟକ୍ରମ ହେଉଥାଏ । ଏତିକିବେଳେ ଆମେ ସେଠାରେ ଏକ open-air  ଚକ୍ଷୁଚିକିତ୍ସା ଶିବିର କରୁଥାଉଁ । କିଏ ପ୍ରଚାର କରିଦେଲା

ଯେ 'ଋତୁରାଜ ବସନ୍ତ' ସଂଜୟ ଗାନ୍ଧୀ ସେଠାକୁ ଆସିବେ । କିଏ ପ୍ରଚାର କଲା କହିପାରିବି ନାହିଁ । କିନ୍ତୁ ତଦ୍ୱାରା ଆମର ଗୋଟାଏ ଲାଭ ହେଲା । ଯେଉଁ କାମଯାକ ସରିପାରି ନ ଥାନ୍ତା ହୁଏତ, ସବୁଯାକ କାମ ସରିଗଲା । ସେ ନ ଆସିଲେ ନାହିଁ । ତେବେ ତାଙ୍କ ଗାଡ଼ି ଚଳାଉଥିବା ଓ.ଟି.ଡି.ସି. ଡ୍ରାଇଭରଠାରୁ ଶୁଣିଛି ଯେ ସେ ସ୍ପିଡ୍‌କୁ ଭଲ ପାଅନ୍ତି ଏବଂ ସେଇ ସ୍ପିଡ୍‌ଟା Wreckless ହେବା ପର୍ଯ୍ୟନ୍ତ । ତାଙ୍କର ପରଲୋକ ହୋଇଗଲା ଉଡ଼ାଜାହାଜ ଦୁର୍ଘଟଣାରେ ତାଙ୍କର Wrecklessness ଯୋଗୁଁ ।

ଆମେ ଦଳେ ପ୍ରତିନିଧି ଯାଉଥାଉ ଚୀନ୍ । ମନମୋହନ ମିଶ୍ର, ଡକ୍ଟର ରାଧାନାଥ ରଥ, ହରିଶ୍ଚନ୍ଦ୍ର ବକ୍ସିପାତ୍ର, ରବି ପାଣିଗ୍ରାହୀ, ଅବିର ପାଢ଼ୀ ଏବଂ ମୁଁ ପ୍ରତିନିଧି ଦଳରେ ଥାଉଁ । ଆମେ କଲିକତାର ସୀତା ଟ୍ରାଭେଲର୍ସରେ ପହଞ୍ଚି ଏଇ ସଂବାଦ ଶୁଣିଲୁ । ସଂଜୟ ଗାନ୍ଧୀଙ୍କ ମତ ଏବଂ କାର୍ଯ୍ୟର ଆମେ ସମସ୍ତେ ବିରୋଧୀ ଥିଲୁ । କିନ୍ତୁ ଏକ ତରୁଣର ମୃତ୍ୟୁ ଆମ ସମସ୍ତଙ୍କୁ ବ୍ୟଥିତ କଲା । ମାଆ ଆଗରେ ପୁତ୍ରର ମୃତ୍ୟୁ ହେଲେ ମାଆର ଶୋକର ଚିନ୍ତା ଆମ ସମସ୍ତଙ୍କୁ ମୂହ୍ୟମାନ କରିଦେଲା । ସେ ଦିନ ସୀତା ଟ୍ରାଭେଲର୍ସରେ ଯାତ୍ରୀମାନଙ୍କର ଭୀଷଣ ଭିଡ଼ । ଆମକୁ ଦୁଃଖିତ ଦେଖି ସମସ୍ତେ ପଚାରିବାକୁ ଆରମ୍ଭ କଲେ କାରଣ । ଭାରତୀୟ ପରମ୍ପରା ବହନ କରିଥିବା ଯାତ୍ରୀମାନଙ୍କ ଭିତରେ ଭାରତୀୟ ପରମ୍ପରାପୁଷ୍ଟ ଶୋକ ଖେଳିଗଲା । ଶତ୍ରୁ ହେଲେ ବି ତା'ର ମୃତ୍ୟୁ ବିଶେଷତଃ ଅକାଳ ମୃତ୍ୟୁ ସମସ୍ତଙ୍କୁ ବ୍ୟଥିତ କରିଦେଲା ।

ଠିକ୍ ସେଇପରି । ଇନ୍ଦିରାଗାନ୍ଧୀଙ୍କର ମୃତ୍ୟୁ ସଂବାଦ ଆମେ ଶୁଣିଲୁ କଲିକତାସ୍ଥିତ ଜର୍ମାନ କନସୁଲେଟରେ । ତାଙ୍କର ରାଷ୍ଟ୍ରଦୂତାବାସରୁ ବାର୍ତ୍ତାଥିଲା, Indira Gandhi shot down dead by her security force, close the consulate. ଚକିତ ସଂବାଦ । ତା' ପରଦିନ ସେ ଫେରିଥାନ୍ତି ଓଡ଼ିଶାରୁ । ତାଙ୍କୁ ମାରିଦେବା ପାଇଁ ଯୋଜନା ଖବର ସେ ପାଇ ସାରିଥାନ୍ତି । ତେଣୁ ସବୁ ବକ୍ତୃତାରେ ସେ ବିଷୟ ଉଲ୍ଲେଖ କରୁଥିଲେ । ଫେରିଲୁ ପାର୍କଷ୍ଟ୍ରିଟ୍‌ରେ ଆମର ରହିବା ସ୍ଥାନକୁ । ରାସ୍ତାଘାଟ ନିଶୂନ ହୋଇ ଆସୁଥିଲା । ଠାଏ ଠାଏ ନିଆଁ ଜଳିବା ଦେଖିଲୁ । ପାର୍କ ଷ୍ଟ୍ରିଟ୍‌ରେ ଚେକୋସ୍ଲୋଭାକିଆର କନସୁଲେଟ ଜେନେରାଲ ଅଫିସ । ସେଠାରେ ପହଞ୍ଚି ଦେଖିଲୁ ଯେ ସେଠାରେ ମଧ୍ୟ ସମାନ ପ୍ରକାରର ବାର୍ତ୍ତା ଏବଂ ସବୁ ବନ୍ଦ ହେବାକୁ ବସିଛି ।

କ୍ରମେ ଅବସ୍ଥା ସଙ୍ଗିନ ହେବାକୁ ଲାଗିଲା । କର୍‌ଫ୍ୟୁ (curfew) ବା ସାଂଧ୍ୟଆଇନ୍ ଜାରି ହୋଇଗଲା, ରାସ୍ତାଘାଟ ଗାଡ଼ିଶୂନ୍ୟ ହୋଇଗଲା କେବଳ କିଛି କିଛି ସ୍ଥାନରେ ଲୋକ ଜମା ହେଉଥାନ୍ତି ଖବର ଶୁଣିବା ପାଇଁ । ଆମର ତା' ପରଦିନ ଫେରିବାର କଥା । ଟିକଟ ହୋଇସାରିଚି ପୁରୀ ଏକ୍ସପ୍ରେସରେ କଟକକୁ । ସେ ଦିନଟା କୌଣସି ମତେ କଟିଗଲା । ଉମେଶ ଚନ୍ଦ୍ର ନାୟକ କୌଣସି ମତେ କିଛି ଖାଦ୍ୟ କିଣି ଆଣିଲେ ରାତ୍ରିଭୋଜନ ପାଇଁ ।

ତା' ପରଦିନ ଅବସ୍ଥା ଆହୁରି ସଙ୍ଗିନ ହୋଇଗଲା । ରାସ୍ତାଘାଟ ସବୁ ନିଶୂନ ହୋଇଗଲା । ପାର୍କ ଷ୍ଟ୍ରିଟ୍‌ରୁ ଷ୍ଟେସନ ଯିବୁ କିମିତି ? ଗାଡ଼ି ଘୋଡ଼ା ସବୁ ବନ୍ଦ । ସବୁ କନ୍‌ସୁଲେଟ

ବନ୍ଦ । ଗାଡ଼ିଥିବା ବନ୍ଧୁମାନଙ୍କୁ ଫୋନ କଲୁ । କେହି ଗାଡ଼ିନେଇ ଆସିବା ଅବସ୍ଥାରେ ନାହାନ୍ତି । ନିଆଁ ଜଳୁଛି ରାସ୍ତାଘାଟରେ । ପେଟ୍ରୋଲ ପମ୍ପସବୁ ବନ୍ଦ । କିନ୍ତୁ ଖବର ମିଳିଲା ଯେ ଟ୍ରେନ ଚାଲୁଛି । ବର୍ତ୍ତମାନ ସମସ୍ୟା ହେଲା ଷ୍ଟେସନରେ କିପରି ପହଞ୍ଚି ପାରିବୁ ? ଶୁଣିଲି ଯେ ଦୁର୍ଗା ମାଧବ ମିଶ୍ର ସି.ଆର୍.ପି.ଏଫ୍. ଡାଇରେକ୍ଟର ଅଛନ୍ତି । ଫୋନରେ ତାଙ୍କୁ ଖୋଜି ଖୋଜି ପାଇଲି । ସେ ମୋ'ଠାରୁ ଗୋଟିଏ ବର୍ଷ ଉପରେ ପାଠ ପଢୁଥିଲେ । ତାଙ୍କର ବାପା ଚନ୍ଦ୍ରମାଧବବାବୁ ଆମ କଲେଜରେ ହେଡ୍‌କ୍ଲର୍କ । ଏହାଛଡ଼ା ସେ ପଦାରବିନ୍ଦ ମହାପାତ୍ରଙ୍କର ଭଗ୍ନୀପତି । ଦୁର୍ଗାମାଧବବାବୁ ଆମକୁ ଛାଡ଼ି ଚାଲିଯାଇଛନ୍ତି । କିନ୍ତୁ ସେ ଦିନର ଘଟଣା ମୁଁ ଜୀବନ ସାରା ଭୁଲିପାରିବି ନାହିଁ । ହୋଟେଲସବୁ ବନ୍ଦ ହୋଇସାରିଛି । ଆମ ପାଖରେ ଆଉ ବିଶେଷ ଅର୍ଥ ବି ନାହିଁ । ଏଣେ କନଫର୍ମଡ ଟିକେଟ ବ୍ୟବହୃତ ନ ହେଲେ ଗାଡ଼ି ଭଡ଼ା ପାଇଁ ମଧ ଆମ ପାଖରେ ପଇସା ନାହିଁ । କଲିକତା ସହର ସଙ୍ଗିନ ହେବାକୁ ଲାଗିଛି । ମାର୍କ୍ସବାଦୀ କମ୍ୟୁନିଷ୍ଟ ପାର୍ଟି ଅନ୍ୟ ଥରମାନଙ୍କ ଭଳି (ବଂଗାଳୀ-ଶିଖ ଗଣ୍ଡଗୋଳ, ହିନ୍ଦୁ-ମୁସଲିମ ଗଣ୍ଡଗୋଳ) ଏ ପର୍ଯ୍ୟନ୍ତ କ୍ୟାଡର ପଠାଇ ନାହାନ୍ତି ରାସ୍ତା ଉପରକୁ । ସେମାନେ ବି ବୋଧହୁଏ ବିସ୍ମିତ ହୋଇଯାଇଛନ୍ତି ଏହି ଘଟଣାରେ ଏବଂ ସେଥିରୁ ମୁକୁଳିବା ପାଇଁ ସମୟ ଲାଗୁଛି ।

ଦୁର୍ଗାମାଧବବାବୁ ଫୋନ ଧରିଲେ । ତାଙ୍କୁ କହିଲି ଆମ ଅବସ୍ଥା କଥା । ସେ ବୁଝିଲେ ଏବଂ ପଚାରିଲେ ଆପଣ କେତେବେଳେ ଷ୍ଟେସନ ଯାଇପାରିବେ । ଆପଣ ଯେତେବେଳେ ଚାହିଁବେ ବୋଲି ମୋର ଉତ୍ତର ଶୁଣି ସେ କହିଲେ ଯେ ଅବସ୍ଥା ଗୁରୁତର ହୋଇପାରେ । ତେଣୁ ଆପଣମାନେ ଶୀଘ୍ର ଷ୍ଟେସନ ଚାଲିଆସିବା ଭଲ । ମୁଁ ଗାଡ଼ି ଏବଂ ପୁଲିସ ପଠାଉଛି ।

ଦୁଇଟି ଜିପ୍‌ରେ ସଶସ୍ତ୍ର ସେନା ଏବଂ ଜଣେ ଆଇ.ପି.ଏସ୍. ଅଫିସର ପହଞ୍ଚିଲେ ଆମ୍ଭାସାତର ଆପାର୍ଟମେଣ୍ଟରେ । ବର୍ତ୍ତମାନ ଦେଖ ଅବସ୍ଥା । ଇନ୍ଦିରାଗାନ୍ଧୀଙ୍କ ହତ୍ୟାକାରୀମାନଙ୍କ ମଧ୍ୟରୁ କେହି ଏଇଠି ଲୁଚିଥିଲେ କି ? ପ୍ରବଳ ଜନସମାଗମ । ସେଇ ଘରେ ଯେ କିଛି ବଂଗଳା ଚିତ୍ର ତାରକା ରହନ୍ତି ଏକଥା ଆମ ଜାଣତରେ ନ ଥିଲା । ସେମାନେ ଆମକୁ ଦେଖିବାକୁ ଆଗ୍ରହୀ, ଏଣେ ଆମକୁ ଏବଂ ସେମାନଙ୍କୁ ଦେଖିବା ପାଇଁ ଲୋକ ଭିଡ଼ !

ଯାହାହେଉ ଆମ ଘରର ତତ୍ତ୍ୱାବଧାରକ କପିଳ ସେମାନଙ୍କୁ କହିଲା ଯେ ଏମାନେ ହେଉଛନ୍ତି ଅତିଥି, ଏମାନଙ୍କୁ ଷ୍ଟେସନକୁ ନେବା ପାଇଁ ସାମରିକ ବାହିନୀ ଆସିଛନ୍ତି । ସାଙ୍ଗେ ସାଙ୍ଗେ ଆମର 'ଗୁରୁତ୍ୱ' ବଢ଼ିଗଲା ବହୁତ । ଆହୁରି ଭିଡ଼ ।

ସେମାନେ ଆମକୁ ଆଣି ଷ୍ଟେସନରେ ଛାଡ଼ି ଦେଇଗଲେ ଏବଂ ଆମେ ଫେରି ଆସିଲୁ ନିରାପଦରେ । ଶହ ଶହ ଲୋକଙ୍କୁ ଉନ୍ମାଦ ଭଳି ଦିଲ୍ଲୀ ଅଭିମୁଖେ ଯାଉଥିବା ଟ୍ରେନମାନଙ୍କରେ ଚଢୁଥିବାର ଦେଖିଲୁ । ବାଟରେ ଲାଲବଜାର ପାଖରେ ପ୍ରାୟ ଦୁଇ କିଲୋମିଟର ରାସ୍ତାରେ ଲୋକମାନେ ଉପରକୁ ହାତଟେକି ଯାଉଥିବାର ଦେଖିଲୁ । କିନ୍ତୁ କଲିକତା ନଗରୀ ଅପେକ୍ଷାକୃତ ଶାନ୍ତ ଥିଲା । ଦିଲ୍ଲୀ, କାନପୁର ପ୍ରଭୃତି ସହର ହିଂସ୍ର ପାଲଟିଥିଲା । ଶହ ଶହ ଶିଖମାନଙ୍କୁ ମାରି ଦିଆଯାଇଥିଲା । କାନପୁର ସହରରେ ତ ଯୁଦ୍ଧାସ୍ତ୍ର ତିଆରି କରୁଥିବା

ଯନ୍ତ୍ରମାନଙ୍କ ଭିତରକୁ ଶହ ଶହ ଶିଖ ଯୁବକଙ୍କୁ ଭର୍ତ୍ତି କରିଦିଆଯାଇଥିଲା ପେଷିହୋଇଯିବା ପାଇଁ ଯନ୍ତରେ । ଏବଂ ଏଥିରେ କେତେକ କଂଗ୍ରେସ ନେତା ପ୍ରତ୍ୟକ୍ଷ ଭାବରେ ସଂପୃକ୍ତ ଥିଲେ କେବଳ ନୁହେଁ, ହତ୍ୟାକାଣ୍ଡର ନେତୃତ୍ୱ ମଧ୍ୟ ନେଇଥିଲେ । ସେମାନେ କୋର୍ଟ କଚେରି କମିଶନ ଦଣ୍ଡିତ ହୋଇପାରିବେ କି ନାଇଁ ସେ ସ୍ୱତନ୍ତ୍ର କଥା । କମିଶନ ସେମାନଙ୍କୁ ଅନ୍ୟ କାରଣରୁ ଦୋଷୀ ସାବ୍ୟସ୍ତ କରିବ କି ନାଇଁ ସେ ସ୍ୱତନ୍ତ୍ର କଥା ।

କିନ୍ତୁ ଶିଖମାନଙ୍କ ବିରୋଧରେ ସେ ଦିନ ଯେ କିଛି କଂଗ୍ରେସ ନେତାଙ୍କ ନେତୃତ୍ୱରେ ଗଣହତ୍ୟା ସଂଗଠିତ ହୋଇଥିଲା ଏଥିରେ କୌଣସି ସନ୍ଦେହ ନାହିଁ ।

ତା' ପୂର୍ବରୁ ଅପରେଶନ ବ୍ଲୁଷ୍ଟାର ଶିଖମାନଙ୍କୁ ଉତ୍ତ୍ୟକ୍ତ କରିଥିଲା । କିନ୍ତୁ ଏସବୁ ପାଇଁ ଜୈଲ ସିଂ ଏବଂ ଦରବାରା ସିଂ କେତେ ଦାୟୀ ତାହାର ବିଚାର ହୋଇ ନାହିଁ କି ଆଉ ହେବାର ସମ୍ଭାବନା ନାହିଁ । ଏଇ ଦୁଇ ଶିଖ ନେତାଙ୍କ ପରସ୍ପର ପ୍ରତି ବିଦ୍ୱେଷ ଅକାଳୀମାନଙ୍କୁ ସଶସ୍ତ୍ର କରିବା ପାଇଁ କିପରି ସାହାଯ୍ୟ କରିଥିଲା ତାହାର ମଧ୍ୟ ସଂପୂର୍ଣ୍ଣ ଅନୁସନ୍ଧାନ ହୋଇ ନାହିଁ । ଅମୃତସରରେ ଥିବା ସ୍ୱର୍ଣ୍ଣ ମନ୍ଦିରର ଲଙ୍ଗର (ଖାଇବାସ୍ଥାନ)କୁ ପ୍ରତିଦିନ ଶହ ଶହ ଟ୍ରକରେ ରୋଟି ଓ ଆନୁଷଙ୍ଗିକ ଖାଦ୍ୟ ଯାଏ, ଅଭ୍ୟାଗତମାନେ ଖାଇବା ପାଇଁ । ଏଇସବୁ ଟ୍ରକ୍‌ରେ ଯେ ମାରଣାସ୍ତ୍ର ଯାଉଛି ଏ ସଂପର୍କରେ ଅନୁସନ୍ଧାନ କରିବା ସମ୍ଭବ ହେଲା ନାହିଁ ଏଇ ଦୁଇ ନେତାଙ୍କ ଭିତରେ ଥିବା ପରସ୍ପର ପ୍ରତି ବିଦ୍ୱେଷ ଯୋଗୁଁ । ଏହା ଫଳରେ ସ୍ୱର୍ଣ୍ଣମନ୍ଦିର ପରିସରକୁ ସଶସ୍ତ୍ର କରିବା ପାଇଁ ଉଦ୍ୟମ ସଫଳ ହେଲା ଏବଂ ଅମୃତସର ସ୍ୱର୍ଣ୍ଣମନ୍ଦିର ଭିତରୁ ଭିନ୍ଦେରନୱାଲା ଏବଂ ତାଙ୍କର ସହଚରମାନଙ୍କୁ ବାହାର କରିବା ପାଇଁ ବହୁ ମୂଲ୍ୟ ଦେବାକୁ ହେଲା ।

ଅକାଳୀ ଦଳ ଥିଲା ଶିଖ୍‌ମାନଙ୍କର ଧର୍ମ ସଂକ୍ରାନ୍ତୀୟ ସଂଗଠନ । ସେମାନେ ଗୁରୁଦ୍ୱାରାମାନଙ୍କର ରକ୍ଷଣାବେକ୍ଷଣ ଏବଂ ଉନ୍ନତି ପାଇଁ ନିବେଦିତ ଥିଲେ । ସେମାନଙ୍କୁ କ୍ଷମତାର ମହୁ ଚାଖିବାକୁ ଦେଲେ ଶ୍ରୀମତୀ ଇନ୍ଦିରା ଗାନ୍ଧୀ । ତାହାର ବିଷମୟ ପରିଣତି କଥା ବିଚାର କଲାବେଳକୁ ଭିନ୍ଦେରନ୍‌ୱାଲା ଜନ୍ମହୋଇ ସାରିଥିଲା ଏବଂ ସାରା ଦେଶକୁ ତା'ର ବିଷମୟ ଫଳ ଭୋଗକରିବାକୁ ହେଲା ।

ଭାରତବର୍ଷ ସ୍ୱାଧୀନତା ପାଇଲାବେଳକୁ ଦେଶରେ ତୀବ୍ର ସାମ୍ପ୍ରଦାୟିକ ବିଦ୍ୱେଷ, ଭୁଲ୍ ବୁଝାମଣା ଏବଂ ପରସ୍ପର ପ୍ରତି ଅବିଶ୍ୱାସର ଚୂଡ଼ାନ୍ତ ପର୍ଯ୍ୟାୟ । ପଣ୍ଡିତ ନେହେରୁଙ୍କ ଦର୍ଜି, ଖାନସମା, ଚାକର ସବୁ ହେଉଛନ୍ତି ମୁସଲମାନ । ଦେଶର ନିରାପତ୍ତା ରକ୍ଷାକାରୀମାନେ ସେମାନଙ୍କୁ ହଟାଇବା ପାଇଁ ପରାମର୍ଶ ଦେଲେ କିନ୍ତୁ ପଣ୍ଡିତ ନେହେରୁ ତାହା ଗ୍ରହଣ କଲେ ନାହିଁ । ଏପରିକି ଏକ Food Tester ବା ଖାଦ୍ୟ ଚଖାଳି ନିଯୁକ୍ତ କରିବା ପାଇଁ ସେ ରାଜିହେଲେ ନାହିଁ । ଅନ୍ୟମାନଙ୍କର ଆଶଙ୍କା ଭୁଲ୍ ବୋଲି ପ୍ରମାଣିତ ହେଲା । ପଣ୍ଡିତ ନେହେରୁଙ୍କର ପ୍ରାତଃଭୋଜନର ସାଥୀ ପ୍ରାୟତଃ ଥିଲେ ପ୍ରସିଦ୍ଧ ଲେଖକ ଖ୍ୱାଜା ଅହମ୍ମଦ ଆବାସ । ଆପଣାର ସ୍ମୃତିଚାରଣରେ ସେ ସେଇ କଥା ଉଲ୍ଲେଖ କରିଛନ୍ତି ଯେ ରାଜନୀତିକ, ସାମାଜିକ ପ୍ରଭାବ ଧର୍ମଗତ, ଜାତିଗତ ସଂକୀର୍ଣ୍ଣତାକୁ ଦୂରୀଭୂତ କରିଛି ।

ସେଇ ପ୍ରକାର ପରୀକ୍ଷା ଇନ୍ଦିରାଗାନ୍ଧୀ ମଧ କରିଥିଲେ । କିନ୍ତୁ ତାହା ବ୍ୟର୍ଥ ହୋଇଛି, ଅପରେଶନ ବ୍ଲୁ ଷ୍ଟାର ପରେ ତାଙ୍କର ନିରାପତ୍ତା ବାହିନୀରୁ ଶିଖମାନଙ୍କୁ ବାହାର କରିଦେବା ପାଇଁ ଉପଦେଶକୁ ସେ ଗ୍ରହଣ କରି ନ ଥିଲେ କିନ୍ତୁ ତା'ର ଫଳ ବିଷମୟ ହେଲା । ରାଜନୀତିକ ପ୍ରଭାବ କମିଗଲେ ଯେ ଅବସ୍ଥା କଣ ହୁଏ ତା'ର ପରିଚୟ ମିଳିଗଲା ଇନ୍ଦିରାଗାନ୍ଧୀଙ୍କ ହତ୍ୟାରୁ ।

ମିଶରର ରାଷ୍ଟ୍ରପତି ରାଜାଙ୍କ ହତ୍ୟାପରେ ଗାର୍ଡ଼ ଅଫ୍ ଅନର ଦେଉଥିବା ସୈନ୍ୟମାନଙ୍କ ବନ୍ଧୁକରେ ଆଉ ଗୁଳି ଦିଆଗଲା ନାହିଁ । ରାଜୀବ ଗାନ୍ଧୀଙ୍କ ଉପରେ ସିଂହଳର ଗାର୍ଡ଼ ଅଫ ଅନର ଦେଉଥିବା ସୈନ୍ୟମାନଙ୍କଠାରୁ ଅତିଥିମାନେ ନିରାପଦ ଦୂରତାରେ ରହିବାକୁ ସ୍ଥିର କଲେ । ପାଲାମ ବିମାନଘାଟୀରେ ଗାର୍ଡ଼ ଅଫ୍ ଅନର ଦିଆଯିବା ପ୍ରଥା ଉଠିଗଲାଣି । ତାହା ଦିଆଯାଉଛି ରାଷ୍ଟ୍ରପତିଙ୍କ ଭବନରେ । ଇନ୍ଦିରା ଗାନ୍ଧୀଙ୍କ ହତ୍ୟା ପରେ ନିରାପତ୍ତା ବାହିନୀର ଚରିତ୍ର ବଦଳି ଯାଇଛି ।

ସମ୍ବଲପୁରରେ ରହିବା ସରି ଆସୁଛି । ଯୁଦ୍ଧ ସରି ସରି ଆସୁଛି । ପରମାଣୁ ବୋମା ପଡ଼ିଛି ନାଗାସାକୀ ହିରୋସୀମା ଉପରେ । ଯୁଦ୍ଧ ପ୍ରାୟ ଶେଷ ହୋଇଥିବା ସତ୍ତ୍ୱେ ପରମାଣୁ ବୋମା ପକାଯାଇଚି ଏସୀୟ ମହାଦେଶରେ । ଗୋରା ୟୁରୋପୀୟମାନଙ୍କ ସହର ଉପରେ ନୁହେଁ । ଏଇ କୃଷ୍ଣକାୟ ଏସୀୟମାନେ ହିଁ ପରୀକ୍ଷା ଓ ଧମକ ଉଭୟର ପ୍ରଥମ ଶିକାର ପାଲଟିଛନ୍ତି ।

ପରମାଣୁ ବୋମାର ବିସ୍ଫୋରଣ ପୂର୍ବରୁ ଆମେରିକା ଯେ ପରମାଣୁ ବୋମା ତିଆରି କରିବାରେ ସାଫଲ୍ୟ ଲାଭ କରିଛି ଏହା ଜଣାଥିଲା । ପୋଷ୍ଟଡାମ ସମ୍ମିଳନୀରେ ଆମେରିକାର ପ୍ରେସିଡେଣ୍ଟ ଟ୍ରୁମାନ କହିଲେ ଯେ ଆମେରିକା ଏପରି ଅସ୍ତ୍ର ରଖିଛି ଯାହା ପୃଥିବୀକୁ ତଟସ୍ଥ କରିଦେବ । ସାଙ୍ଗେ ସାଙ୍ଗେ ଯୋଶେଫ ଷ୍ଟାଲିନ୍ ତାଙ୍କର ବୈଦେଶିକ ମନ୍ତ୍ରୀଙ୍କୁ କହିଲେ ଯେ ଆମେରିକା ନିଶ୍ଚିତ ଭାବରେ ପରମାଣୁ ବୋମା ପ୍ରସ୍ତୁତ କରି ସାରିଲାଣି । ତେଣୁ ଆମେ ମଧ ସେଥିପାଇଁ ପ୍ରସ୍ତୁତ ହେବା ଉଚିତ । ୧୯୫୦ ମସିହାରେ ସୋଭିଏଟ୍ ରୁଷ ଆପଣାର ପରମାଣୁ ବୋମା ସଫଳତାର ସହିତ ପରୀକ୍ଷା କଲା ।

ପରମାଣୁ ବୋମା ବା ଯେକୌଣସି ମାରଣାସ୍ତ୍ରର ପ୍ରସ୍ତୁତି ଶୁଭଙ୍କର ନୁହେଁ କାରଣ ଯୁଦ୍ଧାସ୍ତ୍ର ପ୍ରତିଯୋଗିତାର କୌଣସି ସୀମା ନାହିଁ । ଏହା ଦେଶର ଜନମଙ୍ଗଳ କାର୍ଯ୍ୟ, ଶିଶୁକଲ୍ୟାଣ କାର୍ଯ୍ୟକ୍ରମକୁ ପ୍ରଥମେ ବ୍ୟାହତ ଓ କ୍ଷତିଗ୍ରସ୍ତ କରେ । କିନ୍ତୁ ଗୋଟିଏ ରାଷ୍ଟ୍ର ହାତରେ ପରମାଣୁ ବୋମା ସୀମିତ ରହିବା ମଧ ଉଚିତ ନୁହେଁ ।

ଆମେରିକାର ରାଷ୍ଟ୍ରପତି ରୁଜଭେଲ୍ଟ ଯୁଦ୍ଧ ସରିବା ପର୍ଯ୍ୟନ୍ତ ବଞ୍ଚି ନ ଥିଲେ । ସେ ହୁଇଲ ଚେୟାରରେ ବସି ରାଷ୍ଟ୍ର ପରିଚାଳନା କରୁଥିଲେ । ଯୁଦ୍ଧ ବି ପରିଚାଳନା କରୁଥିଲେ । ସେ ଆମେରିକାର ରାଷ୍ଟ୍ରପତି ହୋଇଥିଲେ ଚାରିଥର ଏବଂ ତାଙ୍କ ମୃତ୍ୟୁ ପରେ ଆମେରିକାର ସମ୍ବିଧାନର ସଂଶୋଧନ କରାଯାଇ କେହି ଦୁଇଥରରୁ ବେଶି ରାଷ୍ଟ୍ରପତି ହୋଇ ରହିପାରିବେ ନାହିଁ ବୋଲି ସ୍ଥିର ହେଲା ।

ସେ ବଞ୍ଚିଥିଲେ ହୁଏତ ଆମେରିକା ସେ ଦିନ ପରମାଣୁ ବୋମା ହୀରୋସୀମା-ନାଗାସାକୀ ଉପରେ ପକାଇ ନ ଥାନ୍ତା କାରଣ ଦ୍ୱିତୀୟ ମହାଯୁଦ୍ଧର ବିଭୀଷିକାକୁ ସେ ଅଂଗେ ନିଭାଇଥିଲେ । ଟ୍ରୁମାନ ଥିଲେ ତାଙ୍କର ଉପରାଷ୍ଟ୍ରପତି । ଆମେରିକା ସମ୍ବିଧାନରେ ଉପରାଷ୍ଟ୍ରପତି ପଦବୀ ସମ୍ପର୍କରେ ଏକ ଗଳ୍ପ ରହିଛି । The duty of the Vice-President of USA is to go to the White House daily, ring the door-bell and enquire if the President is living or dead and if he is living then the Vice-President can go back home to look after his own work. ଯେ ହେତୁ ରୁଜଭେଲ୍ଟ ଜୀବିତ ଥିଲେ ଏବଂ ତାଙ୍କର ଦକ୍ଷତାରେ କୌଣସି ତ୍ରୁଟି ନ ଥିଲା ସେଇଯୋଗୁଁ ଟ୍ରୁମାନଙ୍କର ଦାୟିତ୍ୱ କିଛି ନ ଥିଲା । ଟ୍ରୁମାନ କ୍ଷମତାକୁ ଆସିଲେ ଯୁଦ୍ଧ ସରି ସରି ଆସିଲା ବେଳକୁ ଏବଂ ତାଙ୍କର ମୁଖ୍ୟ ଲକ୍ଷ୍ୟ ହେଲା ମହାଯୁଦ୍ଧରେ ଅସ୍ତ୍ରଯୋଗାଣ କରି ପ୍ରଚୁର ଲାଭ ଉଠାଇଥିବା ଆମେରିକାର ବିଶ୍ୱ ପ୍ରଭୁତ୍ୱକୁ ନିଶ୍ଚିତ କରିବା ।

ତେହେରାନରେ ତ୍ରିଶକ୍ତି ମୁଖ୍ୟଙ୍କର ଭେଟ ହେଉଛି । ଆମେରିକାର ରାଷ୍ଟ୍ରପତି ରୁଜଭେଲ୍ଟ, ଇଂଲଣ୍ଡର ପ୍ରଧାନମନ୍ତ୍ରୀ ଉଇନଷ୍ଟେନ ଚର୍ଚ୍ଚିଲ ଏବଂ ଜୋସେଫ୍ ଷ୍ଟାଲିନ୍ ।

ସମ୍ମିଳନୀର କୌଣସି ଏକ ସକାଳ । ପ୍ରାତଃଭୋଜନରେ ସେମାନେ ମିଳିତ ହୋଇଛନ୍ତି କଥାବାର୍ତ୍ତା ଚାଲୁରଖିବା ପାଇଁ । ପୂର୍ବ ରାତ୍ରିରେ ଭୀଷଣ ବିତର୍କ ହୋଇଯାଇଛି । ବିଶେଷତଃ ଚର୍ଚ୍ଚିଲ ଏବଂ ଷ୍ଟାଲିନ୍‌ଙ୍କ ମଧ୍ୟରେ ବିତର୍କ ତିକ୍ତ ହୋଇଛି । ଦ୍ୱିତୀୟ ସାମ୍ମୁଖ୍ୟ କେବେ ଖୋଲାଯିବ ସେ ସଂପର୍କରେ ମତଭେଦ । ଇଂଲଣ୍ଡ ଦ୍ୱିତୀୟ ସାମ୍ମୁଖ୍ୟ ଶୀଘ୍ର ଖୋଲିବା ପାଇଁ ପ୍ରସ୍ତୁତ ନୁହେଁ । ଜର୍ମାନୀ ଏବଂ ରୁଷ ମଧ୍ୟରେ ନିଷ୍ପତ୍ତିମୂଳକ ଲଢ଼ାଇ ଚାଲିଛି । ସ୍ୱାଭାବିକ ଭାବରେ ତା'ର ଫଳାଫଳକୁ ସାମ୍ରାଜ୍ୟବାଦର ରାଢ଼ ପ୍ରତିନିଧି ଚର୍ଚ୍ଚିଲ ଅପେକ୍ଷା କରୁଛନ୍ତି । ଜର୍ମାନୀ ହାରୁଛି ନିଶ୍ଚିତ ଭାବରେ, କିନ୍ତୁ ତା' ସହିତ ରୁଷ ମଧ୍ୟ ବିଧ୍ୱସ୍ତ ହୋଇଯାଉ ।

ସମସ୍ତେ ଗମ୍ଭୀର । ଆଲୋଚନା ଆରମ୍ଭ ହେବ କିମିତି ?

ରୁଜଭେଲ୍ଟ ଆରମ୍ଭ କଲେ । ''ମିଷ୍ଟର ଚର୍ଚ୍ଚିଲ, ମୁଁ କାଲି ରାତିରେ ଏକ ଅଦ୍ଭୁତ ସ୍ୱପ୍ନ ଦେଖିଲି । ଭଗବାନ୍ ମୋତେ ସମଗ୍ର ବ୍ରିଟିଶ ସାମ୍ରାଜ୍ୟ ଉପରେ ପ୍ରଭୁତ୍ୱ କରିବା ପାଇଁ ନିର୍ଦ୍ଦେଶ ଦେଇଛନ୍ତି ।''

ତିନିଜଣଙ୍କ ମୁହଁରେ କୂଟନୀତିକ ହାସ୍ୟରେଖା ଉକୁଟି ଉଠିଛି ।

ଚର୍ଚ୍ଚିଲ ଗମ୍ଭୀର ଭାବରେ ଚୁରୁଟ ଟାଣି ଦମକାଏ ଧୂଆଁ ଛାଡ଼ି କହିଲେ, ''କି ଆଶ୍ଚର୍ଯ୍ୟ, ମି. ରୁଜଭେଲ୍ଟ । ମୁଁ ବି କାଲି ରାତିରେ ଠିକ୍ ଅନୁରୂପ ସ୍ୱପ୍ନ ଦେଖିଲି ଯେ ଭଗବାନ୍ ମୋତେ ସାରା ପୃଥିବୀର ଅଧୀଶ୍ୱର ହେବା ପାଇଁ ନିର୍ଦ୍ଦେଶ ଦେଇଛନ୍ତି ।''

ଦୁହେଁ ଅନେଇଲେ ଯୋଶେଫ ଷ୍ଟାଲିନ୍‌ଙ୍କର ମୁହଁକୁ । ଷ୍ଟାଲିନ୍ କିଛି ଉତ୍ତର ନ ଦେଇ ପାଇପ ଟାଣିବାକୁ ଲାଗିଲେ ଏବଂ କିଛିକ୍ଷଣ ପରେ ଉତ୍ତର ଦେଲେ ଯେ କାଇଁ ମୁଁ ତମ ଦି'ଜଣଙ୍କ ଭିତରୁ କାହାକୁ ଏପରି କହିଲା ପରି ମନେହେଉ ନାହିଁ ।

ସମସ୍ତଙ୍କ ମୁହଁରେ ହସ ଫୁଟି ଉଠିଲା ଏବଂ କଥାବାର୍ତ୍ତା ଆରମ୍ଭ ହେଲା ।

ରୁଜ୍‌ଭେଲ୍‌ଟ ପ୍ରମାଣିତ କରିଦେଲେ ଯେ ଶାରୀରିକ ଅକ୍ଷମତା ସହିତ ଦକ୍ଷତାର ସଂପର୍କ ଖୁବ୍ କମ୍ । ଏହା ବର୍ତ୍ତମାନ ଜୀବନରେ ଅନେକ ପ୍ରେରଣା ଦିଏ । ହାତ ଆଉ ଗୋଡ଼ ଅଚଳ ହୋଇଗଲା ପରେ ମୁଁ ସ୍ମରଣ କରୁଛି ରୁଜ୍‌ଭେଲ୍‌ଟଙ୍କଠାରୁ ଆରମ୍ଭ କରି ବାମପନ୍ଥୀ କମ୍ୟୁନିଷ୍ଟ ନେତା ୰ ରାମମୂର୍ତ୍ତିଙ୍କ ପର୍ଯ୍ୟନ୍ତ, ନେଲସନ୍‌ଙ୍କଠାରୁ ଆରମ୍ଭ କରି ସାଧନଗୁପ୍ତଙ୍କ ପର୍ଯ୍ୟନ୍ତ । ସେମାନେ ସବୁ ଶାରୀରିକ ଅକ୍ଷମତାକୁ ଲଘି ଯାଇଛନ୍ତି ଆପଣାର ମାନସିକ ଶକ୍ତିରେ ।

ରୁଜ୍‌ଭେଲ୍‌ଟଙ୍କର ଆଉ ଗୋଟିଏ ଶକ୍ତିର ଉତ୍ସ ହେଉଛି ଚିଠି । ସେ ଯାହାକୁ ଭେଟନ୍ତି ତାଙ୍କର ନାମ, ସ୍ଥାୟୀ ଠିକଣା ଏବଂ ଜନ୍ମ ତାରିଖ ଟିପି ନିଅନ୍ତି ଏବଂ ଜନ୍ମଦିନ ଉପଲକ୍ଷେ ଏକ ବାର୍ତ୍ତା ନିଶ୍ଚିତ ଭାବରେ ପହଞ୍ଚିଥାଏ ରୁଜ୍‌ଭେଲ୍‌ଟଙ୍କ ପାଖରୁ । କୁହାଯାଏ ଯେ ସେଇପରି ୧୦ ଲକ୍ଷ ଲୋକଙ୍କ ସହିତ ତାଙ୍କର ଏଇପରି ସଂପର୍କ ଥିଲା । ହ୍ୱାଇଟ୍‌ହାଉସ୍‌ରୁ ଆପଣାର ଜନ୍ମଦିନରେ (ଯାହା ହୁଏତ ତା'ର ନିଜର ମନେ ନ ଥିବ) ଯଦି ଏକ ଜନ୍ମଦିନରେ ଶୁଭେଚ୍ଛା ପହଞ୍ଚେ ତା ହେଲେ ଏକ ସାଧାରଣ ନାଗରିକର କ'ଣ ପ୍ରତିକ୍ରିୟା ହେବ ?

ଆମ ଓଡ଼ିଶାରେ ଜଣେ ଥିଲେ ଏଇପରି । ତାଙ୍କର ନାମ ଚିନ୍ତାମଣି ପାଣିଗ୍ରାହୀ । ସେ ପୋଷ୍ଟକାର୍ଡ଼ରେ ସଂପର୍କ ରଖିଥିଲେ ଅସୁମାରି ଲୋକଙ୍କ ସହିତ । ତାଙ୍କୁ ମୁଁ କେବେ ଲଫାପା ବା ଅନ୍ତର୍ଦ୍ଦେଶୀୟ ପତ୍ର ବ୍ୟବହାର କରିବାର ଦେଖି ନାହିଁ । ପୋଷ୍ଟକାର୍ଡ଼ରେ ଲେଖିଥିବେ ଚାରିଧାଡ଼ିଆ ଚିଠି । ନିଜ ନିର୍ବାଚନ ମଣ୍ଡଳୀର ସାଧାରଣ ମଣିଷ ପାଖକୁ ତାଙ୍କର ଚିଠି ତାଙ୍କୁ ଏକ ବେଶ୍ ଜୋର୍‌ଦାର ଶକ୍ତି ଭାବରେ ଠିଆ କରିଥିଲା । ସେ ଲେଖୁଥିଲେ ଚିଠି ସାଧାରଣ ମଣିଷ ପାଖକୁ– ରାମା, ଶାମା, ଦାମା, ପେଚୀ, କୁନ୍ତୀ, ରମା ପାଖକୁ । ''ମାଉସୀ, କହିଥିଲି କୁମାର ପୁନେଇଁକୁ ଯିବି ବୋଲି । ମନେ ପକେଇ ଦଉଚି ।'' ଯିଏ ଏ ଚିଠି ପାଇଲା ସେ ଆପଣାକୁ ଧନ୍ୟ ମନେକଲା । ଚିନ୍ତାମଣିବାବୁଙ୍କ ପାଇଁ ଏହାଥିଲା ଅମୋଘ ଅସ୍ତ୍ର ।

ରୁଜଭେଲ୍‌ଟ ଯେପରି ଶାରୀରିକ ଅକ୍ଷମତାକୁ ଲଘି ଯାଇଥିଲେ ଠିକ୍ ସେଇପରି ନେପୋଲିୟନ । ପୃଥୁଳକାୟ, ଖର୍ବକାୟ ନେପୋଲିୟନ କିନ୍ତୁ ଥରେ ଘୋଡ଼ାରେ ଚଢ଼ିଲେ ତାଙ୍କର ପୃଥୁଳତା କୁଆଡ଼େ ହଜିଯାଉଥିଲା । ସେ ଶୋଉ ନ ଥିଲେ ଆଦୌ । କିନ୍ତୁ ଯେତେବେଳେ ଶୋଇପଡ଼ନ୍ତି ସେତେବେଳେ ତାଙ୍କୁ ଉଠେଇବା ଭାରି କଷ୍ଟକର ହୋଇଯାଏ । ଥରେ ଏକ କ୍ୟାବିନେଟ ବୈଠକରେ ସେ ହଠାତ୍ ଶୋଇପଡ଼ିଲେ । ଏକ ଜରୋରୀ ବୈଠକ ଚାଲିଥିଲା । ତେଣୁ ସମସ୍ତେ ତାଙ୍କୁ ଉଠାଇବାକୁ ଚେଷ୍ଟାକଲେ । ଟେବୁଲ ଉପରେ ଏକ ପାତ୍ରରେ ଟେବୁଲ ଫିସ୍ (Table Fish) ଥିଲା । ସେଥିରୁ ଦୁଇଟି ଆଣି ଜଣେ ନେପୋଲିୟନଙ୍କ ନାକରେ ଗୁଞ୍ଜିଦେଲେ । କାଳେ ଉଠିପଡ଼ିବେ କି ନେପୋଲିୟନ ?

କିନ୍ତୁ ନେପୋଲିୟନ ସେ ମାଛ ଦୁଇଟିକୁ ଶୁଙ୍ଘି ଶୁଙ୍ଘି ନିଘୋଡ଼ ନିଦରେ କହିଲେ– Not tonight Josephine. (ଆଜି ରାତ୍ରିରେ ନୁହେଁ ଯୋସେଫିନ) । ଜୋସେଫିନ ତାଙ୍କର ସୁନ୍ଦରୀ ପ୍ରେମିକା ସ୍ତ୍ରୀ ।

ନେପୋଲିୟନ କେବଳ ନୁହନ୍ତି ନିଦ୍ରା ସଂପର୍କରେ ବେଶ୍ ଚିତ୍ତାକର୍ଷକ କାହାଣୀ ଶୁଣାଯାଏ ।

ସମାଜ ସଂପାଦକ ରାଧାନାଥ ରଥ କହୁଥିଲେ- ସେମାନେ ଥରେ ଏକ ପ୍ରତିନିଧି ଦଳରେ ଯାଇଥିଲେ ଗାନ୍ଧିଜୀଙ୍କୁ ଭେଟିବା ପାଇଁ । ଗାନ୍ଧିଜୀ ଦୂରରେ ଏକ ଗଛ ମୂଳରେ କୌଣସି ଜଣେ ବୈଦେଶିକ ଅତିଥି ସହ ଆଲୋଚନା କରୁଥିଲେ । ସେତେବେଳକୁ ଦିନ ୧୧ଟା ୩୦ ମି. ହୋଇ ଗଲାଣି । ଏମାନଙ୍କୁ ଦିଆଯାଇଥାଏ ସମୟ ଦିନ ୧୨ଟାରେ । ଏଗାରଟା ପଚାଶ ମିନିଟ୍‌ରେ ଉକ୍ତ ବୈଦେଶିକଙ୍କ ସହ କଥାବାର୍ତ୍ତା ସରିଲା ଏବଂ ସଂଗେ ସଂଗେ ମହାତ୍ମାଗାନ୍ଧୀ ଶୋଇପଡ଼ିଲେ । ବୋଧହୁଏ କ୍ଲାନ୍ତି ଯୋଗୁଁ ମହାତ୍ମାଗାନ୍ଧୀ ଶୋଇଯାଇଛନ୍ତି ଭାବି ଆଉ ବାରଟା ବେଳେ ତାଙ୍କ ସହିତ ସାକ୍ଷାତ୍ ହୋଇପାରିବ ନାହିଁ ଏମାନେ ଚାଲିଆସିବା ବେଳକୁ ଠିକ୍ ବାରଟାରେ ମହାତ୍ମା ଗାନ୍ଧୀ ଉଠିପଡ଼ିଲେ ଏବଂ ଡାକିଲେ ପ୍ରତିନିଧି ଦଳକୁ ।

ପଳାତକ ଜୀବନଯାପନ କରିବାକୁ ପଡ଼ିଛି କିଛିକାଳ । ତା' ମଧ୍ୟରୁ କିଛି ସମୟ କଟିଚି କାଳିଆବୋଦା ମଠରେ ପାଗଳବାବାଙ୍କ ଆଶ୍ରମରେ । ଧନେଶ୍ୱର ନାମକ ଜଣେ କମ୍ୟୁନିଷ୍ଟ ପାର୍ଟିର ସମର୍ଥକ ସେଠାରେ ଏକା ଘରଭଡ଼ା ନେଇ ରହିଲା ସପରିବାରେ । ଘରେ ସ୍ତ୍ରୀ, ପୁଅ, ଝିଅଟିଏ । ଆମେ ଦଳେ ପଳାତକ ବି ସେଇଠି ରହିଲୁ । ମନମୋହନ ମିଶ୍ର, ଦୁର୍ଗା ମହାନ୍ତି, ମାଧବ ସିଂ, ଦୁଃଶାସନ ଜେନା ଆମ ଭିତରେ ଆଉ ନାହାନ୍ତି । ହୃଷୀ ସାମଲଙ୍କ ଖବର ମୁଁ ରଖିପାରି ନାହିଁ । କେଶବାନନ୍ଦ ଦାସ ଓ ମୁଁ ଅଛୁ ଜୀବିତ ଓ ଜୀବନ୍ମୃତ ।

ମନମୋହନ ମିଶ୍ର ଗୋଟାଏ ନିର୍ଦ୍ଦିଷ୍ଟ କାମ ସରିବା ପରେ କହିବେ, ତମେମାନେ କାମ କରୁଥାଅ । ମୁଁ ଟିକିଏ ଶୋଇ ଆସେ । ଯେପରି କୁହାଯାଏ ମୁଁ ଖାଇଆସେ, ପରିସ୍ରା କରି ଆସେ ଠିକ୍ ସେଇପରି ଢଙ୍ଗରେ କହିବେ ମୁଁ ଟିକିଏ ଶୋଇଆସେ । ମିନିଟକ ପରେ ଘୁଙ୍ଗୁଡ଼ି ଶୁଭିବ କିନ୍ତୁ ଠିକ୍ ପାଞ୍ଚମିନିଟ୍ ପରେ ଉଠି ମୁହଁ ଧୋଇ କାମରେ ବସିଯିବେ ।

ଦୁର୍ଗା ମହାନ୍ତିଙ୍କୁ ମୁଁ ଦେଖିଚି ଶୋଇପଡ଼ିବା ବସ୍‌ରେ, ଟିକିଏ ଦିହ ଗୁଞ୍ଜିବାକୁ ସ୍ଥାନ ପାଇଲେ ହେଲା । କିମିତି ତାଙ୍କର ନିଦ ହୁଏ କେଜାଣି । ସେଇଯୋଗୁଁ ସେ ପ୍ରଚୁର ଗସ୍ତ କରିପାରନ୍ତି । ପଳାତକ ଜୀବନରେ ଦେଖିଛି, ସେ ଚାଲିଥିବେ ପ୍ରଚୁର ଆଉ ଶୋଇପଡ଼ିବେ ଟିକିଏ ସ୍ଥାନ ପାଇଗଲେ । ପରେ ବାହାର ରାଜନୀତିକ ଜୀବନରେ ବି ସେଇଆ ଦେଖିଚି ।

ସମ୍ବଲପୁର ରହଣି ସରି ଆସୁଛି । ହୀରାକୁଦ ବନ୍ଧ ଗଢ଼ା ହେବା ଆରମ୍ଭ ହୋଇଛି । ମାନଚିତ୍ରେ ବଦଳିଯିବ କିଛିକାଳକୁ । ଭୂଗୋଳରୁ ଯାଇ ଅନେକ ଗ୍ରାମ, ବସ୍ତି, ନଦୀ ସ୍ଥାନପାଇବେ ଇତିହାସରେ । ହୀରାକୁଦ ବନ୍ଧ, ବିଜୁଳି, ଶିଳ୍ପ ସମ୍ବଲପୁରକୁ ସମୃଦ୍ଧ କରିବ ।

କିନ୍ତୁ ଯେଉଁମାନେ ଆପଣାର ଜମିବାଡ଼ି ସବୁ ହରାଇବେ ସେମାନେ ଉପଯୁକ୍ତ କ୍ଷତିପୂରଣ ପାଇବେ ତ ? ଏବଂ ପାଇବେ ତ ଠିକ୍ ସମୟରେ ? ସେମାନେ ଯଦି ଉପଯୁକ୍ତ କ୍ଷତିପୂରଣ ଠିକ୍ ସମୟରେ ନ ପାଇବେ ତା'ହେଲେ ଜନଅସନ୍ତୋଷ ବୃଦ୍ଧି ପାଇବ । କାରଣ

ପ୍ରଥମତଃ ହଜାର ହଜାର ଲୋକ ସେମାନଙ୍କର ଭିଟାମାଟି, ଜମିବାଡ଼ି ସବୁ ହରାଇବେ । ହୀରାକୁଦ ବନ୍ଧ, ସେଥିରୁ ଉତ୍ପାଦିତ ବିଜୁଳି, ବନ୍ଧକୁ କେନ୍ଦ୍ର କରି ଗଢ଼ି ଉଠୁଥିବ ଶିଳ୍ପ ଜାତୀୟ ଆୟକୁ ବୃଦ୍ଧି କରିବ କିନ୍ତୁ ସ୍ଥାନୀୟ ଲୋକଙ୍କର ଉପକାରରେ ଆସିବ କିମିତି ?

ଏଇ ସମୟରେ ହିଁ ପ୍ରସନ୍ନ କୁମାର ପଣ୍ଡା ଏଇ ବାସ୍ତୁହରା, ଭିଟାହରା ମଣିଷର ନେତୃତ୍ୱ ନିଅନ୍ତି । ସେ ଜଣେ ଖୁବ୍ ବିରଳ ଶିଳ୍ପୀ । କେତେକ ତାଙ୍କୁ ମୁରଲୀଧର ଟାଲିଙ୍କ ସହିତ ସମାନ ସ୍ତରର ବୋଲି କହନ୍ତି ଏବଂ ଅନ୍ୟମାନେ ପ୍ରସନ୍ନବାବୁଙ୍କୁ ତାଙ୍କଠାରୁ ଉଚ୍ଚକୋଟୀର ବୋଲି କୁହନ୍ତି ।

ଓଡ଼ିଶାର ରାଜନୀତିକ ଦୃଶ୍ୟପଟ୍ଟରେ କେତେକ ନେତାଙ୍କୁ କେବଳ ବାବୁ ନାମରେ ସମ୍ବୋଧନ କରାଯାଏ । ଖାଲି ବାବୁ ବୋଲି କହିଲେ ସେ ଅଞ୍ଚଳରେ କେବଳ ତାଙ୍କୁ ହିଁ ବୁଝାଯାଏ । ପଣ୍ଡିତ ଗୋଦାବରୀଶ ମିଶ୍ର ବାଣପୁର ଅଞ୍ଚଳରେ ବାବୁ ନାମରେ ପରିଚିତ । ବାବୁ ବୋଲି କହିଲେ ଗୋଦାବରୀଶ ମିଶ୍ରଙ୍କୁ ବୁଝାଏ । ଠିକ୍ ସେଇପରି ତାଳଚେରରେ ପବିତ୍ରମୋହନ ପ୍ରଧାନବାବୁ ନାମରେ ପରିଚିତ ଏବଂ ବାବୁ ବୋଲି କହିଲେ ତାଳଚେର ଅଞ୍ଚଳରେ କେବଳ ପବିତ୍ରବାବୁଙ୍କୁ ହିଁ ବୁଝାଏ । ଠିକ୍ ସେଇପରି ସମ୍ବଲପୁର ଅଞ୍ଚଳରେ ପ୍ରସନ୍ନ କୁମାର ପଣ୍ଡା ବାବୁ ନାମରେ ପରିଚିତ ଏବଂ ବାବୁ ବୋଲି କହିଲେ ପ୍ରସନ୍ନ କୁମାର ପଣ୍ଡାଙ୍କୁ ହିଁ ବୁଝାଏ, ଅନ୍ୟ କାହାକୁ ନୁହେଁ ।

ପ୍ରସନ୍ନ କୁମାର ପଣ୍ଡା ଆସିଥିଲେ ରମ୍ପେଲା (ବର୍ତ୍ତମାନ ହୀରାକୁଦ ଗର୍ଭରେ) ଗ୍ରାମର ଗୌନ୍ତିଆ ପରିବାରରୁ । ସେ କଲିକତା ଆର୍ଟସ କଲେଜରେ କଳା ପଢୁଥିଲେ । ଶୁଣାଯାଏ ଯେ ଆଦ୍ୟ ଯୌବନରେ ସେ କୌଣସି ଏକ ମୁସଲିମ କନ୍ୟା (ଶିଳ୍ପୀ କି ନୁହେଁ କହିପାରିବି ନାହିଁ)ର ପ୍ରଣୟ ପାଶରେ ଆବଦ୍ଧ ହେଲେ କିନ୍ତୁ ତାକୁ ବିବାହ କରିପାରିଲେ ନାହିଁ । ଏହା କେତେ ଦୂର ସତ୍ୟ ମୁଁ ତାହା କହିପାରିବି ନାହିଁ କିନ୍ତୁ ଯେହେତୁ ଏହା ତାଙ୍କୁ ଅଧିକ ମହିମାନ୍ୱିତ କରିଛି ସେଇଯୋଗୁଁ ଏହା ସତ୍ୟ କି ନୁହେଁ ସେ ସଂପର୍କରେ ବିତର୍କ କରି ଲାଭ ନାହିଁ । ସେ ଆଉ ବିବାହ କରିନାହାନ୍ତି କି ଶିଳ୍ପୀ ହେଲେ ବି ନାରୀ ପ୍ରତି କୌଣସି ଦୁର୍ବଳତା ତାଙ୍କ ପାଖରେ ଦେଖାଯାଇ ନାହିଁ । ଚିର ଅବିବାହିତ ପ୍ରସନ୍ନ ପଣ୍ଡାଙ୍କୁ ସମ୍ବଲପୁରର ପ୍ରଭାତ ହୋଟେଲର ଏକ ରୁମ୍‌ରେ ଜୀବନ କାଟି ଦେବାର ଦେଖାଯାଏ । ହୋଟେଲର ମାଲିକ ତାଙ୍କର ଜଣେ ଗୁଣଗ୍ରାହୀ ସୁତରାଂ ସେ ରୁମ୍‌ଟି ତାଙ୍କରି ପାଇଁ ହିଁ ଉଦ୍ଦିଷ୍ଟ ହୋଇ ରହିଆସିଥିଲା ମୃତ୍ୟୁ ପର୍ଯ୍ୟନ୍ତ । ଚିତ୍ର ଆଙ୍କିବା, ଟ୍ରାନ୍‌ଜିଷ୍ଟର ରେଡ଼ିଓରୁ ଗୀତଶୁଣିବା ଏବଂ ସିଗାରେଟ ପିଇବା ତାଙ୍କର ଥିଲା ନିଶା । ଏବଂ ତା' ଠାରୁ ଉତ୍କଟ ନିଶା ଥିଲା ଜନସାଧାରଣଙ୍କ ପାଇଁ କାର୍ଯ୍ୟକରିବା । ମୃତ୍ୟୁ ହୋଇଗଲା ହଠାତ୍ ଭୁବନେଶ୍ୱର ଏମ୍.ଏଲ୍.ଏ. କଲୋନୀରେ । ବ୍ୟାଙ୍କରେ ଥିଲା ମାତ୍ର ଚାଳିଶ ଟଙ୍କା ।

କୌଣସି ଏକ ନିର୍ବାଚନରେ ପ୍ରସନ୍ନବାବୁ ପ୍ରାର୍ଥୀ ହୋଇଥାଆନ୍ତି ତାଙ୍କର ବ୍ରଜରାଜ ନଗର ନିର୍ବାଚନ ମଣ୍ଡଳୀରୁ । ତାଙ୍କ ବିରୋଧରେ ଏକ ଟାଣୁଆ ପ୍ରାର୍ଥୀ ଦେଇ ବେଶ୍ ପଇସା ଖର୍ଚ୍ଚକରି ତାଙ୍କୁ ହରାଇ ଦେବା ସକାଶେ କେତେକ କର୍ମୀ ଓ ନେତା ଆସି ବିଜୁ ପଟ୍ଟନାୟକଙ୍କୁ

କହିଲେ । ବିଜୁ ପଟ୍ଟନାୟକ ଉତ୍ତରଦେଲେ ଯେ ମୋର କ'ଣ ଆଉ କୌଣସି କାମ ନାହିଁ ଯେ ସେଇ ବାବାଜିଟାକୁ ହରାଇବାକୁ ଉଦ୍ୟମ କରିବି ?

ପ୍ରସନ୍ନ କୁମାର ପଣ୍ଡା ଯେ ଜଣେ ପ୍ରଥିତଯଶା ଶିଳ୍ପୀ ଏକଥା ଅନେକ ଜାଣି ନ ଥିଲେ । ସେ ମଧ୍ୟ ଥିଲେ ପ୍ରଚାର ବିମୁଖ । ବିଧାନସଭା ସୌଧ ନୂଆ ଗଢ଼ା ହୋଇଥାଏ ଭୁବନେଶ୍ୱରରେ । ସେଥିରେ କେତେକ ଚିତ୍ରପଟ ରଖାଯିବାର କଥା । ବିଧାନସଭା ଲବିରେ ଏକ ବୈଠକ ବସିଥାଏ । ବୀରେନ ମିତ୍ର କହିଲେ ଯେକୌଣସି ପ୍ରସିଦ୍ଧ ଶିଳ୍ପୀଙ୍କୁ ଏହାର ଦାୟିତ୍ୱ ଦେଲେ ଭଲହେବ । ମହତାବବାବୁ କହିଲେ ଯେ ଆମ ଭିତରେ (ବିଧାନସଭା ସଭ୍ୟମାନଙ୍କ ଭିତରେ) ପ୍ରସିଦ୍ଧ ଶିଳ୍ପୀ ଥାଉଁ ଥାଉଁ ଆମେ କାହିଁକି ବାହାରକୁ ଯିବା ? ସମସ୍ତେ ଅନେଇଲେ ତାଙ୍କୁ । ସେ ଆଖି ଠାରି ଦେଖାଇ ଦେଲେ ଦୂରରେ ପଶ୍ଚିମ ଆକାଶକୁ ତନ୍ମୟ ହୋଇ ଅନାଇ ବିଡ଼ି ଟାଣୁଥିବା ପ୍ରସନ୍ନ ପଣ୍ଡାଙ୍କୁ । ତମେମାନେ ବୋଧହୁଏ କେହି ଜାଣି ନାହଁ ଯେ ସେ ଜଣେ ପ୍ରଖ୍ୟାତ ଶିଳ୍ପୀ । ବୀରେନ୍ ମିତ୍ର ପ୍ରସନ୍ନ ପଣ୍ଡାଙ୍କ ପାଖକୁ ଧପାଲି ଧପାଲି ଚାଲିବା ପାଇଁ ଉଦ୍ୟମ କଲେ ଏବଂ ଆଜି ହିଁ ମୂଳଚାଲ ଛିଡ଼ିଗଲେ ଭଲ ବୋଲି କହିଲେ । ମହତାବବାବୁ ତାଙ୍କୁ ସେଥିରୁ ନିରସ୍ତ କରି କହିଲେ ସେ ମୂଳଚାଲର ଶିଳ୍ପୀ ନୁହନ୍ତି । ତେଣୁ ମୁଁ ତାଙ୍କୁ କହିବି, ତମେ ସବୁ ବ୍ୟସ୍ତ ହୁଅନା । ସେ ପ୍ରସନ୍ନବାବୁଙ୍କୁ ଡାକିଲେ ପାଖକୁ ଏବଂ କହିଲେ ଯେ ପଣ୍ଡାଜୀ, ବିଧାନସଭା ଲବିଟା ଖାଲି ଖାଲି ଲାଗୁଛି । ଏଇଠି କିଛି ତୈଳଚିତ୍ର ରଖିବା ପାଇଁ ଆମର ଇଚ୍ଛା । ଆପଣ ଥାଉଁ ଥାଉଁ ଆମେ କାହିଁକି ବାହାରକୁ ଯିବୁ ? ରଂଗ, କାନଭାସ ଯାହା ଦରକାର ଆମେ ଆଣିବୁ । ଆପଣ ସମୟ କରି କିଛି ଚିତ୍ର ଆଙ୍କିଦେବେ ।

ପ୍ରସନ୍ନ କୁମାର ପଣ୍ଡା ହଁ କଲେ । ଲବିରେ ଥିବା କିଛି ତୈଳଚିତ୍ର ତାଙ୍କଦ୍ୱାରା ଅଙ୍କିତ ।

ଆଗରୁ ବୋଧେ ଲେଖିଛି । ଶାନ୍ତିନିକେତନ ଯାଇଥିଲି । ପ୍ରସିଦ୍ଧ ଶିଳ୍ପୀ ରାମକିଙ୍କରଙ୍କୁ ଦେଖିବା ପାଇଁ ପ୍ରବଳ ଇଚ୍ଛା ଥିଲା । ଗଲି, କିନ୍ତୁ ସେତେବେଳକୁ ସେ ଶୋଇଥିଲେ । ଅର୍ଦ୍ଧ ଉଲଗ୍ନ ଅବସ୍ଥା । ଶ୍ରୀନିକେତନ ଗଲି । ଫେରିବା ବାଟରେ ପୁଣି ଭେଟିବାକୁ ଗଲି । ତଥାପି ସେ ନିଦ୍ରିତ । ଶୁଣିଲି, ସେ ରାତିକୁ ଉଠିଲେ ଏବଂ ରାତିସାରା ଚିତ୍ର ଆଙ୍କି ଚାଲିଲେ । ତାଙ୍କୁ ସକାଳୁ ଘେରି ବସିଥିଲେ ସାରା ଭାରତରୁ ଆଗତ ଶିଳ୍ପୀମାନେ । ସେମାନେ ଧୈର୍ଯ୍ୟର ସହିତ ଅପେକ୍ଷା କରିଥିଲେ ଶିଳ୍ପୀଙ୍କର ନିଦ ଭାଙ୍ଗିବା ପର୍ଯ୍ୟନ୍ତ । ରାମକିଙ୍କରଙ୍କ କୁବେର ମୂର୍ତ୍ତି ରିଜର୍ଭ ବ୍ୟାଙ୍କ ଅଫ୍ ଇଣ୍ଡିଆ ଆଗରେ ରହିଛି ।

ଶିଳ୍ପୀ ସହିତ କିଛି ପ୍ରକାର ଏକ୍ସେନ୍ଟ୍ରିସିଟି ଜଡ଼ିତ । ମଦ ହେଉ ବା ପାଗଳାମୀ ହେଉ ।

ମୁଁ ସ୍କୁଲରେ ପାଠ ପଢୁଥିଲାବେଳେ ମୋର ଜଣେ ବନ୍ଧୁବାନ୍ଧବଙ୍କ ଘରକୁ ଯାଇଥିଲି ପାଟନା । ସେତେବେଳେ ଚଳଚ୍ଚିତ୍ର ଜଗତରେ ବ୍ୟାକ୍‌ଗ୍ରାଉଣ୍ଡ ମ୍ୟୁଜିକ୍ (Background Music)ର ଯୁଗ ଆରମ୍ଭ ହୋଇ ନାହିଁ । ହିରୋ ହିରୋଇନମାନେ ଅଭିନୟ କରନ୍ତି, ଗୀତ ବି ଗାଆନ୍ତି । ତେଣୁ ଅଶୋକ କୁମାରଙ୍କଠାରୁ ଆରମ୍ଭ କରି କେ. ଏଲ୍. ସାଇଗେଲଙ୍କ ଚାହିଦା ବହୁତ ବେଶି ।

ଏ ପର୍ଯ୍ୟନ୍ତ ମୋର ମନେପଡୁଛି ଅଶୋକ କୁମାର ଏବଂ ସାଇଗେଲଙ୍କ ଗୀତ ।

ସାଇଗେଲଙ୍କର ଦେବଦାସ ଚିତ୍ରରେ ଅଭିନୟ ମଧ୍ୟ ମନେପଡୁଛି । ବଙ୍ଗାଳୀ ଭଦ୍ରଲୋକ ଦେବଦାସର ଚରିତ୍ର ଯେପରି ଭାବରେ ସେ ଫୁଟାଇଛନ୍ତି ତାହା ଦିଲୀପ କୁମାରଙ୍କର ନିଖୁଣ ଅଭିନୟ ସତ୍ତ୍ୱେ ଫୁଟିପାରି ନାହିଁ । ଏହା ଲେଖିଲା ବେଳକୁ ଶାହରୁଖ ଖାଁଙ୍କ ଅଭିନୀତ ବହୁଚର୍ଚ୍ଚିତ ଦେବଦାସ ଦେଖିବାକୁ ମିଳିଲା । କିନ୍ତୁ ବାଙ୍ଗାଲୀ ଭଦ୍ରଲୋକର ଚରିତ୍ର ସେ ମଧ୍ୟ ଫୁଟାଇପାରି ନାହାନ୍ତି । ଟେକନିକାଲ ଏଇ ଚଳଚ୍ଚିତ୍ର ହୁଏତ ବହୁତ ସୁପରିଅର୍ । କିନ୍ତୁ ସେ ଅଭିଜାତ ବାଙ୍ଗାଳୀ ପରିବାରର ଭଦ୍ରଲୋକର ଚରିତ୍ର ଏଥିରେ କେତେ ନିଖୁଣ ହୋଇଛି ? ଧୋତି ପିନ୍ଧାଇଦେଲେ ତ ବଙ୍ଗାଳୀ ଭଦ୍ରଲୋକ ହୋଇପାରିବ ନାହିଁ ।

ମୁଁ ଯାଇଥିଲି ପାଟନା । ଶୁଣିଲି ସାଇଗେଲ ଗୀତ ଗାଇବା ପାଇଁ ଆସୁଛନ୍ତି । ସୌଭାଗ୍ୟକୁ ଆମର ଗୃହସ୍ୱାମୀ ମଧ୍ୟ ଯାଉଥାନ୍ତି ସେଇ ସାଇଗେଲଙ୍କୁ ଶୁଣିବା ପାଇଁ । ସେ ମୋତେ ନେଇଯାଇଥିଲେ ସାଙ୍ଗରେ । ସନ୍ଧ୍ୟା । ବିଶାଳ ଜନସମାଗମ । କିନ୍ତୁ ଗାୟକ କାହାନ୍ତି ? ଗାୟକ ଶୋଇଯାଇଛନ୍ତି ନିଶାରେ । ଲୋକେ କିନ୍ତୁ ଅପେକ୍ଷା କରି ରହିଛନ୍ତି । ବେଶ୍ କିଛି ସମୟ ପରେ ତାଙ୍କର ଅର୍ଦ୍ଧଚେତନ ଦେହକୁ ଆଣି କିଛି ଲୋକ ଶୁଆଇଦେଲେ ମଞ୍ଚ ଉପରେ । ସେ କିନ୍ତୁ ନିଦ୍ରିତ । ବେଶ୍ କିଛି ସମୟ ବିତିଗଲା । ସାଇଗେଲ ଆକମ୍ପାନିଷ୍ଟ (accompanist)ମାନଙ୍କୁ ମାନନ୍ତି ନାହିଁ । ସେ ଗାଆନ୍ତି ତାଙ୍କର ଗୀତକୁ, ଅନୁସରଣ କରନ୍ତି ବାଦକମାନେ । ସେମାନେ ବି ଅପେକ୍ଷା କରିଛନ୍ତି । ବେଶ୍ ସମୟ ଅତିବାହିତ ହେଲାଣି । କେହି ଉଠୁ ନାହାନ୍ତି । ଦୀର୍ଘ, ବେଶ୍ କିଛି ଘଣ୍ଟା ଅପେକ୍ଷା କଲାପରେ, ଗୁଣୁଗୁଣୁ ଗୀତ ଶୁଭିଲା ସାଇଗେଲଙ୍କ କଣ୍ଠରୁ । ସମସ୍ତେ ତିଆର ହୋଇଗଲେ । ବାଦ୍ୟବାଦକଠାରୁ ଶ୍ରୋତୃମଣ୍ଡଳୀ ସମସ୍ତେ । ଗୁଣୁ ଗୁଣୁ କରି କରି ସେ ଗାଇବାକୁ ଆରମ୍ଭ କଲେ–

ଶୋ ଯା ରାଜକୁମାରୀ ଶୋ ଯା ।

ଅନେକ ବର୍ଷ ବିତିଗଲାଣି । ସାଇଗେଲ ବାହୁଡ଼ି ଗଲେଣି ଅନେକ ଦିନରୁ । ଜୀବନର ସନ୍ଧ୍ୟା ପାଖାପାଖି । ତଥାପି ସେଇ ଗୀତ ଆଜି ବି ରୋମାଞ୍ଚ ସୃଷ୍ଟି କରେ ।

ଦିଲ୍ଲୀରେ ଜାତୀୟ କାର୍ଯ୍ୟକ୍ରମ (ଗୀତ ଓ ନୃତ୍ୟର) ଅନୁଷ୍ଠିତ ହେଉଥାଏ । ଶୀତଦିନ । କନକନିଆ ଶୀତ । ତଥାପି ଲୋକ ଭିଡ଼ ବେଶ୍ । ରାତି ପ୍ରାୟ ଦୁଇଟା ହେବ । ମଞ୍ଚ ଉପରକୁ ଉଠିଲେ ଜଣେ ଶିଳ୍ପୀ । ମୋଟାମୋଟି ଚେହେରା । ପେଟ କିଛି ବାହାରି ପଡ଼ିଛି । ତାଙ୍କ ସାଙ୍ଗରେ ଗୋଟିଏ ଝିଅ । ମୁଁ ଉଠିଲି ଘରକୁ ଯିବା ପାଇଁ । ମୋ ପାଖରେ ବସିଥିଲେ ୰ ଗୁରୁ ଦେବପ୍ରସାଦ ଦାସ । ସେ ମୋତେ ଭିଡ଼ି ବସାଇଦେଲେ । ବସନ୍ତୁ । ଆଉ ଶୀତ ସମ୍ଭାଳି ହେଉନି । ମୋର ଉକ୍ତି । ସବୁ ଶୀତ ଛାଡ଼ିଯିବ । ବସନ୍ତୁ । ଏ ପରା ଶମ୍ଭୁ ମହାରାଜ । କାଛିଆଟିଏ ପିନ୍ଧିଛନ୍ତି ଏତେ ଶୀତରେ ! ଖୋଲା ଦେହ । ମୟୂର ଚନ୍ଦ୍ରିକା ବନ୍ଧା ହୋଇଛି ଗୋଟିଏ ହାତର ବାହୁରେ । ଆର ହାତରେ ବଇଁଶୀଟିଏ । ଆଖି ଦି'ଟା ଜବାଫୁଲ ପରି ନାଲି ହୋଇଛି । ସେ ଆରମ୍ଭ କଲେ । ମୁଁ ତିନିଟା ନିଶା ନ ହେଲେ ମଞ୍ଚ ଉପରକୁ ଓହ୍ଲାଏ ନାହିଁ । ମୋର ବୟସ ହେଲାଣି । ମୁଁ ପୂରା ନାଚି ପାରିବି ନାହିଁ । ମୋ ସାଙ୍ଗରେ ଅଛି ଗିରିଜା

ରାଜେନ୍ଦ୍ରନ । ସେ ନାଚ କରେ, ସୁନ୍ଦର ସୁନ୍ଦର ଆଖି ତାହାର ଆପଣମାନେ ଦେଖିପାରୁଥିବେ । ସେ ମଧ୍ୟ ଏନ୍.ସି.ସି. କ୍ୟାଡେଟ୍ । ଆଚ୍ଛା ଗିରିଜା, କେଉଁଟା ବେଶି ଶକ୍ତିଶାଳୀ । ତମର ଆଖି, ନା ତମ ଆଖିର ଅଭେଦ୍ୟ ଦୃଷ୍ଟିରୁ ନିର୍ଗତ ରାଇଫଲର ବୁଲେଟ୍ ? ଗିରିଜା କେବଳ ହସିଦେଲେ । ନୃତ୍ୟ ଆରମ୍ଭ ହେଲା 'ମୀରା କି ପ୍ରଭୁ ଗିରିଧର ନାଗର' ପାଞ୍ଚ ମିନିଟ୍ ପରେ ଆଉ ଶମ୍ଭୁ ମହାରାଜଙ୍କ ପେଟ ଦେଖାଯାଉ ନାହିଁ କି ମୋଟା ଚେହେରା ଦେଖାଯାଉ ନାହିଁ । ତାଙ୍କର ନିର୍ଦ୍ଦେଶରେ ନାଚି ନାଚି ଚାଲିଛନ୍ତି ଗିରିଜା ରାଜେନ୍ଦ୍ରନ୍.... । ନାଚ ସରିଲା । ସମଗ୍ର ଶ୍ରୋତୃମଣ୍ଡଳୀ ସ୍ତମ୍ଭୀଭୂତ ହୋଇ ଦେଖୁଛନ୍ତି ସେଇ ନୃତ୍ୟକୁ । ଗୁରୁ ଦେବଦାସଙ୍କୁ ଧନ୍ୟବାଦ ଜଣାଇଲି ତାଙ୍କରି ସାହାଯ୍ୟ ପାଇଁ ।

ଦେବ ସହିତ ମୋର ବନ୍ଧୁତା ଥିଲା ବେଶ୍ । ତାଙ୍କର ସ୍ତ୍ରୀ ଅନୁଗୋଳ ବାଳିକା ସ୍କୁଲରେ ଶିକ୍ଷୟିତ୍ରୀ ଥିଲେ । ସେଇଦିନରୁ ତାଙ୍କ ସହିତ ପରିଚିତି ।

ଓଡ଼ିଶୀ ନୃତ୍ୟକୁ ସେ ହିଁ ନେଇ ଯାଇଥିଲେ ଆନ୍ତର୍ଜାତୀୟ ସ୍ତରକୁ । ଇନ୍ଦ୍ରାଣୀ ରହମାନ ଥିଲେ ତାଙ୍କର ଶିଷ୍ୟା । ପୃଥିବୀର ବହୁ ଦେଶ ଭ୍ରମଣ କରି ସେ ଓଡ଼ିଶୀ ନୃତ୍ୟକୁ ପରିଚିତ କରାଇଥିଲେ ବିଭିନ୍ନ ଦେଶରେ । ସେତେବେଳକୁ ଓଡ଼ିଶୀ ନୃତ୍ୟ ଶାସ୍ତ୍ରୀୟ ନୃତ୍ୟ ଭାବରେ ସ୍ୱୀକୃତି ଲାଭ କରିଥିଲା କି ନାହିଁ ମୋର ମନେପଡୁନି ।

ଦେବ ଦାସ ବେଶ୍ ହାସ୍ୟରସପ୍ରିୟ । ଦେବବାବୁ, ଇନ୍ଦ୍ରାଣୀ ରହମାନ ତୁମକୁ ସମ୍ମାନ ଦିଏ ତ ? ମୋର ପ୍ରଶ୍ନ ।

ନିଶ୍ଚୟ । ସବୁବେଳେ ସାର୍ ଡାକେ । ସମସ୍ତଙ୍କ ଆଗରେ ବି । କେବଳ ବେଳେ ବେଳେ କହେ ସାର୍, ଟିକିଏ ଗୋଡ଼ଟା ଚିପି ଦିଅନ୍ତେ ନାହିଁ ? ଏତକ କହି ସେ ହସିଲେ । ଆମେ ସମସ୍ତେ ହସି ଉଠିଲୁ ।

ଗୁରୁ କେଳୁଚରଣ ମହାପାତ୍ରଙ୍କ ସହ ସଂପର୍କ ବେଶ୍ ନିବିଡ଼ । କେଳୁଚରଣ ନାଚୁଥିଲାବେଳେ ଯେମିତି ଓସ୍ତାଦ, କୋରିଓଗ୍ରାଫି (Choreography)ରେ ସେଇଭଳି ସୃଜନଶୀଳ । ଉଦୟଶଙ୍କରଙ୍କ କୋରିଓଗ୍ରାଫି ମୋତେ ମୁଗ୍ଧ କରିଥିଲା ଏବଂ ପରବର୍ତ୍ତୀ କାଳରେ ଗୁରୁ କେଳୁଚରଣଙ୍କ କୋରିଓଗ୍ରାଫି ମତେ ମୁଗ୍ଧ କରିଛି ।

କେଳୁବାବୁ, ସଂଯୁକ୍ତା, ରଘୁନାଥଙ୍କୁ ଆମେ (ସେତେବେଳେ ମୁଁ ଭାରତ-ସୋଭିଏଟ୍ ମୈତ୍ରୀ ସଂଘର ସଂପାଦକ ଥାଏ) ପଠାଇଥିଲୁ ସୋଭିଏଟ୍ ୟୁନିଅନ୍ ।

ଭାରତ-ସୋଭିଏଟ୍ ମୈତ୍ରୀ ସଂଘର ଜାତୀୟ କାଉନସିଲ ବୈଠକ ବସିଥାଏ କଟକରେ । ସାଂସ୍କୃତିକ କାର୍ଯ୍ୟକ୍ରମ ଦେଖୁଥାନ୍ତି ଶ୍ରୀ କେ.ପି.ଏସ୍. ମେନନ୍ । ସଂଯୁକ୍ତା ନାଚୁଥାଏ । ନାଚ ସରିଲା ପରେ ମେନନ୍ ବିଶାଳ ସମାଗମକୁ କହିଲେ ଯେ "The lady danced tonight danced in my heart. She disturbed my thoughts and I confess that she would have disturbed my sleep if I would have been twenty years younger." ସଭାରେ ହାସ୍ୟରୋଳ ଖେଳିଗଲା । ପାଖରେ ବସିଛନ୍ତି ମେନନ୍‌ଙ୍କ କନ୍ୟା ଶ୍ରୀମତୀ ନାୟାର । ସେ ମଧ୍ୟ ହସୁଛନ୍ତି ଜନତାଙ୍କ ସାଙ୍ଗରେ ।

ସେଇ ବର୍ଷ, ମେନନ୍ ଥାଆନ୍ତି କେନ୍ଦ୍ର ସଂଗୀତ ନାଟକ ଏକାଡେମୀର ସଭାପତି । ସେ ନିଷ୍ପତ୍ତି କଲେ ଯେ ସେଇବର୍ଷ ରୁଷକୁ ଯାଉଥିବା ସାଂସ୍କୃତିକ ପ୍ରତିନିଧି ଦଳରେ ଓଡ଼ିଶୀ ନୃତ୍ୟାଙ୍ଗନା ସଂଯୁକ୍ତା ସ୍ଥାନ ପାଇବେ । ସବୁବେଳେ ବ୍ୟୁରୋକ୍ରାସୀ ପ୍ରଗତିର ପ୍ରତିବନ୍ଧକ ହୋଇଆସିଛି । କେନ୍ଦ୍ର ସଂଗୀତ ନାଟକ ଏକାଡେମୀ ସ୍ଥିର କରିଦେଲେ ସଂଯୁକ୍ତା ଏକାକୀ ଯିବେ । ମୁଁ ମେନନ୍‌ଙ୍କ ଦୃଷ୍ଟି ଆକର୍ଷଣ କରି କହିଲି ଯେ ଏହାଦ୍ୱାରା କିଛି ଲାଭ ହେବ ନାହିଁ । ସଂଯୁକ୍ତା ସହିତ ଅନ୍ତତଃ କେଳୁବାବୁ ଏବଂ ରଘୁନାଥ ନ ଗଲେ ଟିମ୍ ପୂରାହେବ ନାହିଁ । ମେନନ୍ ହସ୍ତକ୍ଷେପ କଲେ ଏବଂ ସେ ତିନିଜଣ ଗଲେ ଏବଂ ଫେରିଲେ ବିପୁଳ ସାଫଲ୍ୟର ସହିତ । ନୂଆ ଦିଗନ୍ତ ଉନ୍ମୋଚିତ ହେଲା ।

ମୃତ୍ୟୁର କିଛି ମାସ ପୂର୍ବରୁ ସଂଯୁକ୍ତା ଯାଉଥାଏ ଇଟାଲୀ ବୋଧହୁଏ । ଦିଲ୍ଲୀ ଓଡ଼ିଶା ନିବାସରେ ଦେଖାହୁଏ ଅକସ୍ମାତ୍ । ସଂଯୁ କହିଲା ଯେ ଭାଇ, ବହୁତ ପରିଭ୍ରମଣ କରିଛି ଏହା ଭିତରେ, ବହୁ ଦେଶ । କିନ୍ତୁ ସୋଭିଏଟ ରୁଷରେ ଯେଉଁ ସମ୍ବର୍ଦ୍ଧନା ପାଇଛି ତା କେଉଁଠି ପାଇ ନାହିଁ । ସଂଯୁର ମୃତ୍ୟୁରେ ମୁଁ ଜଣେ ଆତ୍ମୀୟାକୁ ହରାଇଛି ଏବଂ ଆମ ଦେଶ ଦରିଦ୍ର ହୋଇଛି ।

କେଳୁବାବୁ ନାଟ୍ୟ ସଂପର୍କରେ ଅନଭିଜ୍ଞ ବ୍ୟକ୍ତିର ପ୍ରସ୍ତାବନା ମଧ୍ୟ ଶୁଣନ୍ତି । ଏଇଟା ତାଙ୍କର ଏକ ବିଶେଷ ଗୁଣ ।

ଥରେ କୌଣସି ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟକ୍ରମରେ ଭୈରବବାବୁ, ସୁବୋଧବାବୁ, ନନ୍ଦବାବୁ ଓ ମୁଁ ଅନୁରୋଧ କଲୁ କେଳୁବାବୁଙ୍କୁ ଏକ ବିଚିତ୍ର ପ୍ରସ୍ତାବ ନେଇ । କୌଣସି କାରଣରୁ ଆମେ ଚାହିଁଥିଲୁ ସଂଯୁକ୍ତା ଏବଂ କୁଙ୍କୁମର ଏକ ଓଡ଼ିଶୀ ଯୁଗଳବନ୍ଦୀ ନୃତ୍ୟ, ଯେଉଁଥିରେ ସେ ଦୁହେଁ ନାଚିବେ । କେଳୁବାବୁ ପ୍ରଥମେ ଟିକିଏ ଇତସ୍ତତଃ ହେଉଥିଲେ କିନ୍ତୁ କାରଣଟା କହିଲା ପରେ ସେ ସମ୍ମତି ଦେଲେ ଏବଂ ଏପରି ଏକ ଚମତ୍କାର ଯୁଗଳବନ୍ଦୀ ନୃତ୍ୟ ସଂଯୁ ଓ କୁଙ୍କୁମ ପରିବେଷଣ କଲେ ଯାହା ସେ ଦିନର ଦର୍ଶକମଣ୍ଡଳୀକୁ ମୁଗ୍ଧ କରିଦେଇଥିଲା । ଏଇ ଦର୍ଶକମାନଙ୍କ ମଧ୍ୟରେ ବହୁ ବୈଦେଶିକ ଦର୍ଶକ ମଧ୍ୟ ଥିଲେ ।

କେଳୁଚରଣ ଆଉ ବ୍ୟକ୍ତି ହୋଇ ରହି ନାହାନ୍ତି । ସେ ପାଲଟି ଯାଇଛନ୍ତି ଏକ ସନ୍ତକ, ଏକ ଅନୁଷ୍ଠାନ ।

କଲେଜରେ ମୋର ସମସାମୟିକ ହେଉଛନ୍ତି ଧୀରେନ୍ଦ୍ରନାଥ ପଟ୍ଟନାୟକ । ଅର୍ଥନୀତିର ଛାତ୍ର ଥିବା ସହିତ ପ୍ରଗତିଶୀଳ ଚିନ୍ତାର ସେ ଛାତ୍ର ଥିଲେ ଏବଂ ସେଇଯୋଗୁଁ ତାଙ୍କ ସହିତ ଆତ୍ମୀୟତା ଥିଲା । ଓଡ଼ିଶୀ ନାଚର ତାତ୍ତ୍ୱିକ ଗବେଷଣା ପାଇଁ ସେ ସ୍ମୃତି ହୋଇ ରହିବେ । ଓଡ଼ିଶାର ଯୁବ ପ୍ରତିନିଧିମାନଙ୍କର ପ୍ରତିନିଧିତ୍ୱ କରି ସେ ଭାରତୀୟ ଯୁବ ଉତ୍ସବରେ ଓଡ଼ିଶା ପାଇଁ ଗୌରବ ଆଣି ଦେଇଥିଲେ, ପାଠପଢ଼ିଲାବେଳେ । ସେ ଦାବି କରନ୍ତି ଯେ ଓଡ଼ିଶୀ ନାଚର ପ୍ରଥମ ଅଙ୍ଗଭଙ୍ଗୀ, ଯାହା ଜଗନ୍ନାଥଙ୍କ ରୂପ ସହିତ ସମାନର ସେ ହେଉଛନ୍ତି ସ୍ରଷ୍ଟା । ଓଡ଼ିଶୀ ନାଚ କିପରି ଆରମ୍ଭ ହେବ, ସେଥିପାଇଁ ଜଗନ୍ନାଥଙ୍କୁ ନିବେଦନ କରିବାକୁ ଯାଇଥିଲେ ସେ ଏବଂ ସେଇଠି ଜଗନ୍ନାଥଙ୍କୁ କହୁଛନ୍ତି ଯେ ତାଙ୍କରି ଅନୁସାରେ ଓଡ଼ିଶୀ ନୃତ୍ୟ ଆରମ୍ଭ ହେବା ଉଚିତ ।

କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ମୋର ଦାଦାଙ୍କ ସତ୍ତୁ । ଓଡ଼ିଆ ନାଟକର ଏଇ କ୍ରାନ୍ତିକାରୀ ସ୍ରଷ୍ଟା 'ଭାତ' ନାଟକ ଦେଖିବା ପାଇଁ ଆମେସବୁ ସମ୍ବଲପୁରରୁ ଆସିଥିଲୁ ବୋଲି ମୋର ମନେପଡୁଛି । ପଦ୍ମଶ୍ରୀ ଉପାଧିକୁ ପ୍ରତ୍ୟାଖ୍ୟାନ କରିଥିବା ଏଇ ସ୍ୱାଭିମାନୀ ନାଟ୍ୟକାର ଓଡ଼ିଶୀ ନୃତ୍ୟକୁ ଶାସ୍ତ୍ରୀୟ ମାନ୍ୟତା ଦେବା ପାଇଁ ମୃତ୍ୟୁ ପର୍ଯ୍ୟନ୍ତ ଉଦ୍ୟମ କରିଯାଇଛନ୍ତି । ମୋର ମନେପଡୁଛି, ହଙ୍ଗେରୀର ଜଣେ ବିଶିଷ୍ଟ ନୃତ୍ୟ ଗବେଷକ ଓ ଅଧ୍ୟାପକଙ୍କୁ ନେଇ ମୁଁ ତାଙ୍କ ପାଖକୁ ଯାଇଥିଲି । ଜୀବନର ବିଳମ୍ବିତ ଅପରାହ୍ନ । ଗୋଡ଼ ଅଚଳ ହୋଇଗଲାଣି । ପେଟରେ ଏକ ତକିଆ ଦେଇ ସେ ବସିଥିଲେ । କିଛି ସମୟ ଆଲୋଚନା ଚାଲିଲା ଅପରାହ୍ନ ଯାଇ ସନ୍ଧ୍ୟା ପର୍ଯ୍ୟନ୍ତ । ତଥାପି ଆଲୋଚନା ସରୁ ନାହିଁ । ବୈଦେଶିକ ଅଧ୍ୟାପକ ମନ୍ତ୍ରମୁଗ୍ଧ କାଳୀଚରଣଙ୍କ ଅଭିବ୍ୟକ୍ତିରେ ।

କାଳୀବାବୁ ପ୍ରାୟ ଏକୁଟିଆ ରହନ୍ତି କଟକରେ । ଜଗନ୍ନାଥବଲ୍ଲଭରେ ତାଙ୍କର ଘର । ଓଡ଼ିଶାର ନୃତ୍ୟ ଶିଳ୍ପୀ, ଅଭିନେତା ଅଭିନେତ୍ରୀ ତାଙ୍କଠାରୁ ତାଲିମ ପାଇଛନ୍ତି । କିନ୍ତୁ ଦୁଃଖର କଥା ତାଙ୍କ ପାଖରେ କେହି ସ୍ଥାୟୀ ଭାବରେ ରହିପାରି ନାହାନ୍ତି ବା ରହି ନାହାନ୍ତି । କାରଣ କ'ଣ ତାହା ମୁଁ କହିପାରିବି ନାହିଁ ।

କାଳୀବାବୁଙ୍କ ପରଲୋକ ହୋଇଗଲା କଟକ ବଡ଼ ଡାକ୍ତରଖାନାର ସାଧାରଣ ୱାର୍ଡ଼ରେ । ଆଗରୁ କହିଛି ଯେ ସେ ଏକୁଟିଆ ରହୁଥିଲେ କଟକରେ । ତାଙ୍କ ଲାଇବ୍ରେରୀରେ ଥିଲା ବହୁ ଅମୂଲ୍ୟ ପୁସ୍ତକ ଏବଂ ତାଳପତ୍ର ପୋଥି । ସେସବୁ ତ ଚୋରି ହୋଇଯିବ, କଣ କରାଯାଇପାରେ ? ରାଧାନାଥବାବୁ (ସମାଜ ସଂପାଦକ) ଏବଂ ମୁଁ ଗଲୁ କଟକ ହସ୍ପିଟାଲକୁ । ତାଙ୍କର ମରଦେହକୁ, ତାଙ୍କର ଜଗନ୍ନାଥବଲ୍ଲଭ ଘରକୁ ନେବାର ବନ୍ଦୋବସ୍ତ କରି ଭବାନୀ ପଣ୍ଡିତଙ୍କୁ ପଠାଇଲୁ ତାଙ୍କ କଟକ ଘରକୁ ଏବଂ ଆମେ ଗଲୁ କଟକ କଲେକ୍ଟର ବିନୋଦ ଝା'ଙ୍କ ଘରକୁ । ତାଙ୍କୁ ଭେଟି ସମସ୍ୟା କଥା କହିଲୁ ଏବଂ ତାଙ୍କ ଘରକୁ ତୁରନ୍ତ ସିଲ୍ କରି ନ ଦେଲେ ସବୁ ମୂଲ୍ୟବାନ୍ ପୁସ୍ତକ ଓ ପୋଥି ଚୋରି ହୋଇଯିବ ବୋଲି କହିଲୁ । ସେ ସାଙ୍ଗେ ସାଙ୍ଗେ ଘରକୁ ସିଲ୍ କରିଦେବା ପାଇଁ ଆଦେଶ ଦେଲେ । ତଥାପି ଚୋରିହେଲା ଚାଦର ତଳେ ବହି ନେଇ ଯାଉଥିବା ଦୁଇଜଣ ବିଶିଷ୍ଟ ବ୍ୟକ୍ତିଙ୍କୁ ଭବାନୀ ପଣ୍ଡିତ ଧରି ସେମାନଙ୍କଠାରୁ ବହି ଉଦ୍ଧାର କଲେ । ସବୁ ସାମଗ୍ରୀ ସିଲ୍ ହୋଇଗଲା ଏବଂ ପରେ ନିଆଯାଇଥିଲା ରାଜ୍ୟ ସଂଗ୍ରହାଳୟକୁ ମୁଖ୍ୟମନ୍ତ୍ରୀଙ୍କ ନିର୍ଦ୍ଦେଶରେ ଏବଂ ସେଠାରେ କବିଚନ୍ଦ୍ର କାଳୀଚରଣ କର୍ଣ୍ଣର ହେବା ପାଇଁ ସ୍ଥିର ହେଲା ।

ପରେ କୌଣସି କାରଣରୁ ମୁଖ୍ୟମନ୍ତ୍ରୀ ସେଥିପାଇଁ ଆଗ୍ରହ ପ୍ରକାଶକଲେ ନାହିଁ ଏବଂ ବହୁଦିନ ଧରି ଉକ୍ତ ବହି ଓ ପୋଥି ସବୁ ବନ୍ଧାହୋଇ ପଡ଼ିରହିଲା ରାଜ୍ୟ ସଂଗ୍ରହାଳୟରେ ।

ଅପର ପଟରେ କବିଚନ୍ଦ୍ରଙ୍କ ଘର ସେଇପରି ସିଲ୍ ହୋଇରହିଲା । କବିଚନ୍ଦ୍ର ସ୍ମୃତି କମିଟି ଗଢ଼ାଗଲା ପରବର୍ତ୍ତୀ କାଳରେ । ସେମାନେ ଜଗନ୍ନାଥବଲ୍ଲଭ ଘରକୁ ହାତକୁ ନେଲେ ଏବଂ କବିଚନ୍ଦ୍ରଙ୍କର ସ୍ମୃତିରକ୍ଷା ପାଇଁ ପଦକ୍ଷେପ ନେଲେ । କିନ୍ତୁ ସଂଗ୍ରହାଳୟରେ 'ସଂରକ୍ଷିତ' ପୁସ୍ତକ ଓ ପୋଥିର ଭାଗ୍ୟ କ'ଣ ହେଲା ମୁଁ କହିପାରିବି ନାହିଁ ।

ପ୍ରିୟମ୍ବଦା ମହାନ୍ତି— ହେଜମାଦୀ ମୋ ସ୍ତ୍ରୀ କମଳକୁମାରୀଙ୍କ ସମସାମୟିକ ରେଭେନ୍ସା କଲେଜରେ । ନୃତ୍ୟଶିଳ୍ପୀର ଦେହ ଯେପରି ଲୀଳାୟିତ ହେବାର କଥା ତାଙ୍କର ଦେହ ସେଇପରି । ଅନ୍ୟ କାହାରି ଠାରେ ସେ ଭଳି ମୁଁ ଦେଖି ନାହିଁ । ପ୍ରିୟମ୍ବଦା (ମିନି) ଜଣେ ପ୍ରଖ୍ୟାତ ନୃତ୍ୟଶିଳ୍ପୀ ଖାଲି ନୁହନ୍ତି ସେ ଜଣେ ଖୁବ୍ ଭଲ ଛାତ୍ରୀ ଥିଲେ ମଧ୍ୟ । ପ୍ରାଣିବିଜ୍ଞାନରେ ସେ ଏମ୍.ଏସ୍‌ସି. ଏବଂ ଡକ୍ଟରେଟ ପାଇଛନ୍ତି । ଅଧ୍ୟାପିକା ହୋଇଛନ୍ତି ଏବଂ ସମ୍ବଲପୁର ବିଶ୍ୱବିଦ୍ୟାଳୟର କୁଳପତି ବି ହୋଇଛନ୍ତି । ସେ ସଂଗୀତ ନାଟକ ଏକାଡେମୀର ଅଧ୍ୟକ୍ଷା ବି ହୋଇଛନ୍ତି । କାଳୀଚରଣ ପଟ୍ଟନାୟକଙ୍କର ତତ୍ତ୍ୱାବଧାନରେ ତାଙ୍କର ଓଡ଼ିଶୀ ନୃତ୍ୟ ଶିକ୍ଷା ଆରମ୍ଭ ହୁଏ ଏବଂ ସେ କ୍ରମଶଃ ପ୍ରତିଷ୍ଠା ଲାଭ କରନ୍ତି । କିଛି କାଳ ସେ ଆମେରିକାରେ ରହିଯାଇଥିଲେ କିନ୍ତୁ ଫେରି ଆସିଥିଲେ ଓଡ଼ିଶାକୁ । ଆପଣାର ସୁଯୋଗ୍ୟା କନ୍ୟା ଅହଲ୍ୟା ବର୍ତ୍ତମାନ ତାଙ୍କରି ନିର୍ଦ୍ଦେଶନାରେ ନାଚନ୍ତି । ଯେପରି ଶମ୍ଭୁ ମହାରାଜ ଓ ଗିରିଜା ରାଜେନ୍ଦ୍ରନ୍ । ତାଙ୍କ ସହିତ ପରିଚିତି ରେଭେନ୍ସା କଲେଜରୁ । ତାଙ୍କର ମାଆ ନିଶାମଣି ଦେବୀ ଥିଲେ ଜଣେ ନାରୀନେତ୍ରୀ । କଟକ ଜେଲରେ ଆମେସବୁ ବନ୍ଦୀମାନେ ବ୍ୟାରିକେଡ ରଚନା କରିଥିଲାବେଳେ ସେ ଯାଇଥିଲେ ଆମକୁ ଦେଖିବା ପାଇଁ । ତାଙ୍କର ପିତା ଭାଗବତ ମହାନ୍ତି ଜଣେ ବିଶିଷ୍ଟ ଇଂଜିନିୟର-କଣ୍ଟ୍ରାକ୍ଟର ଥିଲେ ଏବଂ ବଦାନ୍ୟ ବ୍ୟକ୍ତି ମଧ୍ୟ ଥିଲେ ।

କୁଙ୍କୁମ ମହାନ୍ତି ଓଡ଼ିଶୀ ଗବେଷଣା କେନ୍ଦ୍ରର ଡାଇରେକ୍ଟର । ତାଙ୍କ ବାପା ୰ବାମାଚରଣ ଦାସ ମୋର ପ୍ରିନ୍ସିପାଲ ଥିଲେ । ପ୍ରିନ୍ସିପାଲ ଭାବରେ ତାଙ୍କ ସହିତ ବହୁ ଝଗଡ଼ା ସତ୍ତ୍ୱେ ତାଙ୍କର ପରିବାରର ସମସ୍ତଙ୍କ ସହିତ ଥିଲା ମୋର ଆତ୍ମୀୟତା । କୁଙ୍କୁମର ମାଆ ତ ମୋତେ ତାଙ୍କ ପରିବାରର ବ୍ୟକ୍ତିଭଳି ଭଲ ପାଉଥିଲେ । ତାଙ୍କର ସ୍ନେହ ମୁଁ ଭୁଲିପାରିବି ନାହିଁ । କୁଙ୍କୁମ ସହିତ ପରିଚୟ ସେଇଦିନରୁ । ପରେ କଲେଜ ୟୁନିଅନରେ ସେ ବହୁ କାର୍ଯ୍ୟ କରିଛି ବିଶେଷତଃ ୧୯୫୫ର ବନ୍ୟା ସଂପର୍କରେ । କଲେଜ ୟୁନିୟନର ରିଲିଫ କାର୍ଯ୍ୟ ପାଇଁ ସେ ବାପାଙ୍କ କଥା ମଧ୍ୟ ମାନି ନାହିଁ । ସେ କଥା ମୋର ମନେପଡୁଛି । ରାଜନୀତି ବିଜ୍ଞାନରେ ଏମ୍.ଏ. ପାସ୍ କରି ଆଲାଏଡ୍ ସର୍ଭିସେସର ପୋଷ୍ଟାଲ ବିଭାଗରେ ଚାକିରି କରେ କିନ୍ତୁ ପରେ ସେ ଓଡ଼ିଶୀ ଗବେଷଣା କେନ୍ଦ୍ରର ଡାଇରେକ୍ଟର ହୋଇ ଭୁବନେଶ୍ୱର ଆସେ । ସୃଜନଶୀଳତାର ଉନ୍ନତ ବହ୍ନି ପ୍ରକାଶ ହେବ ବୋଲି ବୋଧହୁଏ ସେ ଏଇ ବିକଳ୍ପକୁ ଗ୍ରହଣ କରେ ।

ଶିଳ୍ପୀମାନଙ୍କ ସହିତ ପରିଚିତ ହୋଇଛି କିନ୍ତୁ ସେମାନଙ୍କର କଳାକୁ ମୁଁ କେତେ ଗ୍ରହଣ କରିପାରିଛି ସେ ବିଷୟରେ ମୋର ନିଜର ସନ୍ଦେହ ରହିଛି ।

ସମ୍ବଲପୁରରେ ରାଜନୀତିକ ଜୀବନର ମୂଳଦୁଆ ଯେପରି ପଡ଼ିଥିଲା ଠିକ୍ ସେଇପରି କଳା ଓ ସଂସ୍କୃତି ପ୍ରତି ଆଦର ଏବଂ ଅନୁଭବର ମୂଳଦୁଆ ମଧ୍ୟ ପଡ଼ିଥିଲା । ସେଇ ଦୃଷ୍ଟିକୋଣ ୟୁନିଭର୍ସ ଗଢ଼ିବାରେ ରୂପାନ୍ତରିତ ହୋଇଛି, କାରଣ ରାଜନୀତିକ ଜୀବନଯାପନ କରିବା ପାଇଁ ଯେପରି ମୋଟା ଚମଡ଼ା ଏବଂ ଅନୁରୂପ ମନ ଆବଶ୍ୟକ ତା ମୋର ହୋଇପାରି ନାହିଁ ।

# ଓଲଟ ପାଲଟର ପର୍ବ ଆରମ୍ଭ

ସମ୍ବଲପୁର ଛାଡ଼ିବାର ସମୟ ଆସିଛି । ଅନେକ ସ୍ମୃତି ରହିଯିବ ମନରେ । ସେପରି ସ୍ମୃତି ହୋଇ ରହିବ ହୁମା ଶିବମନ୍ଦିର । ପିହା (ଇଟାଲୀ) ର ଲିନିଟାୱାର ଯଦି ସପ୍ତମ ଆଶ୍ଚର୍ଯ୍ୟର ଅନ୍ତର୍ଭୁକ୍ତ ତା'ହେଲେ ହୁମାର ଏଇ ମନ୍ଦିର, ଶିବଲିଙ୍ଗ, ଲିଙ୍ଗ ଉପର ସାପ, ମନ୍ଦିର ପାଚେରି ଯାହା ଢଳି ରହିଛି । କାହିଁକି ସପ୍ତାଶ୍ଚର୍ଯ୍ୟରେ ଅନ୍ତର୍ଭୁକ୍ତ ହେବ ନାହିଁ ? ମୋର ମନେପଡୁଚି, ଥରେ ଶ୍ରୀକାନ୍ତ ଜେନା କେନ୍ଦ୍ରମନ୍ତ୍ରୀ ଥିଲାବେଳେ କେନ୍ଦ୍ର ପର୍ଯ୍ୟଟନ ମନ୍ତ୍ରୀଙ୍କୁ (ନାମ ମନେପଡୁନି) ନିମନ୍ତ୍ରଣ କରିଥିଲେ ଓଡ଼ିଶାକୁ । ମୋର ବକ୍ତବ୍ୟରେ ମୁଁ ତାଙ୍କୁ କହିଥିଲି ହୁମା କଥା ଏବଂ ଫୁଲବାଣୀର ଚକାପାଦ କଥା, ଯେଉଁଠି ଘରଠାରୁ ଗଛ ପର୍ଯ୍ୟନ୍ତ ସବୁ ଢଳି ରହିଛନ୍ତି । ସେ ଜାଣି ନ ଥିଲେ ଏବଂ ମୋତେ ଧନ୍ୟବାଦ ଜଣାଇ ସେଇ ଦୁଇ ସ୍ଥାନକୁ ଯିବା ପାଇଁ ପ୍ରତିଶ୍ରୁତି ଦେଇଥିଲେ । ଗଲେ କି ନାହିଁ, ମନେ ନାହିଁ ।

ଶ୍ରୀକାନ୍ତ ଜେନା କେନ୍ଦ୍ରମନ୍ତ୍ରୀ ଥିଲାବେଳେ ଆମେ କଟକ ନଗର ସହସ୍ର ବାର୍ଷିକୀ କମିଟିରୁ ବାରବାଟୀ ଗଡ଼ଖାଇର ପୁନଃନିର୍ମାଣ କରି ଏହାକୁ ବୋଟିଂ ପାଇଁ ତଥା ମାଛ ଚାଷ ପାଇଁ ଏକ କୋଟି ଟଙ୍କାର ଏକ ଯୋଜନା ଦେଇଥିଲୁ ଏବଂ ଶ୍ରୀକାନ୍ତ ଜେନାଙ୍କ ଉଦ୍ୟମରେ ଏହା କେନ୍ଦ୍ର ସରକାର ଗ୍ରହଣ କରି ପ୍ରଥମ କିସ୍ତିରେ କିଛି ଲକ୍ଷ ଟଙ୍କା (ଦଶ କି କୋଡ଼ିଏ କିଛି ମନେପଡୁ ନାହିଁ) ମଞ୍ଜୁର କରିଥିଲେ । ଏହାର ବିନିଯୋଗ ଏବଂ କ୍ରମାଗତ ଉଦ୍ୟମ ପାଇଁ ତତ୍‌କାଳୀନ ଡି. ଜି. ଶ୍ରୀ ଅମିୟ ଭୂଷଣ ତ୍ରିପାଠୀଙ୍କର ସଭାପତିତ୍ୱରେ ଏକ ସବ୍‌କମିଟି ଗଠନ କରାଯାଇଥିଲା ।

ଟଙ୍କା ଆସିଥିଲା, ଏଥିପାଇଁ ସଂପୂର୍ଣ୍ଣ ପ୍ରକଳ୍ପର ଏକ ନକ୍‌ସା ଏବଂ ଅଟକଳ ବି ପ୍ରସ୍ତୁତ କରାଯାଇଥିଲା । ସେଥିରେ ବାରବାଟୀ ଦୁର୍ଗରୁ ବିଜୁ ପଟ୍ଟନାୟକଙ୍କ ଘର ସମ୍ମୁଖ ରାସ୍ତାକୁ ଯୋଗ କରୁଥିବା ସ୍ଥାନରେ ଏକ ପୋଲ ନିର୍ମାଣ ଅନ୍ତର୍ଭୁକ୍ତ ଥିଲା । କିନ୍ତୁ ଅନୁଦାନ ଖର୍ଚ୍ଚ କରାହେବ କେଉଁ ସଂସ୍ଥାଦ୍ୱାରା ? ସେଥିପାଇଁ ବିବାଦ ଉପୁଜିଲା କଟକ ସହର ଉନ୍ନୟନ କର୍ତ୍ତୃପକ୍ଷ (C.D.A) ଏବଂ କଟକ ପୌର ସଂସ୍ଥା ମଧ୍ୟରେ । ଫଳରେ ରାଜ୍ୟ ସରକାରରୁ ସେ ଟଙ୍କା ଫେରିଗଲା ।

ଏହି ଲେଖା ଲେଖିଲା ବେଳକୁ ସେଇ ସମସ୍ୟା ପୁଣି ମୁଣ୍ଡ ଟେକୁଛି ।

ଏ ସଂପର୍କରେ କେତେକ ଘଟଣା ପରିଷ୍କାର କରିଦେବାର ସମୟ ଆସିଛି । ୧୯୮୯ ମସିହାରେ କଟକ ସହରର ସହସ୍ରବାର୍ଷିକୀ ପାଳନର ଯୋଜନାରେ ବାରବାଟୀ ଦୁର୍ଗ ଖନନର କଥା ଉଠିଲା । ସଭାପତି ଜଷ୍ଟିସ ହରିହର ମହାପାତ୍ର ଯେତେବେଳେ କେନ୍ଦ୍ର ପ୍ରତ୍ନତାତ୍ତ୍ୱିକ ବିଭାଗ ପାଖରେ ଦୁର୍ଗ ଖନନର ଦାବି ଉପସ୍ଥାପନ କଲେ ସେତେବେଳେ ଦେଖାଗଲା ଯେ ଏହି ସମଗ୍ର ବାରବାଟୀ ଦୁର୍ଗ ଅଞ୍ଚଳକୁ 'ସଂରକ୍ଷିତ' ବୋଲି ଘୋଷଣା

କରି ଏହାର 'ସଂରକ୍ଷଣ' ଦାୟିତ୍ୱ କେନ୍ଦ୍ର ପ୍ରତ୍ନତତ୍ତ୍ୱ ବିଭାଗ ହାତରେ ଅର୍ପଣ କରାଯାଇଛି ୧୯୧୪ ମସିହାରେ । ସେ ବିଷୟରେ କିନ୍ତୁ ସେମାନେ କୌଣସି ପଦକ୍ଷେପ ନେଇ ନାହାନ୍ତି । ଯାହା ଫଳରେ ଏଇ 'ସଂରକ୍ଷିତ' ଅଞ୍ଚଳରେ ବହୁ ଘର ତିଆରି ହୋଇଛି । ସରକାର ଜମି ଲିଜ୍ ଦେଇଛନ୍ତି, ବିଭିନ୍ନ ସରକାରୀ ସଂସ୍ଥା ବିଭିନ୍ନ ପ୍ରକାରର ନିର୍ମାଣ କରିଛନ୍ତି । ସେ ସବୁ ବେଆଇନ ବୋଲି ତତ୍କାଳୀନ ଡାଇରେକ୍ଟର ଶ୍ରୀ ଯୋଶୀ ମତ ଦେଲେ କିନ୍ତୁ ଖନନ ପାଇଁ ନିର୍ଦ୍ଦେଶ ଦେଲେ । ବାରବାଟୀ ଦୁର୍ଗର ଅବସ୍ଥିତି ଓ ତାହା ଯେ ତାଙ୍କ ବିଭାଗକୁ 'ସଂରକ୍ଷଣ' ପାଇଁ ଦିଆଯାଉଛି ତାହା ମଧ୍ୟ ତାଙ୍କୁ ଜଣା ନ ଥିଲା ।

ଖୋଳା ଆରମ୍ଭ ହେଲା । କ'ଣ ସବୁ ବାହାରିଲା ସେ ସଂପର୍କରେ ବହୁ ଗୁଜବ ପ୍ରଚାରିତ ହେଲା । ଖନନ ଦେଖିବାକୁ ବା ସାମଗ୍ରୀ ପାଇବାକୁ ଭିଡ଼ ଜମିଲା । ପ୍ରତ୍ନତତ୍ତ୍ୱ ବିଭାଗ ବାଡ଼ ଦେବା ଆରମ୍ଭ କଲେ ଏବଂ ଫଳତଃ ସନ୍ଦେହ ଦୃଢ଼ୀଭୂତ ହେଲା । ସଂଗୃହୀତ ସାମଗ୍ରୀ ସ୍ଥାନାନ୍ତର ହୋଇଯିବାର ଭୟ ଦେଖାଗଲା । ଥରେ ସ୍ଥାନାନ୍ତର ପର୍ବ ଆରମ୍ଭ ହେଲେ ତାହା କେଉଁ ପର୍ଯ୍ୟନ୍ତ ଯିବ କିଏ କହିବ ?

ବାରବାଟୀ ଦୁର୍ଗ ଭିତରେ ସେଣ୍ଟ୍ରାଲ୍ ସ୍କୁଲ ଯାଇଁ ପାଞ୍ଚ ଏକର ଜମି 'ଲିଜ୍' ଦିଆହୋଇଥିଲା । କିଏ ଦେଇଥିଲା, କାହାକୁ ଦିଆଯାଇଥିଲା, ସେ ସ୍ୱତନ୍ତ୍ର କଥା । କିନ୍ତୁ ଏହା ନିଶ୍ଚିତ ଭାବରେ ଆଇନସଙ୍ଗତ ନୁହେଁ । ସେଠାରେ ଏକ ପାଚେରି ବୁଲା ସରିଥିଲା ଏବଂ ଦି'ଚାରି ବଖରା ଘର ବି ହୋଇସାରିଥିଲା । କିନ୍ତୁ ସେଣ୍ଟ୍ରାଲ୍ ସ୍କୁଲର କର୍ତ୍ତୃପକ୍ଷ ସେଠାକୁ ଯିବାକୁ ଇଚ୍ଛା କଲେ ନାହିଁ । ଘର ଖାଲି ପଡ଼ିଥିଲା । ସେଇ ଘରେ ସଂଗ୍ରହାଳୟ ପ୍ରତିଷ୍ଠା ପାଇଁ ଆମର ଉଦ୍ୟମ ସଫଳ ହେଲା ।

ଏଇ ସମୟ ଭିତରେ କେନ୍ଦ୍ର ସରକାର କଟକର ଜିଲ୍ଲାପାଳମାନଙ୍କଠାରୁ ବାରବାଟୀ ଦୁର୍ଗ ଭିତରେ କେଉଁମାନଙ୍କୁ ଲିଜ୍ ଦିଆଯାଇଛି ଏବଂ କିଏ ଦେଇଛି ତା'ର ରିପୋର୍ଟ ମାଗିଲେ । ତତ୍କାଳୀନ ଜିଲ୍ଲାପାଳ ତୀର୍ଥବାସୀ ସାହୁ ଏବଂ ରବୀନ୍ଦ୍ର କୁମାର ରଥ ଏହାର ସାକ୍ଷ୍ୟ ବହନ କରନ୍ତି ।

ହଠାତ୍ ଖନନ ବନ୍ଦ ହୋଇଗଲା । ଖନନର ସର୍ଭେରୁ ଜଣାପଡ଼ିଲା ଯେ ଇନ୍‌ଡୋର ଷ୍ଟାଡ଼ିଅମ୍ ଦେଇ ରାସ୍ତା ଏବଂ ଗଡ଼ଖାଇ ଭିତରେ ରହିଥିବା ସ୍ଥାନରେ ଦୁର୍ଗର ଅବସ୍ଥିତି ନାହିଁ । ରହିଛି ଅପର ପଟକୁ ଏବଂ ଏଥିପାଇଁ ଆଠୋଟି ଘରକୁ ଭାଙ୍ଗିବାକୁ ପଡ଼ିବ । ଜଣାପଡ଼ିଲା ଯେ ଉକ୍ତ ଆଠୋଟି ଘର ହେଉଛି ଅସ୍ଥାୟୀ ଘର ଏବଂ ଏଗୁଡ଼ିକୁ ବିପଦସଂକୁଳ ବୋଲି ରାଜ୍ୟ ସରକାରଙ୍କର ଚିଫ୍ ସେକ୍ରେଟେରୀଙ୍କ ଅଧ୍ୟକ୍ଷତାରେ ଗଠିତ କମିଟି ଘୋଷଣା କରିସାରିଛି ପାଞ୍ଚବର୍ଷ ପୂର୍ବରୁ । ଏଗୁଡ଼ିକୁ ତୁରନ୍ତ ଖାଲିକରି ଭଙ୍ଗା ଯିବାକୁ ନିଷ୍ପତ୍ତି ହୋଇଥିବା ସତ୍ତ୍ୱେ କେତେକ ବ୍ୟକ୍ତି ଏହି ଘରଗୁଡ଼ିକୁ ଛାଡ଼ିବାକୁ ନାରାଜ । ଏଗୁଡ଼ିକ ବେଆଇନ୍, ଅସ୍ଥାୟୀ, ବିପଦସଂକୁଳ ଘୋଷିତ ସରକାରୀ ଘର । ତଥାପି ଏଇ ଅବସ୍ଥା ।

ତା'ପରେ ବହୁ ରାଜ୍ୟ ମନ୍ତ୍ରୀ, କେନ୍ଦ୍ରମନ୍ତ୍ରୀ ଏଇ ସ୍ଥାନ ପରିଦର୍ଶନ କରିଛନ୍ତି ଏବଂ ପ୍ରତିଶ୍ରୁତି ମଧ୍ୟ ଦେଇଛନ୍ତି । କିନ୍ତୁ ଏହାର ସମାଧାନ ହୋଇପାରିଲା ନାହିଁ । ଏହାଛଡ଼ା

ଏହ ଘର ସବୁକୁ ଖାଲି କରିବା ପାଇଁ ରାଜ୍ୟ ପୂର୍ତ୍ତ ବିଭାଗ ବେଶ କିଛି ଲକ୍ଷ ଟଙ୍କାର ଦାବି କଲେ,ପ୍ରତ୍ନତତ୍ତ୍ୱ ବିଭାଗରୁ । ସେମାନେ ରାଜି ନ ହୋଇ କୋର୍ଟରେ ଫେରାଦ ହେଲେ । ସହସ୍ର ବାର୍ଷିକୀ କମିଟି ତରଫରୁ ଚନ୍ଦ୍ରମଣି ନାୟକ ଏବଂ ମୁଁ ମଧ କୋର୍ଟର ଦ୍ୱାରସ୍ଥ ହେଲୁ । ଏଇଆ ଆଠୋଟି ଘର ଖାଲି କରିବାପାଇଁ । ବହୁ ବର୍ଷ ଧରି ଏହା ପଡ଼ିରହିଲା ବିଚାର ପାଇଁ ।

ଚିଫ୍ ଜଷ୍ଟିସ୍ ତ ରହନ୍ତି ବାରବାଟୀ କିଲା ଭିତରେ । ତାଙ୍କ ଗାଡ଼ି କୁଆଡ଼େ ଦିନେ ଅଟକିଗଲା ରାସ୍ତାରେ, ବାରବାଟୀ ଦୁର୍ଗ ଭିତରେ । କ'ଣ ଗୋଟାଏ ଦୁଇଟି ବିବାହ ଉତ୍ସବ ଯୋଗୁଁ ଏଇ ଟ୍ରାଫିକ୍ ଜାମ୍ । କ୍ଷୁବ୍ଧ ବିଚାରପତି ଅଳ୍ପଦିନରେ ଅବସର ନେବାର କଥା । ସେ ଏଇ ସମଗ୍ର ଫାଇଲ ମଗାଇ ଅବସର ନେବା ପୂର୍ବଦିନ ରାୟ ଦେଲେ ଯେ ସମଗ୍ର ବାରବାଟୀ ଦୁର୍ଗ ଅଞ୍ଚଳକୁ (ଆପଣାର ସରକାରୀ ନିବାସ ସମେତ) ପ୍ରତ୍ନତତ୍ତ୍ୱ ବିଭାଗକୁ ଦେଇଦିଆଯାଉ, ୧୯୧୪ ମସିହା ଚୁକ୍ତି ଅନୁଯାୟୀ ।

ମଝିରେ ଖନନ କାର୍ଯ୍ୟ ବନ୍ଦ ହୋଇଯାଇଥିଲା । ଏନ୍.ଡି.ଏ. ସରକାର ସମୟରେ ସରସ୍ୱତୀ ନଦୀର ଖନନ ପାଇଁ ଏଠାରୁ ଖନନ କାର୍ଯ୍ୟ ଏବଂ ସଂସ୍ଥା ଉଠିଯିବ ବୋଲି ସ୍ଥିର ହୋଇ ରହିଥିଲା । ଯାହାହେଉ ସାଂସଦ ଭର୍ତ୍ତୃହରି ମହତାବ, ଗଣମାଧ୍ୟମର ପ୍ରତିନିଧି ଏବଂ କଟକ ସହରର ବିଶିଷ୍ଟ ନାଗରିକମାନଙ୍କ ମିଳିତ ଅନୁରୋଧ ଏବଂ ପ୍ରତିରୋଧ ହେତୁ ଏହା ନ କରିବା ପାଇଁ ତତ୍କାଳୀନ କେନ୍ଦ୍ରମନ୍ତ୍ରୀ ଜଗମୋହନ ନିର୍ଦ୍ଦେଶ ଦେଲେ ।

ବାରବାଟୀ ଦୁର୍ଗ ଅଞ୍ଚଳର ବିକାଶ ପାଇଁ ଏକ ମାଷ୍ଟରପ୍ଲାନ ଆବଶ୍ୟକ ଏବଂ ଏଥିପାଇଁ ଆବଶ୍ୟକ ପ୍ରଭୂତ ଅର୍ଥର ବନ୍ଦୋବସ୍ତ କରାଯିବା ଆବଶ୍ୟକ । ଏହା ହୋଇ ନାହିଁ କି ସେ ଦିଗରେ ପ୍ରତ୍ନତତ୍ତ୍ୱ ବିଭାଗ ଉଦ୍ୟମ ବି କରି ନାହିଁ । ଏହା ଅଧାପନ୍ତରିଆ ହୋଇପାରିବ ନାହିଁ । ବାରବାଟୀ ଗଡ଼ଖାଇର ବିକାଶ ସହିତ କଟକର ଷ୍ଟର୍ମ ୱାଟର ଚ୍ୟାନେଲର ବିକାଶ ଜଡ଼ିତ । ଠିକ୍ ସେହିପରି ସତ୍ୟବ୍ରତ ଷ୍ଟାଡ଼ିଅମର୍ ପ୍ରାନ୍ତରରେ ପ୍ରାତଃଭ୍ରମଣ କରୁଥିବା ଶହ ଶହ ବ୍ୟକ୍ତିଙ୍କୁ ବଂଚିତ କରି ଏହାର ଯଦି ପ୍ରକୃତ ଉପଯୋଗ କରା ନ ଯାଏ ତାହା କାହାରି ଲାଭ କରିବ ନାହିଁ । ହଠାତ୍ ପଡ଼ିଆଟାକୁ ବଗିଚା କରିବା ପାଇଁ ଉଦ୍ୟମ କ'ଣ ସତରେ ବଗିଚା ପାଇଁ ? ବଗିଚା ପାଇଁ କ'ଣ ସ୍ଥାନର ଅଭାବ ରହିଛି ବାରବାଟୀ ଦୁର୍ଗର ପରିଖାରେ ? ସେଥିପାଇଁ ଯୋଜନା ନାହିଁ, ଅର୍ଥ ନାହିଁ, ଅର୍ଥ ଅଭାବରୁ ଖନନ ସଂପୂର୍ଣ୍ଣ ହୋଇପାରୁ ନାହିଁ । ହାତୀର ଅସ୍ଥିକୁ ପୁଣି ଘୋଡ଼ାଇ ପକାଯାଉଛି ମାଟିରେ, ଆଉ କ'ଣ ନା ବଗିଚା ହେବ ? ଠିକ୍ ସେଇପରି ବାରବାଟୀ ଖାଇକୁ ମାଛ ଚାଷ ଏବଂ ବୋଟିଂ ପାଇଁ ବିବାଦ ! ମାଷ୍ଟର ପ୍ଲାନ୍ ନାହିଁ, ଅର୍ଥର ବନ୍ଦୋବସ୍ତ ନାହିଁ, ମାଲିକାନା ବିବାଦ ହଟି ନାହିଁ । ଆଉ କ'ଣ ନା ପୁନଃର୍ଗଠନ । ନବୀନ ପଟ୍ଟନାୟକଙ୍କୁ ଖୁସି କରିବା ପାଇଁ ପାର୍କଟିଏ କରାଯାଇପାରେ କିନ୍ତୁ ସେଇଟା କ'ଣ ଐତିହାସିକ ବାରବାଟୀ ଦୁର୍ଗର ସଂରକ୍ଷଣ ? ନା ବିଜୁ ପଟ୍ଟନାୟକ ଦେଖିଥିବା ଉତ୍କଳ ବା କଳିଙ୍ଗର ରୂପାୟନ ?

ରାଜ୍ୟ ସରକାର ଏ ସଂପର୍କରେ ହସ୍ତକ୍ଷେପ କରିବା ଉଚିତ । ରାଜ୍ୟ ସଂସ୍କୃତି, ପର୍ଯ୍ୟଟନ ବିଭାଗ, କେନ୍ଦ୍ର ଓ ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗ, ରାଜ୍ୟ କ୍ରୀଡ଼ା ବିଭାଗ, କଟକ ପୌର ସଂସ୍ଥା, କଟକ ଉନ୍ନୟନ ସଂସ୍ଥାମାନଙ୍କର ପ୍ରତିନିଧିମାନେ ମିଶି ବାରବାଟୀ ଦୁର୍ଗ ପାଇଁ ମାଷ୍ଟରପ୍ଲାନ୍ ଏବଂ ଅଟକଳ ପ୍ରସ୍ତୁତ କରିବା ଉଚିତ । ଏହି ପରିସରରେ ଏକ ବୋଧିଦ୍ରୁମ ଅଛି । କବି ସଚ୍ଚି ରାଉତରାୟ ତାକୁ ଆଣିଥିଲେ ଏକ ଉଦ୍ୟାନର ବା ମ୍ୟୁଜିଅମ୍‌ର ପରିକଳ୍ପନା କରି । କିନ୍ତୁ ତାହା ହୋଇପାରିଲା ନାହିଁ । ଅଶ୍ୱତ୍ଥ ଗଛ ବଢ଼ିବାକୁ ଲାଗିଲା ତାଙ୍କର ମିଶନ୍ ରୋଡ୍ ଘରେ । ସେ ମୋତେ ଏହାକୁ ନେଇ କେଉଁଠି ଥାପନା କରିବାକୁ ଅନୁରୋଧ କଲେ । ଏକ ଛୋଟିଆ ବୈଠକ ଡକାଗଲା କଟକ ଜିଲ୍ଲାପାଳ ୰ବିନୋଦ ଝା, ୰ରାଧାନାଥ ରଥ ୰ନୀଳମଣି ରାଉତରାୟ ଏବଂ ମୁଁ । ଏହାକୁ ବାରବାଟୀ ଦୁର୍ଗ ଭିତରେ ଥାପନା କରିବା ପାଇଁ ପ୍ରସ୍ତାବ ଗୃହୀତ ହୋଇ କାର୍ଯ୍ୟକାରୀ ହେଲା । କଳିଙ୍ଗ ନିପନ ଆଜି ସଫେଇ ସଭାପତି ୰ ଫୁଂଜି ମହାରାଜ ଏହା ଥାପନା କଲେ । ସେ ଦ୍ରୁମର ଫଳକକୁ ବଦଳାଇବା ଛଡ଼ା ଆଉ କୌଣସି ଆଖିଦୃଶିଆ ବ୍ୟବହାର ଏହାର ହୋଇ ନାହିଁ । କେବଳ କିଛି ବର୍ଷ ଆମେ ସେ ବୃକ୍ଷ ବୋଧିଦ୍ରୁମଠାରୁ ହିରୋସୀମା ନାଗାସାକି ଦିବସ ଉପଲକ୍ଷେ ଶୋଭାଯାତ୍ରା କରୁଥିଲୁ ।

ସମ୍ବଲପୁର ଛାଡ଼ିଲା ବେଳକୁ ହୀରାକୁଦ ଡ୍ୟାମ୍ ତିଆରିର ସର୍ଭେ କାମ ଆରମ୍ଭ ହୋଇସାରିଥିଲା ଏବଂ ଏହା ବିରୋଧରେ ବିକ୍ଷୋଭ ମୁଣ୍ଡ ଟେକିଥିଲା । ସରାରୁ ବ୍ରଜରାଜନଗର ପର୍ଯ୍ୟନ୍ତ ଇବ ନଦୀକୂଳରେ ଅବସ୍ଥିତ ସମୃଦ୍ଧିଶାଳୀ ଗ୍ରାମସବୁ ବୁଡ଼ିଯିବ । ଲୋକେ ହରାଇବେ ଭିଟାମାଟି, ବାସଗୃହ ଚାଷ ଜମି ଏବଂ ଗୌନ୍ତିଆମାନେ ହରାଇବେ ଆପଣାର ଅଧିକାର, ଆର୍ଥିକ ଏବଂ ସାମାଜିକ । ସମସ୍ୟା ଦୁଇ ଭାଗରେ ବିଭକ୍ତ କିନ୍ତୁ ବିକ୍ଷୋଭ ମିଳିତ ।

ବିସ୍ଥାପିତମାନଙ୍କ ସମସ୍ୟା ହୀରାକୁଦ ବନ୍ଧ ବେଳରୁ ଆରମ୍ଭ ହୋଇଛି । ଏହା ପ୍ରସାରିତ ହୋଇଛି କଳିଙ୍ଗ ନଗରକୁ । କାରଣ ବିସ୍ଥାପିତମାନଙ୍କ ସମସ୍ୟା ତୁଟି ନାହିଁ ହୀରାକୁଦ ନଦୀ ବନ୍ଧ ହେବାର ୫୫ ବର୍ଷ ପରେ ମଧ୍ୟ । ଏହି ସମସ୍ୟା ଦେଖାଦେଇଛି ସବୁ ଶିଳ୍ପ ପ୍ରତିଷ୍ଠାରେ, ନଦୀବନ୍ଧ ଯୋଜନାରେ, ଖଣି ଖାଦାନ ଖୋଳାରେ । ଶିଳ୍ପ ପ୍ରତିଷ୍ଠା ହୋଇଛି । ଗରିବ ମଣିଷକୁ ଛାଡ଼ିବାକୁ ପଡ଼ିଚି ଭିଟାମାଟି, ଚାଷଜମି । ଶିଳ୍ପ ଗଢ଼ି ଉଠିଛି, କିନ୍ତୁ ଜମିର କ୍ଷତିପୂରଣ ହୁଏତ ମିଳି ନାହିଁ । ଯଦି ମିଳିଛି ପୂରା ମିଳି ନାଇଁ ଏବଂ ମିଳିଛି ଚାଷ ଜମି ହାରରେ । ସେମାନଙ୍କୁ ଥଇଥାନ କରାଇବାର ପ୍ରତିଶ୍ରୁତି ରହିଯାଇଛି ଅମଲାତାନ୍ତ୍ରିକ ଫାଇଲ ତଳେ । ପ୍ରସନ୍ନ ପଣ୍ଡା ଜଣେ ଗୌନ୍ତିଆ ଘରର ପିଲା । ଘର ରମ୍ଭେଲା ଗ୍ରାମ, ଯାହା ଆଦି ଭୂଗୋଳରୁ ଯାଇ ଇତିହାସର ପୃଷ୍ଠାରେ, ହୀରାକୁଦ ବନ୍ଧର ଅତଳ ପାଣି ତଳେ । ସେ ଥିଲେ ଶିଳ୍ପୀ, ବେଶ୍ ପ୍ରଖ୍ୟାତ ଶିଳ୍ପୀ । ସେ ଥିଲେ ସାମ୍ୟବାଦୀ । ଜୀବନକାଳବ୍ୟାପୀ ସେ ମେହନତୀ ମଣିଷ ପାଇଁ ସଂଗ୍ରାମ କରିଯାଇଛନ୍ତି । ହୀରାକୁଦର

ବିସ୍ଥାପିତ ମଣିଷର ଥଇଥାନ ପାଇଁ ତାଙ୍କର ଲଗାତର ସଂଗ୍ରାମ ତାକୁ ପ୍ରବାଦ ପୁରୁଷରେ ପରିଣତ କରିଥିଲା । ବିସ୍ଥାପିତମାନଙ୍କ ପାଇଁ ସମସ୍ୟା ସମାଧାନ ନ ହେବାଯାଏଁ ଅସନ୍ତୋଷ ଦାନା ବାନ୍ଧିଛି । ବିସ୍ଫୋରକ ପରିସ୍ଥିତି ସୃଷ୍ଟି ହୋଇଛି । ସେମାନେ ହରାଇଛନ୍ତି ଭିଟାମାଟି, କିନ୍ତୁ ଅନେକ 'ଥଇଥାନ' କରାଯାଉଥିବା ଜମିର ପଟ୍ଟା ପାଇ ନାହାନ୍ତି । ହୀରାକୁଦର ପାଣିରେ ବୁଡ଼ିଯାଉଛି ସେମାନଙ୍କର ଗ୍ରାମ, କିନ୍ତୁ ନୂଆ 'ଗ୍ରାମରେ' ପିଇବାପାଣିର ସୁବିଧା ନାହିଁ । ଜଳସେଚନ କଥା ନ କହିଲେ ଭଲ । ଏହି ଅସନ୍ତୋଷ ମାଓବାଦୀ କରିଛି ସେମାନଙ୍କୁ । ଯୁଜୁମୁରାରେ ଯାହା ଅବସ୍ଥା କଳିଙ୍ଗ ନଗରରେ ସେଇ ଅବସ୍ଥା । କଳିଙ୍ଗ ନଗରର ନେତୃତ୍ୱ ତଥାକଥିତ ପ୍ରତିଷ୍ଠିତ ରାଜନୀତିକ ନେତାମାନଙ୍କ ହାତରେ ନାହିଁ । କିମିତି ରହିବ ? ବିସ୍ଥାପିତମାନଙ୍କ ସମସ୍ୟା କ'ଣ ଆଜିର ସମସ୍ୟା, ନା ଖାଲି କଳିଙ୍ଗ ନଗରର ସମସ୍ୟା ? ରେଙ୍ଗାଲି ବନ୍ଧ, ତାଳଚେର ଖଣି, ଇନ୍ଦ୍ରାବତୀ ଜଳପ୍ରକଳ୍ପ, ରାଉରକେଲା ଇସ୍ପାତ କାରଖାନା, ଇବ୍ ଥର୍ମାଲ୍, ସୁନାବେଡ଼ା ଶିଳ୍ପ ସବୁଠି ଏଇ ସମସ୍ୟା । କାରଣ ଶିଳ୍ପ ବା ଜଳସେଚନ ପ୍ରକଳ୍ପ କାର୍ଯ୍ୟକାରୀ କଲାବେଳେ ବିସ୍ଥାପିତମାନଙ୍କର ସମସ୍ୟା ପ୍ରତି ଦୃଷ୍ଟି ଦିଆଯାଇ ନାହିଁ । କେବଳ ପ୍ରତିଶ୍ରୁତି ଦିଆଯାଇଛି । କିଛି ନ ଭାବି, ନ ଚିନ୍ତି, ପ୍ରତି ପରିବାରର ଜଣକୁ ନିଯୁକ୍ତି ଦିଆଯିବାର ଅର୍ଥ କଅଣ ? ପ୍ରଥମ କଥା ଅତ୍ୟାଧୁନିକ ଶିଳ୍ପରେ କେତେ ମଣିଷ ଲୋଡ଼ା ପଡ଼ନ୍ତି ? ଦ୍ୱିତୀୟ କଥା ହେଉଛି ଯେଉଁପରି ମଣିଷ ଲୋଡ଼ା ହୁଏ ସେଥିପାଇଁ ବୈଷୟିକ ଶିକ୍ଷା କ'ଣ ସେଇ ବିସ୍ଥାପିତମାନଙ୍କର ଅଛି ? ତେଣୁ ସେ ନିଯୁକ୍ତିର ପ୍ରତିଶ୍ରୁତିର ମୂଲ୍ୟ କ'ଣ ? ହୁଏତ ଜଣେ ଦୁଇ ଜଣ ଉପଯୁକ୍ତ ନିଯୁକ୍ତି ପାଇପାରିବେ । ଅବା କିଛି ମୂଲିଆ, ମିସ୍ତ୍ରି ହେବେ । ଆଉ ଅନ୍ୟମାନେ ପ୍ରତିଶ୍ରୁତିକୁ ଅପେକ୍ଷା କରି ଅନେଇଥିବେ । ପରିଶେଷରେ ହତୋତ୍ସାହ ବା ଡେସ୍ପରେଟ୍ (Desperate) ହୋଇ ବାଛିନେବେ ଚରମ ପନ୍ଥାକୁ । ସରକାର ଏ ପର୍ଯ୍ୟନ୍ତ (ରାଜ୍ୟ ଏବଂ କେନ୍ଦ୍ର)ଏକ ପୂର୍ଣ୍ଣାଙ୍ଗ ଥଇଥାନ ନୀତି ଗ୍ରହଣ କରି ନାହାନ୍ତି, ଯାହା ବି ଅଛି ତାହା କାର୍ଯ୍ୟକାରୀ ହୋଇପାରି ନାହିଁ । କାହିଁକି ହୋଇପାରି ନାହିଁ ତାହାର କୈଫିୟତ୍ କିଏ ଦେବ ? ନିଶ୍ଚିତ ଭାବରେ ବିସ୍ଥାପିତମାନେ ନୁହନ୍ତି । ରାଉରକେଲା ବିସ୍ଥାପିତମାନଙ୍କର ସମସ୍ୟା ସଂପର୍କରେ ସେମାନେ ସମସ୍ତଙ୍କୁ ରାଜ୍ୟ, କେନ୍ଦ୍ର ଉଭୟ କର୍ତ୍ତୃପକ୍ଷଙ୍କୁ ଜଣାଇ ଆସିଛନ୍ତି । କିନ୍ତୁ କେହି ଶୁଣିବାକୁ ପ୍ରସ୍ତୁତ ନୁହନ୍ତି । ରାଜରାସ୍ତାକୁ ଓହ୍ଲାଇବାପରେ ହିଁ କର୍ତ୍ତୃପକ୍ଷ ଶୁଣିବାକୁ ରାଜିହେଲେ । ଠିକ୍ ସେଇପରି ମହାନଦୀ କୋଲ୍ ଫିଲ୍ଡ଼ କର୍ତ୍ତୃପକ୍ଷଙ୍କ ଦ୍ୱାରା ଗ୍ରାମବାସୀମାନେ ଦ୍ୱିତୀୟଥର ପାଇଁ ବିସ୍ଥାପିତ ହେବାର ଉପକଣ୍ଠରେ । କାରଣ ବିସ୍ଫୋରଣ ଫଳରେ ସେମାନଙ୍କର ନୂଆ ବସତିର ଘର ଭାଙ୍ଗିପଡୁଚି । ପକ୍କା ଘର ଫାଟିଯାଉଛି । ସହକାରୀ କର୍ତ୍ତୃପକ୍ଷ ଏହା ସ୍ୱୀକାର କରୁଛନ୍ତି କିନ୍ତୁ କୋଇଲା ଖଣି କର୍ତ୍ତୃପକ୍ଷ କିଛି ଶୁଣିବାକୁ ନାରାଜ । ଏକଥା ବ୍ରଜରାଜନଗରରୁ ନିର୍ବାଚିତ ବିଧାନସଭା ସଦସ୍ୟ ସ୍ୱୀକାର କରନ୍ତି । ଦେଶରେ ସାର୍ବଭୌମ କିଏ ? ସରକାର ନା କୋଇଲା ଖଣି ମାଲିକ ?

ଏଇ ପ୍ରଶ୍ନ ମଧ ସେଦିନ ଉଁକି ମାରିଥିଲା । ହୀରାକୁଦ ବଂଧ ଫଳରେ ବୁଡ଼ି ଯାଉଥିବା ଗ୍ରାମବାସୀ ଠୁଳ ହୋଇଥିଲେ ସମ୍ବଲପୁରରେ । ସ୍ୱାଭାବିକ ଭାବରେ ସେଇ ଆନ୍ଦୋଳନର ନେତୃତ୍ୱ ନେଇଥିଲେ ଶିକ୍ଷିତ ଗୌନ୍ତିଆ ଘରର ପିଲାମାନେ । ପ୍ରଚାର ସହିତ ଅପପ୍ରଚାର ମିଶି ଯାଇଥିଲା । ଏହା 'କଟକିଆ' (ମାନେ ଓଡ଼ିଶା) ଲୋକଙ୍କର ଷଡ଼୍ୟନ୍ତ ବୋଲି ଯେପରି ପ୍ରଚାର ଚାଲିଥିଲା ଠିକ୍ ସେଇପରି ପାଣିରୁ ବିଜୁଳି କାଢ଼ିନେଲେ ପାଣିତ୍ୱ ହରାଇବା ସାର ହେବ ବୋଲି ମଧ ପ୍ରଚାର ଚାଲିଥିଲା ।

ପରବର୍ତ୍ତୀ କାଳରେ ଭାଗ୍ୟର ଦଶନ୍ଧି (A decade of destiny) ବହି ଲେଖିଲେ ଡକ୍ଟର ଅଯୋଧାନାଥ ଖୋସଲା । ହୀରାକୁଦ ବଂଧର ଆୟୁଷ ଅନ୍ୟୂନ ଶହେ ବର୍ଷ ବୋଲି ଏଥିରେ କଳନା କରାଯାଇଥିଲା । କିନ୍ତୁ ଯେଉଁ ହାରରେ ପଟୁମାଟିରେ ଏହା ପୋତି ହୋଇ ପଡୁଚି ସେଥିରେ ଏହାର ଆୟୁଷ ଯଥେଷ୍ଟ କମିଯିବାର ଭୟ ରହିଚି ଏବଂ ତା'ହେଲେ କ'ଣ ହେବ ଦେଶର ? ମୋର ଥିଲା ଏଇ ପ୍ରଶ୍ନ ତାଙ୍କୁ । ସେ ମୋ ପିଠିରେ ଥାପୁଡ଼େଇ ଦେଇ କହିଥିଲେ, ଯୁବକ, ସିନିକ୍ (Cynic) ହୋଇଯାଅ ନାହିଁ । ବିକଳ୍ପ କ'ଣ ସେତେବେଳକୁ ମଣିଷ ଆବିଷ୍କାର କରି ନ ଥିବ ? ହୀରାକୁଦ ବନ୍ଧ ହେବାର ୫୫ ବର୍ଷ ଅତିକ୍ରାନ୍ତ ହୋଇସାରିଛି ।'

ଏହା ଭିତରେ ସମ୍ବଲପୁରରେ କୋଶଳ ରାଜ୍ୟର ସ୍ଲୋଗାନ୍ ଉଠିଛି । ସମ୍ବଲପୁର ଲୋକେ କେଉଁ ଭାଷାରେ କଥାବାର୍ତ୍ତା କରନ୍ତି, ତାହାକୁ ଲିଖିତଭାଷା କରିବା ପାଇଁ କିଛି ଉଦ୍ୟମ ହୋଇଛି । ଏହା କିନ୍ତୁ ଏ ପର୍ଯ୍ୟନ୍ତ ଏକ କଥିତଭାଷା । ସମ୍ବଲପୁର ଅଂଚଳରେ ଅଛନ୍ତି ବା ଥିଲେ ବହୁ ପ୍ରଥିତଯଶା ଲେଖକ, କବି । ସେମାନେ ସମସ୍ତେ ଲେଖିଛନ୍ତି ଓଡ଼ିଆ ଭାଷାରେ । ଗଙ୍ଗାଧର ମେହେରଠାରୁ ଭୁବନେଶ୍ୱର ବେହେରାଙ୍କ ପର୍ଯ୍ୟନ୍ତ । କିନ୍ତୁ ମୁଁ ନିଜେ ଏବଂ ମୋର ଓଡ଼ିଆ ସମୃଦ୍ଧ ହୋଇଛି ସମ୍ବଲପୁରୀ ଭାଷାରୁ ଆନୀତ ଶବ୍ଦ ଦ୍ୱାରା । ଯେଉଁମାନେ ଓଡ଼ିଶା ସାରା ବୁଲିଛନ୍ତି ସେମାନେ ସ୍ୱୀକାର କରିବେ ଯେ କେନ୍ଦ୍ର ଓଡ଼ିଶାକୁ ବାଦ୍ ଦେଲେ ଅନ୍ୟାନ୍ୟ ଅଂଚଳର କଥିତ ଭାଷା ସ୍ୱତନ୍ତ । ଅନୁଗୋଳ, ଢେଙ୍କାନାଳ, ଆଠମଲ୍ଲିକର ସାଧାରଣ ଲୋକେ ଯେଉଁ ଭାଷାରେ କହନ୍ତି ତାହା କ'ଣ 'ଶୁଦ୍ଧ' ଓଡ଼ିଆ । ଏପରିକି ସାଇ କଟକୀମାନେ ଯେଉଁ ଭାଷା କହନ୍ତି ତାହା କ'ଣ 'ଶୁଦ୍ଧ'ଓଡ଼ିଆ । ଠିକ୍ ସେଇପରି ଗଂଜାମ, କୋରାପୁଟରେ ଯେଉଁ ଭାଷାରେ ଲୋକେ କଥାବାର୍ତ୍ତା କରନ୍ତି ତାହା କ'ଣ 'ଶୁଦ୍ଧ' ଓଡ଼ିଆ । ନା ବାଲେଶ୍ୱର, ମୟୂରଭଂଜରେ ଯେଉଁ ଭାଷାରେ ଲୋକେ କଥାବାର୍ତ୍ତା କରନ୍ତି ତାହା 'ଶୁଦ୍ଧ' ଓଡ଼ିଆ । କିନ୍ତୁ ଏଇ ସବୁ କଥିତ ଭାଷାରୁ ଆନୀତ ଅନେକ ଶବ୍ଦ ଓଡ଼ିଆ ଭାଷାକୁ ସମୃଦ୍ଧ କରିଛି, ଏଥିରେ କୌଣସି ସନ୍ଦେହ ନାହିଁ ।

ମୋର ପଡ଼ୋଶୀଙ୍କର ଘର ଖୋର୍ଦ୍ଧା । ତାଙ୍କ ଝିଅର ନାମ ବୁଇ । ବୁଇ, ନନି ସମ୍ବଲପୁର ଭାଷା । ସେଇପରି ୰ଅକ୍ଷୟ ମହାନ୍ତିଙ୍କର ଗୀତ 'ସମ୍ବଲପୁର ଗାଧୁଆ ତୁଠେ ସିନାନ କରେ ନନି ସମସ୍ତଙ୍କର ପ୍ରିୟ ଗୀତ । ଠିକ୍ ସେହିପରି ତନ୍ଦରା, ଆଲରା

ଶବ୍ଦ ଗଂଜାମ ଜିଲ୍ଲାର କଥିତ ଭାଷାରୁ ଆସିଛି । ମୁଁ ମୋର ଲେଖାରେ ଏଇ ଶବ୍ଦ ବ୍ୟବହାର କରିଛି ।

କଥିତ ଭାଷା ଯେ ଲିଖିତ ଭାଷା ହୋଇପାରିବ ନାହିଁ ତା' ନୁହେଁ । ତା' ହେବା ଉଚିତ । ଯେପରି ଆଲଚିକି । କିନ୍ତୁ ଖାଲି କହିଦେଲେ ତ ହେବ ନାହିଁ ବା ତାହା କୌଣସି ଗୋଟିଏ ଗୋଷ୍ଠୀ ବା ଅଞ୍ଚଳରେ ସୀମିତ ହୋଇ ରହିବା ଉଚିତ ନୁହେଁ । ଗୋଟିଏ ରାଜ୍ୟରେ ଯେ ବିଭିନ୍ନ ଭାଷା ରହିବ ନାହିଁ, ତା ମଧ୍ୟ ନୁହେଁ । ଆଞ୍ଚଳିକତାର ସ୍ଲୋଗାନ୍ ଦେଇ ମଧ୍ୟ ତାହାର ସମାଧାନ ହୋଇପାରିବ ନାହିଁ । ଏହାର ଉଦାହରଣ ଗୁର୍ଖାଲାଣ୍ଡ, ଏହାର ଉଦାହରଣ ମଧ୍ୟ ଝାଡ଼ଖଣ୍ଡ । ବାମପନ୍ଥୀମାନେ ସ୍ୱୟଂଶାସନର ସ୍ଲୋଗାନ୍ ଆଣିଥିଲେ ଲେନିନଙ୍କଠାରୁ । ସ୍ୱୟଂଶାସନର ଲେନିନ୍‌ବାଦୀ ମତର ବିରୋଧ କରୁଥିଲେ ଟ୍ରଟସ୍କି । କେବଳ ଗୋଟିଏ ଜାତି ବା ଧର୍ମର ଲୋକେ ଶାସନକୁ ଗଲେ ଯେ ସେ ଜାତି ବା ଧର୍ମର ବିକାଶ ହୋଇଯିବ ତା' ଭାବିବା ଭୁଲ୍ । ତା' ହୋଇଥିଲେ ମୁସଲିମ୍ ରାଷ୍ଟ୍ର ପାକିସ୍ତାନରେ ମୁସଲିମ୍ ଦରିଦ୍ରଙ୍କ ସଂଖ୍ୟା ବୃଦ୍ଧି ପାଇ ଚାଲି ନ ଥାନ୍ତା ବା ବାଂଲାଦେଶର ମୁସଲମାନମାନେ ଇସ୍‌ଲାମିକ ସ୍ୱୈରତନ୍ତ୍ର ବିରୋଧରେ ବିଦ୍ରୋହ ଘୋଷଣା କରି ନ ଥାନ୍ତେ । କ'ଣ ଅବସ୍ଥା ଆରବ ଦେଶ ସମୂହରେ ଥିବା ସାଧାରଣ ମୁସଲିମ୍ ଜନତାର ? ଅଥଚ ଏଇସବୁ ରାଷ୍ଟ୍ର ଇସ୍‌ଲାମିକ ରାଷ୍ଟ୍ର । ଲେନିନବାଦୀ ସ୍ୱୟଂଶାସିତ ଅଂଚଳର ଉନ୍ନତି ଘଟିଛି କିନ୍ତୁ ବିଷ ଝରି ନାହିଁ, ଚେଚନାୟା ସ୍ୱୟଂଶାସିତ ଅଂଚଳ ରୁଷ ବକ୍ଷରେ ଦୁଷ୍ଟ ବ୍ରଣ ଭଳି ବର୍ତ୍ତମାନ ପର୍ଯ୍ୟନ୍ତ ଦଣ୍ଡାୟମାନ । ଝାଡ଼ଖଣ୍ଡ ରାଜ୍ୟରେ ତ ଆଦିବାସୀ ସରକାର ଗଠିତ ହେଲା । ଅଥଚ ମାଓବାଦୀମାନଙ୍କର ପ୍ରଭାବ ବଢ଼ିଚାଲିଛି କାହିଁକି ? ଗୁର୍ଖାଲାଣ୍ଡ ଗଠିତ ହେବାପରେ କିଛି ଗୁର୍ଖା ଶାସନର ମିଠା ଚାଖିଲେ କିନ୍ତୁ କ'ଣ ବିକାଶ ହେଲା ସାଧାରଣ ଗୁର୍ଖାର ?

ମୋର ଜଣେ ବନ୍ଧୁ ଆଦିବାସୀ ନେତା ଥିଲେ ମନ୍ତ୍ରୀ । ସେ ଆଉ ନାହାନ୍ତି । ତେଣୁ ତାଙ୍କ ନାମ କହି ଲାଭ ନାହିଁ । ସେ ଦିନେ ବକ୍ତୃତା ଦେଉଥିଲେ ନାରୀ ସଂଘ ସଦନ, କଟକରେ । ଆଦିବାସୀମାନଙ୍କର ବିକାଶ ହୋଇ ନାହିଁ । ଏଥିପାଇଁ ଦାୟୀ କିଏ ? ଦାୟୀ କିଏ ? ସେ ଗର୍ଜନ କରୁଥିଲେ । ମୁଁ ଠିଆ ହୋଇ କହିଲି ଆପଣ ! ଆପଣଙ୍କ ଜିଲ୍ଲାର ଯଦି ଆଉ ଶହେ ଗ୍ରାଜୁଏଟ୍ ବାହାରି ଥାଆନ୍ତେ, ତା'ହେଲେ କ'ଣ ଆପଣ ବିଧାନସଭା ସଦସ୍ୟ , ପାର୍ଲାମେଣ୍ଟ ସଦସ୍ୟ, ରାଜ୍ୟର ମନ୍ତ୍ରୀ, ବିଭିନ୍ନ କମିଶନର ସଭ୍ୟ ଗୋଟାକ ପରେ ଗୋଟାଏ ହୋଇ ଚାଲିଥାନ୍ତେ ? ଆପଣମାନେ ହେଉଛନ୍ତି ଆଦିବାସୀ ବ୍ରାହ୍ମଣ ବା ଆଦିବାସୀ କରଣ । ଆପଣମାନେ ଚାହାନ୍ତି ନାହିଁ, ସେମାନଙ୍କର ବିକାଶ ସମୃଦ୍ଧି ।

ଜଣେ ହରିଜନ, ଜଣେ ଆଦିବାସୀ, ଜଣେ ଦିନମଜୁରିଆ କ୍ଷମତାକୁ ଚାଲିଗଲେ ଯେ ହରିଜନ, ଆଦିବାସୀ, ଦିନମଜୁରିଆମାନଙ୍କର ଭାଗ୍ୟ ବଦଳିଯିବ ତା' ନୁହେଁ ।

ଓଡ଼ିଶା ରାଜ୍ୟରେ ବର୍ତ୍ତମାନ ଆଞ୍ଚଳିକ ଅସନ୍ତୋଷ ମୁଣ୍ଡ ଟେକିଛି । କାହିଁକି ?

ଓଡ଼ିଶା ପ୍ରଦେଶ ଗଠନ ପାଇଁ ସମ୍ବଲପୁର ଅଂଚଳର ଅବଦାନ ବିପୁଳ । ସେମାନଙ୍କର ପ୍ରଚେଷ୍ଟା ଯୋଗୁଁ ୧୯୦୫ ମସିହାରେ ବଲାଙ୍ଗୀର, ଗାଙ୍ଗପୁର ପ୍ରଭୃତି ଅଂଚଳ ବିହାର ଓଡ଼ିଶାକୁ ଆସିଗଲା । ଓଡ଼ିଶା ପ୍ରଦେଶ ଗଠନର ଏହା ଅୟମାରମ୍ଭ । ଓଡ଼ିଶାର ପ୍ରଥମ ବୃହତ୍ ଶିଳ୍ପ ହେଉଛି ବ୍ରଜରାଜନଗର । ସବୁଠାରୁ ବୃହତ୍ ଏବଂ ଏକମାତ୍ର ଇସ୍ପାତ ଶିଳ୍ପ ରାଉରକେଲା । ଦୁଇଟିଯାକ ସିମେଣ୍ଟ କାରଖାନା ରାଜଗାଙ୍ଗପୁର ଏବଂ ହୀରାକୁଦରେ । ସବୁଠାରୁ ବୃହତ୍ ଜଳପ୍ରକଳ୍ପ ହୀରାକୁଦ ବଂଧ । ଏ ତାହକା ସରି ନାହିଁ ।

ତା'ପରେ ଅସନ୍ତୋଷ କାହିଁକି ? କାରଣ ଏହା ଫଳରେ ଜାତୀୟ ଆୟ ବୃଦ୍ଧି ହୋଇଛି । ଦେଶ ସମୃଦ୍ଧ ହୋଇଛି କିନ୍ତୁ ବିକାଶ ହୋଇ ନାହିଁ । ସମୃଦ୍ଧି ଏବଂ ବିକାଶ ଏକା କଥା ନୁହେଁ । ଜାତୀୟ ଆୟର ସମତୁଲ ବଣ୍ଟନ ହେଉଛି ବିକାଶ । ସ୍ଥାନୀୟ ଲୋକେ କ'ଣ ପାଉଛନ୍ତି ସେଥିରୁ ? ବିସ୍ଥାପିତମାନଙ୍କର ସଂଖ୍ୟା ବଢ଼ି ଚାଲିଛି, କିନ୍ତୁ ଥଇଥାନ ?

ସମ୍ବଲପୁରକୁ ସିଧା ରେଳବାଇ ଲାଇନ ନ ଥିଲା ଏଇ ଗଲା କାଲି ପର୍ଯ୍ୟନ୍ତ । ମହାନଦୀର ରାସ୍ତାପୋଲ ହେବା ପଚାଶ ବର୍ଷ ହୋଇ ନାହିଁ । ଯିବାକୁ ହେଲେ ଯିବ ଟ୍ରେନ୍‌ରେ, ତିନୋଟି ରାଜ୍ୟ ଦେଇ । ନଚେତ୍ ମେରାମୁଣ୍ଡଳି, ଅନୁଗୋଳ ଦେଇ ସମ୍ବଲପୁର । ଅନୁଗୋଳ, ସମ୍ବଲପୁରରେ ଲେଖାଥିବ ସାଇନ୍‌ବୋର୍ଡ଼ 'ପରବର୍ତ୍ତୀ ପେଟ୍ରୋଲ ଟାଙ୍କି ଶହେ ମାଇଲ ଦୂରରେ । ସାବଧାନ !' ବାଟରେ ଗଭୀର ଅରଣ୍ୟାନୀ । ସମ୍ବଲପୁର ଅଂଚଳକୁ ଭାବର ଆଦାନ ପ୍ରଦାନ ସଂପର୍କ ପ୍ରତିଷ୍ଠା କଠିନ ହୋଇଗଲା । ତଥାପି ସେପଟରୁ ଡାକ୍ତର ଆଇଜାକ୍ ସାନ୍ତା, ସାମୁଲଏ ଦାସ ପ୍ରଭୃତି ଯେପରି ଆସିଲେ ଠିକ୍ ସେଇପରି ଏପଟରୁ କବିରାଜ ଗୋକୁଳାନନ୍ଦ ପଟ୍ଟନାୟକ, ସୁବୋଧ ପଟ୍ଟନାୟକ ଯାଇଛନ୍ତି । କିନ୍ତୁ ତାହା କେତେ ?

ଯେଉଁ ଅଫିସର ସବୁ ଗଲେ ସେମାନଙ୍କ ମଧ୍ୟରୁ ଅଧିକାଂଶଙ୍କର କୌଣସି ବିଦ୍ୱେଷ ନ ଥିଲା ବା ସେମାନେ କୌଣସି ବିଦ୍ୱେଷର ସମ୍ମୁଖୀନ ହୋଇ ନ ଥିଲେ । କିନ୍ତୁ କେତେକ ଯାହା କଲେ ତାହାର ବିଷ ଭୋଗ କରିବାକୁ ହେଲା ଅନ୍ୟମାନଙ୍କୁ ।

ସମୃଦ୍ଧି ଏବଂ ବିକାଶ ଭିତରେ ଥିବା ବ୍ୟବଧାନର ଶିକାର ହେଲା ଏଇ ଅଂଚଳ । କୃଷି ବିଶ୍ୱବିଦ୍ୟାଳୟକୁ ସମ୍ବଲପୁରରେ ଆରମ୍ଭ କରାଯାଇଥିଲେ ଅବସ୍ଥା ଅନେକ ସୁଧୁରିଯାନ୍ତା ।

ଏଇ ଅସନ୍ତୋଷ କ'ଣ ଖାଲି ପଶ୍ଚିମ ଓଡ଼ିଶାରେ ? ଦକ୍ଷିଣ ଓଡ଼ିଶାରେ କୋରାପୁଟରେ, ଉତ୍ତର ଓଡ଼ିଶାରେ, କେଉଁଝରରେ ନାହିଁ ?

ଶିଳ୍ପାୟନ ହେବ କୋରାପୁଟରେ, ଖଣି ଖୋଳାହେବ କେଉଁଝରରେ । ସେମାନଙ୍କର ଦାବି ହେବ ନାହିଁ ଗୋଟାଏ ମେଡ଼ିକାଲ କଲେଜ ପାଇଁ ? ଗୋଟାଏ ଇଞ୍ଜିନିୟରିଙ୍ଗ

କଲେଜ ପାଇଁ ? ବନ୍ଧୁ ନରସିଂହ ମିଶ୍ର ଥିଲେ ପଶ୍ଚିମ ଓଡ଼ିଶା ବିକାଶ ପରିଷଦର ସଭାପତି, କିଛି ବର୍ଷ ତଳେ । ଯୋଜନା କରିଥିଲେ ଏକ ମେଡ଼ିକାଲ କଲେଜ ବଲାଙ୍ଗୀରରେ । ମୋର ବି କିଛି ଭୂମିକା ଥିଲା ସେଥିରେ । କାମ କିଛି ଆଗେଇଥିଲା । ସେ ଗଲେ ଗାଦିରୁ ଉଭେଇଗଲା ଯୋଜନା । ତିନିତିନିଟା ମେଡ଼ିକାଲ୍ କଲେଜର ଯୋଜନା ହେଲା ପଶ୍ଚିମ ଓଡ଼ିଶା ପାଇଁ । ନିର୍ବାଚନକୁ ଆଖିରେ ରଖି । ଗୋଟିଏ ବି କାର୍ଯ୍ୟକାରୀ ହେଲା ନାହିଁ । କୋଟି କୋଟି ଟଙ୍କା ଆୟ ହେବ, କେଉଁଝର ମାଟିରୁ । ଖଣିରେ ବିଦୀର୍ଣ୍ଣ ହେବ କୁଆଁରୀ ବସୁନ୍ଧରା, ସେମାନେ ପ୍ରଦୂଷଣର ଶିକାର ହେବେ, ବିଭିନ୍ନ ରୋଗରେ ସଡ଼ିବେ ଆଉ ମେଡ଼ିକାଲ କଲେଜଟିଏ ଦାବି କରିବେ ନାହିଁ ? ଓଡ଼ିଶାରେ କୌଣସି କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ ନାହିଁ । ଆଦିବାସୀମାନଙ୍କ ପାଇଁ ଲୁହ ଗଡ଼ାଉଛନ୍ତି ସମସ୍ତେ । କୋରାପୁଟବାସୀ ଯୋଗାଇବେ ଭିଟାମାଟି, ଜଙ୍ଗଲ, ଜମି ଶିଳ୍ପାୟନ ପାଇଁ । ସେମାନେ ଦାବି କରିବେ ନାହିଁ ଏକ ଇଂଜିନିୟରିଂ କଲେଜ । ଏକ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟ । ଆଦିବାସୀ କଳା, ସଂସ୍କୃତିର ଗବେଷଣା ହେବ, ବଡ଼ ବଡ଼ ସହରର ବାତାନୁକୂଳ ଗୃହମାନଙ୍କରେ ?

ମୋର ମନେପଡୁଚି ଆମେ ସବୁ ଯାଇଥିଲୁ କୋରାପୁଟ, ଯାଇଥିଲୁ କେଉଁଝର । ଆଦିବାସୀମାନଙ୍କ ସହିତ କଥାବାର୍ତ୍ତା ସବୁ ଠିକ୍ ଚାଲିଥିବ । ସେମାନେ ନାଚୁଥିବେ ଗାଉଥିବେ । ଯେମିତି କ୍ୟାମେରା ବା ଟେପ୍‌ରେକର୍ଡ଼ର ଦେଖିବେ, ସବୁ ବନ୍ଦ ହୋଇଯିବ । ମାଗିବେ ପଇସା । କାରଣ ସେମାନେ ସଚେତନ ଯେ ସେମାନଙ୍କର ଗୀତ, ସେମାନଙ୍କର ନାଚକୁ ନେଇ ବ୍ୟବସାୟ ଚାଲିଛି । ତେଣୁ ଟେପ୍‌ରେକର୍ଡ଼ର ବା କ୍ୟାମେରା ଖୋଲିଲି, ସବୁ ବନ୍ଦ । ଆଗ ପଇସା ଦିଅ । ତା'ପରେ ନାଚଗୀତ ।

ଶିଳ୍ପାୟନ ହେବ । ହେବା ଉଚିତ । କିନ୍ତୁ ଲୋକମାନଙ୍କୁ ବିସ୍ଥାପିତ କରି ନୁହେଁ, ସେମାନଙ୍କୁ ଉପଯୁକ୍ତ ଥଇଥାନ କରି । ଆଦିବାସୀମାନେ ହୁଅନ୍ତୁ କି ବିହାର-ଓଡ଼ିଶା ପରି ପ୍ରାକୃତିକ ସମ୍ପଦରେଭରା ରାଜ୍ୟର ଜନସାଧାରଣ ହୁଅନ୍ତୁ ସେମାନଙ୍କର ବିକାଶ ବିନା ଜାତୀୟ ଆୟ ବୃଦ୍ଧିର କୌଣସି ମାନେ ହୁଏନା ।

ସେଇଯୋଗୁଁ ଅସନ୍ତୋଷ । ଅସନ୍ତୋଷ ଜନସାଧାରଣଙ୍କ ଭିତରେ, କାରଣ ଆଞ୍ଚଳିକ ବୈଷମ୍ୟ ବଢ଼ି ଚାଲିଛି । କାରଣ ଜାତୀୟ ସମୃଦ୍ଧିର ସମତୁଲ ବଣ୍ଟନ ହୋଇ ନାହିଁ । ଅସନ୍ତୋଷ କାରଣ ଯେଉଁମାନେ ଭିଟାମାଟି ହରାଇଛନ୍ତି ସେମାନେ ରହିବାପାଇଁ ଜମି ବା ଜମିର ପଟ୍ଟା ପାଇ ନାହାନ୍ତି । ଯେଉଁମାନଙ୍କର ଜମି ଭିଟାମାଟି ବୁଡ଼ିଯାଇଛି ଅତଳ ପାଣି ଭିତରେ, ସେମାନଙ୍କର ନୂଆ ବସତିକୁ ପଇବାପାଣି ନାହିଁ । ଶିକ୍ଷା, ସ୍ୱାସ୍ଥ୍ୟ କଥା ତ ବହୁଦୂରର କଥା ।

ଶିଳ୍ପ ପ୍ରତିଷ୍ଠା ହେଲେ ପ୍ରତ୍ୟେକ ପରିବାରର ଜଣକୁ ଚାକିରି ମିଳିବ । ଅତ୍ୟାଧୁନିକ ଶିଳ୍ପରେ କେତେଜଣ ଚାକିରି ପାଇବେ ଏବଂ କି ଚାକିରି ପାଇବେ ?

ବିସ୍ଥାପିତ ବ୍ୟକ୍ତିମାନଙ୍କର ପିଲାମାନେ ଯେଉଁ ବୈଷୟିକ ଶିକ୍ଷା ପାଇଲେ ଶିଳ୍ପରେ ଉପଯୁକ୍ତ ଚାକିରି ପାଇବେ ତା'ର ଆଗତୁରା ବ୍ୟବସ୍ଥା କାହିଁ ? ଏ ସଂପର୍କରେ ବ୍ୟକ୍ତିଗତ ଅଭିଜ୍ଞତା ତିକ୍ତ ।

ଓଡ଼ିଶାରେ ଆଦିବାସୀମାନଙ୍କ ଉପରେ ଗବେଷଣା ପାଇଁ ଆମେ ଏକ ପ୍ରକଳ୍ପ ହାତକୁ ନେଇଥିଲୁ । କନ୍ଧ ଓ ସଉରାମାନଙ୍କ ଉପରେ ଗବେଷଣା ସରିଲା ପରେ ଏହା ଆଉ ଆଗକୁ ଯାଇପାରିଲା ନାହିଁ, ଅନୁଦାନ ଅଭାବରୁ । ଆମର ଗବେଷଣା ନିରୁତା ନ ଥିଲା । ଆମର ଗବେଷକମାନେ ଆଦିବାସୀମାନଙ୍କର ଗହଣରେ ରହିଥିଲେ । ଜଣେ ଗବେଷକ ତ ତାଙ୍କରି ଭଳି ଡ୍ରେସ ମଧ୍ୟ ପିନ୍ଧୁଥିଲେ । ସେମାନେ ସଂଗ୍ରହ କରୁଥିଲେ ଉପାଦାନ କ୍ଷେତ୍ର ଉପରୁ । ଲାଇବ୍ରେରୀମାନଙ୍କରେ ତିଆରି ହୋଇଥିବା 'ଗବେଷଣା' ସେମାନେ ବ୍ୟବହାର କରୁ ନ ଥିଲେ । ସେମାନେ ସଂଗ୍ରହ କରୁଥିବା ଉପାଦାନକୁ କେବଳ ଶୁଦ୍ଧ ଇଂରାଜୀରେ ସଜାଇ ରଖାଯାଇଥିଲା । ଗବେଷଣାର ନାମ ଥିଲା 'ମଣିଷ ଓ ଅରଣ୍ୟ' । ସେଇ ମଣିଷର ଦର୍ଶନ, ବିଶ୍ୱଦୃଷ୍ଟି, ଲୋକଗୀତି ସବୁ ସଂଗ୍ରହ କରିଥିଲେ ସେମାନେ । ଆଗରୁ କହିଛି ଏହି ଗବେଷଣା ନିରୁତା ନ ଥିଲା । ଗବେଷକମାନଙ୍କୁ କୁହାଯାଇଥିଲା ପ୍ରସ୍ତାବ ଦେବାପାଇଁ । ପୋଡୁଚାଷ, ଶିକ୍ଷା, ସଂସ୍କୃତି, କୃଷି ସବୁ ବିଷୟରେ । ଦିଲ୍ଲୀ ଏବଂ କାଠମାଣ୍ଡୁରେ ଅନୁଷ୍ଠିତ ହୋଇଥିବା ଆନ୍ତର୍ଜାତିକ ସମ୍ମିଳନୀ ଦୁଇଟିରେ ଏଇ ବିଶାଳ ସଂଗ୍ରହ ଉପସ୍ଥାପିତ ହୋଇଥିଲା ଏବଂ ପ୍ରଶଂସା ମଧ୍ୟ ଲାଭ କରିଥିଲା । ପରେ ଦିଲ୍ଲୀରେ ଡି.କେ. ପବ୍ଲିଶର୍ସ ଏହାକୁ ଦଶୋଟି ବହିରେ ପ୍ରକାଶ କରିବା ପାଇଁ ସ୍ଥିର କରିଛନ୍ତି । ବର୍ତ୍ତମାନ ସୁଦ୍ଧା (ଏପ୍ରିଲ ୨୦୦୬) ଏହାର ପ୍ରଥମ ପାଞ୍ଚୋଟି ବହି ପ୍ରକାଶିତ ହୋଇସାରିଚି । ଆନ୍ତର୍ଜାତିକ ସମ୍ମିଳନୀ ଦୁଇଟିରେ ଗବେଷକମାନେ ଦେଇଥିବା ପ୍ରସ୍ତାବ ଅନୁମୋଦିତ ହୋଇ କେନ୍ଦ୍ର ଓ ରାଜ୍ୟ ସରକାରଙ୍କ ପାଖକୁ ପଠାଯାଇଥିଲା । ସେଗୁଡ଼ିକ ଫାଇଲର ଶୀତଳ ଭଣ୍ଡାରରେ ସଂରକ୍ଷିତ ଥିବ ଯେପରି ବାରବାଟୀ ଦୁର୍ଗ ଅଂଚଳ 'ସଂରକ୍ଷିତ' ରହିଛି କେନ୍ଦ୍ର ପ୍ରତ୍ନତାତ୍ତ୍ୱିକ ବିଭାଗ ଅଧୀନରେ ୧୯୧୪ ମସିହାରୁ ।

ଏଇଠି ମନେପଡ଼େ ଯେ ଆମେ ସବୁ ଏକ ପ୍ରତିନିଧି ଦଳରେ ଯାଇଥିଲୁ ଚୀନ ପରିଭ୍ରମଣରେ । ସେଠାରୁ ଫେରିବାପରେ ସାମ୍ୟବାଦୀ ନେତା ଶରତ ପଟ୍ଟନାୟକ ମୋତେ ଲଗାଇଲେ ଗୋଟିଏ ରିପୋର୍ଟ ପଠାଇବା ପାଇଁ ଭାରତ ସରକାର ଓ ରାଜ୍ୟ ସରକାରକୁ । ତଦନୁଯାୟୀ ମୁଁ ଏକ ବିସ୍ତୃତ ରିପୋର୍ଟ ଲେଖି ପଠାଇଲି କେନ୍ଦ୍ର ସରକାର ଓ ରାଜ୍ୟ ସରକାରଙ୍କୁ ହଠାତ୍ ପ୍ରଥମ ଚିଠି ପହଞ୍ଚିଲା ପ୍ରଧାନମନ୍ତ୍ରୀଙ୍କ ପାଖରୁ । ରିପୋର୍ଟରେ ଭାରତ-ଚୀନ୍ ସମ୍ପର୍କରେ ପ୍ରସ୍ତାବନା ପାଇଁ ଧନ୍ୟବାଦ କିନ୍ତୁ ଅନୁରୋଧ ଚୀନ୍-ସୋଭିଏତ୍ ରୁଷ ସମ୍ପର୍କ ଉପରେ ମତ ଓ ପ୍ରସ୍ତାବନା ପଠାଇବା ପାଇଁ । ଅନୁରୋଧ ଅନ୍ୟ କାହାରିଠାରୁ ସେ ରିପୋର୍ଟ ସମ୍ପର୍କରେ କିଛି ଉତ୍ତର ବା ପ୍ରତିକ୍ରିୟା ମିଳି ନ ଥିଲା ।

ଆଦିବାସୀମାନଙ୍କର ଶିକ୍ଷା ସମ୍ପର୍କରେ ଗବେଷକମାନେ ଦୁଇଟି ପ୍ରସ୍ତାବ ଦେଇଥିଲେ । ଆଦିବାସୀଝିଅମାନଙ୍କର ସାଧାରଣ ଶିକ୍ଷା ବୃଦ୍ଧି ପାଇଁ ପଦକ୍ଷେପ ନିଆଯିବା

ଉଚିତ ଏବଂ ଆଦିବାସୀ ପୁଅଝିଅମାନଙ୍କୁ ବୈଷୟିକ ଶିକ୍ଷା ତୁରନ୍ତ ଦିଆଯିବା ଉଚିତ । ଏହାଫଳରେ ସେମାନେ ଆପଣାର ଜୀବିକା ପାଇଁ ପୋଡୁଚାଷ ଉପରେ ନିର୍ଭର କରିବା କମିଯିବ । ସରକାରୀ କଳରେ ସବୁକଥା ନିର୍ଭର କରେ ବ୍ୟକ୍ତିବିଶେଷ ଉପରେ କାରଣ କଳଟା ଚାଲେ ନାହିଁ । ତତ୍‌କାଳୀନ ରାୟଗଡ଼ା କଲେକ୍ଟର ଥିଲେ ପ୍ରଗତିଶୀଳ ଏବଂ ଆଗତଚାହାଁ ବା (forward looking) । ରାୟଗଡ଼ା ଆଦିବାସୀମାନଙ୍କ ଭିତରେ ଜମି ଆସୁଥିବା ଅସନ୍ତୋଷର ଦାନାକୁ ସେ ଠଉରାଇ ପାରିଥିଲେ । ରାୟଗଡ଼ା ଜିଲ୍ଲାରେ ଗୁଡ଼ିଏ ଶିକ୍ଷାକେନ୍ଦ୍ର ଏବଂ ବୈଷୟିକ ତାଲିମ କେନ୍ଦ୍ର ଗଠନ ପାଇଁ ସୁପାରିସ କରିଥିଲେ ଏବଂ ଏଥିପାଇଁ ବିନା ମୂଲ୍ୟରେ ଜମି ଯୋଗାଇଦେବାପାଇଁ ଭାରତ ସରକାରଙ୍କ ନିର୍ଦ୍ଦେଶାନୁଯାୟୀ ଜମି ମଧ୍ୟ ଚିହ୍ନଟ କରିଥିଲେ । କିନ୍ତୁ ସେ ବଦଳି ହୋଇଗଲେ । ଆମକୁ କେନ୍ଦ୍ର ସରକାର ଗୋଟିଏ ଆବାସିକ ଶିକ୍ଷାକେନ୍ଦ୍ର ପାଇଁ ଅନୁଦାନ ଦେଲେ । ଜମି କିନ୍ତୁ ବିନାମୂଲ୍ୟରେ ମିଳିଲା ନାହିଁ । ମୁନିଗୁଡ଼ାର ବାଁଜିକୁସୁମ ଗାଁରେ ଏହି କେନ୍ଦ୍ର ପ୍ରତିଷ୍ଠା ହେଲା । ଆଦିବାସୀ ଅଂଚଳ, ପୁଣି ନକ୍ସଲବାଦୀମାନଙ୍କର ପ୍ରଭାବ ବୃଦ୍ଧି ପାଉଛି । କିନ୍ତୁ ମୋର ସହପାଠୀ ଥିଲେ ନାଗଭୂଷଣ ଏବଂ ସହଯୋଦ୍ଧା ଥିଲେ ଡି.ଭୁବନମୋହନ । ତେଣୁ ଆମେ ନିଜ ଜମି କିଣି ଗୃହ ପ୍ରତିଷ୍ଠା କଲୁ । ବନ୍ଧୁ ରାମଚନ୍ଦ୍ର ବକ୍ସିପାତ୍ର ଆଡ଼ଭୋକେଟ ଏବଂ ମୋ ସ୍ତ୍ରୀଙ୍କର ଛାତ୍ର ଜେ.କେ. କାଗଜ ନିଜର ଅନ୍ୟତମ କର୍ମକର୍ତ୍ତା ଏ.କେ.ସାରଦା ପରିଚାଳନା ଦାୟିତ୍ୱ ଗ୍ରହଣ କଲେ । ୫୦ ଜଣ ଛାତ୍ରୀଙ୍କୁ ନେଇ ଆବାସିକ ସ୍କୁଲ ଆରମ୍ଭ ହେଲା । ବିଭିନ୍ନ ସମୟରେ ବିଭିନ୍ନ ସରକାରରେ ଥିବା ମନ୍ତ୍ରୀ, ଅଫିସରମାନଙ୍କର ସହଯୋଗରେ ଏଇ ସ୍କୁଲ ଥିବା ଗ୍ରାମକୁ ରାଜପଥରୁ ରାସ୍ତା, ଏଇ ଗ୍ରାମଗୁଡ଼ିକୁ ବିଜୁଳିବତି ଯୋଗାଣ, ନଳକୂପ ଖନନ ହୋଇଛି । ଶ୍ରୀ ସାରଦାଙ୍କ ଉଦ୍ୟମରୁ ବିଜୁଳିପଙ୍ଖା ଲାଗିଲା । କମ୍ପାଉଣ୍ଡ ଖାଇ ହୋଇଛି ସାମାଜିକ ବନୀକରଣ ହୋଇଛି, ବନ୍ୟବିଭାଗ ତରଫରୁ ଅବସର ବିନୋଦନ ଗୃହ ହୋଇଛି ଏବଂ ବିଭିନ୍ନ ବ୍ୟକ୍ତି ଓ ଅନୁଷ୍ଠାନ ସାହାଯ୍ୟ ଦେଇଛନ୍ତି । ଏସବୁ କେନ୍ଦ୍ର ଅନୁଦାନଭୁକ୍ତ ନୁହେଁ । ସ୍କୁଲର ଛାତ୍ରୀମାନେ ଭଲ ରେକର୍ଡ଼ କରିଛନ୍ତି ଶିକ୍ଷା ଏବଂ କ୍ରୀଡ଼ାରେ । ପୁରସ୍କୃତ ହୋଇଛି ସ୍କୁଲ । ଭାରତ ସରକାରଙ୍କର ବିଭାଗୀୟ ଡାଇରେକ୍ଟର ମଧ୍ୟ ପରିଦର୍ଶନ କରି ପ୍ରଶଂସା ସାର୍ଟିଫିକେଟ ଦେଇଛନ୍ତି ।

ହଠାତ୍ ଗ୍ରାଣ୍ଟ ବନ୍ଦ ହୋଇଗଲା । ୨୦୦୧-୨୦୦୨ ମସିହାରେ । କାରଣ ପଚାରିଲେ କିଛି ଉତ୍ତର ନାହିଁ । ବିଭାଗୀୟ ମନ୍ତ୍ରୀଙ୍କୁ ସଂଯୋଗ ସ୍ଥାପନ କରାଗଲା । ସେ କହିଲେ ଯେ ସେ ବର୍ଷ ସ୍କୁଲ ଚାଲିଛି କି ନାହିଁ ଜଣା ନାହିଁ । ତେଣୁ ଦିଆଯାଇ ନାହିଁ । ସେଇ ବର୍ଷ ଜିଲ୍ଲାପାଳ ରାଜ୍ୟ ସରକାର ସମସ୍ତେ ସୁପାରିସ କରିଛନ୍ତି ଏବଂ ବିଭାଗୀୟ ଡାଇରେକ୍ଟର ମଧ୍ୟ ପରିଦର୍ଶନ କରିଛନ୍ତି ବୋଲି କହିବାରୁ ୨୦୦୨ ମସିହାରୁ ଗ୍ରାଣ୍ଟ ଦିଆଗଲା ପୁଣି । କିନ୍ତୁ ୨୦୦୧-୨୦୦୨ ଗ୍ରାଣ୍ଟ ନିର୍ବାଚନ ପରେ ଦିଆଯିବ ବୋଲି ଟେଲିଫୋନ୍‌ରେ ପ୍ରତିଶ୍ରୁତି ମିଳିଲା । ନିର୍ବାଚନ ପରେ ସରକାର ବଦଳିଗଲା, କିନ୍ତୁ ପୁଣି ୨୦୦୩ ମସିହାରୁ ଗ୍ରାଣ୍ଟ୍ ବନ୍ଦ ହୋଇଗଲା । ଅଦ୍ୟାବଧି ମିଳି ନାହିଁ ।

ଏଥିପାଇଁ ଏବେ ବନ୍ଧୁ ଶ୍ରୀ ଅଜିତ୍ କୁମାର ତ୍ରିପାଠୀ ଉଦ୍ୟମ ଆରମ୍ଭ କରିଛନ୍ତି । ଓଡ଼ିଶା କ୍ୟାଡ଼ରର କୁମାରୀ ମୀନା ଗୁପ୍ତା ଉକ୍ତ ବିଭାଗର ସେକ୍ରେଟେରୀ ହେବାପରେ ଅବସ୍ଥା ସୁଧୁରିବା ବା ସମାଧାନ ହେବାର ଆଶା କରାଯାଏ । ଏ ସମ୍ପର୍କରେ ସୋନିଆ ଗାନ୍ଧୀ ଏବଂ ଡକ୍ଟର ମନମୋହନ ସିଂହଙ୍କ ଦୃଷ୍ଟି ମଧ୍ୟ ଆକର୍ଷଣ କରାଯାଇଛି । ମଜାର କଥା ହେଉଛି ଯେ ଅନୁଦାନ ଦେବେ କି ଦେବେ ନାହିଁ ସ୍କୁଲର ଭବିଷ୍ୟତ୍ ବା ଘରବାଡ଼ିର କଣ ହେବ ସେ ସଂପର୍କରେ ବିଭାଗ ନୀରବ, ହଁ ବା ନାହିଁ କିଛି ଉତ୍ତର ନାହିଁ ।

ନକ୍ସଲ ପ୍ରବଣ ଅଂଚଳ, ଆଦିବାସୀ ଇଲାକାରେ ଆଦିବାସୀମାନଙ୍କୁ ଶିକ୍ଷା ଦେବାପାଇଁ ପ୍ରଶଂସା ମିଳିବା ତ ଦୂରର କଥା, ମନେ ହେଉଛି ଯେମିତି ଆମେ ଏକ ପାପ କରିଛୁ । ପୁଣି ଆମ ସଂଗଠନର ସଭାପତି ହେଉଛନ୍ତି ଡକ୍ଟର ସୀତାକାନ୍ତ ମହାପାତ୍ରଙ୍କ ପରି ଆଦିବାସୀ ଗବେଷକ ପ୍ରଶାସକ ।

ଏଇ ହେଉଛି ବହୁଳ ପ୍ରଚାରିତ କେ.ବି.କେ. ଜିଲ୍ଲାରେ ଶିକ୍ଷା ପ୍ରତି ସରକାରୀ ଦୃଷ୍ଟିକୋଣ । ଯଦିଓ ପ୍ରତ୍ୟେକ ଦିନ ପ୍ରଚାରରେ ଏଇ ଜିଲ୍ଲାସମୂହ ପାଇଁ, ଆଦିବାସୀମାନଙ୍କ ପାଇଁ ପ୍ରତିଯୋଗିତା ଚାଲିଛି । ଅନେକ ସମୟରେ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କର କାର୍ଯ୍ୟକୁ ସନ୍ଦେହ କରାଯାଇଛି । ସବୁ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଯେ ନିର୍ମଳ ବା ସାଧୁ ତା'କେହି କହୁ ନାହିଁ କିନ୍ତୁ କିଛି ଲୋକଙ୍କ କାର୍ଯ୍ୟ ପାଇଁ ସମସ୍ତେ ଦଣ୍ଡିତ ହେବା ଉଚିତ ନୁହେଁ । ତା'ହେଲେ ପ୍ରଧାନମନ୍ତ୍ରୀଙ୍କଠାରୁ ଆରମ୍ଭ କରି ମୁଖ୍ୟମନ୍ତ୍ରୀଙ୍କ ପର୍ଯ୍ୟନ୍ତ (ଖାଲି ଏବର ନୁହେଁ) କାହିଁକି ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କୁ ଏହି କାର୍ଯ୍ୟ ପାଇଁ ସ୍ୱାଗତ କରି ଚାଲିଛନ୍ତି । ଅନେକ ସମୟରେ ଅନୁଦାନ ପାଇବା ପାଇଁ ଏଭଳି ପ୍ରକାର ପ୍ରସ୍ତାବନା ପରୋକ୍ଷରେ ଦିଆଯାଉଛି ଯାହା ଯେ କୌଣସି ମଣିଷର ଆତ୍ମସମ୍ମାନକୁ ବାଧିବ । କେବଳ ସାମାଜିକ ଅଙ୍ଗୀକାର ପାଇଁ ମଣିଷ ଏହା କରୁଛି ।

ଏଇ ସବୁ ପ୍ରଶ୍ନ ଧୀରେ ଧୀରେ ଜମାଟ ବାନ୍ଧୁଛି । ସେଦିନ ଓଲଟପାଲଟର ପ୍ରଥମ ପର୍ବରେ ଏଇ ସବୁ ପ୍ରଶ୍ନ ଉଙ୍କି ମାରିବା ଆରମ୍ଭ କରିଥିଲା ।

ସ୍ୱାଧୀନତା ସଂଗ୍ରାମରେ କିଛି ଅଂଶ ଗ୍ରହଣ କରିଥିଲି । ବୋମା ବିସ୍ଫୋରଣରେ ଆହତ ହୋଇଥିଲି । କିନ୍ତୁ କୌଣସି ପ୍ରକାର ଭତ୍ତା ଲାଗି ଇଚ୍ଛା କରି ନାହିଁ, ଉଦ୍ୟମ ବି କରି ନାହିଁ ।

ସ୍ୱାଧୀନତା ପରେ ପ୍ରଶ୍ନ ଉଠିଲା
ତୋର ମୁକତିର ସୂର୍ଯ୍ୟ ଯଦି ଉଇଁଲା
ଆଖି ତୋର କିଆଁ ଛଳ ଛଳ
ଯାହା ଲାଗି ଲଢ଼ିଲୁ ତୁ, କାରଗାରେ ଉଡ଼ିଲୁ ତୁ
କାରାଗାରେ ରଡ଼ିଲୁ ତୁ
ପାଇଛୁକି ତାରେ ଅବିକଳ ?
ସଶସ୍ତ୍ର ସଂଗ୍ରାମହିଁ ଏକମାତ୍ର ବାଟ ମୁକ୍ତିର
ଆମେ ଚାଲିଲୁ ସେଇ ପଥରେ ।

[illegible] ସାଧାରଣତନ୍ତ୍ର ହେଲା । ଫେରିଲୁ । ବୋଧହୁଏ ସଶସ୍ତ୍ର ସଂଗ୍ରାମ ଦରକାର ପଡ଼ିବ ନାହିଁ । ପାର୍ଲାମେଣ୍ଟ, ବିଧାନସଭା ସମସ୍ୟାର ସମାଧାନ କରିଦେବ । ବିଚାରାଳୟମାନେ ନିଷ୍ପତ୍ତି ବା ରାୟ ଦେବେ ଜନସ୍ୱାର୍ଥ ରକ୍ଷା ପାଇଁ । ଅମଲାତନ୍ତ୍ର ଘେନିବ ସାମାଜିକ ଅଙ୍ଗୀକାରକୁ ।

ଅଭିଜ୍ଞତା କ'ଣ କହୁଛି ?

ଅଭିଜ୍ଞତା ଆରମ୍ଭ ହେଉ ପାର୍ଲାମେଣ୍ଟ ବା ବିଧାନସଭାରୁ । ନ କହିଲେ ଭଲ । ସଂବିଧାନ ସଂଶୋଧନ ଚାଲିଛି । ଭାରତବର୍ଷର ସଂବିଧାନ ହେଉଛି ପୃଥିବୀର ସବୁଠାରୁ ବଡ଼ ଲିଖିତ ସଂବିଧାନ । କିନ୍ତୁ ସେଥିରେ କ'ଣ ସବୁ ଲେଖାଯାଇପାରିବ ? ଏବେ ଅଫିସ ଅଫ୍ ପ୍ରଫିଟ୍ ନେଇ ବାଦାନୁବାଦ ଚାଲିଛି । କୁହାଯାଏ ଯେଉଁଠି ଲିଖିତ ନିୟମ ନାହିଁ ସେଠାରେ ପରମ୍ପରାକୁ ବା କନଭେନ୍‌ସନ୍‌କୁ ଗ୍ରହଣ କରାଯାଏ । ଆମର ପଣ୍ଡିତମାନେ କଥାକଥାକେ ଆମେରିକାର ଗଣତନ୍ତ୍ର ଏବଂ ପଦ୍ଧତି କଥା କହନ୍ତି । କିନ୍ତୁ ଯେତେବେଳେ ଆମେରିକାରେ ଅନୁସୃତ ପରମ୍ପରା ବାଧା ଦେଲା ରାଜନୀତିକ ନେତାମାନଙ୍କୁ ସେତେବେଳେ ଆରମ୍ଭ ହେଲା ଯେ ଆମେ ଆମର ନିୟମ କରିବୁ । ଅର୍ଥାତ୍ ଜଣେ ନିର୍ବାଚିତ ସଦସ୍ୟ ଅନ୍ୟ ସଂସ୍ଥାମାନଙ୍କରେ ମଧ୍ୟ ପଦବୀ ଅଳଂକୃତ କରିବେ ଏବଂ ସେଥିର ସୁବିଧା ସୁଯୋଗ ଲାଭ କରିବେ ।

ଏଇଠି ମିଲୋଭାନ ଜିଲାସଙ୍କର ନିଉକ୍ଲାସ ବା ନବ୍ୟଶ୍ରେଣୀ ବହି କଥା ମନେପଡ଼େ । ମିଲୋଭାନ ଜିଲାସ ଯୁଗୋସ୍ଲୋଭିଆର କୂଟନୀତିଜ୍ଞ । ଯୁଗୋସ୍ଲୋଭିଆର ମାର୍ଶାଲ ଟିଟୋ ନାଜୀବାଦ ବିରୋଧୀ ସଂଗ୍ରାମର ପ୍ରବାଦ ପୁରୁଷ ଏବଂ ଷ୍ଟାଲିନଙ୍କର ଘନିଷ୍ଠ ସହଯୋଗୀ । କିନ୍ତୁ ଷ୍ଟାଲିନଙ୍କ ସହିତ ତାଙ୍କର ମତଭେଦ ହୁଏ । ମିଲୋଭାନ ଜିଲାସ ଥିଲେ ଟିଟୋଙ୍କର ଘନିଷ୍ଠ ସହଯୋଗୀ । କିନ୍ତୁ ପରବର୍ତ୍ତୀ କାଳରେ ତାଙ୍କର ଟିଟୋଙ୍କ ସହିତ ମଧ୍ୟ ମତଭେଦ ହୁଏ ଏବଂ ତାଙ୍କର 'ନିଉକ୍ଲାସ' (Newclass) ବହି ପ୍ରକାଶିତ ହୁଏ । ଏହି ବହିରେ ସେ ଲେଖିଥିଲେ ଯେ ସାମ୍ୟବାଦୀ ସମାଜ ଶ୍ରେଣୀହୀନ ସମାଜ ଗଠନ କରିବାର କଥା କିନ୍ତୁ ଏହି ସମାଜରେ ଏକ ନୂତନ ଶ୍ରେଣୀ ଗଠନ ହେଉଛି । ତାହା ହେଉଛି ନେତୃତ୍ୱ ପ୍ରତି ଅନୁରକ୍ତ ପାର୍ଟି ସଭ୍ୟଗୋଷ୍ଠୀ ଯାହାକୁ ପାର୍ଟି ଆପାର୍ଟଚିକ୍ ବୋଲି କୁହାଯାଏ । ଏଇ ଗୋଷ୍ଠୀ ସାମ୍ୟବାଦୀ ସମାଜର ଅନେକ ସୁବିଧା ଉପଭୋଗ କରନ୍ତି ଯାହା ସାଧାରଣ ମଣିଷ ପାଏ ନାହିଁ ।

ଏଇ ଲେଖକଙ୍କୁ ମୋର ଭେଟିବାର ସୁଯୋଗ ମିଳିଛି କିନ୍ତୁ ଆଲୋଚନା କରିବା ସମ୍ଭବ ନ ଥିଲା ।

ତାଙ୍କର ଭବିଷ୍ୟଦ୍‌ବାଣୀ ସତରେ ପରିଣତ ହୋଇଛି । ସୋଭିଏତ ରୁଷର ସାମ୍ୟବାଦୀ ସମାଜ ପୂର୍ବ ୟୁରୋପର ସମାଜବାଦୀ ସମାଜ ଭୁଶୁଡ଼ି ପଡ଼ିଛି ବାହାର ଷଡ଼ଯନ୍ତ୍ରକାରୀମାନଙ୍କ ଦ୍ୱାରା ନୁହେଁ, ଏଇ ନିଉକ୍ଲାସର ଭାରାରେ । ମାର୍ଶାଲ ଟିଟୋଙ୍କ

ଯୁଗୋସ୍ଲୋଭିଆ ବିଭକ୍ତ ହୋଇଯାଇଛି କେବଳ ନୁହେଁ, ସାମ୍ପ୍ରଦାୟିକ ବିଷରେ ଜର୍ଜରିତ ସମାଜ ଅନ୍ୟ ସମ୍ପ୍ରଦାୟ ବିରୋଧରେ ଖୋଲିଛନ୍ତି କନ୍‌ସେନ୍‌ଟ୍ରେସନ କ୍ୟାମ୍ପ (Concentration camp) ଯାହା ନାଜି ଅତ୍ୟାଚାରକୁ ବଳିଯାଇଛି । ଇତିହାସର କି କ୍ରୂର ପରିହାସ !

ଯୁଗୋସ୍ଲୋଭିଆ ଯିବାର ସୌଭାଗ୍ୟ ଘଟିଥିଲା । ସେତେବେଳେ ମାର୍ଶାଲ ଟିଟୋଙ୍କ ସମୟ । ଯୁଗୋସ୍ଲୋଭିଆର ପ୍ରାକୃତିକ ପରିବେଶ ଅତ୍ୟନ୍ତ ମନୋରମ, ବିଶେଷତଃ ବସନ୍ତ ବା ଗ୍ରୀଷ୍ମକାଳରେ । ଆମେ ଯିବା ପୂର୍ବରୁ ମାର୍ଶାଲ ଟିଟୋ ଯାଇଥିଲେ ସୋଭିଏତ୍ ରୁଷ । ସେତେବେଳେ ମସୋଲିଅମ୍‌ରେ ଲେନିନ ଓ ଷ୍ଟାଲିନ୍ ଉଭୟଙ୍କର ମରଦେହ ସଂରକ୍ଷିତ ଥିଲା । ସାଧାରଣତଃ ପରିଦର୍ଶକମାନେ ଦୁଇଟି ସ୍ତବକ ନେଇଯାଆନ୍ତି । ଏହାର ବ୍ୟତିକ୍ରମ ମୁଁ ଦେଖି ନାହିଁ । କିନ୍ତୁ ଟିଟୋ ନେଇଯାଇଥିଲେ ଗୋଟିଏ ସ୍ତବକ, କେବଳ ଲେନିନଙ୍କ ପାଇଁ । ମୋତେ (ଖାଲି ମୋତେ ନୁହେଁ ଅନେକଙ୍କୁ) ଏହା ଖଟ୍‌କା ଲାଗିଥିଲା । ସେଇଯୋଗୁଁ ମୁଁ ସୋଭିଏତ୍ ରୁଷ ଯେତେଥର ଯାଇଛି ବାରମ୍ବାର ଯାଇଛି ମସୋଲିଅମକୁ ଦେଖିବା ପାଇଁ ଯେ ସେଠାକୁ ଯାଉଥିବା ଅଗଣିତ ଦର୍ଶକମାନଙ୍କ ଭିତରୁ କେତେଜଣ ଗୋଟିଏ ସ୍ତବକ ନେଇଯାଉଛନ୍ତି । କେହି ଜଣେ ହେଲେ ଗୋଟିଏ ସ୍ତବକ ନେବାର ମୁଁ ଦେଖି ନାହିଁ । ଷ୍ଟାଲିନ୍ ପାର୍ଟି ଭିତରେ କ'ଣ ସବୁ କରିଥିଲେ ତାହା ସ୍ୱତନ୍ତ୍ର କଥା । କିନ୍ତୁ ପାର୍ଟି ବାହାରେ ତାହାର ପ୍ରଭାବ ଖୁବ୍ କମ୍ । ଜନସାଧାରଣଙ୍କ ଭିତରେ ସେ ଅନଗ୍ରସର, ଅଶିକ୍ଷିତ ଏକ ସମାଜକୁ ପୃଥିବୀର ଏକ କ୍ରାନ୍ତିକାରୀ ସୃଷ୍ଟିର କର୍ତ୍ତା ଭାବରେ ପରିଚିତ । ୨୦୦୫ ମସିହାରେ କରାଯାଇଥିବା ଏକ ସର୍ଭେରୁ ମଧ୍ୟ ଏହା ଜଣାପଡ଼ିଛି ଯେ ଷ୍ଟାଲିନ୍ ରୁଷର ସବୁଠାରୁ ଜନପ୍ରିୟ ନେତା ।

ପାର୍ଟି ଆପାର୍ଟିଚିକ୍ ବା ନିରକ୍ଲସର ଭାରରେ କେବଳ ନିଉକ୍ଲାସ୍ ସୃଷ୍ଟି ହେଲା ନୁହେଁ, ସୃଷ୍ଟି ହେଲା ଏକ ବିରାଟ ସ୍ତାବକ ଗୋଷ୍ଠୀ, ଯେଉଁମାନଙ୍କର ତାତ୍ତ୍ୱିକ ଜ୍ଞାନ, ତାତ୍ତ୍ୱିକ ଅଙ୍ଗୀକାର କିଛି ନ ଥିଲା । ସେମାନେ ପାଲଟିଥିଲେ ରୋବଟ୍ । ଏ କଥା ଆମ ଅନେକଙ୍କୁ ଲାଗିଥିଲା, ଯେପରି ଲାଗିଥିଲା ଇଂଜିନିୟର ✓ କେ. ସି. ଗନ୍ତାୟତଙ୍କୁ । ସେ ସମାଜବାଦୀ ଥିଲେ । ସେଥିପାଇଁ ବହୁତ୍ୟାଗ ସ୍ୱୀକାର କରିଥିଲେ । କମ୍ୟୁନିଷ୍ଟ ପାର୍ଟି ପାଇଁ, ସାମ୍ୟବାଦୀ ଆନ୍ଦୋଳନ ପାଇଁ ତାଙ୍କର ତ୍ୟାଗ ଅତୁଳନୀୟ । କିନ୍ତୁ ତାହାର କୌଣସି ଅଭିଲେଖ ରହିପାରିବ ନାହିଁ । କାରଣ ତାଙ୍କର ଦାନ, ତାଙ୍କର ତ୍ୟାଗ ସବୁ ଗୁପ୍ତରେ ହେଉଥିଲା । ଚିଫ୍ ଇଞ୍ଜିନିୟର ଥିଲାବେଳେ ସେ ଯାଇଥିଲେ ସୋଭିଏତ୍ ରୁଷ । ଏବଂ ଫେରି କହିଥିଲେ ଯେ କଣ ମଣିଷ ତିଆରି ହୋଇଛି ନା ରୋବଟ୍ ତିଆରି ହୋଇଛି ? ଏପରି ସମାଜ ତ ତିଷ୍ଠି ପାରିବ ନାହିଁ । ସମାଜବାଦର ପ୍ରଥମ ପରୀକ୍ଷା କ'ଣ ଅର୍ଥ ହୋଇଯିବ ? ଏଇ ଆଶଙ୍କା ସେ ପ୍ରକାଶ କରିଥିଲେ ।

ଭାରତବର୍ଷରେ ସେଇପରି ଏକ ନିଉକ୍ଲାସ ଗଠନ ହେଉଛି । ଭାରତବର୍ଷ ଭାଗ ହୋଇଯାଉଛି ଦୁଇ ଭାଗରେ । ଆମର ସମ୍ବିଧାନରେ ଲେଖାଅଛି India, that is

Bharat ଆମ ଦେଶ ଇଣ୍ଡିଆ ଏବଂ ଭାରତ ଦୁଇ ଭାଗରେ ବିଭକ୍ତ ହୋଇଯାଇଛି । ଦେଶର ସମୃଦ୍ଧିର ବହୁଳାଂଶ ଉପଭୋଗ କରୁଛନ୍ତି ଇଣ୍ଡିଆର ଲୋକେ । ଯେଉଁମାନଙ୍କ ସଂଖ୍ୟା ଶତକଡ଼ା ୮ରୁ ୧୦ ଭାଗ । ସେମାନଙ୍କ ଭିତରେ ଅଛନ୍ତି ବହୁ ନିର୍ବାଚିତ ସଦସ୍ୟ, ନବ୍ୟ ଧନାଢ଼୍ୟ (Neo rich) ଗୋଷ୍ଠୀ, ବହୁ ଭ୍ରଷ୍ଟାଚାରୀ ଅଫିସର ବା ଏକ୍‌ଜିକ୍ୟୁଟିଭ୍, ମାଫିଆ (କାଠ ମାଫିଆ, ଟେଣ୍ଡର ମାଫିଆ, ନାରୀ ମାଫିଆ, ମାଦକଦ୍ରବ୍ୟ ମାଫିଆ, କିଛି ବିଲ୍‌ଡ଼ର୍ ମାଫିଆ) ଯେଉଁମାନେ ସବୁ ସୁବିଧା ଉପଭୋଗ କରନ୍ତି । ଦେଶର ସମୃଦ୍ଧିର ବହୁଳାଂଶ ସେମାନଙ୍କ ପକେଟକୁ ଯାଏ । କାଶ୍ମୀର ପାଇଁ ହେଉ, ଦଣ୍ଡକାରଣ୍ୟ ପାଇଁ ହେଉ ବା ଉତ୍ତର-ପୂର୍ବଭାରତ ପାଇଁ ହେଉ, ସବୁ ଅନୁଦାନର ଅଧିକାଂଶ ଯାଏ ସେମାନଙ୍କ ପକେଟକୁ । ସରକାରୀ ହିସାବ ଅନୁଯାୟୀ ଆଦିବାସୀଙ୍କ କଲ୍ୟାଣ ପାଇଁ ଉଦ୍ଦିଷ୍ଟ ଅର୍ଥର ଶତକଡ଼ା ୮୬ଭାଗ ମଧ୍ୟବର୍ତ୍ତୀକାଳୀନ ଲୋକମାନେ ନେଇଯାଆନ୍ତି ଏବଂ ତାହା ବଣ୍ଟୁଆରା ହେଉଥିବାରୁ ଅନୁଦାନ ମିଳିବାରେ ବା ଚାଲୁ ରହିବାରେ କୌଣସି ଅସୁବିଧା ହୁଏନା । କେବଳ ଅସୁବିଧାରେ ପଡ଼ନ୍ତି ସେଇମାନେ ଯେଉଁମାନେ ଅନୁଦାନର ସଠିକ୍ ବିନିଯୋଗ କରନ୍ତି । ଏଇ ନିଉକ୍ଲାସ୍ ବା ଇଣ୍ଡିଆ ଦିଏ କିଛି ଉଚ୍ଛିଷ୍ଟ ଭାରତବାସୀଙ୍କୁ ଏବଂ ଭାରତରୁ କେବେ କେମିତି କେହି କେହି ଇଣ୍ଡିଆରେ ସାମିଲ ହୋଇଯାଆନ୍ତି ଏବଂ ଆମକୁ ହିସାବ କରି ଦେଖାଯାଏ କୋଟିପତିଙ୍କ ସଂଖ୍ୟା ବୃଦ୍ଧି । ଶହେ କୋଟି ଲୋକରୁ ପ୍ରତିବର୍ଷ ଦୁଇ ଚାରିଟା ଅଧିକ ଲୋକ କୋଟିପତି ହେବାଟାକୁ ଆମକୁ ଆଖିରେ ଆଙ୍ଗୁଠି ମାରି ଦେଖାଇଦିଆଯାଏ । ଯେପରି ଦେଖାନ୍ତି ଶିଳ୍ପପତିମାନେ ସମୃଦ୍ଧ ଟ୍ରେଡ୍ ୟୁନିୟନ୍ ନେତା ବା ଅଫିସରମାନଙ୍କୁ ।

ମୋର ପ୍ରତ୍ୟକ୍ଷ ଅଭିଜ୍ଞତା । କିଛି ଦଶନ୍ଧି ତଳର କଥା । ଏକ କଂପାନୀ ଚାହିଁଲେ ହାଇଦ୍ରାବାଦରେ ଏକ ଘର ଦୀର୍ଘମିଆଦୀ ଲିଜ୍‌ରେ ନେବାପାଇଁ । କଂପାନୀର ହାଇଦ୍ରାବାଦରେ କୌଣସି ବ୍ୟବସାୟିକ ସଂପର୍କ ( ? ) ନ ଥିବାରୁ ଘର କ'ଣ ପାଇଁ ଦରକାର ବୁଝାହେଲା ନାହିଁ । ଯଥାରୀତି ଖବରକାଗଜରେ ବିଜ୍ଞାପନ ଦିଆଗଲା । ଦରଖାସ୍ତ ବି ଆସିଲା କିଛି । ଜଣେ ଛୋଟ କର୍ମଚାରୀ ଗଲେ ହାଇଦ୍ରାବାଦ ବୁଝିବା ପାଇଁ ଘର । ସେ ଦରଖାସ୍ତ କରିଥିବା ପ୍ରାର୍ଥୀମାନଙ୍କ ଘର ଭିତରୁ କୌଣସିଟିକୁ ପସନ୍ଦ କଲେ ନାହିଁ ଏବଂ ସେମାନେ ଦେଇଥିବା ପ୍ରସ୍ତାବଠାରୁ ଶସ୍ତାରେ ଭଲ ଆଉ ନୂଆ ଘର ସବୁ ବୁଝି ସୁପାରିସ କଲେ ।

କମ୍ପାନୀର କର୍ତ୍ତା କହିଲେ ଯେ ସେ ବୋଧହୁଏ କିଛି ବୁଝିପାରିଲା ନାହିଁ, ଆମର ଆବଶ୍ୟକତା । ତାକୁ କୁହାଯାଉ ସେ ଅମୁକ ଲୋକ ଘରକୁ ସୁପାରିସ କରୁ । ଆଚ୍ଛା ! ସେ ଭଦ୍ରଲୋକ ଜଣେ ଅଫିସର । ତାଙ୍କର ହାଇଦ୍ରାବାଦରେ ଏକ ପୁରୁଣା ଘର ଅଛି । ସେ କଣ ଶିଳ୍ପ ନିର୍ଦ୍ଦେଶକ, ବନ୍ୟ ବିଭାଗ ସେକ୍ରେଟେରୀ, ଶିଳ୍ପ ସେକ୍ରେଟେରୀ କିଛି ହେବେ ନାହିଁ । ହୁଏତ ସବୁ ହେବେ । ତା'ହେଲେ ସେ ଆମର କୁତା ପାଳଟିଯିବେ । ସେଇ ଘର ବହୁଟଙ୍କାରେ କୋଡ଼ିଏ ବର୍ଷ ପାଇଁ ଲିଜ୍‌ରେ ନିଆଯାଇଥିଲା । ବହୁ ଅର୍ଥ ଖର୍ଚ୍ଚ

ହୋଇ ନବୀକରଣ କରାଯାଇଥିଲା । କୋଡ଼ିଏ ବର୍ଷର ଭଡ଼ା ଅଗ୍ରିମ ଦିଆଯାଇଥିଲା । ଏବଂ ମାତ୍ର ଛଅମାସ/ବର୍ଷକ ଭିତରେ ଘରର ଆବଶ୍ୟକତା ନାହିଁ ବୋଲି ଫେରାଇ ଦିଆଯାଇଥିଲା । ସେ ଅଫିସର କିନ୍ତୁ ଆପଣା ଅଫିସର ପଦବୀ ବଳରେ ବହୁ କୋଟି ଟଙ୍କାର ଫାଇଦା ଦେଇଥିଲେ କଂପାନୀକୁ ।

କହିବା ବାହୁଲ୍ୟ ଯେ ଫାସିଷ୍ଟ ମୁରୋଲିନୀ ଜଣେ ବାମପନ୍ଥୀ ନେତା ଥିଲେ ଏବଂ ମାଇକେଲ ଜନ୍ ମଧ ଜଣେ ଟ୍ରେଡ୍ ୟୁନିୟନ ନେତା ଥିଲେ । କିନ୍ତୁ ଅବଦୁଲ ବାରୀ ଆପଣାର ସ୍ୱାଭିମାନକୁ ଧରି ରଖିବାରୁ ଗୁଳି ମୁହଁରେ ପ୍ରାଣଗଲା ।

ନିର୍ବାଚନ ଲଢ଼ିବା ହୋଇଯାଇଛି ଏକ ବହୁବ୍ୟୟସାଧ ବ୍ୟାପାର । ପାର୍ଟି ସାହାଯ୍ୟ କରିବ କିନ୍ତୁ ଖର୍ଚ୍ଚ କରିବାକୁ ପଡ଼ିବ ନିଜକୁ । ମୋର ମନେପଡୁଚି ଜଗନ୍ନାଥ ମିଶ୍ରଙ୍କ କଥା ।୧୯୫୭ ନିର୍ବାଚନ । ସେ ପାରଳାଖେମୁଣ୍ଡିରୁ କମ୍ୟୁନିଷ୍ଟ ଦଳର ପ୍ରାର୍ଥୀ । ସେ ଖଦଡ଼ ପିନ୍ଧନ୍ତି । ଆଣ୍ଠୁଲୁଚା ଧୋତି, ଶାର୍ଟ, ଗୋଟିଏ ଲୁଙ୍ଗି, ଗୋଟିଏ ଗାମୁଛା, ଗୋଟିଏ (all-purpose) ସବୁ କାମ ପାଇଁ ଧୋତି ବା ସବୁ କାମ ପାଇଁ ବ୍ୟବହାର ହୋଇପାରୁଥିବା ଲୁଗା । ତୃତୀୟ ଶ୍ରେଣୀ (ବା ପରେ ଦ୍ୱିତୀୟ ଶ୍ରେଣୀ) ଛଡ଼ା ଅନ୍ୟ କୌଣସି କ୍ଲାସ୍‌ରେ ଯିବାର ପ୍ରଶ୍ନ ନାହିଁ । ବିଧାନସଭାରେ ଉପସ୍ଥିତ ରହିଲେ ଦସ୍ତଖତ ନ ହେଲେ ନାହିଁ । ପିଛିଲା ଦସ୍ତଖତର ପ୍ରଶ୍ନ ଉଠୁ ନାଇଁ ।

ମୋର ବଡ଼ବାପା ପୁଅ ବଡ଼ଭାଇ ରମାବଲ୍ଲଭ ବହୁଦିନ ଧରି ବିଧାନସଭାରେ ଚାକିରି କରୁଥିଲେ । ସେ ଏ ସଂପର୍କରେ ଦୁଇଜଣଙ୍କୁ ସମ୍ମାନ କରନ୍ତି । ଜଣେ ଜଗନ୍ନାଥ ମିଶ୍ର ଏବଂ ଅନ୍ୟ ଜଣକ ପ୍ରସନ୍ନ କୁମାର ପଣ୍ଡା ।

ଜଗନ୍ନାଥ ମିଶ୍ର ନିର୍ବାଚନ ଲଢ଼ିଥିଲେ ଦଶ ଟଙ୍କାରୁ କମ୍‌ରେ । ଲେଖିଥିଲେ ଆପଣାର ନିବେଦନ ପତ୍ରରେ । ମୁଁ ପ୍ରାର୍ଥୀ ହୋଇଛି । ତମ ସାଙ୍ଗରେ ଲଢ଼ାଇ କରିଆସିଛି ବିଧାନସଭା ବାହାରେ, ଜିତିଲେ ବିଧାନସଭା ଭିତରେ ତମ ପାଇଁ ଲଢ଼ାଇ କରିବି । ଚାହୁଁଥିଲେ ମୋତେ ଭୋଟ ଦେବ, ନଚେତ୍ ନାହିଁ । ଭୋଟ ଦେଲେ ମୋର ସନ୍ତକରେ ଚିହ୍ନଦେବ ।

ପାଦରେ ଚାଲି ଚାଲି ସେ ଗାଁକୁ ଗାଁ ଯାଇ କ୍ଷେତ୍ର ଉପରେ ପୋଲିଙ୍ଗ ଏଜେଣ୍ଟ 'ନିଯୁକ୍ତି' କରୁଥିଲେ ନା ପଇସା, ନା ଭାଡିଆ, ନା ସଭା, ସମିତି, ନା ମାଇକ୍ । ଯେଉଁ ଚିଠି ଲେଖିଲେ ଟେଲିଗ୍ରାମ କଲେ ବି ଉତ୍ତର ନାହିଁ । ମୋତେ ପଠାଯାଇଥିଲା । ତାଙ୍କୁ ପାଇବା କଠିନ । ଗାଁକୁ ଗାଁ ମାଡ଼ି ଚାଲିଛନ୍ତି ପାଦରେ । ମୁଁ ଠିଆ ହୋଇଚିରେ । ରଖ କାଗଜ । ତୁ ଏଇ ବୁଥ୍ ଲାଗି ମୋର ପୋଲିଙ୍ଗ ଏଜେଣ୍ଟ । ତାକୁ କିଏ ମାଗିବ ପଇସା । ବରଂ ଲୋକେ ଚାନ୍ଦା କରି ତାଙ୍କୁ କିଛି କିଛି ଦିଅନ୍ତି, ମାହାପ୍ରୁ, ରଖି ଥ । ଜାଗ୍ରତ ଥିବ, ବାଧିକା ପଡ଼ିବ ନାହିଁ ।

ଏଇମିତି ଦେଖିଥିଲି ରାଜେଶ୍ୱର ରାଓଙ୍କୁ । ଦୁଇଟି ଧୋତି । ଗୋଟିଏ ନିଜେ କାଚି ଶୁଖାନ୍ତି ପରଦିନ ପାଇଁ । ନମ୍ବୁଦ୍ରିପଦଙ୍କର ମଧ ସେଇ ଅବସ୍ଥା । ଆଗରୁ କହିଛି

ଗାନ୍ଧୀବାଦୀ ନେତା ଅଜୟ ମୁଖାର୍ଜୀଙ୍କ କଥା । ରାଜେଶ୍ୱର ରାଓ କମ୍ୟୁନିଷ୍ଟ ପାର୍ଟିର ସଂପାଦକ, ନମ୍ବୁଦ୍ରିପଦ ଅଜୟ ମୁର୍ଖାଜୀ ଯଥାକ୍ରମେ କେରଳ ଓ ପଶ୍ଚିମବଙ୍ଗର ମୁଖ୍ୟମନ୍ତ୍ରୀ । ଶୁଣିଚି ଯେ ବଙ୍ଗଳାର ଅନ୍ୟତମ ମୁଖ୍ୟମନ୍ତ୍ରୀ ପ୍ରଫୁଲ ସେନଙ୍କ ମଧ୍ୟ ସେଇ କାହାଣୀ । ସେମାନେ କମ୍ୟୁନିଷ୍ଟ, ସୋସାଲିଷ୍ଟ, କଂଗ୍ରେସ ଦଳର ହୋଇ ପାରନ୍ତି । ମାର୍କ୍ସବାଦୀ, ଗାନ୍ଧିବାଦୀ ହୋଇପାରନ୍ତି କିନ୍ତୁ ଆଚରଣ ସମାନ । କିନ୍ତୁ ସୋସାଲିଷ୍ଟ ନେତା ଫର୍ଣ୍ଣାଡେଜ୍ ତାହା ନୁହନ୍ତି । ବାହାରକୁ ଯିବା ପାଇଁ ଏବଂ ସଭାସମିତିରେ ଭାଷଣ ଦେବାପାଇଁ ତାଙ୍କ ପାଇଁ ସ୍ୱତନ୍ତ୍ର ଲୋଚାକୋଚା ଇସ୍ତି କରାହୋଇ ନ ଥିବା ଡ୍ରେସ (କାମିଜ) ରହିଛି ।

ସମୟ ଅତିକ୍ରାନ୍ତ ହୋଇଛି । ନିର୍ବାଚନ ବ୍ୟୟବହୁଳ ହୋଇଛି । ପ୍ରାର୍ଥୀମାନଙ୍କ ନିର୍ବାଚନ ଖର୍ଚ୍ଚକୁ ରାଷ୍ଟ୍ର ବହନ କରିବା ପାଇଁ ଇନ୍ଦ୍ରଜିତ ଗୁପ୍ତ କରିଥିବା ପ୍ରସ୍ତାବକୁ ଏବେ ଆତଙ୍କିତ, ବିବ୍ରତ ନେତାମାନେ ଝୁରିବା ଆରମ୍ଭ କରିଛନ୍ତି । କାରଣ ନିର୍ବାଚନ ଖର୍ଚ୍ଚ ବ୍ୟୟବହୁଳ ହୋଇଯାଉଥିବାରୁ ଏବଂ ରାଜନୀତିକ ପ୍ରଭାବ କମି ଆସୁଥିବାରୁ ନିର୍ବାଚନ ଖର୍ଚ୍ଚ ଏବଂ ଭୋଟ ପାଇଁ ପ୍ରାର୍ଥୀମାନେ ବାହୁବଳ ଉପରେ ଅଧିକା ଭରସା କରିବାକୁ ଆରମ୍ଭ କଲେ । ମାଫିଆମାନେ ସେଥିପାଇଁ ଯୋଗାଇଲେ ଅର୍ଥ, ବାହୁବଳ ଏବଂ ପୃଷ୍ଟପୋଷକତା ଏବଂ ତା'ପରେ ସେମାନେ ପୃଷ୍ଟପୋଷକତା ଛାଡ଼ି ନିଜେ ଓହ୍ଲାଇଲେ ଫ୍ଲୋକା ଉପରକୁ ।

ନିର୍ବାଚନ କମିଶନର ସମସ୍ତ ଉଦ୍‌ବେଗ, କଟକଣା ସତ୍ତ୍ୱେ ବିହାର ବିଧାନସଭାକୁ ଅନ୍ତତଃ ୨୦/୨୨ ଜଣ ମାଫିଆ ବା କ୍ରିମିନାଲ୍ ପଶି ଆସିଛନ୍ତି । କେତେକଙ୍କ ମତରେ ଏହାର ସଂଖ୍ୟା ବହୁତ ବେଶି ୨୨ରୁ ୬୦ ମଧ୍ୟରେ ।

ଏଇ ହେଉଛି ନିର୍ବାଚିତ ସଦସ୍ୟମାନଙ୍କ ଅବସ୍ଥା । ପେନସନ୍, ଭତ୍ତା, ଭ୍ରମଣ, ବାସଗୃହ, ଟେଲିଫୋନ୍, ବ୍ୟୋମଯାନରେ ଯାତାୟାତ ପାଣ୍ଠି ସେମାନଙ୍କୁ ସନ୍ତୁଷ୍ଟ କରି ପାରୁ ନାହିଁ । ହୁଏତ କିଛି ଦକ୍ଷ, କର୍ମବ୍ୟସ୍ତ ସଭ୍ୟଙ୍କ ପାଇଁ ଏହା କୁଳାନ ହୋଇ ନ ପାରୁଥାଏ । କିନ୍ତୁ ଏ ସଂକ୍ରାନ୍ତରେ ନିଷ୍ପତ୍ତି କିଏ କରିବ ? ସାଧାରଣତଃ ଯେଉଁ କ୍ଷେତ୍ରରେ ଦରମା ବା ପେନ୍‌ସନ୍ କଥା ଉଠେ, ସେ କ୍ଷେତ୍ରରେ ଏକ କମିଶନ ନିଯୁକ୍ତ ହୁଏ, ଏହାର ବିଚାର କରିବା ପାଇଁ । କିନ୍ତୁ ନିର୍ବାଚନ ପ୍ରତିନିଧିମାନଙ୍କ କ୍ଷେତ୍ରରେ ସେମାନେ ନିଜେ ହିଁ ନିଜ କଥା ବିଚାର କଲେ । କେବଳ ମାତ୍ର ଜଣେ ପାର୍ଲ୍ୟାମେଣ୍ଟ ସଭ୍ୟ ଡାକ୍ତର ଏ.କେ. ରାୟ ଏହାର ବିରୋଧ କରିଥିଲେ । ସେ କିନ୍ତୁ ଆଉ ନିର୍ବାଚିତ ହୋଇପାରିଲେ ନାହିଁ । ବହୁ ଦଳର ନେତାମାନେ ତାଙ୍କୁ ହରାଇ ଦେବାପାଇଁ ଉଦ୍ୟମ କଲେ । ମୂଳରୁ ମାରିଲେ ଯିବ ସରି, ନୀତି କାର୍ଯ୍ୟକାରୀ କରାଗଲା ।

ନିର୍ବାଚିତ ପ୍ରତିନିଧିମାନଙ୍କ ମଧ୍ୟରୁ କେତେକ ଏବେ ସ୍କାମରେ ଜଡ଼ିତ ହୋଇପଡ଼ିଛନ୍ତି । ପାର୍ଲାମେଣ୍ଟରେ ପ୍ରଶ୍ନ ପଚାରିବା ପାଇଁ ଉତ୍କୋଚ ନେବାର ଅଭିଯୋଗ ସହିତ ଏମ୍.ପି. ମାନଙ୍କ ହାତରେ ଦିଆଯାଇଥିବା ପାଣ୍ଠି (MP-LAD)ର ଅପବ୍ୟବହାର ପର୍ଯ୍ୟନ୍ତ ବହୁ ଅଭିଯୋଗ ଆସିଛି ।

ଏଇଟା ଧରା ପଡ଼ିଲା । କିନ୍ତୁ ଏହା କଣ ନୂତନ କଥା, ନା ଏବେ ହେଉଛି ? ଜବାହରଲାଲ ପ୍ରଧାନମନ୍ତ୍ରୀ ଥିଲାବେଳେ ଏଭଳି ଏକ ଘଟଣା ପ୍ରଥମ ଥର ପାଇଁ ଧରା ପଡ଼ିଥିଲା । ସଭ୍ୟଙ୍କୁ ବହିଷ୍କାର କରିବା ପୂର୍ବରୁ ସେ ଇସ୍ତଫା ଦେଇଥିଲେ । ଏହା ସତ୍ତ୍ୱେ ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁ ଉକ୍ତ ପ୍ରସ୍ତାବ ଆଗତ କରିଥିଲେ ଏବଂ ତାହା ଗୃହୀତ ହୋଇଥିଲା, ଭବିଷ୍ୟ ପାଇଁ ଦିଗ୍‌ଦର୍ଶନ କରି ।

କିନ୍ତୁ ...

କିନ୍ତୁ କ'ଣ ହେଲା ? ପ୍ରଶ୍ନ କ'ଣ ପଚରା ଯିବ, ଗୋଟାଏ ଗୋଷ୍ଠୀ (ବିଶେଷତଃ ବ୍ୟବସାୟୀ ଗୋଷ୍ଠୀ) ଅପରପକ୍ଷ ସଂପର୍କରେ କଣ ପ୍ରଶ୍ନ ପଚାରାଯିବ, କ'ଣ କାଟ ପ୍ରସ୍ତାବ ଆସିବ, ବିଭିନ୍ନ ବିଲ୍‌ରେ ସହାୟକାରୀ ସଂଶୋଧନ କିମିତି ଆଗତ ହେବ । ପ୍ରଶ୍ନ ପଚରା ଯାଇଥିଲେ ଉତ୍ତର ଦେବା ଦିନ ଗୃହରେ ଅନୁପସ୍ଥିତ ରହିବା ଫଳରେ ପ୍ରଶ୍ନର ଉତ୍ତର କେବଳ ଟେବୁଲ ଉପରେ ଉପସ୍ଥାପନାରେ କିମିତି ସୀମିତ ରହିଯିବ, ଏ ସବୁ ପାଇଁ କଣ 'ଲବି' ହୁଏନା ? ଏଥିପାଇଁ ସ୍ୱତନ୍ତ୍ର ଭାବରେ ତାଲିମପ୍ରାପ୍ତ ସୁନ୍ଦର ଯୁବକ ଯୁବତୀମାନେ ହାତରେ ବ୍ରିଫ୍‌କେସ ଧରି ସକାଳୁ ସକାଳୁ ଅନୁସଂଧାନ କରନ୍ତି ନାହିଁ ଗ୍ରହଣଯୋଗ୍ୟ (gullible) ଗ୍ରାହକ ?

କ'ଣ ଦିଆହୁଏ ନ ହୁଏ ମୁଁ କହିପାରିବି ନାହିଁ । ଅନେକ ଦକ୍ଷ ପାର୍ଲାମେଣ୍ଟର ସଭ୍ୟ ବିଧାନସଭା ସଭ୍ୟ ସେମାନଙ୍କର ଅଭିଜ୍ଞତା କହିପାରିବେ । କିନ୍ତୁ ଏହିଭଳି 'ଲବିଷ୍ଟ' ମାନଙ୍କୁ (Lobbyist) ମୁଁ ଦେଖିଚି ।

ପାର୍ଲାମେଣ୍ଟ ଓ ବିଧାନସଭାମାନଙ୍କରେ ଯାହା ଘଟୁଛି ତାହା ଜଳ ଜଳ ଦେଖାଯାଉଛି । ଏ ସଂପର୍କରେ ରାଜ୍ୟପାଳମାନଙ୍କର ଭୂମିକା ମଧ୍ୟ ବାଦାନୁବାଦ ଭିତରକୁ ଆସିଯାଇଛି । ଏହାର ଆରମ୍ଭ ହୋଇଥିଲା ଅନେକ ଦିନ ଆଗରୁ । କିନ୍ତୁ ତାହା ଥିଲା କ୍ୱଚିତ୍ । ପରେ ଏହା ବ୍ୟାଧିରେ ପରିଣତ ହେବାକୁ ଯାଉଛି । ରାଜ୍ୟପାଳ ନିଯୁକ୍ତି ପ୍ରାୟତଃ ଦିଆଯାଉଛି ରାଜନୀତିକ ଦରଦ (favour) ପାଇଁ, ଡିସ୍‌କ୍ରେଡ଼ିଟେଡ୍ ରାଜନେତାମାନଙ୍କ ପାଇଁ ଏହା ଆଶ୍ରୟସ୍ଥଳ ପାଲଟିଛି (ଯେପରି ବୁଟା ସିଂ) ଶାସନର ଅନ୍ୟ ବିଭାବର ବ୍ୟକ୍ତିମାନଙ୍କୁ ଏଥିପାଇଁ ମନୋନୟନ କରାଯାଇ ନାହିଁ, କାଳେ ସେମାନେ 'ନିରପେକ୍ଷ' ବା ନ୍ୟାୟବନ୍ତ (Judicious) ହୋଇଯିବେ ଏଇ ଭୟରେ ।

ଏ ସଂପର୍କରେ ଓଡ଼ିଶା ତଥାପି ଅବହେଳିତ ହୋଇ ରହିଛି । ଭାରତବର୍ଷରେ ବର୍ତ୍ତମାନ ଜଣେ ହେଲେ ରାଜ୍ୟପାଳ ଓଡ଼ିଶାରୁ ନାହାନ୍ତି । କେନ୍ଦ୍ର ମନ୍ତ୍ରିମଣ୍ଡଳରେ ଅନେକ ଦିନ ପରେ ଶ୍ରୀ ଚନ୍ଦ୍ରଶେଖର ସାହୁଙ୍କୁ ନିଆଯାଇଛି । କିନ୍ତୁ କ୍ୟାବିନେଟ୍ ମନ୍ତ୍ରୀ କେହି ନାହାନ୍ତି । ରାଜ୍ୟସଭାରେ ମନୋନୀତ ପ୍ରାର୍ଥୀ ୧୩ ଜଣ । ହେବାଦିନଠାରୁ ଓଡ଼ିଶାର କେହି ମନୋନୀତ ହେବା ସକାଶେ ଯୋଗ୍ୟ ବିବେଚିତ ହୋଇ ନାହାନ୍ତି । ସତେ ଯେପରି ମନୋନୀତ ହୋଇଥିବା ବକ୍ସର (Boxer) ଙ୍କ ଠାରୁ ବି ଯୋଗ୍ୟ ବ୍ୟକ୍ତି ଓଡ଼ିଶାରେ

ନାହାନ୍ତି । ଏହି ଅବହେଳା କ୍ରମଶଃ କମିବା ପରିବର୍ତ୍ତେ ବଢ଼ିବାରେ ଲାଗିଛି । ଗୋଟିଏ ଦୁଇଟି କମିଟି ଛଡ଼ା ଓଡ଼ିଶାର କେହି ପ୍ରତିନିଧି ସର୍ବଭାରତୀୟ କମିଟିମାନଙ୍କରେ ନାହାନ୍ତି । ଏଥିରେ ରେଳବାଇଠାରୁ ସାହିତ୍ୟ ନାଟକ ଏକାଡେମୀ, ବିମାନ ଚଳାଚଳଠାରୁ ପର୍ଯ୍ୟଟନ ପର୍ଯ୍ୟନ୍ତ ସବୁ ବିଭାଗକୁ ଏହା ପରିବ୍ୟାପ୍ତ ।

ଏକଦା ରାଜନୀତିଜ୍ଞମାନଙ୍କୁ ବା ସାଧାରଣ (ପବ୍ଲିକ୍) କ୍ଷେତ୍ରରୁ ରାଷ୍ଟ୍ରଦୂତ ନିଯୁକ୍ତି ଦିଆଯାଉଥିଲା । ସେମାନେ ସହଯୋଗ ପାଉଥିଲେ ବୈଦେଶିକ ବିଭାଗର ସ୍ଥାୟୀ ଅଫିସରମାନଙ୍କଠାରୁ । କ୍ରମେ ସେଥିରେ କନ୍ଦଳ ବା ବିବାଦ ଦେଖାଗଲା । କିଛି ଗୋଟାଏ ଗଣ୍ଡଗୋଳ ହୋଇଗଲେ ସାଧାରଣକ୍ଷେତ୍ରରୁ ଯାଇଥିବା ବ୍ୟକ୍ତି ଉପରେ ଚାପ ଲଦି ଦିଆଗଲା । ଅପରକ୍ଷେତ୍ରରେ ସାଧାରଣ ଜୀବନକୁ ସେଇଭଳି ଟାୱାରିଙ୍ଗ (Towering) ଲୋକ ଖୋଜାଗଲା ନାହିଁ । ଫଳରେ ରାଷ୍ଟ୍ରଦୂତ ପାହ୍ୟାରେ ଆଉ କୌଣସି ସାଧାରଣ ଜୀବନର ଲୋକ ନିଯୁକ୍ତି ହେଲେ ନାହିଁ । ଏହି କାର୍ଯ୍ୟ ପୂରାପୂରି ବୈଦେଶିକ ବିଭାଗର ସ୍ଥାୟୀ କ୍ୟାଡ଼ର ବା ଅଫିସର ହାତରେ ବର୍ତ୍ତମାନ । ଓଡ଼ିଶାର ସାଧାରଣ ଜୀବନରେ ଥିବା ବ୍ୟକ୍ତି ରାଷ୍ଟ୍ରଦୂତ ହେବାର ପ୍ରଶ୍ନ ଉଠୁଛି କେଉଁଠୁ ?

ପଣ୍ଡିତ ନେହେରୁ ଥିଲେ ବ୍ରିଟିଶ ବ୍ୟୁରୋକ୍ରାସି ବା ଅମଲାତନ୍ତ୍ରର ତୀବ୍ର ବିରୋଧୀ । କିନ୍ତୁ ତାଙ୍କରି ଅମଳରେ ଏହା ବୃଦ୍ଧି ପାଇଲା, ଶକ୍ତିଶାଳୀ ବି ହେଲା । ରାଜନୀତିକ ବ୍ୟକ୍ତିତ୍ୱ ଆଗରେ ଅମଲାତନ୍ତ୍ର ଆନୁଗତ୍ୟ ସ୍ୱୀକାର କରିଥିଲା କାରଣ ରାଜନୀତିକ ନେତୃତ୍ୱର ବ୍ୟକ୍ତିମାନେ ବି ସେଇପରି ତୁଙ୍ଗ ଏବଂ ଦକ୍ଷ ଥିଲେ ।

ବ୍ୟୁରୋକ୍ରାସିକୁ ନିର୍ମଳ, ନିରପେକ୍ଷ ରଖିବା ନାମରେ ସେମାନଙ୍କର ସାମାଜିକ ଅଙ୍ଗୀକାର ସଂପର୍କରେ ଯେତିକି ଦୀକ୍ଷା ଦିଆଯିବାର କଥା ବା ତଦ୍‌ବିତ୍ତ କହିବାର କଥା ତା' ହେଲା ନାହିଁ । ଆଇନ୍‌ର ପରିମାଣ ବଢ଼ିବାକୁ ଲାଗିଲା । ଆଇନଶୃଙ୍ଖଳା ରକ୍ଷା କରିବା ରାଷ୍ଟ୍ରର ଆଉ ଏକମାତ୍ର କାମ ହେଲା ନାହିଁ । ଏହା ଜନମଙ୍ଗଳ ରାଷ୍ଟ୍ରରେ ପରିଣତ ହେବାଫଳରେ ଜୀବନର ବିଭିନ୍ନ ବିଭାବ ଉପରେ ଆଇନ୍ ପ୍ରଣୟନ ହେଲା । ପ୍ରତ୍ୟେକ ଆଇନ୍‌ର ଶେଷଧାଡ଼ିରେ ରହିଲା ଯେ ଏଇ ଆଇନ୍‌କୁ କାର୍ଯ୍ୟକାରୀ କରିବା ପାଇଁ ଆବଶ୍ୟକୀୟ ନିୟମାବଳୀ (rules and regulation) ତିଆରି ହେବ । କରିବ କିଏ ? ନିଶ୍ଚିତ ଭାବରେ ବ୍ୟୁରୋକ୍ରାସି ବା ଅମଲାତନ୍ତ୍ର । ଆରମ୍ଭ ହେଲା ଏହି ପର୍ଯ୍ୟାୟରେ ନିଓ-ଡେସ୍‌ପଟିଜମ୍(Neo Despotism) ବା ସ୍ୱେଚ୍ଛାଚାର । ଲର୍ଡ଼ ହୁଭର ଏଇ ନାମରେ ଲେଖିଥିଲେ ବହି ଇଂଲଣ୍ଡରେ ଏ ସଂକ୍ରାନ୍ତରେ ଦେଖା ଦେଇଥିବା ବିପଦ ସଂପର୍କରେ । ଭାରତବର୍ଷରେ ତାହା ଆହୁରି ଉତ୍କଟ ଭାବରେ ପ୍ରକଟିତ ହେଲା ।

ବ୍ୟୁରୋକ୍ରାସିର ଅନ୍ୟ ନାମ ଥିଲା ଷ୍ଟିଲ ଫ୍ରେମ (Steel frame) ଏହାର ଫ୍ରେମ ରହିଲା ଜନସାଧାରଣଙ୍କ ପାଇଁ ଷ୍ଟିଲ୍ କିନ୍ତୁ ଅନ୍ୟମାନଙ୍କ ପାଇଁ ବାମ୍ବୁ ବା ବାଉଁଶର ଫ୍ରେମ । ରାଜନୀତିକ ନେତାମାନେ ନିଜେ ନିଷ୍ପତ୍ତି ଗ୍ରହଣ କଲେ ନାହିଁ, ଛାଡ଼ିଲେ ସରକାରୀ

ଅଫିସରମାନଙ୍କ ଉପରେ । ତେଣୁ ଦାୟିତ୍ୱର କଷଣ ବା ବ୍ରଣ୍ଟ (brunt) ନେଲାବେଳକୁ ସେମାନେ ପଛଘୁଞ୍ଚା ଦେଲେ । ଏହାର ବ୍ୟତିକ୍ରମ ଭିତରେ ଓଡ଼ିଶାରେ ଡକ୍ଟର ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ବନମାଳୀ ପଟ୍ଟନାୟକ, ସୁରେନ୍ଦ୍ରନାଥ ପଟ୍ଟନାୟକ, ରାଜେନ୍ଦ୍ର ନାରାୟଣ ସିଂହଦେଓ ଏବଂ ସର୍ବୋପରି ବିଜୁ ପଟ୍ଟନାୟକ ମନେ ପଡ଼ନ୍ତି । ସେମାନେ ରାଜନୀତିକ ନିଷ୍ପତ୍ତି ନେଉଥିଲେ ଏବଂ ତାହାର ଦାୟିତ୍ୱ ମଧ୍ୟ ସ୍ୱୀକାର କରୁଥିଲେ ।

ଆମର ସେକ୍ରେଟେରୀ ଏହି ନିଷ୍ପତ୍ତିକୁ ବିରୋଧ କରୁଛନ୍ତି । ତାଙ୍କର ସ୍ୱାଧୀନ ମତ ଦେବାର ଦରକାର ରହିଛି କିନ୍ତୁ ଏ ନିଷ୍ପତ୍ତି ରାଜନୀତିକ ନିଷ୍ପତ୍ତି । ସେ ନିଷ୍ପତ୍ତି ଥରେ ନିଆଯାଇସାରିଲା ପରେ ତାକୁ କାର୍ଯ୍ୟକାରୀ କରିବାର ଦାୟିତ୍ୱ ତାଙ୍କର ଏଇଭଳି ଏକ ନିଷ୍ପତ୍ତି ଅର୍ଡ଼ର ଦିଅନ୍ତି ରାଜେନ୍ଦ୍ର ନାରାୟଣ ସିଂହଦେଓ ।

ଡି.ପି.ଆଇ. କେବଳ ବଦଳି କଲେ କାମ ଚଳିବ ନାହିଁ । ଶିକ୍ଷା ସୁଚାରୁରୂପେ ଚାଲିଛି ଦେଖିବା ମଧ୍ୟ ତାଙ୍କର କାମ । ସେ ଦେଇଥିବା ବଦଳି ଆଦେଶ ଏହି ମୁଖ୍ୟ ଉଦ୍ଦେଶ୍ୟର ବିରୋଧାଚରଣ କରିଛି । ତେଣୁ ସେ ବଦଳି ପାଲା ବନ୍ଦ କରିବା ପାଇଁ ନିଷ୍ପତ୍ତି ଅର୍ଡ଼ର କାର୍ଯ୍ୟକାରୀ କରାଯାଉ । ଶିକ୍ଷାମନ୍ତ୍ରୀ ବନମାଳୀ ପଟ୍ଟନାୟକଙ୍କର ଆଦେଶ ।

ପାର୍ଟ ଫାଇଲ ସୃଷ୍ଟି କରି ବିଭ୍ରାନ୍ତ ସୃଷ୍ଟି କର ନାହିଁ । ପୂରା ଫାଇଲ ପଠାଅ ଅର୍ଡ଼ର ପାଇଁ । ମନ୍ତ୍ରୀଙ୍କୁ ଏଡ଼ାଇ ଦେଇ ମୁଖ୍ୟମନ୍ତ୍ରୀଙ୍କଠାରୁ ଅର୍ଡ଼ର ଆଣିବାର ଚେଷ୍ଟାକର ନାହିଁ । ମନ୍ତ୍ରୀ ସୁରେନ୍ଦ୍ରନାଥ ପଟ୍ଟନାୟକଙ୍କର ଅର୍ଡ଼ର ।

ଅଫିସରମାନେ ଯାହା କରିଛନ୍ତି ତାହା ମୋର ଲିଖିତ ବା ମୌଖିକ ଆଦେଶ ଫଳରେ କରିଛନ୍ତି । ସେଥିପାଇଁ ସେମାନେ ଦାୟୀ ନୁହନ୍ତି, ଦାୟୀ ମୁଁ । ଖାନ୍ନା କମିଶନ ଆଗରେ ଆପଣାର ବକ୍ତବ୍ୟ ଉପସ୍ଥାପନ କରି କହନ୍ତି ବିଜୁ ପଟ୍ଟନାୟକ ।

ଅଫିସରମାନେ ମାନୁ ନାହାନ୍ତି, ଏଇଭଳି ଏକ ଆଲୋଚନା ଗଷ୍ଠରେ ଭାଗନେଇ କହନ୍ତି ପ୍ରଦୀପ୍ତ କିଶୋର ଦାସ । ଆଦେଶ ଦେଲା ପରେ ନ ମାନିଲେ ତ ସେ ଅଫିସର ଉକ୍ତ ପଦବୀରେ ଦିନେ ବି ରହିପାରିବେ ନାହିଁ । କିନ୍ତୁ ଅର୍ଡ଼ର ଲିଖିତ ଥିଲା ତ ? ଏବଂ ଯଦି ମୌଖିକ ଥିଲା ମନ୍ତ୍ରୀ ସେ ଅର୍ଡ଼ରର ଦାୟିତ୍ୱ ନେବା ପାଇଁ ପ୍ରସ୍ତୁତ ଥିଲେ ତ !

କ୍ୟାବିନେଟ୍‌ର ନିଷ୍ପତ୍ତି ମାନିବାକୁ ସବୁ ଅଫିସର ବାଧ୍ୟ । ସେମାନେ ସେ ନିଷ୍ପତ୍ତି ସହିତ ଏକମତ ନ ହୋଇପାରନ୍ତି କିନ୍ତୁ ନିଷ୍ପତ୍ତି ମାନିବାକୁ ବାଧ୍ୟ । ମହତାବ ବାବୁ ଏଇପରି ଏକ ଲିଖିତ ଆଦେଶ ଦିଅନ୍ତି ।

ବ୍ୟୁରୋକ୍ରାସି ଶକ୍ତିଶାଳୀ ହୋଇଉଠୁଥିଲା । ପଣ୍ଡିତ ନେହେରୁଙ୍କ ବେଳରୁ । ଆପଣାର ଉକ୍ତିର ସାକ୍ଷ୍ୟ ଭାବରେ ଥିଲେ ଡକ୍ଟର କୈଳାସ ନାଥ କାଟଜୁ ଏବଂ ତାଙ୍କର ସେକ୍ରେଟେରୀ ବ୍ୟୁରୋକ୍ରାଟ୍ ଶ୍ରୀ ଏନ୍.ଆର୍. ପିଲ୍ଲାଇ ।

ସେ ଥରେ ପଣ୍ଡିତ ନେହେରୁଙ୍କର ଏକ ବକ୍ତବ୍ୟରେ ଏକମତ ହେଲେ ନାହିଁ । କ୍ରୋଧରେ ପଣ୍ଡିତ ନେହେରୁ ଟେବୁଲ ଉପରେ ଏକ ବିଧା ମାରିଥିଲେ । ଟେବୁଲ ଥରି

ଉଠିଥିଲା ଏବଂ ସେକ୍ରେଟେରୀ ତାଙ୍କୁ କହିଥିଲେ ଯେ ଏଇ ବିଧା ମାରିବା ଫଳରେ ଆଜି ଟେବୁଲ ଥରି ଉଠିଲା । କିନ୍ତୁ ପ୍ରଧାନମନ୍ତ୍ରୀଙ୍କ ସୃଷ୍ଟ ଆଘାତରେ ସାରା ଭାରତବର୍ଷ ଥରିଯିବ ଯେ ! ପଣ୍ଡିତ ନେହେରୁ ଶାନ୍ତ ପଡ଼ିଯାଇଥିଲେ । ପଣ୍ଡିତ ନେହେରୁଙ୍କର ବ୍ୟକ୍ତିଗତ ପି.ଏ. ଥିଲେ ଓ.ପି. ମାଥାଇ । ସେ ନେହେରୁଙ୍କର ଅତ୍ୟନ୍ତ ପ୍ରିୟ ଥିଲେ ଏବଂ ନେହେରୁଙ୍କର ପରଲୋକ ପରେ ସେ ନିଜ ଜୀବନ କାହାଣୀ ଲେଖିଲେ ଯାହାର ଆଲୋଚନା କରି ଜଣେ ପ୍ରସିଦ୍ଧ ଭାଷ୍ୟକାର ଏହାର ନାମକରଣ କଲେ 'ନିମକହାରାମର ଡାଇରୀ' ।

ଚଳିତ ରାଜ୍ୟ ମନ୍ତ୍ରିମଣ୍ଡଳରେ ମୋର ପରିଚିତ ଜଣେ ମନ୍ତ୍ରୀ ଅଛନ୍ତି । ସେ ଖୁବ୍ କ୍ରୋଧୀ । ରାଗିଲେ ଯାହା ତାହା କହନ୍ତି । ତାଙ୍କର ବ୍ୟୁରୋକ୍ରାସି ଉପରେ ଖୁବ୍ ରାଗ । ସେ ଦୁଇ ଅକ୍ଷରିଆ ଭାଷାରେ କହନ୍ତି ଯେ ବ୍ୟୁରୋକ୍ରାଟ୍‌ମାନେ ହିଁ ସବୁ ପ୍ରତିବନ୍ଧକର କାରଣ । ସେମାନେ କାହାକୁ ମାନିବାକୁ ରାଜି ନୁହନ୍ତି । ସେମାନଙ୍କର ଅଛି ଏକ ନେକ୍ସସ (Nexus) ବା କୁଚକ୍ର । ପରସ୍ପରକୁ ସାହାଯ୍ୟ କରି ଦୁର୍ନୀତିରୁ ମୁକ୍ତ କରିବା ଏହାର କାମ । ବ୍ୟୁରୋକ୍ରାସି ଅପେକ୍ଷା କରୁଥିଲା । ମନ୍ତ୍ରୀମାନେ ଯେତିକି ଭ୍ରଷ୍ଟାଚାର ଏବଂ ଅପାରଗ ହେବେ, ମନ୍ତ୍ରିମଣ୍ଡଳ ଯେତିକି ଏକ ବା ଦୁଇକୈନ୍ଦ୍ରିକ ହୋଇଯିବ ସେମାନଙ୍କୁ ସେତିକି ସୁବିଧା । ସେମାନେ ରହିଲେ ନିରାପଦ ସବୁ ଅଭିଯୋଗ ସତ୍ତ୍ୱେ । ସ୍ୱାଧୀନତା ପରଠାରୁ କେତେ ତଦନ୍ତ କମିଶନ ବସି ନାହିଁ, ବିଭିନ୍ନ ବିଷୟରେ, ଦୁର୍ଘଟଣାରେ ତଦନ୍ତ କରିବା ପାଇଁ; ଫଳ କ'ଣ ହୋଇଛି ? କେତୋଟି କମିଶନଙ୍କ ରିପୋର୍ଟ ଉପସ୍ଥାପିତ ହୋଇଛି ଜନସାଧାରଣଙ୍କ ପାଖରେ ? ରେଳବାଇ ତାହାର ଏକ ସ୍ପଷ୍ଟ (concrete) ଉଦାହରଣ । ଗୋଟିଏ ଦୁର୍ଘଟଣା ପରେ କମିଶନ ବସେ । ଆଉ ଦୁର୍ଘଟଣା ବେଳକୁ କମିଶନ ବସିଲା ବେଳେ ଖୋଜାଯାଏ ପୂର୍ବବର୍ତ୍ତୀ କମିଶନଙ୍କ ରିପୋର୍ଟ । ବ୍ରହ୍ମପୁର ମଦ ମୃତ୍ୟୁ ଘଟଣା ଉପରେ କମିଶନ ବସିଲାବେଳେ ଖୋଜାଯାଉଛି ପୁରୀ ମଦମୃତ୍ୟୁ ରିପୋର୍ଟ । କେତେଜଣ ଅଫିସର ଦଣ୍ଡିତ ହେଲେଣି ଏଇ କମିଶନମାନଙ୍କ ରିପୋର୍ଟ ଉପରେ ? କେବଳ ଅର୍ଥଶ୍ରାଦ୍ଧ । ଓକିଲ ପୋଷା ପାଲଟିଛି ଏଇ ସବୁ କମିଶନ ।

ଗଂଜାମ ମଦ ମୃତ୍ୟୁ ପାଇଁ କମିଶନ କରିବାର ଘୋଷଣା ହୋଇଛି । ହାଇକୋର୍ଟରେ ବିଚାରପତି ନିଅଣ୍ଟ ହେବାରୁ ମୋକଦ୍ଦମା ସବୁ ବର୍ଷ ବର୍ଷ ଧରି ବିଚାର ନ ହୋଇ ପଡ଼ିରହିଛି । ସେଥିରେ କେବଳ ଅବସରପ୍ରାପ୍ତ ବିଚାରପତିମାନଙ୍କୁ ହିଁ କମିଶନ କାମ କରିବାକୁ କହିବା ଛଡ଼ା ଉପାୟ ନାହିଁ । କ'ଣ ହୋଇଛି ବିଧାନସଭା ନିଯୁକ୍ତି ଏବଂ ସାମଗ୍ରୀ କିଣା କମିଶନର ଭାଗ୍ୟ ? ତିନିମାସ ଭିତରେ କାମ ସରିବ କଅଣ ଗୋଟାଏ ବର୍ଷ ଟପି ଯିବାକୁ ବସିଛି । ତଥାପି କାମ ସରି ନାହିଁ । ଆଉ ଅର୍ଥ ଖର୍ଚ୍ଚ କର, ନଚେତ କାମ ବନ୍ଦ ।

ଶେଷକୁ ଦେଖାଯିବ ଯେ କମିଶନ ପାଇଁ ଯେତିକି ଖର୍ଚ୍ଚ ହୋଇଛି, ତାହା ତଦନ୍ତ ପରିମାଣ ଅର୍ଥ ଠାରୁ ବେଶି ।

ଇଂରାଜୀରେ ଗୋଟାଏ କଥା ଅଛି "If you want to do something do it otherwise appoint a committee" ସେଇ ରହିଛି ଅବସ୍ଥା ।

ବାକି ରହିଲା ଜୁଡ଼ିସିଆରି ବା ବିଚାରାଳୟ । ଗଣତନ୍ତ୍ରର ତୃତୀୟ ସ୍ତମ୍ଭ । ଜୁଡ଼ିସିଆରି ବର୍ତ୍ତମାନ ସକ୍ରିୟ ବେଶ୍ । କାରଣ ଯାହା ସମାଧାନ ହୋଇଯାଆନ୍ତା ସାଧାରଣ ବାଟରେ, ତା' ହେଉ ନାହିଁ । ମୋର ଜଣେ ବଂଧୁ କହୁଥିଲେ ଯେ ଓଡ଼ିଶା ହାଇକୋର୍ଟରେ କେବଳ ଶିକ୍ଷା ବିଭାଗର ହଜାରରୁ ଊର୍ଦ୍ଧ୍ୱ କେଶ୍ ପଡ଼ିରହିଛି ବିଚାର ପାଇଁ । ପ୍ରମୋଶନ, ପେନସନ୍, ବଦଳି ସବୁ ଯେପରି ନିଷ୍ପତ୍ତି ହେବ ଅଦାଲତରେ । ଠିକ୍ ସେଇପରି ନାଳ, ନର୍ଦ୍ଦମା, ପରିମଳ, ଜବରଦଖଲ ସବୁ କଥା ସ୍ଥିର ହେବ କଚେରିରେ । ଜମିବାଡ଼ିଠାରୁ ଆରମ୍ଭ କରି ଶିକ୍ଷା, ସଂସ୍କୃତି, ସାହିତ୍ୟ ସବୁ ବିଭାଗର ସମସ୍ୟା ସ୍ଥିର ହେଉଛି ଅଦାଲତରେ ।

ସାହିତ୍ୟ ଏକାଡେମୀର ପୁରସ୍କାର, କ୍ରିକେଟ ଖେଳ, ପଶ୍ଚିମ ଓଡ଼ିଶା ପରିଷଦର ପଦବୀ ସବୁ ନିଷ୍ପତ୍ତି ହେବ ଅଦାଲତରେ ।

ଏହାଫଳରେ ଜୁଡ଼ିସିଆଲ ଆକ୍‌ଟିଭିଜ୍‌ମର ସମସ୍ୟା ସୃଷ୍ଟି ହୋଇଛି । ଭାରତରେ ବିଚାରପତିମାନେ ଉତ୍ତରଦାୟୀ ନୁହନ୍ତି । ବିଚାରପତି ଭଲ, ନ୍ୟାୟବନ୍ତ ହେଲେ ତ ନ୍ୟାୟ ମିଳିବ, କିନ୍ତୁ ନ ହେଲେ ?

ଓଡ଼ିଶାର ଜଣେ ହାଇକୋର୍ଟ ଜଜ୍ ତାଙ୍କର ନିଯୁକ୍ତି ଦିନ ହିଁ ଆପଣା ରହିବା ଘର ପରିବର୍ତ୍ତନ କରିବା ପାଇଁ ଉଦ୍ୟମ ଆରମ୍ଭ କରିଥିଲେ । କାରଣ ତାଙ୍କର ପଡ଼ୋଶୀ ଥିଲେ ଜଣେ ଓକିଲ, ସମଧର୍ମୀ ଏବଂ ତାଙ୍କ ସହିତ ସେ ଯାଆନ୍ତି ପ୍ରତିଦିନ ପ୍ରାତଃଭ୍ରମଣରେ । ଇମିତି ଲୋକ କେତେଜଣ ?

ଭାରତବର୍ଷର କିଛି ହାଇକୋର୍ଟ ବିଚାରପତିଙ୍କ ନାମରେ ଅଭିଯୋଗ ହେଲା ଯେ ସେମାନେ ଉକ୍ତ ସହରର ଗଲ୍ଫ କ୍ଲବରେ ଅବୈତନିକ ସଭ୍ୟ ହେବାର ସୁଯୋଗ ପାଇ ଉକ୍ତ କ୍ଲବକୁ ବେଆଇନ୍ ଜମି ଦଖଲ ସପକ୍ଷରେ ରାୟ ଦେଇଛନ୍ତି । ଆହୁରି ଅନେକ ଅଭିଯୋଗ ବିଭିନ୍ନ ବିଚାରପତିଙ୍କ ନାମରେ ଆସିଛି । ସେଇଯୋଗୁଁ ସେମାନଙ୍କୁ ଉତ୍ତରଦାୟୀ କରାଇବା ପାଇଁ ପଦକ୍ଷେପ କାମ ଆରମ୍ଭ ହୋଇଛି । ଏଣେ ବିଚାରପତିମାନଙ୍କର ରାୟକୁ ସରକାର ମାନୁ ନ ଥିବାରୁ ବିହାର ହାଇକୋର୍ଟର ବିଚାରପତିମାନେ ଏପରି ହେଲେ ସେମାନେ ବାଧ ହୋଇ ଜନସାଧାରଣଙ୍କୁ ଆଇନ୍‌କୁ ହାତକୁ ନେବା ପାଇଁ କହିବେ ବୋଲି କହିଛନ୍ତି ।

ଗୋଟାଏ ପଟେ ଜୁଡ଼ିସିଆଲ ଆକ୍‌ଟିଭିଜମ୍ । କାରଣ ଗଣତନ୍ତ୍ରର ପ୍ରଥମ ଦୁଇ ସ୍ତମ୍ଭ - ବିଧାନସଭା ଏବଂ ଅମଲାତନ୍ତ୍ରର ପରାଜୟ - ଯୋଗୁଁ ଘଟିଛି । ଯାହା ସରକାରୀ ଅଫିସରେ ହେବାର କଥା– ତା ନହେବାରୁ ଲୋକେ କୋର୍ଟର ଦ୍ୱାରସ୍ଥ ହେଉଛନ୍ତି । ଅପର ପଟରେ ଜୁଡ଼ିସିଆଲ୍ ଆକ୍‌ଟିଭିଜ୍‌ମର ବିପଦ, କାରଣ ନ୍ୟାୟପାଳିକାମାନେ ଉତ୍ତରଦାୟୀ ନୁହନ୍ତି ଏବଂ ଠିକ୍ ତା ସାଙ୍ଗକୁ ଗୋଟାଏ ପଟରେ କିଛି ନ୍ୟାୟପାଳିକାଙ୍କ

ଉପରେ ଭ୍ରଷ୍ଟାଚାର ଆରୋପ ଏବଂ ଅପର ପଟରେ ସରକାର ନ୍ୟାୟପାଳିକାର ରାୟକୁ ନ ମାନିବା ହେତୁ ନ୍ୟାୟପାଳିକାମାନଙ୍କର ଚେତାବନୀ ।

ପ୍ରସିଦ୍ଧ ସାମ୍ୟବାଦୀ ନେତା ଏ.କେ. ଗୋପାଳନ୍‌ଙ୍କ କେଶ୍‌ରେ ସୁପ୍ରିମକୋର୍ଟଙ୍କର ପାସ୍‌ପୋର୍ଟ କ୍ଷମତା ସରକାରଙ୍କର ଅଛି କି ନାହିଁ ବୋଲି ପ୍ରଶ୍ନ ପଚାରିଥିଲେ । ମାତ୍ର କିଛି ଦଶନ୍ଧି ପରେ ମାନେକା ଗାନ୍ଧୀଙ୍କ କେଶ୍‌ରେ ସେଇ ସୁପ୍ରିମକୋର୍ଟ କେଉଁ କାରଣରୁ ତାଙ୍କୁ ପାସ୍‌ପୋର୍ଟ ଦିଆଯିବ ନାହିଁ ଏବଂ ତାହା ସୁପ୍ରିମକୋର୍ଟର ହୃଦ୍‌ବୋଧ ହେବା ଉଚିତ ବୋଲି ମତ ଦେଲେ ।

କିଛି ଦଶନ୍ଧି ତଳେ ବୋଧହୁଏ ତେଲେଙ୍ଗାନା ବିପ୍ଲବୀ ବନ୍ଦୀମାନଙ୍କର ପକ୍ଷ ସମର୍ଥନରେ ଆପଣାର ଯୁକ୍ତି ଉପସ୍ଥାପନ କରି ଆଇନ୍‌ର ପ୍ରବାଦ ପୁରୁଷ ଡି.ଏନ୍.ପ୍ରିଟ୍ ଯେତେବେଳେ ଅଷ୍ଟ୍ରେଲିଆ ସୁପ୍ରିମକୋର୍ଟର ରାୟ ନଜିର ଉପସ୍ଥାପନ କଲେ ସେତେବେଳେ ତାଙ୍କୁ କୁହାଗଲା ଯେ, ଅନ୍ୟ ନଜିର ଉପସ୍ଥାପନ କରିବାର ଆବଶ୍ୟକତା ନାହିଁ । କାରଣ ଆମେ ହିଁ ଆମର ପରମ୍ପରା ।

ପଚାଶ ଷାଠିଏ ବର୍ଷ ଭିତରେ ନିଶ୍ଚିତ ଭାବରେ ସେ ପରମ୍ପରା ସୃଷ୍ଟି ହୋଇଛି ଏବଂ ବିଚାରାଳୟମାନେ ସରକାରୀ ଆଦେଶର ଉଦ୍ଦେଶ୍ୟ ଏବଂ ଲକ୍ଷ୍ୟକୁ ମଧ୍ୟ ତର୍ଜମା କରିବା ଆରମ୍ଭ କରିଛନ୍ତି ।

ମଦମୃତ୍ୟୁ ଉପରେ କମିଶନ ପୁଣି ବସିଛି । ଏଥର ବ୍ରହ୍ମପୁର ମଦମୃତ୍ୟୁ ଉପରେ, ସେ କମିଶନ ତଦନ୍ତ ଏବଂ ରିପୋର୍ଟ ଦେଉ ଦେଉ ଦୋଷୀ ଅଫିସରମାନେ ଅବସର ନେଇସାରିବେଣି । ତାହା ଉପରେ କର୍ମପନ୍ଥା ନେଉ ନେଉ (ଯଦି ନିଆଯାଏ) ଆଉ ଗୋଟାଏ ନିର୍ବାଚନ ସରି ଯାଇଥିବ ।

ମୋ ବାପା ବନ୍ୟବିଭାଗର କର୍ମଚାରୀ ଥିଲେ । ସେତେବେଳେ ଗଛ ଲଗାଇବା ବା ପ୍ଲାଣ୍ଟେସନ୍ ବନ୍ୟ ବିଭାଗର ଏକ ବଡ଼ କାମ ଥିଲା । ଶହ ଶହ ପୁରୁଷ ଏବଂ ସ୍ତ୍ରୀ ପ୍ଲାଣ୍ଟେସନ୍‌ରେ କାମ କରନ୍ତି । ସନ୍ଧ୍ୟାବେଳକୁ ମଜୁରି ନେଇ ଫେରନ୍ତି ଗାଁକୁ । ଭୋକରେ ହଂସା ଉଡ଼ିଯାଉଥାଏ । ଗାଁ ମୁଣ୍ଡରେ ମଦଭାଟି । ଉଷୁମ ଉଷୁମ ମଦ୍ୟ ଠୋଲା ବା ଚଉପତ୍ରିରେ ମିଳେ । ଘରକୁ ଯାଅ । ଚାଉଳ ଆଣ । ରୋଷାଇ କର । ତା' ଅପେକ୍ଷା ଏଇ ଉଷୁମ ମଦ ପେଟରେ ପଡ଼ିଗଲେ ସବୁ ଭୋକ ଶୋଷ ଶେଷ । ଯାଇ ଶୋଇଯାଅ ନଚେତ୍ ହୋସ୍‌ରେ ଥିଲେ ନାଚ । ସେମାନେ ପିଅନ୍ତି ଖାଲି ପେଟରେ, ପେଟର ଜ୍ୱାଳା, କ୍ଳାନ୍ତିକୁ ଦୂର କରିବା ପାଇଁ ।

ଦିନେ ଭାଟିବାଲାକୁ ବାପା ପଚାରିଲେ ଯେ ତାଙ୍କୁ ମଦ ଦେଇପାରିବ କି ନାହିଁ ବିନା ମୂଲ୍ୟରେ । ବାପା ପାନ ବିଡ଼ି ସିଗାରେଟ୍ କିଛି ଛୁଅନ୍ତି ନାହିଁ । ସେ ହସି ହସି କହିଲା, ଆଜ୍ଞା ନିଶ୍ଚୟ ଦେବି ମଦ ବିନାମୂଲ୍ୟରେ ତିନିମାସ ପାଇଁ । ତିନିମାସ କାହିଁକି, ବାପାଙ୍କର ଏଇ ପ୍ରଶ୍ନରେ ସେ କହିଲା ଯେ, ଆପଣ ମଦ ତିନିମାସ ପିଇବେ । ତା'ପରେ ମଦ ଆପଣଙ୍କୁ ପିଇବ । ସେତେବେଳେ ଆପଣ ଆମ ଅକ୍ତିଆରକୁ ଆସିଯିବେ ।

ମୋର ମନେପଡୁଛି । ପିଲାଦିନେ ଘର ଆଗରେ ଥିବା ବହୁ ଖଜୁରି ଗଛରେ ମାଠିଆ ଟଙ୍ଗା ହୋଇଥାଏ । ସେଥିରୁ ଗୋଟାକରେ ବାପା ନିର୍ଦ୍ଦେଶ ଦେଇ ନୂଆ ମାଠିଆ ଟାଙ୍ଗି ଦିଅନ୍ତି ଏବଂ ସେଥିରେ କିଛି ଗୁଜୁରାତି, ଅଳେଇଚ, ଲବଙ୍ଗ ଗୁଣ୍ଡ ପକାଇ ଦିଆଯାଏ । ସକାଳ ହେବା ପୂର୍ବରୁ ସେ ମାଠିଆରୁ ନୀରା ସଂଗ୍ରହ ହୋଇ ଆମକୁ ଗିଲାସେ ଲେଖାଁ ପିଇବାକୁ ଦିଆଯାଏ । କୁହାଯାଏ, ଦିନ ବଢ଼ିଲେ ଏଇ ନୀରାରେ ନିଶାଗୁଣ ବଢ଼ିଯାଏ ଏବଂ ତାହା ତାଡ଼ିରେ ପରିଣତ ହୋଇଯାଏ ।

ମଦ୍ୟ ପିଇବା ପାପ କି ନୁହେଁ ମୁଁ କହିପାରିବି ନାହିଁ । ମଦ୍ୟ ପିଏ ଆଦିବାସୀ, ଶ୍ରମିକ ଭୋକର ତାଡ଼ନାରୁ ମୁକ୍ତି ପାଇଁ । ପିଏ ନାଚିବା ପାଇଁ । ମଦ୍ୟପାନ କରନ୍ତି ପ୍ରତିଭାଶାଳୀ ବ୍ୟକ୍ତିମାନଙ୍କ ମଧ୍ୟରୁ ଅନେକ । କଳା, ସାହିତ୍ୟ, ନୃତ୍ୟର ଅନେକ ବିଶାରଦ ଏଥିରେ ଅନ୍ତର୍ଭୁକ୍ତ । ନୃତ୍ୟଶିଳ୍ପୀ ଶମ୍ଭୁ ମହାରାଜ, ଗାୟକ ସୈଗଲ, ଶିଳ୍ପୀ ରାମକିଙ୍କର, ରାଜନୀତିଜ୍ଞ ମୌଲାନା ଆଜାଦ୍, ସି.ଆର. ଦାସ, ଅନେକ ବିଶିଷ୍ଟ ଆଇନଜ୍ଞ, ଲେଖକଙ୍କର ନାମ ମନେପଡ଼େ । ସେ ତାଲିକା ସରିବ ନାହିଁ । ପଣ୍ଡିତ ଜବାହରଲାଲ ନେହେରୁ ଯାଇଥିଲେ ସୋଭିଏତ୍ ରୁଷ୍ । ଆମର ରାଷ୍ଟ୍ରଦୂତ କେ.ପି.ଏସ୍ ମେନନ୍ ତାଙ୍କୁ ଲେଖିଲେ ଆପଣ ତ ୟୁରୋପୀୟ ଆଦବକାଇଦା ଜାଣନ୍ତି । ସବୁ ଗୁରୁତ୍ୱପୂର୍ଣ୍ଣ କଥାବାର୍ତ୍ତା ହୁଏ ଡିନର ଟେବୁଲ୍‌ରେ ଏବଂ ଡିନର୍ ମାନେ ତା' ସହିତ ମଦ । ମୁଁ କ'ଣ କରିବି ? ଉତ୍ତର ପାଇଥିଲେ Serve anything you like, except that vulgar English drink called whisky.ମଦ୍ୟପାନ କରନ୍ତି ଧନାଢ୍ୟମାନେ କ୍ଲବରେ ଆନନ୍ଦ ପାଇଁ ଏବଂ ରାତିରେ ଶୋଇବା ପାଇଁ କାରଣ ଦିନଯାକର କାମ (ବିଶେଷତଃ ଭ୍ରଷ୍ଟାଚାରୀ ଅଫିସର ବା ନବଧନାଢ଼୍ୟ (quick rich) ସହ ନିଦ ହାରିଦିଏ । ମଦ୍ୟପାନ କରନ୍ତି ମଧ୍ୟବିତ୍ତ ବୁଦ୍ଧିଜୀବୀମାନେ ସାମୟିକ ଆନନ୍ଦ, ଚିତ୍ତବିନୋଦନ ପାଇଁ । ମଦ୍ୟପାନ କରନ୍ତି ତରୁଣ ତରୁଣୀ ଦିଗହରା, ପଥଭ୍ରଷ୍ଟ ହୋଇ । ଜୀବନରେ କୌଣସି ଆଇଡ଼ିଏଲ୍ (Ideal) ବା ଆଦର୍ଶ ଜୀବନରେ କୌଣସି ଲକ୍ଷ୍ୟ ନ ଥିବା ଯୁବକ ଯୁବତୀ ମଦ୍ୟପାନ କରନ୍ତି । ଅନେକ ସମୟରେ ତାହା ସେମାନଙ୍କ ପାଇଁ ଷ୍ଟାଟସ୍ ସିମ୍ବଲ (status symbol) ପାଲଟି ଥାଏ । ସେମାନେ ମଦପାନ କରନ୍ତି ନାହିଁ, ମଦ୍ୟ ସେମାନଙ୍କୁ ପାନ କରେ ।

ମଦ ଓ ନାରୀ । ଯୁଗେ ଯୁଗେ ଏ ଦୁଇଟିକୁ ନିଷିଦ୍ଧାଞ୍ଚଳ ବୋଲି ବର୍ଣ୍ଣନା କରାଯାଇଛି । ଏହାସତ୍ତ୍ୱେ ଏ ଦୁଇଟି ଜଡ଼ିତ ହୋଇ ରହିଛି ନିବିଡ଼ ଭାବରେ ମଣିଷର ଜୀବନ ସହିତ । ନିର୍ଣ୍ଣାୟକ କିଏ ମଣିଷ ନା ମଦ୍ୟ, ପୁରୁଷ ନା ନାରୀ ତାହା ହିଁ ହୋଇଛି ପ୍ରଶ୍ନ । ସୋମରସ ଏକ ମଦ୍ୟ ନା ନୁହେଁ ? ଏହାକୁ କିଏ ପିଉଥିଲା ? ମର୍ତ୍ତ୍ୟରେ ମଣିଷ ଏବଂ ସ୍ୱର୍ଗରେ ଦେବତା ।

କୁହାଯାଏ ଯେ ଶୁକଦେବ ଜନ୍ମରୁ ସବୁ ଜାଣି ଜନ୍ମ ହୋଇଥିଲେ । ସେସବୁ ଗୁରୁଙ୍କ ପାଖକୁ ଯାଇ ଶେଷରେ ପହଞ୍ଚିଲେ ରାଜର୍ଷି ଜନକଙ୍କ ପାଖରେ । ସେତେବେଳକୁ

ଜନକ ଥିଲେ ଦରବାରରେ । ତାଙ୍କର ଦୁଇପାର୍ଶ୍ୱରେ ଦୁଇ ସୁନ୍ଦରୀ ଯୁବତୀ ଉପବେଶନ କରୁଥିଲେ । ଦରବାରରେ ଚାଲିଥିଲା ସୁରାପାନ, ନୃତ୍ୟ ଓ ବୀଣାବାଦନ । ଏଭଳି ଲୋକ ତାଙ୍କୁ କ'ଣ ଶିକ୍ଷା ଦେବେ ଭାବି ଶୁକଦେବ ଫେରିଯାଇଥିଲେ । ହଠାତ ଜନକ ରାଜର୍ଷି ପ୍ରଶ୍ନ କଲେ ତମେ ଏଠା ଶିକ୍ଷାଲାଭ କରିବାକୁ ଆସିଥିଲ ? ଫେରିଯାଉଛ କୁଆଡ଼େ ? ଶୁକଦେବ ବିସ୍ମିତ ହେଲେ ଜନକ ରାଜର୍ଷି ତାଙ୍କୁ ପରୀକ୍ଷା କରିବାକୁ ଚାହିଁଲେ ଶିକ୍ଷା ଦେବା ପୂର୍ବରୁ । ଶୁକଦେବ ସମ୍ମତି ଦେଲେ । ଏକ ତୈଳଭାଣ୍ଡରେ ତୈଳ ସଂପୂର୍ଣ୍ଣ ଭର୍ତ୍ତିକରି ଦିଆଗଲା । ଜନକ ରାଜର୍ଷି ଶୁକଦେବଙ୍କୁ ନିର୍ଦ୍ଦେଶ ଦେଲେ ତୈଳଭାଣ୍ଡକୁ ଧରି ରାଜଦରବାର ବୁଲି ଆସିବା ପାଇଁ କିନ୍ତୁ ଟୋପାଏ ହେଲେ ତୈଳ ଯେପରି ନ ପଡ଼େ । ଶୁକଦେବ ସମଗ୍ର ଦରବାର କିଛିକ୍ଷଣ ଧରି ପରିକ୍ରମା କରି ଆସିଲେ । ଟୋପାଏ ବି ତୈଳ ପଡ଼ିଲା ନାହିଁ ।

ଜନକ ରାଜର୍ଷି ପ୍ରଶ୍ନ କଲେ ଶୁକଦେବ ଆପଣ ଯିବା ବାଟରେ ଆମ ରାଜ୍ୟର ଶ୍ରେଷ୍ଠ ନର୍ତ୍ତକୀ ନୃତ୍ୟ କରିବାର ଦେଖିଥିବ । ମୋର ଲକ୍ଷ୍ୟ ନାହିଁ କାରଣ ଲକ୍ଷ୍ୟ ତୈଳ ଭାଣ୍ଡ ଉପରେ । ସୁନ୍ଦରୀମାନେ ସୁରା ପରିବେଷଣ କରିବାର ଦେଖି ନାହାନ୍ତି । ଅକସ୍ମାତ୍ ନାକରେ ବାଜିଥିବ । ଶୁକଦେବଙ୍କର ସେଇ ଉତ୍ତର । ଚକ୍ଷୁ, ନାସା, ସବୁ ରହିଛି ତୈଳ ଭାଣ୍ଡ ଉପରେ । ଆଚ୍ଛା, ସେଇ ସୁନ୍ଦର ବୀଣାବାଦନ ତ କର୍ଣ୍ଣରେ ପଡ଼ିଥିବ । ନା, ମହାରାଜ, ଚକ୍ଷୁ, ନାସା, କର୍ଣ୍ଣ ସବୁ ଇନ୍ଦ୍ରିୟ ମୋର ରହିଥିଲା ତୈଳ ଭାଣ୍ଡ ଉପରେ ।

ଜନକ ରାଜର୍ଷି ଶୁକଦେବଙ୍କୁ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିବା କହି କହିଲେ ଯେ ଠିକ୍ ସେହିପରି ନାରୀ, ମଦ୍ୟ, ବୀଣା, ନୃତ୍ୟ ଭିତରେ ଥିଲେ ହେଁ ସେ ଆସକ୍ତ ନୁହନ୍ତି ସେଥିରେ, ତାଙ୍କର ଲକ୍ଷ୍ୟ ରହିଚି ବ୍ରହ୍ମ ଉପରେ ।

ଆମର ଜଣେ ଚିଫ୍ ସେକ୍ରେଟେରୀ ଥିଲେ ଶ୍ରୀ ଏ.କ.ବାରେନ । ସେ ମଦ୍ୟପାନ କରନ୍ତି । ଦିନକୁ ଗୋଟିଏ ବୋତଲ ରମ୍ । କାହାରି ପଇସାରେ ନୁହେଁ, ନିଜ ପଇସାରେ । ସାଙ୍ଗରେ ପିଇବେ କିନ୍ତୁ ବିଚାର ନିର୍ଭୁଲ୍ । ଏକଥା ସମସ୍ତେ ସ୍ୱୀକାର କରନ୍ତି । ବଂଧୁ ଆପଣାର ପତ୍ନୀକୁ ତାଙ୍କ ପାଖରେ ଛାଡ଼ି ଯାଇଥିଲେ ଯୁଦ୍ଧକୁ । ସେଇଠି ନିହତ ହେଲେ । ବଂଧୁ ପତ୍ନୀଙ୍କୁ ବୈଧବ୍ୟର ଦୁଃଖ ନ ଦେବାକୁ ତାଙ୍କୁ ବିବାହ କଲେ ବାରେନ । ଏଭଳି ମଣିଷ ମିଳିବା କଠିନ । ମଦ୍ୟପାନ ଠିକ୍, କିନ୍ତୁ ନିଷ୍ପତ୍ତି ବି ଠିକ୍ ।

୧୯୫୭ ମସିହା । ମଦ ତ ଦୂରର କଥା । ବିଅର୍‌ର ବି ପାଖ ମାଡ଼ିବାର ସାହସ ହୋଇ ନାହିଁ । ଯଦିଓ ପିଲାଦିନେ ଯାହା ପିଇଛି ଏବଂ ପଲାତକ ଜୀବନରେ ହାଣ୍ଡିଆ ପିଇବାର ଅଭିନୟ କରିଛି । ପହଞ୍ଚିଲି ସୋଭିଏତ୍ ରୁଷ୍‌ରେ । ପିଇବା ପାଇଁ ପାଣି ନାହିଁ । ପିଇବାକୁ ବିଅର ନଚେତ୍ ମିନେରାଲ୍ ୱାଟର । ଯୁଗୋସ୍ଲୋଭିଆ, ବୁଲଗେରିଆରେ ବି ସେହି ଅବସ୍ଥା । ମୋ ଅବସ୍ଥା କହିଲି । ବିଅର, ନଚେତ୍ ମିନେରାଲ୍ ୱାଟର୍ ।

ସେଠାରୁ ଚୀନ । ଭାବିଲି ଏଇଟା ଏସିଆ ମହାଦେଶ । ପିଇବା ପାଣି ମିଳିବ । ପିଇବା ପାଇଁ ପାଣି ମିଳିଲା । କିନ୍ତୁ ଗରମ ପାଣି । ଥଣ୍ଡାପାଣି କେହି ପିଅନ୍ତି ନାହିଁ ।

ସେଇଯୋଗୁଁ ବସ୍‌ରେ, ଟ୍ରେନ୍‌ରେ ସବୁଠାରେ ବିରାଟ ବିରାଟ ଫ୍ଲାସ୍କରେ ଗରମ ପାଣି ରଖାଯାଇଥାଏ । ଖାଲି ବକ୍ତବ୍ୟରେ ଉଦ୍‌ବୋଧନ ବା ବିବୃତିରେ ଏହା ସୀମିତ ନୁହେଁ । ଥଣ୍ଡାପାଣି ମାଗିଲେ, ଗରମ ପାଣିରେ ବରଫ ଖଣ୍ଡେ ଦେଇ ପିଇବାକୁ ଦେଲେ । ଅବସ୍ଥା ଆହୁରି ସାଂଘାତିକ । ଗରମ ପାଣି କେତେ ପିଇବ । ସେଠାରୁ ଭିଏତନାମ । ପ୍ରବଳ ଯୁଦ୍ଧ ଚାଲିଛି ମୁକ୍ତିପାଇଁ । ସଂଗ୍ରାମର ମହାରଥୀ ପ୍ରବାଦପୁରୁଷ ଡକ୍ଟର ରୋଡ଼ିମିନ୍, ଯାହାକୁ ଜବାହରଲାଲ ନେହେରୁ ବର୍ଣ୍ଣନା କରିଥିଲେ ଚଳନ୍ତି ସମୟର ଗାନ୍ଧୀ ବୋଲି । ଭିଏତନାମ୍ ଏକ କ୍ଷୁଦ୍ର ରାଷ୍ଟ୍ର ।  ଲଢ଼ାଇ ପ୍ରବଳ ପ୍ରତାପୀ ଆମେରିକା ସାମ୍ରାଜ୍ୟବାଦ ବିରୋଧରେ । ଆମେରିକା ଆପଣାର ଛଅ ଲକ୍ଷ ସୈନ୍ୟ ଆଣି ଠୁଳ କରିଛି ଭିଏତନାମ୍ ଏବଂ ପାର୍ଶ୍ୱବର୍ତ୍ତୀ ଥାଇଲାଣ୍ଡରେ । ଥାଇଲାଣ୍ଡର ରାଜଧାନୀ ବ୍ୟାଙ୍ଗକକ୍ ଗଣିକା ନଗରୀରେ ପରିଣତ ହୋଇଛି । ତଥାପି ଭିଏତ୍‌ନାମ ହାର ମାନୁନି । ଡିନ୍-ବିନ୍-ଫୁ ଦୁର୍ଗର ପତନ ଘଟିଛି । ଆମେରିକାର ମନୋବଳ ଭାଙ୍ଗିପଡୁଛି । ଏହା ଅଧିକ ହିଂସ୍ର ପାଲଟିଛି । ନଦୀ, ନାଳ,ପୋଖରୀ ସବୁ ବିଷାକ୍ତ କରି ଦିଆଯାଇଛି ଆକାଶମାର୍ଗରୁ । ତମର ନାମ, ଆମର ନାମ, ଭିଏତନାମ, ଭିଏତ୍‌ନାମ । ଭିଏତନାମ୍‌ବାସୀ ପଣ କରିଛନ୍ତି । ମୁକ୍ତିପାଇଁ ସଂଗ୍ରାମରେ ଜିତିବାକୁ ହେବ । ସେଥିପାଇଁ ଯାହା ତ୍ୟାଗ ଦରକାର ସେଥିପାଇଁ ପ୍ରସ୍ତୁତ ।

ଇତିହାସରେ ତାହାର ପଟ୍ଟାନ୍ତର ନାହିଁ । ନଦୀ, ନାଳ, ପୁଷ୍କରିଣୀ ସବୁ ବିଷାକ୍ତ ହୋଇଯାଇଛି । ସେମାନେ ନିଷ୍ପତ୍ତି କରିଛନ୍ତି । ପାଣି ପିଇବେ ନାହିଁ । ଘରେ ଘରେ, ଗ୍ରାମରେ, ସହରରେ ତିଆରି ହେଉଛି ତାଡ଼ି ବା ମଦ, ବାଉଁଶରୁ ଏବଂ ସଳପ ପରି ଗଛରୁ । ପାଣି ପିଇବାକୁ ମିଳୁ ନାହିଁ । ପାଣି ପିଇବା ନିଷିଦ୍ଧ ।

କିନ୍ତୁ ଜାତି ମଦ୍ୟପ ହୋଇ ନାହିଁ, ନିଶାସକ୍ତ ହୋଇ ନାହିଁ । ମଦକୁ ସେମାନେ ପାନ କରିଛନ୍ତି । ମଦ ସେମାନଙ୍କୁ ପାନ କରି ନାହିଁ ।

କିନ୍ତୁ ଆମ ରାଜ୍ୟରେ ମଦର ବନ୍ୟା ଚାଲିଛି । ମଦ ଆମକୁ ଭସାଇନେଇ ଚାଲିଛି । ସବୁ ଢାବା, ସବୁ ହୋଟେଲ୍‌ରେ ମଦ ମିଳୁଛି, ଚୋରାରେ । ଗାଁ ଗଣ୍ଡାରେ ଦେଶୀମଦ ବେପାରୀମାନେ ମଦ ପ୍ରସ୍ତୁତ କରୁଛନ୍ତି ଘରେ, ତୋଟାରେ, ପଠାରେ । ଅସ୍ୱାସ୍ଥ୍ୟକର ପରିବେଶ, ଅସ୍ୱାସ୍ଥ୍ୟକର ପାଣି ଓ ସାମଗ୍ରୀରେ । କାରଣ ଲୋକଙ୍କର ଦାରିଦ୍ର୍ୟରୁ ଫାଇଦା ଉଠାଇବା ହେଲା ଏକମାତ୍ର କାମ । ତେଣିକି ମଦ ଭେଜାଲ ହେଉ, ବିଷାକ୍ତ ହେଉ, ଜୀବନ ନେଉ, ସେଥିପ୍ରତି କାହାରି ନିଘା ନାହିଁ । ନା ବେପାରୀଙ୍କର ନା ବିଭାଗର । ମଦ ବଡ଼ଲୋକଙ୍କ ଘରେ ଷ୍ଟାଟସ୍ ସିମ୍ୱଲ ପାଲଟିଛି । ନବ୍ୟ ଧନାଢ଼୍ୟ ଶ୍ରେଣୀର ଯୁବକର ଆଗରେ ଆଦର୍ଶ ନାହିଁ, ସେ କାହା ଭଳି ହେବ ? କାହା ଭଳି ? ବାପାଙ୍କ ସାଙ୍ଗେ ଭେଟ ହୁଏନା । ସେ ଫେରନ୍ତି ବିଳମ୍ୱିତ ରାତ୍ରିରେ କ୍ଲବ୍‌ରୁ । ବାପା କେବେ ଦାଣ୍ଡପଟରେ ଘରେ ପଶିଲା ବେଳକୁ ପୁଅ ବାରିପଟରେ ବାହାରି ଗଲେଣି ଘରୁ । ମାଆଙ୍କ ଉପରେ

ସବୁ ଜିଗର । ମାଆଙ୍କ ପ୍ରତି ବାପାଙ୍କର ବ୍ୟବହାର ମଧ୍ୟ ସେ ଦେଖିଆସୁଛି ପିଲାଦିନରୁ । ମାଆ ଏକ ମେସିନ୍ ବା ଷ୍ଟୋଭ୍ । ବାପା ଅଫିସ୍‌କୁ ଗଲେ ମାଆ ବାହାରିଯାନ୍ତି ତାଙ୍କ ଧନ୍ଦାରେ ପଡ଼ୋଶିନୀମାନଙ୍କ ସାଙ୍ଗରେ । ଉଦ୍‌ଭ୍ରାନ୍ତ ଲକ୍ଷ୍ୟଭ୍ରଷ୍ଟ ଯୁବକ ବିଦ୍ରୋହ କରେ । ସେ ବିଦ୍ରୋହ ତାକୁ ମଦର ଆଶ୍ରୟକୁ ଠେଲିନିଏ । କେବେ କେବେ ସେ ବିଦ୍ରୋହୀ ହୁଏ ସମାଜ ବିରୋଧରେ ।

ମୋର ଜଣେ ବନ୍ଧୁଙ୍କ ପ୍ରତିଭାବାନ୍ ପୁତ୍ର ଆତ୍ମହତ୍ୟା କଲା । ଆତ୍ମହତ୍ୟା ନୋଟ୍‌ରେ ସେ ଲେଖିଗଲା ଯେ, ସେ କିମିତି ବଞ୍ଚିବ ? ବାପା ମାଆ ଭଉଣୀ ସମସ୍ତଙ୍କ ବିରୋଧରେ ତା'ର ଅଭିଯୋଗ ବାଢ଼ିଗଲା । ଏପରି ପରିସ୍ଥିତିରେ ମୋତେ ମଦ୍ୟପାନ କରି ଏସବୁ ଯନ୍ତ୍ରଣାକୁ ଭୁଲିବାକୁ ହେବ କିମ୍ବା ଆତ୍ମହତ୍ୟା କରିବାକୁ ହେବ । ମଦନିଶାରେ ଯନ୍ତ୍ରଣା ଭୁଲିବା ଅସ୍ଥାୟୀ । ସାମୟିକ ସୁତରାଂ ଆତ୍ମହତ୍ୟା ହିଁ ସ୍ଥାୟୀ ସମାଧାନ । ତାହାକୁ ହିଁ ବାଛିଲି ।

ମଦ ସହିତ ମାଫିଆ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ମଦ ବେପାରୀର ସଂପର୍କ ସମସ୍ତଙ୍କ ସହିତ, ଅଫିସର ନେତା ସମସ୍ତଙ୍କ ସହିତ । ଗପ ଅଛି, ଦୁଇ ମଦବେପାରୀଙ୍କ ସହ ଦେଖା ହେଲା ହଠାତ୍ ଏକ ସଭାରେ । ବନ୍ଧୁ, ତମେ ବର୍ତ୍ତମାନ କେଉଁ ଦଳର ? ଉତ୍ତର ମିଳିଲା, ଆମର ଗୋଟାଏ ପାର୍ଟି । ହୋମ୍ ମିନିଷ୍ଟର୍ସ ପାର୍ଟି । ପୁଲିସ୍ ଯେଉଁ ଦଳରେ ଆମେ ସେଇ ଦଳରେ ।

ମୋର ଜଣେ ପରିଚିତ ବ୍ୟବସାୟୀ କହନ୍ତି, ମୁଁ ସମସ୍ତଙ୍କୁ ଚାନ୍ଦା ଦିଏ । କାହାକୁ ବେଶୀ, କାହାକୁ କମ୍ । କିଏ ଜାଣେ କିଏ କେତେବେଳେ କ୍ଷମତାକୁ ଆସିଯିବ ? ସମସ୍ତଙ୍କୁ କିଛି କିଛି ଦେଇଥିଲେ ଭଲ । ଯେତେ ଘୋଡ଼ା ଦୌଡୁଛନ୍ତି, ସମସ୍ତଙ୍କ ଉପରେ ବାଜି ଲଗାଇଥାଅ । କିଏ ଜାଣେ କେଉଁ ଘୋଡ଼ା ଜିତିବ !

ବିଗତ ଶତାବ୍ଦୀର ମଧ୍ୟଭାଗରେ ଭାରତର ଏକ ଶିଳ୍ପନଗରୀରେ ଏକ ଦୁର୍ଘଟଣା ଘଟିଲା । ଗୋଟିଏ ପ୍ରତିଷ୍ଠିତ କାଗଜର ସମ୍ବାଦଦାତା ରିପୋର୍ଟ କଲେ । A mob of twenty thousand attacked the central of these the industry. ତାଙ୍କୁ ତୁରନ୍ତ ସମ୍ବାଦଦାତା ପଦବୀରୁ ବହିଷ୍କାର କରାଗଲା । ତାଙ୍କୁ ପଚରାଗଲାWho told you to describe the crowd as mob. don't you know that the mob of today may be the government of tomorrow.

ଆମେ ଫେରି ଆସିବା ମଦ ସହିତ ମାଫିଆମାନଙ୍କ ସଂପର୍କକୁ । ମୋର ଜଣେ ବନ୍ଧୁ କଲେକ୍ଟର ହୋଇ ବଦଳି ହେଲେ ଓଡ଼ିଶାର ଏକ ଗୁରୁତ୍ୱପୂର୍ଣ୍ଣ ଜିଲ୍ଲାକୁ । ଦୈବାତ୍ ମୁଁ ସେଇଦିନ ଉକ୍ତ ସହରରେ ଥିଲି, ଯାଇଥିଲି କୌଣସି ଏକ କାମରେ । ହଠାତ୍ ଏ ସମ୍ବାଦ ପାଇ ମୁଁ ତାଙ୍କୁ ଭେଟିବାକୁ ଗଲି । ତାଙ୍କ ଡ୍ରଇଂରୁମ୍‌ରେ ଆମେ ବସି ଗପ କରୁଥିଲୁ । ସେ ଲୁଙ୍ଗି ପିନ୍ଧି ବସିଥିଲେ, କାରଣ ସେ ପ୍ରସ୍ତୁତ ହୋଇ ନ ଥିଲେ ସେ ପର୍ଯ୍ୟନ୍ତ, ଅଫିସିଆଲ୍ କାମ ପାଇଁ ।

ହଠାତ୍ ତାଙ୍କର ଦୁଇଜଣ ପିଅନ ଗୋଟାଏ ବିରାଟ ପ୍ୟାକେଟ୍‌କୁ ବୋହି ଘରଭିତରକୁ ପଶିଲେ । ବେଶ୍ ଓଜନିଆ । ଦୁଇଜଣ ଟେକି ଧରିଛନ୍ତି । ବନ୍ଧୁ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, ଏ କ'ଣ ? ସେମାନେ କହିଲେ ଦେବେନ୍ ସାହେବ ପଠାଇଛନ୍ତି । ସାହେବ ଆସୁଛନ୍ତି । ଦେବେନ୍ ସାହେବ ସେ ଜିଲ୍ଲାର ଅବକାରୀ କର୍ତ୍ତା ଏବଂ କଲେକ୍ଟରଙ୍କର ଗ୍ରାମବାସୀ । କଠୋର କଣ୍ଠରେ ପ୍ୟାକେଟ୍‌ଟିକୁ ସେଇଠି ରଖିବାକୁ କହିଲେ କଲେକ୍ଟର ଏବଂ ପରମୁହୂର୍ତ୍ତରେ ପ୍ରବେଶ କଲେ ଦେବେନ୍‌ବାବୁ । ସେ ଗ୍ରାମବାସୀ ହୋଇଥିବାରୁ ସ୍ଲିପ୍ ପଠାଇ ନାହାନ୍ତି କି ଇଣ୍ଟରଭ୍ୟୁ ପାଇଁ ଟାଇମ୍ ନେଇ ନାହାନ୍ତି ।

ବିଶାଳକାୟ ମଣିଷ । ଏକଦମ୍ ସକାଳ । ତଥାପି ପାଦ ଟଳମଳ । ପାଟି ଖନି ବାଜୁଛି । କିନ୍ତୁ ମୁଣ୍ଡରେ ରହିଛି ପ୍ରକାଣ୍ଡକାୟ ନାଲି ଚିତା । ହାତରେ ଧରିଛନ୍ତି କାଳୀ ମନ୍ଦିରର ଭୋଗ । ଜଣାପଡୁଛନ୍ତି ଖୁବ୍ ଧାର୍ମିକ ଭଳି । ଭୋଗ ବଢ଼ାଇଲେ କଲେକ୍ଟରଙ୍କୁ ଓ ମୋତେ । ବାଧ ହୋଇ ସେ ଗ୍ରହଣ କଲେ । ଯଦିଓ ନିତ୍ୟକର୍ମ ସାରି ନ ଥିଲେ । ଉପାୟ କ'ଣ ?

ଦେବେନ୍‌ବାବୁ ଆରମ୍ଭ କଲେ । ସାର୍, ମୁଁ ଭାରି ଖୁସି ଆପଣଙ୍କ ଆସିବା ଯୋଗୁଁ । କିନ୍ତୁ ଏଇ ପ୍ରସାଦ ତ ଆସିଲା । ସେଇ ପ୍ୟାକେଟ୍‌ଟା କ'ଣ ? ସେଇଟା ଗୋଟାଏ କେକ୍ ସାର ? କେକ୍‌ଟା କ'ଣ ଏତେବଡ଼ ? ନାଇଁ ସାର୍, ପିଲାମାନଙ୍କ ପାଇଁ । ଆଉ ମୋ ପାଇଁ କ'ଣ ସ୍ୱତନ୍ତ୍ର ଆଣିଛ ନା କ'ଣ ?

ସେ ମୋ'ଆଡ଼େ ଟିକିଏ ଅନେଇଲେ । ସେ ମୋର ପରିଚିତ ବନ୍ଧୁ । ନିବିଡ଼ ବନ୍ଧୁ ।

ଦେବେନ୍‌ବାବୁ କହିବାକୁ ପୁଣି ଆରମ୍ଭ କଲେ, ପକେଟରୁ ଏକ ପ୍ୟାକେଟ୍ କାଢ଼ି । ଏଇଟା ଆପଣଙ୍କ ପାଇଁ ଆମର ଗିଫ୍ଟ ମାସିକିଆ । ମାନେ, କେତେ ଟଙ୍କା ? କଲେକ୍ଟରଙ୍କ ପ୍ରଶ୍ନ । ମାତ୍ର ପାଞ୍ଚହଜାର, ମାସକୁ ମାସ ମୁଁ ଦେଇଯିବି । ରଖ ପକେଟରେ, କ'ଣ କହୁଛ ତମେ ଜାଣିଛ ତ ? ସାର୍, ବୋଧହୁଏ ମନ ଭରିଲା ନାହିଁ । କହିବେ ଯଦି ଆଉ ଦୁଇ ଦେଇଯିବି । କିନ୍ତୁ ତା'ଠାରୁ ବେଶି ତ ଦେଇ ହେବ ନାହିଁ । ଅନ୍ୟମାନଙ୍କୁ ବି ତ ଦେବାକୁ ହେବ । ସେ ବିନୀତ କଣ୍ଠରେ କହିଲେ ।

ଅନ୍ୟମାନଙ୍କୁ ? କାହାକୁ ଦେବାକୁ ପଡୁଛି ତୁମକୁ ? କହିବି ସାର୍ ? ସେ ମୋତେ ପୁଣି ଅନେଇଲେ ଏବଂ କହିଚାଲିଲେ, ତାଲିକା ଓ ପରିମାଣ । କଲେକ୍ଟରଙ୍କ ତଳକୁ କିରାଣି ପର୍ଯ୍ୟନ୍ତ, ଉପରକୁ ମନ୍ତ୍ରୀ ପର୍ଯ୍ୟନ୍ତ । ଏହାଛଡ଼ା ବକ୍‌ସିସ୍ ତ ଅଛି ସାର୍ ?

କେକ୍‌କୁ କଲେକ୍ଟର ପଠାଇ ଦେଇଥିଲେ ପାଖ କୁଷ୍ଠାଶ୍ରମକୁ ଏବଂ ଟଙ୍କା ଫେରସ୍ତ ନେଇ ଦୁଃଖରେ ଫେରିଯାଇଥିଲେ ଅଫିସର ଦେବେନ୍‌ବାବୁ ।

ଏ ହେଉଛି ବିଗତ ଶତାବ୍ଦୀର ମଧ୍ୟଭାଗର କଥା । ଏହା ବର୍ତ୍ତମାନ ଅଛି କି ନାହିଁ, କି ବଢ଼ିଛି ତାହା କହିପାରିବି ନାହିଁ ।

ନିଶା ନିବାରଣ ସରକାର କରିପାରିବେ ନାହିଁ । ଜନଆନ୍ଦୋଳନ, ଜନସଂଗ୍ରାମ ହିଁ ଏହା କରିପାରେ, ଯାହା ବର୍ତ୍ତମାନ ବ୍ରହ୍ମପୁରଠାରୁ କୋରାପୁଟ, କନ୍ଧମାଳ ପର୍ଯ୍ୟନ୍ତ

ଆରମ୍ଭ ହୋଇଛି ଏବଂ ନାରୀମାନେ ହୋଇଛନ୍ତି ଏହାର ଅଗ୍ରଣୀ । କାରଣ ନାରୀ ହିଁ ଏହି ନିଶାର ସବୁଠାରୁ ବଡ଼ ଶିକାର ।

ଏକ କ୍ଲବ୍ । ବଡ଼ ଲୋକଙ୍କର କ୍ଲବ୍ । କ୍ଲବ୍‌ର ବିଲ୍‌ଯାଏ ପେମେଣ୍ଟ ପାଇଁ ଘରକୁ । କ୍ଲବ୍‌ର ସେକ୍ରେଟାରୀ ନିଷ୍ପତ୍ତି କଲେ ଯେ କ୍ଲବ୍ ସଭ୍ୟ ବିଲ୍ ଏବଂ ପାନୀୟ ବିଲ୍‌କୁ ସ୍ୱତନ୍ତ୍ର କରାଯାଇ ପଠାଯିବ ଘରକୁ । ହେଲା ତୁମୁଳ ପ୍ରତିବାଦ । ତୁମକୁ କିଏ କହିଲା ଆମ ଘରେ କନ୍ଦଳ ସୃଷ୍ଟି ପାଇଁ ? ତମେ ତ ସବୁ ମିଶି ଗୋଟାଏ ବିଲ୍ ପଠାଇବ । ଘରେ ଜାଣିବେ ଯେ ବଡ଼ଲୋକଙ୍କ କ୍ଲବ୍ । ତେଣୁ ଚଢ଼ା ବିଲ୍ । ସେଥିରେ ସଭ୍ୟ ଚାନ୍ଦା ଲାଗି ଗୋଟାଏ ବିଲ୍, ପାନୀୟ ଲାଗି ଅଲଗା ବିଲ୍ ହେଲେ ଗଣ୍ଡଗୋଳ ହେବ ନାହିଁ ଆମ ଘରେ ?

ବନ୍ଦ ହୋଇଗଲା ସେ ବ୍ୟବସ୍ଥା । ଏଇ ନିଶାର ନିବାରଣ କିଏ, କେମିତି କରିପାରିବ ? ମନେପଡ଼େ ପିଲାଦିନର କଥା । ବାପା ଆଉ ସେ ମଦଭାଟିବାଲା ସହିତ କଥୋପକଥନ ।

ଆପଣ ମଦ ପିଇବା ପର୍ଯ୍ୟନ୍ତ ଆମେ ଆପଣଙ୍କୁ ମାଗଣା ପିଇବାକୁ ଦେବୁ । ମଦ ଯେତେବେଳେ ଆପଣଙ୍କୁ ପିଇବାକୁ ଆରମ୍ଭ କରିବ, ସେତେବେଳେ ଆପଣ ଆମକୁ ମୂଲ୍ୟ ଦେବାକୁ ପଡ଼ିବ । ଆଉ ସେ ମୂଲ୍ୟ ଆପଣଙ୍କୁ ଦେବାକୁ ହେବ ଜୀବନସାରା ।

ଅନେକ ପ୍ରଶ୍ନ ଉଙ୍କିମାରିବା ଆରମ୍ଭ କରିଥିଲା । ବୟସ ତାରୁଣ୍ୟକୁ ଛୁଇଁବା ଆରମ୍ଭ କରିଥିଲା । ନାରୀଠାରୁ ଖାଦ୍ୟ ପର୍ଯ୍ୟନ୍ତ ସବୁ ବିଷୟରେ ନୂଆ ନୂଆ କଥା ଉଙ୍କି ମାରୁଥିଲେ । ଜଣେ ଆଙ୍ଗ୍ଲୋ-ଇଣ୍ଡିଆନ୍ ସାହେବ ଡି.ଏ. ବିବି ଆସିଥିଲେ ଶିକାର ପାଇଁ । କ୍ୟାମ୍ପ ପକାଇ ରହିଥିଲେ ଆମ ଘର ପାଖ ଜଙ୍ଗଲର ଉପକଣ୍ଠରେ । ଦିନେ ସନ୍ଧ୍ୟାରେ ସେ ମୋତେ ଓ ମୋର ଦୁଇଜଣ ସାଙ୍ଗଙ୍କୁ ନିମନ୍ତ୍ରଣ କଲେ ଖାଇବା ପାଇଁ । ଖାଦ୍ୟ ତ ଦେଲେ, ତା' ସାଙ୍ଗରେ ମଦ ବି ଦେଲେ । ବୟସ ୧୩/୧୪ ବର୍ଷ । ମଦ ଆଉ ଆମେ ? ସମସ୍ତେ ମନାକଲେ । ସାଙ୍ଗରେ ସାହେବଙ୍କର ପୁଅ ଥିଲା । ସେ ଆମରି ବୟସର । ସେ ପିଇଲା ଆଉ ଆମକୁ କହିଲା ଟିକିଏ ଚାଖ ଖାଲି । କମ୍ପାନୀ ଦିଅ । ଏଇ କମ୍ପାନୀ ଦେବା କଥାଟା ଶିଖିଗଲୁ ସେଇଠୁ । ଚାଖିଲୁ ଢୋକି ହେଲା ନାହିଁ । ତଣ୍ଟି ପୋଡ଼ିଗଲା ପରି ଲାଗିଲା । ସେ ହସି ହସି ଗଡ଼ିଗଲା । ସିପ୍ ସ୍ଲୋଲି । ସ୍ଲୋ ଶବ୍ଦର ଅର୍ଥ ଜଣାଥିଲା କିନ୍ତୁ ସିପ୍‌ର ନୁହେଁ । ତେଣୁ ବୁଝିବା କଠିନ ହେଲା । ଆଉ ଏଣେ ଭୟ ଘରକୁ । ମଦ ଛୁଇଁଦେଲେ କାଳେ ନିଶା ହୋଇଯାଏ ! ତେଣୁ ସେ ନାଟକର ପରିସମାପ୍ତି ସେଇଠି ।

ଆମ ଘରେ ଜାତିପ୍ରଥାର ବାରଣ ବିଶେଷ ନ ଥିଲା । ଧର୍ମର ବାରଣ ପ୍ରାୟ ନ ଥିଲା । ସ୍ୱାଧୀନତା ସଂଗ୍ରାମ ଓ ମହାତ୍ମା ଗାନ୍ଧୀଙ୍କର ପ୍ରଭାବର ଫଳ । ବାପାଙ୍କର ଅନେକ ଖ୍ରୀଷ୍ଟିୟାନ୍ ଓ ମୁସଲମାନ ବନ୍ଧୁ, ସହକର୍ମୀ ଥିଲେ । ସାମ୍ପ୍ରଦାୟିକ ଦଙ୍ଗା ବା ବିଦ୍ୱେଷ ସେ ସଂପର୍କକୁ ମ୍ଳାନ କରି ନ ଥିଲା ।

ଜୀବନରେ ବହୁ ଉତ୍‌ଥାନ ପତନ ଭିତର ଦେଇ ଯିବାକୁ ପଡ଼ିଛି । ପଳାତକ ଜୀବନର ଅଧିକାଂଶ ସମୟ କଟିଛି ଆଦିବାସୀମାନଙ୍କର ପଲ୍ଲୀରେ । ସବୁ ପ୍ରକାର ଖାଦ୍ୟ ଖାଇବାକୁ ପଡ଼ିଛି । ମୁଁ ଆମିଷପ୍ରିୟ । କିନ୍ତୁ ଆଇଁଷିଆ ଗନ୍ଧ ମୋର ଅସହ୍ୟ । ମାଛ ଏକଦମ୍ ତଟକା ନ ହେଲେ ମୁଁ ଖାଇପାରେନା । ସେଇପରି କଂକଡ଼ା ଏବଂ ଲୁଣିମାଛ ମୋ ଦେହରେ ଯାଏନା । ଅକାତିଆ ମାଛ (ଶେଉଳ ଭଳି) ମୋତେ ଭଲ ଲାଗେ ନାହିଁ । ମୋର ମାଉସୀପୁଅଭାଇ ମଦନର ଠିକ୍ ଓଲଟା । ଆଇଁଷିଆ ଗନ୍ଧ ନ ହେଲେ ଆଇଁଷ ଖାଇବ କାହିଁକି ? ତା'ର ଯୁକ୍ତି । ପଳାତକ ଜୀବନରେ ସବୁପ୍ରକାର ଖାଦ୍ୟ ଖାଇବାକୁ ପଡ଼ିଛି । ଗେଣ୍ଡା, କୋଚିଆ, ବେଙ୍ଗଠାରୁ ଆରମ୍ଭ କରି ଅନ୍ତତଃ ଥରେ ସାପ ପର୍ଯ୍ୟନ୍ତ ! କେତେ ରୁଚିକର ହୋଇଛି, ସେ ଅଲଗା କଥା । ମୋତେ ଅକାତିଆ ମାଛ ଭଲ ଲାଗେ ନାହିଁ ବୋଲି ସାପ ଥରେ ଖାଇ ପଚାରିଛି କ'ଣ ଏଇଟା ? ଜାଣି ଆଉ ଖାଇପାରି ନାଇଁ । ଠେକୁଆ, ମିରିଗ, ସମ୍ବର, ବଣକୁକୁଡ଼ା, ବାର୍‌ହା, ହରଡ଼ ଚଢ଼େଇ ମାଂସ ଖାଇବାରେ କୌଣସି ଅସୁବିଧା ହୋଇ ନାହିଁ । କାରଣ ପିଲାଦିନରୁ ଏସବୁ ମାଂସ ଖାଇବାରେ ଆମେ ସବୁ ଅଭ୍ୟସ୍ତ ।

କୋଲକାତାର ହାଡ଼କଟା ଲେନ୍‌ରେ ଯେଉଁ କେତେଦିନ କଟିଥିଲା, ସେ ଥିଲା ଏକ ବିଚିତ୍ର ଜୀବନ । ଏକେ ତ ନିଜେ ପଳାତକ । ତେଣେ ହାଡ଼କଟା ଲେନ୍‌ର ସବୁ ପ୍ରକାର ଦୁର୍ଦ୍ଧର୍ଷ ପଳାତକମାନଙ୍କର ପେଣ୍ଠ । କୋଲକାତାର ସବୁଠାରୁ ବଡ଼ ରେଡ୍‌ଲାଇଟ୍ ଏରିଆ । ହଜାର ହଜାର ବାରବନିତାଙ୍କର ଭୀରୁ ଆଖିର ନିମନ୍ତ୍ରଣରେ ଏଠି ସନ୍ଧ୍ୟା ନଇଁଆସେ ଇଲାକାକୁ ନିଷିଦ୍ଧାଞ୍ଚଳ କରି । ଚୋର, ଡକାୟତ, ସ୍ମଗଲ୍‌ର, ବିପ୍ଳବୀ ସବୁପ୍ରକାର ପଳାତକଙ୍କର ଅନ୍ୟତମ ଆଶ୍ରୟସ୍ଥଳୀ ମଧ ଏଇ ଅଞ୍ଚଳ । ପ୍ରେମଚାନ୍ଦ ବରାଳ ଷ୍ଟ୍ରୀଟ୍‌ର ଅଂଶ ଏଇଟା । ଅନେକ ଓଡ଼ିଆ, ବଙ୍ଗାଳୀ ପରିବାର ମଧ ଏଇ ଅଞ୍ଚଳରେ ରହନ୍ତି । କାରଣ ଘରଭଡ଼ା ସମସ୍ୟା ଉତ୍କଟ । ପ୍ରସିଦ୍ଧ ମେଗାଜିନ୍ 'ଆସନ୍ତା କାଲି'ର କେନ୍ଦ୍ର ଅଫିସ୍ ଏଇ ଷ୍ଟ୍ରୀଟ୍‌ରେ । ଯେହେତୁ ବହୁତ ଓଡ଼ିଆ ଅଛନ୍ତି ଏଇ ଅଞ୍ଚଳରେ, ସେଥିପାଇଁ ମୋର ରହଣି ସମୟରେ ଘରୁ ବାହାରିବା ନିଷିଦ୍ଧ ଥିଲା । ଘରର ଆମ ଖୁଆଡ଼ରେ ଥିବା ପାଇଖାନା ଓ ବାଥ୍‌ରୁମ୍‌କୁ କେବଳ ଯିବାର ଅନୁମତି । ଖାଇବା ନିଜ କୋଠରିରେ । ହେପାଜତର ଦାୟିତ୍ୱରେ ଥିବା ଝିଅଟି ଖାଇବାକୁ ଦେଇଯାଏ । ଭାତ ଏବଂ ଗୋ-ମାଂସର ତରକାରୀ । ସବୁଠାରୁ ଶସ୍ତା, ସୁସ୍ୱାଦୁ ଖାଦ୍ୟ ।

ଗୋ ମାଂସ ଖାଇବା ଛଡ଼ା ଉପାୟ ନାହିଁ । ପିଲାଦିନେ ମଧୁସୂଦନ ଗ୍ରନ୍ଥାବଳୀରେ ଭବଭୂତିଙ୍କ ରଚିତ ଉତ୍ତର ରାମଚରିତ୍ରର ଓଡ଼ିଆ ଅନୁବାଦ ପଢ଼ିଥିଲି । ମୁନିଋଷିମାନେ କଂଚା ଗୋମାଂସ ଖାଇବା ପଢ଼ିଥିଲି । ସେମାନେ ତ ଖାଇଥିଲେ, ଆମେ ତ ସାଧାରଣ ମଣିଷ । ଖାଇଲେ କ'ଣ ହେଲା ? ବୋଧହୁଏ ସେତେବେଳକୁ ପାକ୍ ପ୍ରଣାଳୀର ବିଶେଷ ଭାବେ ବ୍ୟବହାର ହୋଇ ନାହିଁ ନା କ'ଣ ? ଆଖି କାନ ବୁଜି ଖାଇଲି । ପରେ

ଅଭ୍ୟାସ ହୋଇଗଲା । ସବୁକଥା ନିର୍ଭର କରୁଛି ଆବଶ୍ୟକତା ଉପରେ । ନଅଙ୍କ ଦୁର୍ଭିକ୍ଷ ବେଳେ ମଣିଷ କ'ଣ ନ ଖାଇଚି । ଭୋକର ଜ୍ୱାଳାରେ ଶିଶୁର ଶବକୁ ଟାଣି ଖାଇଚି କୌଶଲ୍ୟା ପାର୍ବତୀ କାବ୍ୟରେ । ସମାଂସ ହେଉଛି ଗୋମାଂସର ଅନ୍ୟ ନାମ । ମୋତେ ଗୋଟିଏ ବହି ମିଳିଥିଲା । ବହିର ନାମ ହେଉଛି ବେଦ ଚତୁଷ୍ଟୟମ୍ । ବହି ଏକ ପୁରାତନ କାବ୍ୟ । ସେଥିରେ ଗୋ-ମାଂସ ଖାଇଥିବା ବ୍ୟକ୍ତିମାନଙ୍କର ଭିତରେ ଯେଉଁ ପୌରାଣିକ ମହାପୁରୁଷମାନଙ୍କର ନାମ ରହିଛି ତାହା ମୁଁ ଏଠାରେ ଲେଖିବାକୁ ଚାହେଁନା । ଇଚ୍ଛୁକ ପାଠକମାନେ ତାକୁ ପାଠ କରିପାରନ୍ତି । ଠିକ୍ ସେଇପରି ମୂଳ ବାଲ୍ମୀକି ରାମାୟଣରେ ସମାଂସ ସେବନ କଥା ଲିପିବଦ୍ଧ ରହିଛି ।

ମୋର ମନେହୁଏ ଦିନେ ଗାଈ ବୁଲୁଥିଲା ଜଙ୍ଗଲ ଭିତରେ କୁଟୁରା, ସମ୍ବର ପରି । ଚାରଣ ସଭ୍ୟତାରେ ଏହା କ୍ଷୀର, ସର, ଛେନା ପାଇଁ ବ୍ୟବହୃତ ହୋଇଛି । କୃଷି ସଭ୍ୟତାରେ ଏହା ବ୍ୟବହୃତ ହୋଇଛି ଚାଷ ପାଇଁ । ଏହା ସମ୍ପଦରେ ପରିଣତ ହୋଇଛି । ଗୋଧନରେ ପରିଣତ ହୋଇଛି । ଏହା ସଂରକ୍ଷିତ ହେଉଛି । ତେଣୁ ଏହାର ମାଂସ ନିଷିଦ୍ଧ ହୋଇଛି ଖାଇବା ପାଇଁ । ତାହାକୁ ସଫଳ କରିବା ପାଇଁ ଧର୍ମ କଥା ଯୋଡ଼ା ଯାଇଛି । Crystallised social ideas is religion.

କୋରାପୁଟର ଆଦିବାସୀମାନେ ଗାଈକୁ ଲଙ୍ଗଳରେ ଯୋଚି ଚାଷ କରନ୍ତି । ତା'ର ମାଂସ ଖାଆନ୍ତି । କିନ୍ତୁ କ୍ଷୀର ପିଅନ୍ତି ନାହିଁ । ଆଦିବାସୀମାନଙ୍କର ଧର୍ମ ହିନ୍ଦୁ କି ନୁହେଁ ସେ ସଂପର୍କରେ ବିବାଦ ରହିଛି । ଆଦିବାସୀମାନଙ୍କ ଉପରେ ଗବେଷଣା କରୁଥିବା ବ୍ୟକ୍ତିମାନେ କହନ୍ତି ଯେ, ସେମାନଙ୍କର ବିଶ୍ୱ ଦୃଷ୍ଟି, ସାହିତ୍ୟ, କଳା ସ୍ୱତନ୍ତ୍ର । ଯେଉଁ ଜଗନ୍ନାଥ ଆଦିବାସୀମାନଙ୍କ ଦ୍ୱାରା ପୂଜିତ, ସେ ନୀଳମାଧବ, ଠିକ୍ ଜଗନ୍ନାଥ ନୁହନ୍ତି । ସେମାନଙ୍କ ମଧ୍ୟରୁ ଅନେକଙ୍କର ଭାଷା କଥିତଭାଷା, କିନ୍ତୁ ସାନ୍ତାଳୀଙ୍କର ଲିପି ରହିଛି ଅଲ୍‌ଚିକି, ଯାହା ଏବେ ସେମାନଙ୍କ ପାଠ୍ୟ ମାଧମରେ ପରିଣତ ହେବାକୁ ଯାଉଛି ।

ଗାଈ ଆମକୁ କ୍ଷୀର ଦିଏ । ଦିନେ ଏହା Mudium of exchange ଥିଲା ଗୋଧନ । ଏହାର ମଳ ମୂତ୍ର ଥିଲା ଜୀବାଣୁନାଶକ । କିନ୍ତୁ ସହରୀ ଗାଈ କ'ଣ ନ ଖାଉଛି ? ତାର ଗୋବର, ମୂତ୍ର କ'ଣ ଜୀବାଣୁନାଶକ ? ଆଶାରାମ ବାପୁ ପ୍ରଭୃତି ଯେଉଁମାନେ ଗୋମୂତ୍ରରୁ ଔଷଧ କରୁଛନ୍ତି, ସେ ଗାଈ କ'ଣ କଟକୀ ଗାଈ ପରି, ନା ତା'ର ଖାଦ୍ୟ ସେଇପରି । ଗାଈକୁ ମାତା କହି ଆମେ ଗାଈକୁ ଯେପରି ରଖୁଛୁ ତା' ନା କ'ଣ ଗୋସେବା ? ଗାଈ ଯେତେବେଳେ କୃଷିକର୍ମରେ ଲାଗିଛି, ଗୋପାଳନ କରି ଆମେ ଯେତେବେଳେ କ୍ଷୀର ଖାଉଛୁ, ତାହାକୁ ସଂରକ୍ଷଣ କରିବା ପାଇଁ ଧର୍ମକୁ ଆୟୁଧ କରାଯାଇଛି, କାରଣ ରାଷ୍ଟ୍ର ହୁଏତ ଗଢ଼ା ହୋଇ ନାହିଁ ବା ରାଷ୍ଟ୍ର ସର୍ବବ୍ୟାପୀ ହୋଇ ନାହିଁ ।'

ତଥାପି ସେ ଯୁଗରେ ବି ଗୋମାଂସ ଖାଇବାର ପ୍ରଚଳନ କଥା ମୁଁ କହିଚି ଆଗରୁ । କିନ୍ତୁ ସେଦିନ କ'ଣ ଏଇ ନୀତିନିୟମ କଥା ମୁଁ ଜାଣିଥିଲି ନା ଚର୍ଚ୍ଚା କରିବାର ଅବକାଶ

ଥିଲା । ଶସ୍ତାରେ ମିଳୁଛି ଏବଂ ତାହା ନ ଖାଇବା ଛଡ଼ା ଉପାୟ ନାହିଁ, ତାହା ଥିଲା ଏକମାତ୍ର ନିୟାମକ ।

ପରେ ବହୁବାର ବିଦେଶ ଯାଇଛି । ୟୁରୋପ, ଏସିଆର କେଉଁଠି ଗାଈ ମାଂସ ଖାଇବାକୁ ପଡ଼ି ନାହିଁ । ଯଦିଓ ସେମାନେ ଗାଈ ମାଂସ ଖାଆନ୍ତି । ମୋର ମନେପଡୁଛି ଥରେ ଜାପାନର ରାଷ୍ଟ୍ରଦୂତ ଆମକୁ (ମୁଁ ଓ ଉମେଶ) ଖାଇବାକୁ ଡାକିଲେ । ରାତ୍ରି ଭୋଜନ । ପ୍ରଥମେ ବିରାଟ ବିରାଟ ଚିଙ୍ଗୁଡ଼ି । ସମୁଦ୍ର ଚିଙ୍ଗୁଡ଼ି ହୋଇଥିବ ଭାବି ମୁଁ ମନା କଲି । ତାଙ୍କର ମୁହଁ ଶୁଖିଗଲା । କାରଣ ସେ ବିଫ୍ ଆଉ ପୋର୍କ ରୋଷାଇ କରିବାକୁ କହିଛନ୍ତି । ଅତିଥି ନିରାମିଶାଷୀ ହେଲେ ଖାଇବେ କ'ଣ ? ସେ ପଚାରିଲେ ମୋତେ, ଆପଣ କ'ଣ ନିରାମିଶାଷୀ ? ନା, କାଳେ ଏହା ସମୁଦ୍ର ଚିଙ୍ଗୁଡ଼ି ହୋଇଥିବ ତେଣୁ ମନା କଲି । କାରଣ ସମୁଦ୍ର ମାଛ, ଚିଙ୍ଗୁଡ଼ି ମୋ ପାଇଁ ଆଲର୍ଜି । ସେ ଆଶ୍ୱସ୍ତ ହେଲେ ।

ଆମ ୟୁନିଭର୍ସ ପାଖରେ କିଲଖାନା, ଗୋମାଂସ ବିକ୍ରି ହୁଏ । ତାକୁ କିଣିବା ପାଇଁ ଧାଡ଼ି ଲାଗେ, କିନ୍ତୁ ସ୍କୁଟରରେ ବା କାର୍‌ବାଲା କେହି ଆସନ୍ତି ନାହିଁ । ସମସ୍ତେ ସାଇକେଲରେ ନଚେତ୍ ପାଦରେ । ଆଜି କଟା ହୋଇଥିବା ଗାଈର ମାଂସ କାଲିକି ବିକ୍ରି ହୁଏ । ଫର୍ମେଣ୍ଟେଡ୍ ହୋଇଯାଇଥାଏ । ତେଣୁ ହଡ଼ାଗାଈର ମାଂସ ସିଝିଯାଏ । ଆମ୍ବିଳି ଲାଗେ । ଶସ୍ତା ମାଂସ, ସେଇଟା ହେଉଛି ଏକମାତ୍ର ନିୟାମକ । ନଚେତ୍ କିଏ ଖାଇବ ସେ ବୁଢ଼ୀ ଗାଈ ମାଂସ ? ହିନ୍ଦୁ, ମୁସଲମାନ ସମସ୍ତେ ଖାଆନ୍ତି । ଦରିଦ୍ରର ଭରସା ଶସ୍ତା ମାଂସ । ଯେଉଁ ଗୋମାତାମାନଙ୍କୁ ହତ୍ୟା କରାଯାଏ, ସେମାନେ ଦୁଧ ଦେବାକୁ ଆଉ ସମର୍ଥ ନୁହନ୍ତି । ଏକକ ପରିବାରରେ ଅନେକ ସମୟରେ ବୁଢ଼ାବୁଢ଼ୀ ବାପାମାଆମାନେ ମୁଖ୍ୟଘରେ ନ ରହି ଆଉଟ୍ ହାଉସ୍‌ରେ ରହନ୍ତି, ଠିକ୍ ସେଇପରି ଏଇ ଗୋମାତାମାନେ ରାସ୍ତାରେ ହିଁ ରହନ୍ତି, ସେଇଠି ଖାଆନ୍ତି ସବୁ ଚୋପା, ପ୍ଲାଷ୍ଟିକ୍, ଖୋଳ, କାଗଜ ସବୁ ଖାଦ୍ୟ ଅଖାଦ୍ୟ । ସେଇ ତାଙ୍କ ପାଇଁ ଗୋପୂଜା, ଡଷ୍ଟବିନ୍‌ର ଖାଦ୍ୟ ।

ସେଦିନ ଅନେକ ଇମିତି କଥାର କୁଆଁତାରା ଦେଖାଦେଇଥିଲା । ଯାହା ପରବର୍ତ୍ତୀ କାଳରେ ପ୍ରଚଳିତ ରାଜନୀତିକ, ସାମାଜିକ ବ୍ୟବସ୍ଥା ବିରୋଧରେ ବିଦ୍ରୋହର ଗୈରିକ ପତାକା ଉତ୍ତୋଳନ କରିବାକୁ ପ୍ରେରଣା ଦେଇଥିଲା । ଭାରତବର୍ଷ ପହଞ୍ଚି ସାରିଥିଲା ସ୍ୱାଧୀନତାର ପ୍ରାକ୍‌କାଳରେ । କିନ୍ତୁ ତା' ପୂର୍ବରୁ ଘୋଟିଥିଲା ଘନ କାଳି ଅନ୍ଧାର ।

ସବୁକିଛିର ଓଲଟ ପାଲଟର ପର୍ବ ଆରମ୍ଭ ହୋଇଯାଇଥିଲା ।

ସମ୍ବଲପୁର ଛାଡ଼ିଲୁ ୧୯୪୬ ମସିହାରେ । ଗୋଟାଏ ବର୍ଷ ପାଠ ପଢ଼ା ନଷ୍ଟ ହୋଇସାରିଚି, ବୋମା ବିସ୍ଫୋରଣରେ ଆହତ ହୋଇ ।

ସମ୍ବଲପୁର ଛାଡ଼ିଲା ବେଳକୁ ଆରମ୍ଭ ହୋଇଗଲାଣି ହୀରାକୁଦ ଡ୍ୟାମ ବିରୋଧୀ ଆନ୍ଦୋଳନ । ଇବ୍‌ନଦୀ କୂଳରେ ଗଢ଼ି ଉଠିଥିବା ବହୁ ସମୃଦ୍ଧିଶାଳୀ ଗ୍ରାମ ବୁଡ଼ିଯିବ ହୀରାକୁଦ ବନ୍ଧରେ । ପାଣିର ଅତଳ ଗର୍ଭରେ । ମୁରା, ରମ୍ପେଲା ପ୍ରଭୃତି ଗ୍ରାମ ବୁଡ଼ି ଯିବ । ଚାଷୀର

କ୍ଷତି ହେବ । ଗୌନ୍ତିଆମାନଙ୍କର ମଧ । ଗୌନ୍ତିଆ ପ୍ରଥା ମୋଗଲବନ୍ଦୀ ଓଡ଼ିଶାର ସର୍ବରାକାର ଭଳି । ଗାଁରେ ସର୍ବରାକାରମାନେ ଯେପରି ଭାବୁଥିଲେ ସେମାନେ ବ୍ରିଟିଶ ସରକାରଙ୍କର ପ୍ରତିନିଧି, ଗୌନ୍ତିଆମାନେ ବି ସେଇପରି । ଗୌନ୍ତିଆମାନଙ୍କର ରହିଛି ନ୍ୟସ୍ତସ୍ୱାର୍ଥ । ସେମାନେ ଶିକ୍ଷିତ ଅନ୍ୟମାନଙ୍କଠାରୁ । ତେଣୁ ପ୍ରଚାର ହେଲା ଯେ ପାଣିରୁ ବିଜୁଳି କାଢ଼ିନେଲେ ଆଉ କ'ଣ ରହିଲା ଯେ ଜଳସେଚନ ହେବ ! କିନ୍ତୁ ଅସଲ ସମସ୍ୟା ହେଇଛି ଚାଷୀର । ତା'ର ଜମି ବୁଡ଼ିଯିବ, ଘର ବୁଡ଼ିଯିବ । ସେ ହେବ ବାସ୍ତୁହରା । ଯିବ କୁଆଡ଼େ ? ପ୍ରତିଶ୍ରୁତି ମିଳୁଛି ଜମି ପାଇଁ ଘର ପାଇଁ । ପୁଣି କୁହାଯାଉଛି ଯେ ନୂଆ ବସତିରେ ମିଳିବ ରାସ୍ତା, ଇସକୁଲ, ଡାକ୍ତରଖାନା । ଭିଟାମାଟି ହରାଇବା ମଣିଷ ସେଥିରେ ସନ୍ତୁଷ୍ଟ ହୋଇପାରୁ ନାହିଁ । କେବେ ମିଳିବ ?

ଏବଂ ତା'ର ସେହି ଆଶଙ୍କା, ୧୯୪୫ ରୁ ଆଜି ହେଲାଣି ୨୦୦୫ । ସେ ସମସ୍ୟା ତୁଟି ନାହିଁ । କୁର୍ଦା ଗାଁ ହେଉଛି ତା'ର ସାକ୍ଷୀ ନମୁନା । ସେଇ ଅସନ୍ତୋଷର ବହ୍ନି ଏଇଭଳି ଗ୍ରାମମାନଙ୍କୁ ମାଓବାଦୀମାନଙ୍କର ପ୍ରଭାବ ବୃଦ୍ଧି ପାଇଁ ସହାୟକ ହୋଇଛି ।

ହୀରାକୁଦ ବନ୍ଧ -ବିରୋଧୀ ଆନ୍ଦୋଳନ - ଦୁଇ ଭାଗରେ ବିଭକ୍ତ, ଚାଷୀ ଏବଂ ଗୌନ୍ତିଆ ।

ଚାଷୀମାନଙ୍କର ପ୍ରବକ୍ତା ପ୍ରବାଦପୁରୁଷ ପ୍ରସନ୍ନ କୁମାର ପଣ୍ଡା (ଯେ ବାବୁ ନାମରେ ଖ୍ୟାତ) ଆଉ ନାହାନ୍ତି । ମୃତ୍ୟୁ ପର୍ଯ୍ୟନ୍ତ ସେ ଏଇ ଉଦ୍‌ବାସ୍ତୁମାନଙ୍କ ପାଇଁ ସଂଗ୍ରାମ କରିଯାଇଛନ୍ତି, ବିବାହ କରିବାକୁ ସମୟ ପାଇ ନାହାନ୍ତି । ଚିତ୍ର ଆଙ୍କିବା, ରେଡିଓ ଶୁଣିବା, ସିଗାରେଟ ଟାଣିବା ଏବଂ ଚାଷୀ ମୂଲିଆ ପାଇଁ ସାଲିସହୀନ ସଂଗ୍ରାମ କରିଯିବାକୁ ସେ ଜୀବନରେ ବ୍ରତ କରିନେଇଥିଲେ ।

ଆଉ ଆନ୍ଦୋଳନର କିଛି ନେତା ଆପଣାର ନ୍ୟସ୍ତସ୍ୱାର୍ଥକୁ ହରାଇବା ଭୟରେ ଜନଅସନ୍ତୋଷର ନେତା ହୋଇ ସ୍ୱତନ୍ତ୍ର କୋଶଳ ରାଜ୍ୟର ସ୍ୱପ୍ନ ଦେଖିବାକୁ ଆରମ୍ଭ କଲେ ।

ଏଇପରି ଘଟିଛି ଭାରତୀୟ ସ୍ୱାଧୀନତା ଆନ୍ଦୋଳନରେ । ଆପଣାର ରାଜ୍ୟ ଏବଂ ରାଜୁତି ହତାଇ ତାକୁ ଫେରିପାଇବା ପାଇଁ କେତେକ ବ୍ରିଟିଶ ବିରୋଧୀ ପାଲଟିଛନ୍ତି । ଅନ୍ୟ ପଟରେ ମଙ୍ଗଲ୍ ପାଣ୍ଡେ, ଭଗତ୍ ସିଂହ, ଚନ୍ଦ୍ରଶେଖର ଆଜାଦ, ଅନୁକଂଧ (ଅନୁଗୋଳ ସହର) ଢେଙ୍କାଶବର (ଯାହାର ନାମରେ ଢେଙ୍କାନାଳ) ବାଜି ରାଉତ, ଲକ୍ଷ୍ମଣ ନାୟକ, ମାତଙ୍ଗିନୀ ହାଜରା, ଚକରା ବିଷୋଇ (ଭଞ୍ଜନଗର) ପ୍ରଭୃତି ସାଧାରଣ ମଣିଷର ଦାସତ୍ୱରୁ ମୁକ୍ତି ପାଇଁ ସଂଗ୍ରାମ ।

ହୀରାକୁଦ ବନ୍ଧ ବିରୋଧରେ ଜନ ସମାବେଶ । ପ୍ରତ୍ୟେକ ଲୋକକୁ ଗୋଟିଏ ଲାଠି ଆଣିବା ପାଇଁ ଏବଂ ତାକୁ ସଭାସ୍ଥଳରେ ଛାଡ଼ିଦେଇଯିବା ପାଇଁ କୁହାଯାଇଥିଲା । ସଭାପରେ ଜଣାଗଲା ଯେ ଲାଠି ସଂଖ୍ୟା ଲକ୍ଷେରୁ ବେଶି ! ସମ୍ବଲପୁର ଇମିତି ଜନ ସମାବେଶ ଆଗରୁ ଦେଖି ନ ଥିଲା ।

ଏଭଳି ପ୍ରତିରୋଧସତ୍ତ୍ୱେ ହୀରାକୁଦ ବଂଧ ନିର୍ମାଣ ଆଗେଇ ଚାଲିଲା ଏବଂ ପାଣି ଗାଁମାନଙ୍କରେ ପଶିବା ଦେଖି ଲୋକେ ଘର ଛାଡ଼ିବାକୁ ବାଧ ହେଲେ ।

ହୀରାକୁଦ ବନ୍ଧ ତିଆରି ହେଲା ଏକ ବହୁମୁଖୀ ଯୋଜନା ଭାବରେ । ବନ୍ୟା ନିୟନ୍ତ୍ରଣ, ଜଳସେଚନ, ବିଦ୍ୟୁତ୍ ଉତ୍ପାଦନ, ମତ୍ସ୍ୟ ଉତ୍ପାଦନ ଏବଂ ସର୍ବୋପରି ଜଳ ପରିବହନ ତଥା ପର୍ଯ୍ୟଟନ କେନ୍ଦ୍ର ଭାବରେ ଏହା କାମ କରିବାର ପରିକଳ୍ପନା ଥିଲା । ତରବରିଆ ଭାବରେ ପାଣି ଭର୍ତ୍ତି ହୋଇଯିବା ଯୋଗୁଁ; ଗାଁମାନଙ୍କର ଘର ସେମିତି ରହିଗଲା । ଏହା ଫଳରେ ମତ୍ସ୍ୟ ଚାଷ ଯେପରି ହେବାର କଥା ହେଲା ନାହିଁ । ହୀରାକୁଦ ସାରା ଓଡ଼ିଶାକୁ ମାଛ ଯୋଗାଇପାରିଥାନ୍ତା । କିନ୍ତୁ ତାହା ହେଲା ନାହିଁ । ପ୍ରଚୁର ସାପଙ୍କର ବସତି ହେଲା ଏଇ ସବୁ ପରିତ୍ୟକ୍ତ ଘର । ମାଟି ସମାନ ହୋଇଥିଲେ ଜଳକ୍ରୀଡ଼ା, ଜଳ ପରିବହନ ଏବଂ ପର୍ଯ୍ୟଟନ ପାଇଁ ଏହା ବେଶି ଉପଯୁକ୍ତ ହୋଇଥାଆନ୍ତା । ପଟୁମାଟି ବେଶି ଜମି ଯିବାରୁ ସର୍ବନିମ୍ନ ଜଳସ୍ତର ଏବଂ ସର୍ବୋଚ୍ଚ ଜଳସ୍ତର ଭିତରେ ତଫାତ୍ କମିଗଲା । ଫଳରେ ଯେତିକି ପରିମାଣର ଜଳ ଏହା ବର୍ଷା କାଳରେ ଧରିରଖନ୍ତା ସେତିକି ସମ୍ଭବ ହେଲା ନାହିଁ । ଠିକ୍ ସେଇପରି ସର୍ବନିମ୍ନ ଜଳ ପରିମାଣର ସ୍ତର କମିଯିବାରୁ ଯେତିକି ଜଳସେଚନ ହେବାର କଥା ତାହାର ପରିମାଣ କମିବାର ଆଶଙ୍କା ଦେଖାଗଲା ।

ମୋର ମନେପଡୁଚି, ରାଜ୍ୟପାଳ ଖୋସଲା (ବିଶିଷ୍ଟ ଇଞ୍ଜିନିୟର) 'ଭାଗ୍ୟର ଦଶନ୍ଧି' (Decade of destiny) ଉପରେ ଏକ ଭାଷଣ ଦେଇଥିଲେ ରେଭେନ୍ସା କଲେଜରେ ।

ଅନ୍ୟ ପିଲାମାନଙ୍କ ସହିତ ମୋର ପ୍ରଶ୍ନର ଉତ୍ତରରେ (ଯେଉଁ ପ୍ରଶ୍ନ ଭିତରେ ହୀରାକୁଦ ବନ୍ଧର ସମସ୍ୟା ବି ଥିଲା) ସେ ଆମ୍ଭମାନଙ୍କର ପିଠିରେ ହାତ ମାରିଦେଇ କହିଲେ ଯେ ଯୁବକମାନେ, ନୈରାଶ୍ୟବାଦୀ ବା ହତୋତ୍ସାହ ହୁଅ ନାହିଁ, ବିକଳ୍ପ ସନ୍ଧାନ କରିପାରିବ ମଣିଷ !

ସମ୍ବଲପୁର ଛାଡ଼ିବା ପୂର୍ବରୁ ୧୯୪୬ ମସିହାରେ ନିର୍ବାଚନ ହୋଇଥାଏ । କଂଗ୍ରେସ ସଂଖ୍ୟାଗରିଷ୍ଠତା ହାସଲ କଲା, କିନ୍ତୁ ହରାଇଲା ଶ୍ରମିକ ଶ୍ରେଣୀ ପାଇଁ ଉଦ୍ଦିଷ୍ଟ ସ୍ଥାନ । ଏହି ସ୍ଥାନ ପାଇଁ ବିଖ୍ୟାତ କଂଗ୍ରେସ ନେତା ମହମ୍ମଦ ହନିଫ ଏବଂ ବିଶିଷ୍ଟ କମ୍ୟୁନିଷ୍ଟ ନେତା ବୈଦ୍ୟନାଥ ରଥଙ୍କ ମଧରେ ତୀବ୍ର ଲଢ଼େଇ । ସେତେବେଳେ ଶ୍ରମିକ କହିଲେ ବ୍ରଜରାଜ ନଗର କାଗଜକଳ, କଟକ ପ୍ରେସ୍ କର୍ମଚାରୀ ସଂଘ, ବାରଙ୍ଗ କାଚ କଳ, ଜଟଣୀ ପ୍ରଭୃତିର କିଛି ଅନ୍ୟାନ୍ୟ କଳର ଶ୍ରମିକମାନଙ୍କୁ ବୁଝାଉଥିଲା । ସେଥିରୁ ସଂଖ୍ୟାଧିକ ଶ୍ରମିକ ଥିଲେ ବ୍ରଜରାଜନଗର କାଗଜ କଳର ଶ୍ରମିକ । ତୁମୁଳ ସଂଗ୍ରାମ, ସେତେବେଳେ ଶ୍ରମିକମାନଙ୍କର ନେତା କୃପାସିନ୍ଧୁ ଖୁଣ୍ଟିଆ । ଶ୍ରମିକମାନଙ୍କ ମଧରୁ ନେତା ଦୁର୍ଗା କର, ହରମୋହନ ପଟ୍ଟନାୟକ ପ୍ରଭୃତି । ସେଇ ନିର୍ବାଚନ ପ୍ରଚାରରେ ଆମେ ଦଳେ ସ୍କୁଲ ଛାତ୍ର ଅଂଶ ଗ୍ରହଣ କରିଥିଲୁ (ବୋଧହୁଏ ଆମ ସାଙ୍ଗରେ ଅଧାପକ ଦୁର୍ଗା ନାୟକ ଥିଲେ ବୋଲି ହେତୁ ହେଉଛି । ତେବେ ଠିକ୍ ମନେପଡୁନି) ସେଇଠି ଶୁଣିଲି ବିଶ୍ୱନାଥ ମୁଖର୍ଜୀଙ୍କ ଅଗ୍ନିବର୍ଷୀ ଭାଷଣ । ସେଇଠି

ଶୁଣିଲି ମନମୋହନ ମିଶ୍ର, ଗଙ୍ଗାଧର ରଥଙ୍କ ଭାଷଣ, ମନଚ୍ଛୁଆଁ ଏବଂ ଅଗ୍ନିଗର୍ଭା । ବଡ଼ ନେତାମାନଙ୍କ ସହିତ ସିନା ପରିଚିତି ହେଲା ନାହିଁ; କିନ୍ତୁ ପରିଚିତି ହୋଇଗଲା ଦୁର୍ଗା କର, ହରମୋହନ ପଟ୍ଟନାୟକଙ୍କ ସହିତ । ମରିବା ପର୍ଯ୍ୟନ୍ତ ଦୁର୍ଗା କର ପାରିବାରିକ ବନ୍ଧୁ ହୋଇ ରହିଗଲେ । ତାଙ୍କ ଘର ପଦ୍ମପୁର ( ଯାହା ବାଣ ପାଇଁ ପ୍ରସିଦ୍ଧ) ଏଇ ୨/୩ ବର୍ଷ ହେଲା ତାଙ୍କର ପରଲୋକ ହୋଇଯାଇଛି ।

ଏଇ ନିର୍ବାଚନରେ ବୈଦ୍ୟନାଥ ରଥ ବିଜୟ ହାସଲ କଲେ ।

ସମ୍ବଲପୁର ଛାଡ଼ିବୁ । ବୋଧହୁଏ ଜୁନ୍ ୬ ତାରିଖରେ ବାପା ଚାର୍ଜ ଦେଲେ । ତାର ପ୍ରାୟ ଆଠ ମାସ ତଳେ ତାଙ୍କର ବ୍ରିଟିଶ କଞ୍ଜରଭେଟର ଜେ. ଡବ୍ଲ୍ୟୁ ନିକଲସନ ଆସିଥିଲେ ଗସ୍ତରେ । ସେତେବେଳେ ସାରା ଓଡ଼ିଶା ପାଇଁ ଜଣେ କଞ୍ଜରଭେଟର ଏବଂ ଓଡ଼ିଶା ମଧ୍ୟପ୍ରଦେଶର ପ୍ରାୟ ୩୫ଟି (ସଂଖ୍ୟା ହୁଏତ ଏପଟ ସେପଟ ହୋଇପାରେ) ଗଡ଼ଜାତକୁ ନେଇ ଗଠିତ ଇଷ୍ଟର୍ଣ୍ଣ ଷ୍ଟେଟ୍ସ ଏଜେନ୍ସି (Eastern States Agency) ପାଇଁ ଜଣେ ଫରେଷ୍ଟ ଆଡଭାଇଜର ଥାଆନ୍ତି । ଓଡ଼ିଶା ପାଇଁ କନ୍ଜରଭେଟର ହେଲେ ଜେ. ଡବ୍ଲ୍ୟୁ ନିକଲସନ୍ ଏବଂ ଇଷ୍ଟର୍ଣ୍ଣ ଷ୍ଟେଟ୍ସ ଏଜେନ୍ସି ପାଇଁ ହେଲେ ପ୍ରବାଦପୁରୁଷ ଡକ୍ଟର ମୁନି । ସେ ଆୟରଲାଣ୍ଡର ଲୋକ, ତେଣୁ ଭାରତର ସ୍ୱାଧୀନତା ସଂଗ୍ରାମ ପାଇଁ ତାଙ୍କର ଥିଲା ପ୍ରଚ୍ଛନ୍ନ ସମର୍ଥନ ।

ସେତେବେଳେ ଯେତିକି ଅରଣ୍ୟ ଥିଲା ବର୍ତ୍ତମାନ ତାହାର ଶତକଡ଼ା ୫୦ରୁ ରହିଛି । କିନ୍ତୁ ଓଡ଼ିଶାରେ ବର୍ତ୍ତମାନ ପ୍ରିନ୍ସିପାଲ ଚିଫ୍, ଚିଫ୍ ଏବଂ ଖାଲି କଞ୍ଜରଭେଟରଙ୍କ ସଂଖ୍ୟା ଚାଳିଶ ପାଖାପାଖି । ଫରେଷ୍ଟ ଗାର୍ଡ ସଂଖ୍ୟା କିନ୍ତୁ ଯେତିକି ଥିଲା ସେତିକି ରହିଛି ଏବଂ ରିକ୍ରୁଟମେଣ୍ଟ ପରିମାଣ କମିଯିବା ହେତୁ ସେମାନଙ୍କର ହାରାହାରି ବୟସ ୫୦ / ୫୫ ରହିଛି । ସେମାନଙ୍କ ହାତରେ ଅଛି ଠେଙ୍ଗାଟିଏ । ଅପରପଟରେ କାଠ ମାଫିଆମାନଙ୍କ ବୟସ କମ୍, ସେମାନଙ୍କ ହାତରେ ଅତ୍ୟାଧୁନିକ ଅସ୍ତ୍ର, ରହିଛି ପ୍ରଚୁର ଅର୍ଥ ଏବଂ ଜଙ୍ଗଲ ପାଇଁ ବ୍ୟବହୃତ ଗାଡ଼ି । ପୁଣି ରହିଛି ରାଜନୀତିକ ପୃଷ୍ଠପୋଷକତା ଏବଂ ଅସାଧୁ ମେଣ୍ଟ ନେତାମାନଙ୍କ ସହିତ, ଅଫିସରମାନଙ୍କ ସହିତ । ଫଳ ଯାହାହୁଏ । ହିସାବ କରି ଦେଖାଯାଇଛି ଯେ ସେମାନେ ବର୍ଷକୁ ହଜାରେ କୋଟି ଟଙ୍କାର କାଠ ଏବଂ ଦାନ୍ତ ନେଇ ଯାଉଛନ୍ତି । ଅରଣ୍ୟ ବିଭାଗ ସେଥିରୁ ଧରୁଛନ୍ତି ମାତ୍ର ପଚାଶକୋଟି ଟଙ୍କା ମୂଲ୍ୟର ସାମଗ୍ରୀ ।

ଗଛକଟା ଚାଲିଛି । ଗଛକଟା ଚାଲିଛି ଜଳସେଚନ ନାମରେ, ଚାଲିଛି ବିଦ୍ୟୁତୀକରଣ ନାମରେ , ଚାଲିଛି ଶିଳ୍ପାୟନ ନାମରେ । ହଜାର ହଜାର ହେକ୍ଟର ଜଙ୍ଗଲ ନଷ୍ଟ ହେଉଛି, ନଷ୍ଟ କରାଯାଉଛି ଜାଣିଶୁଣି । ଶାଗୁଆନ ଗଛର ଜଙ୍ଗଲକୁ ଗ୍ରାମ୍ୟ ଜଙ୍ଗଲ କହି, କାଟି ସଫା କରି ଦିଆଯାଉଚି । ନିଜ ଲାଗି ଏବଂ ବିକ୍ରି ପାଇଁ, ଚୋରା ଚାଲାଣ ପାଇଁ ଆଉ ଗଛ ଯାହା ଲଗାଯାଉଛି ତାହା ବାଆକୁ ବତା ଭଳି । ସାମାଜିକ ବନୀକରଣ ବହୁ ଜାଗାରେ ଅସାମାଜିକ ପାଲଟିଛି । ଗଛ ଲଗାଇବା ଏକ ନାଟକ, ପ୍ରହସନରେ ପରିଣତ ହେଉଛି । ସ୍ୱାଧୀନତା ପରେ ଗୋଟିଏ ଇଞ୍ଚ ଜମିରେ Natural Habitat ଗଢ଼ି ଉଠି ନାହିଁ ।

ଅରଣ୍ୟ ବିଭାଗ ଠିଆ ହୋଇଛି ଓଲଟା ପିରାମିଡ୍ ଭଳି । ତେବେ ଫରେଷ୍ଟ ଗାର୍ଡ ମାନେ ସମାନ ସଂଖ୍ୟାରେ । ଉପରଟା ବଢ଼ି ବଢ଼ି ଚାଲିଛି । ଓଡ଼ିଶାର ଅରଣ୍ୟମୁଖ୍ୟ ରହୁଥିଲେ ଅନୁଗୋଳରେ, ଇଷ୍ଟର୍ଣ୍ଣ ଷ୍ଟେଟ୍‌ସ (Eastern States)ର ମୁଖ୍ୟ ରହୁଥିଲେ ସମ୍ବଲପୁରରେ ।

ମୋର ମନେ ପଡୁଚି ।

ପିଲାଦିନର କଥା । ଓଡ଼ିଶାର ଗଭର୍ଣ୍ଣର ରହୁଥାନ୍ତି କଟକରେ । ସେ ଚିଠି ଲେଖିଲେ ତାଙ୍କ କଞ୍ଜରଭେଟରଙ୍କୁ ଅନୁଗୋଳ ଆସି ଦେଖା କରିବା ପାଇଁ । ସେତେବେଳେ ଗଭର୍ଣ୍ଣର ତଥା କଞ୍ଜରଭେଟରଙ୍କର ବାର୍ଷିକ କାର୍ଯ୍ୟକ୍ରମ ପ୍ରସ୍ତୁତ ହେଉଥିଲା । ସମଗ୍ର ବର୍ଷ ପାଇଁ ଚିଠି ପାଇ କଞ୍ଜରଭେଟର ଉତ୍ତର ଦେଲେ ଯେ ସେ ପାଇଥିବା କାର୍ଯ୍ୟକ୍ରମ ଅନୁଯାୟୀ ଡିସେମ୍ବର ମାସ (ତାରିଖ ମନେପଡୁନି) ଆପଣ ଏବଂ ମୁଁ ସମ୍ବଲପୁରରେ ରହୁଥାଇଁ । ସେତେବେଳେ ଦେଖା ହେଲେ ସୁବିଧା ହୁଅନ୍ତା ଗଭର୍ଣ୍ଣର ଏଥିରେ ସମ୍ମତି ଦେଲେ ।

ଆଉ ବର୍ତ୍ତମାନ । କାର୍ଯ୍ୟକ୍ରମ ପାଇଁ ସମ୍ମତି ଦେଇ ନ ଯିବାଟାକୁ ବଡ଼ପଣିଆ ବୋଲି କୁହାଯାଉଛି । ଆଜି ଯଦି ମୁଖ୍ୟମନ୍ତ୍ରୀ ଡାକନ୍ତି, ତା'ହେଲେ ଯେତେ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟକ୍ରମ ଥିଲେ ମଧ୍ୟ ତାକୁ ନିର୍ବିକାର ଚିତ୍ତରେ ନାକଚ କରି ଛୁଟି ଆସିବେ ଅଫିସର, କୁର୍ଣ୍ଣିସ କରି କରି । ସାହସ ବି ନାହିଁ କହିବା ପାଇଁ ଯେ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ସ୍ଥିରୀକୃତ ହୋଇସାରିଛି ତାକୁ ବାତିଲ ନ କରି ପରେ ଗଲେ ଚଳିବ କି ?

ମନେପଡୁଚି, ଚୀନ ଗସ୍ତରେ ଗଲାବେଳେ ପାରିବାରିକ ବଂଧୁ ତତ୍‌କାଳୀନ ବନ୍ୟ ବିଭାଗ ମୁଖ୍ୟ ଶ୍ରୀ ସଚ୍ଚିଦାନନ୍ଦ ଦାସ କହିଥିଲେ ତିନୋଟି କଥା ବୁଝିବା ପାଇଁ ଶିକ୍ଷାୟନ ନାମରେ, ଜାଳେଣି ପାଇଁ ଏବଂ ଜଳସେଚନ ପାଇଁ ଗଛ କିମିତି କଟାଯାଉଛି, ସର୍ବୋପରି ଗାଈ ଛେଳି ଚରୁଛନ୍ତି କିମିତି ? ଚୀନରେ ପହଞ୍ଚି ଏଇ ସମସ୍ୟା ସମ୍ପର୍କରେ ଅନୁଧ୍ୟାନ କରିବା ପାଇଁ ସ୍ଥିର କଲି । ପ୍ରଥମେ ଦେଖିଲି ଜାଳେଣି ପାଇଁ ପ୍ରାୟ ପ୍ରତ୍ୟେକ ଘରକୁ (ଗ୍ରାମାଞ୍ଚଳ ବ୍ୟତୀତ) କୋଇଲା ବ୍ରିକେଟ ଯୋଗାଇ ଦିଆଯାଉଛି । ଜାଳେଣି ପାଇଁ କାଠର ବ୍ୟବହାର ନଗଣ୍ୟ । ଗାଈ ବା ଛେଳି ଚରିବାର ପ୍ରଶ୍ନ ଉଠୁ ନାହିଁ । ଗାଈ ବା ଛେଳି ପାଇଁ ସ୍ୱତନ୍ତ୍ର ଖୁଆଡ଼ ରହିଛି । ସୋୟାବିନ୍ ଦୁଧ ପ୍ରାୟ ପ୍ରଚଳିତ । ତେରଟି ଗଛ ବଢିସାରିଲା ପରେ, ଗୋଟିଏ ଗଛ କଟାଯାଇ ପାରିବ, ପ୍ରାୟତଃ ଘର ତିଆରି ସାମଗ୍ରୀ ପାଇଁ । କୁନମିଙ୍ଗ ସହରରେ ଏକ ଜଙ୍ଗଲ ଭିତରେ ବିରାଟ ହୋଟେଲ ତିଆରି ହେଉଛି ଏବଂ ସେଠାକୁ ବିଜୁଳି ତାର ନିଆ ଯାଉଛି କେବୁଲ (cable) ସାହାଯ୍ୟରେ । ଗଛ ଯେପରି ନଷ୍ଟ ନ ହୁଏ । ନିର୍ମାଣ ଦାୟିତ୍ୱରେ ଥିବା ବ୍ୟକ୍ତିକୁ ପଚାରିଲୁ, ଏହା ଫଳରେ ଖର୍ଚ୍ଚ ବଢି ଯାଉଥିବ ତ ! ସେ କହିଲେ ନିଶ୍ଚୟ । ଖର୍ଚ୍ଚ ଅଧିକ କଲେ ବିଜୁଳି ଲାଇନ ଯାଇପାରିବ କିନ୍ତୁ ଗଛ ତିଆରି ହୋଇ ପାରିବ ନାହିଁ । ଏକ ବିରାଟ ପର୍ବତମାଳା ଭିତରେ ଥିବା ବୌଦ୍ଧ କୀର୍ତ୍ତି ଦେଖିବାକୁ ଗଲୁ । ଗଛ କଟା ହେଉଛି କିନ୍ତୁ ନିୟମ ଲାଗି ନୁହେଁ । ବେଜିଂ ଏୟାରପୋର୍ଟରୁ ସହରକୁ ରାସ୍ତା ନାମିତ ହୋଇଛି ଗଛର ନାମରେ (ଠିକ୍ ମନେ ପଡୁନି) । ଟେନ୍‌ଟ୍ରି (ଦଶ ଗଛ) ଆଭିନ୍ୟୁ ବା

ଚଉଦ ଗଛ ଆଭିନ୍ୟୁ ରାସ୍ତାର ଦି' କଡ଼ରେ କେତେ ଗଛ ଲାଗିଛି ସେଇ ଅନୁସାରେ ନାମିତ ହୋଇଛି ରାସ୍ତା । ଦେଖିବାକୁ ଯାଇଥିଲୁ ସନ୍ୟାତ ସେନଙ୍କ ମସୋଲିୟମ । ପାହାଡ଼ ଉପରେ ତୁଙ୍ଗ ଶିଖରୀ ଚୂଳରେ ଯେଉଁଠି ମେଘ ଛୁଇଁଚି ସେଇଠି ସମାଧି । ସମଗ୍ର ପାହାଡ଼ ଗଛରେ ଭରା । ମନେ ପଡ଼ିଲା । କଣ ଅବସ୍ଥା କୁଲାଡ଼ ପାହାଡ଼ ବୁଢ଼ାରଜା (ସମ୍ବଲପୁର) ପାହାଡ଼ର, କପିଳାସ (ଢେଙ୍କାନାଳ) ତାରାତାରିଣୀ (ଗଞ୍ଜାମ)ର ?

କ'ଣ ଅବସ୍ଥା ଭୁବନେଶ୍ୱରର ? ଯେଉଁଠି ଆଜି ଜାଭିୟେର୍ସ ଇନ୍‌ଷ୍ଟିଚ୍ୟୁଟ, ଡମଣା ଗ୍ରାମ ସେସବୁ ଭରା ଥିଲା ଜଙ୍ଗଲରେ । କୁଆଡ଼େ ଗଲା ସେସବୁ ଗଛ । ଘର ତିଆରି ଛଡ଼ା ବଳକା ଗଛ କାଟିଲା କିଏ ? ତାହାର ଉତ୍ତର ମିଳିବ ନାହିଁ । ଯେଭଳି ଉତ୍ତର ମିଳିବ ନାଇଁ ସାମାଜିକ ବନୀକରଣ ସମ୍ପର୍କରେ ପ୍ରତିବର୍ଷ ଗଛ ଲଗା ଚାଲିଛି ବିଭିନ୍ନ ଯୋଜନାରେ କେତେ ଗଛ ସେଥିରୁ ବଢୁଛି ପ୍ରକୃତରେ । କଟକ - ଭୁବନେଶ୍ୱର ରାସ୍ତା ଚଉଡ଼ା ହେଲାବେଳେ ଏବଂ ଅନ୍ୟ ସମୟରେ ଶବ୍ଦ ପ୍ରଦୂଷଣ, ଧୂଳି ପ୍ରଦୂଷଣରୁ ରକ୍ଷା ପାଇବା ପାଇଁ ଗଛ ଲଗାଇବା ସମ୍ପର୍କରେ କେତେ ବିବୃତି ଏବଂ ପ୍ରଚାର ହୋଇ ନାହିଁ । ସବୁଜିମା ବଢ଼ିଛି ନା କମିଛି ? ଦୁଇପଟିଆ ରାସ୍ତାର ମଝି ସ୍ଥାନରେ କେବେକେବେ ଗଛ ଲଗାଇବାର ନାଟକ ହୁଏ, ପ୍ରଚୁର ପଇସା ଖର୍ଚ୍ଚ ହୁଏ ଏବଂ କିଛି ଦିନ ପରେ 'ଗଛ' ସବୁ ହଜିଯାଏ ।

କଞ୍ଜରଭେଟର ନିକଲସନ୍ ଆଠମାସ ତଳେ ଆସି କହିଯାଇଥିଲେ ଜୁନ୍ ମାସରେ ବଦଳି ହେବ ଏବଂ ସେଇ ଅନୁସାରେ ଅଧୁନା ଭଞ୍ଜନଗର ଏବଂ ତତ୍‌କାଳୀନ ରସେଲକୋଣ୍ଡା ବୋର୍ଡ଼ ହାଇସ୍କୁଲରେ ଆମ ଦୁଇ ଭାଇଙ୍କ ପାଇଁ ସିଟ୍ ରିଜର୍ଭେଶନ ହେବ । ସେ ବଦଳି ବାତିଲ ହୋଇ ନାଇଁ କି ପରିବର୍ତ୍ତନ ହୋଇ ନାଇଁ । ବର୍ତ୍ତମାନ ପ୍ରତିଦିନ ବଦଳି ଏବଂ ବଦଳି ବାତିଲ୍‌ର ପାଲା ଚାଲିଛି । ବଦଳିର କୌଣସି ସିଜନ୍ (season) ନାହିଁ ରିଜନ୍ (reason) ବି ନାହିଁ ।

ଏହା ତଳ ସ୍ତରଠାରୁ ଉପର ସ୍ତର ପର୍ଯ୍ୟନ୍ତ ବ୍ୟାପ୍ତ । ଏଇ ଲେଖା ଲେଖିଲାବେଳକୁ (ଜୁନ୍ ୨୦୦୫) ରାଷ୍ଟ୍ରପତି ଉଦ୍‌ବୋଧନ ଦେଇ ରାଜ୍ୟପାଳମାନଙ୍କୁ ଦଳମତରୁ ଉର୍ଦ୍ଧ୍ୱକୁ ଯିବା ପାଇଁ ଆହ୍ୱାନ ଦେଇଛନ୍ତି । ରାଜନୀତିରେ ସକ୍ରିୟ ଭୂମିକାରୁ ଏବଂ ମୁଖ୍ୟମନ୍ତ୍ରୀ ନ ହୋଇପାରିବା ଯୋଗୁଁ ଯେତେବେଳେ ରାଜ୍ୟପାଳ ବଛାଯାଉଛନ୍ତି ସେତେବେଳେ ସେମାନଙ୍କୁ ହଠାତ୍ ରାଜନୀତିକ ସନ୍ୟାସୀ ହେବା ଆଶା କରିବା କେତେ ଯୁକ୍ତିଯୁକ୍ତ ତାହା ସେ କହିପାରିବେ । ଏ ତ ଗଲା ସପ୍ତାହର କଥା । ସମୟ ମାସେ ବି ହୋଇ ନାଇଁ, ଆଜି (୨୩.୦୬.୨୦୦୫) ସମ୍ବାଦ କହେ ଯେ ବାରରୁ ପନ୍ଦର ଜଣ ରାଜ୍ୟପାଳ ବଦଳିବେ ଏବେ । ତା'ହେଲେ ଏଇ ରାଜ୍ୟପାଳ ସମ୍ମିଳନୀ ମାସକ ପରେ କରିଥିଲେ କଣ ଅସୁବିଧା ହୋଇଥାନ୍ତା ? ପୁଣି ସମ୍ବାଦ ପ୍ରକାଶ ପାଇଛି ଯେ ଯେଉଁମାନଙ୍କୁ କେନ୍ଦ୍ର ମନ୍ତ୍ରିମଣ୍ଡଳରୁ 'ବିଦା' କରାହେବ (କାହିଁକି ?) ସେମାନଙ୍କ ମଧ୍ୟରୁ ରାଜ୍ୟପାଳ ନିଯୁକ୍ତ ହେବେ ଏବଂ ରାଜନୀତିକ 'ସନ୍ୟାସ' ନେଇଥିବା ରାଜ୍ୟପାଳମାନଙ୍କୁ ଖାଲିଥିବା ରାଜ୍ୟସଭା ପଦବୀ ପାଇଁ ଦଳୀୟ ପ୍ରାର୍ଥୀ କରାଯିବ ।

ଭାଷଣ ଏବଂ କାର୍ଯ୍ୟରେ ଏଇ 'ସମନ୍ୱୟ' କ୍ରୂର ପରିହାସ ପରି ମନେହୁଏ ।

ସମ୍ବଲପୁର ଛାଡ଼ିବୁ । ମୋର ମନେପଡୁଚି ଶାନ୍ତି ବୋଲି ଝିଅଟିଏ ମୋଠାରୁ ଦୁଇ କ୍ଲାସ ତଳେ ପାଠ ପଢୁଥିଲା ପଟ୍ଟନାୟକପଡ଼ା ମାଇନର ସ୍କୁଲରେ । ତା' ବାପା ପାଖ ଥାନାରେ କ'ଣ ଗୋଟାଏ ଚାକିରି କରିଥିଲେ । ବୋଉ ଦିଏ ମୋତେ ଚାରିପଇସା ଜଳଖିଆ ପାଇଁ । ସାନଭାଇକୁ ବି । ସେତେବେଳେ ଗୁପ୍‌ଚୁପ୍ ପଇସାକୁ ଷୋହଳଟା । ମୋ ସାନଭାଇ, ମୁଁ ଏବଂ ଶାନ୍ତି ତିନି ପଇସାର ଗୁପଚୁପ୍ ଖାଉ ।

ତା'ପରେ ଆମେ ଦୁଇଭାଇ ପଟ୍ଟନାୟକପଡ଼ା ମାଇନର ସ୍କୁଲ ଛାଡ଼ି ଚାଲିଗଲୁ ସମ୍ବଲପୁର ହାଇସ୍କୁଲକୁ । ଶାନ୍ତିର ବାପା ବଦଳି ହୋଇଗଲେ କୁଆଡ଼େ । ସେ ହଜିଗଲା ସ୍ମୃତିରୁ କିନ୍ତୁ ହଠାତ୍ ତା' ସାଙ୍ଗରେ ଦେଖାହେଲା ଗଞ୍ଜାମରେ ବେଶ୍ କିଛି ବର୍ଷ ପରେ ଏକ ବିଚିତ୍ର ପରିସ୍ଥିତିରେ ।

ସେଇଦିନଠାରୁ ମୋତେ ଯେପରି ନାରୀମାନଙ୍କର ଛାଇ ଗୋଡ଼ାଇଛି । ଜୀବନର ବିଳମ୍ବିତ ଅପରାହ୍ଣ । ସନ୍ଧ୍ୟା ହେବା ଡେରି ନାହିଁ । ତଥାପି ସେ ଛାଇ ମୋତେ ଛାଡ଼ି ନାହିଁ । ଦେହ ପଙ୍ଗୁ । ଚାଲିବା ପାଇଁ ଶକ୍ତି ନାହିଁ । ତଥାପି ନାରୀର ଛାଇ ରାହୁର ଛାଇ ପରି ମୋତେ ଗୋଡ଼ାଇଛି ।

ଏଇ ସମୟରେ ରେଙ୍ଗାଲିରେ ମୋ ସାଙ୍ଗରେ ଖେଳୁଥିଲେ ଚହଁରା, ଉର୍କିଆ, ମକୁ । ଆଉ ସାଙ୍ଗମାନଙ୍କ ନାମ ମନେ ପଡୁ ନାହିଁ । ଦିନ ତିନିଟାରେ ଝାରସୁଗୁଡ଼ାରୁ ଟ୍ରେନ ଯାଏ ସମ୍ବଲପୁରକୁ । ସେତେବେଳେ ଝାରସୁଗୁଡ଼ାରୁ ସମ୍ବଲପୁର ପର୍ଯ୍ୟନ୍ତ ରେଲ ଲାଇନ ଥିଲା । ସମ୍ବଲପୁରରେ ଦୁଇଟା ଷ୍ଟେସନ - ଫାଟକ, କ୍ଷେତ୍ରରାଜପୁର । ଝାରସୁଗୁଡ଼ାରୁ ସମ୍ବଲପୁରକୁ ଦିନକୁ ଦୁଇଥର ଟ୍ରେନ ଯାଏ ଏବଂ ଫେରେ । ରେଲଲାଇନରେ ସିଗନାଲ ନ ଥାଏ । ତେଣୁ ଟ୍ରେନ କେବଳ ଦିନରେ ଯିବା ଆସିବା କରେ । କେବେ କେବେ ସନ୍ଧ୍ୟାରେ ବି ଗାଡ଼ି ଯାଏ । ଷ୍ଟେସନକୁ ଦଉଡ଼ିବା ଆମର ଖେଳ ଭିତରେ ଯାଏ । ମକୁ ମରିଗଲା ହଠାତ୍, ଟ୍ରେନ ଲାଇନ ତଳେ ଚିପି ହୋଇ । ଚହଁରାର ଖବର କିଛି ମନେ ନାହିଁ । ଉର୍କିଆର ମାମୁ ଯୋଗୀ ଟ୍ରେନରେ ପଏଣ୍ଟସ୍ ମ୍ୟାନ । ଥରେ ୧୯୬୨ ମସିହାରେ ରେଙ୍ଗାଲି ବାଟ ଦେଇ ଫେରୁଥିଲି ମୁଁ ଏକ ଜିପ୍‌ରେ । ମୋ ସାଙ୍ଗରେ ଥିଲେ ସ୍ଥାପତ୍ୟ ଶିଳ୍ପୀ ଶରତ ମହାପାତ୍ର । ଦୈବାତ୍ ରେଙ୍ଗାଲି ଶାସନ ଆଉ ରେଙ୍ଗାଲି ଷ୍ଟେସନ ମଝିରେ ଏକ ଲେଭଲକ୍ରସିଂରେ ଗାଡ଼ି ଅଟକିଗଲା । ଟ୍ରେନ ପାସ କରିବାକୁ ଡେରି ହେବ । ବାଧ ହୋଇ ଗାଡ଼ିରୁ ଓହ୍ଲାଇ ଲେଭଲ କ୍ରସିଂରେ ଠିଆ ହେଲୁ । ପଏଣ୍ଟସମ୍ୟାନ ରାଗରେ ଗପିଲାବେଳକୁ ଦେଖାଗଲା ମୋର ପିଲାଦିନର ସାଥୀ ଚହଁରା ହେଉଛି ପଏଣ୍ଟସ୍‌ମ୍ୟାନ । କଥା ସ୍ୱାଭାବିକ ଭାବରେ ଗଡ଼ିଲା ଉକିଆ ପାଖକୁ । ଶୁଣିଲି ସେଇ ପାଖ ଗାଁରେ ସେ ବିଭା ହୋଇଛି । ଟ୍ରେନ ଗଲା ପରେ ଚହଁରାକୁ ଧରି ସେ ଗାଁକୁ ଗଲୁ । ଦେଖା ହେଲା ଉକିଆ ସହିତ । ବେଶ୍ ଗୋରୀ ଥିଲା ସିଏ । ଏବେ ବି ସେମିତି ଗୋରା ଚମଡ଼ା ରହିଛି । ତାର ସ୍ୱାମୀ ସହିତ ବି ଦେଖାହେଲା ।

ମୋ ଠିକଣା ସେ ଟିପି ରଖିଲା ଚିଠି ଦେବ ବୋଲି । କିନ୍ତୁ ଚିଠି ଆସି ନାହିଁ, କି ଖବର ବି କିଛି ନାଇଁ । ଏହା ଭିତରେ ୪୦ ବର୍ଷରୁ ଊର୍ଦ୍ଧ୍ୱ ସମୟ ଅତିକ୍ରାନ୍ତ ହୋଇ ସାରିଛି ।

ଆଉ ଶାନ୍ତି ସାଙ୍ଗରେ ଦେଖା ଯେପରି ଆକସ୍ମିକ, ସେଇପରି ରହସ୍ୟାଚ୍ଛନ୍ନ । ସେ ୧୯୬୫(କି ୧୯୬୪ ଠିକ୍ ମନେପଡୁନି) ଓଡ଼ିଶାର ଏକ ସହରକୁ ମୁଁ ଯାଇଥାଏ, ରହିଥାଏ ଏକ ହୋଟେଲରେ । ଯେଉଁ ସଂସ୍ଥା ତରଫରୁ ଆମେ ଯାଇଥାଉ ସେଇ ସଂସ୍ଥାର ଚାରିଜଣ ପ୍ରତିନିଧିଙ୍କ ପାଇଁ ଚାରୋଟି ରୁମ୍ ନାମଫଳକରେ କୌଣସି ନାମ ନ ଥାଏ, କେବଳ ସଂସ୍ଥାର ନାମ । ମୋ ଫଳକରେ କେବଳ ଅଧିକା ଧାଡ଼ି ଲେଖାଥାଏ - ଲୋକ ସମ୍ପର୍କ ପ୍ରତିନିଧି ।

ଏଇ ସହର ସହିତ ମୋର ପରିଚିତି ପୁରାତନ । ତେଣୁ ଅନେକ ବନ୍ଧୁ ଆସୁଥାଆନ୍ତି ଭେଟିବା ପାଇଁ । ସନ୍ଧ୍ୟାରେ ପ୍ରବଳ ବର୍ଷା ଓ ପବନ । ରାସ୍ତାଘାଟ୍ ଶୂନଶାନ । ହଠାତ୍ ମୋର ରୁମ କବାଟରେ ଠକ୍ ଠକ୍ ଶବ୍ଦ । ଭାବିଲି କୌଣସି ବନ୍ଧୁ ଆସିଥିବେ । ଭିତରକୁ ଆସନ୍ତୁ ବୋଲି କହିବା ମାତ୍ରେ ଜଣେ ତରୁଣୀ ପ୍ରବେଶ କଲେ କୋଠରିକୁ । ଅପ୍ରତିଭ ହେଲି ସତ୍ୟ କିନ୍ତୁ ସଂସ୍ଥା ସହିତ କୌଣସି କାମ ଥିବ ଭାବି ତାକୁ ବସିବାକୁ କହି ପରିଚୟ ପଚାରିଲି । ଦେଖିଲି ସେ ବି ବେଶ୍ ଅପ୍ରତିଭ ହୋଇ ପଡିଛନ୍ତି । ସେ କଣ ଗୋଟାଏ ନାମ କହିଲେ । (ସେଇଟା ଯେ ନିଜ ନାମ ଜାଣିଲି ପରେ) କଣ କାମ ଥିଲା ?

ସେ ଲଜ୍ଜାବନତ ହସରେ କହିଲେ, ନାଇଁ ପାଗ ଖୁବ୍ ହେମାଳ ! ଭାବିଲି ଆପଣଙ୍କୁ ଟିକିଏ .....

ତାଙ୍କ କଥା ସରିବା ପୂର୍ବରୁ ମୁଁ ତାଙ୍କୁ ପଚାରିଲି, ଆପଣଙ୍କୁ କେଉଁଠି ଦେଖିଲା ପରି ମନେ ହେଉଛି, କିଛି ମନେ କରିବେ ନାଇଁ, ଆପଣ ଶାନ୍ତି ନୁହନ୍ତି ତ ?

ସେ ରୀତିମତ ଚମକି ପଡ଼ିଲେ, ଆଖିଲେ ଲୁହ ।

ଆପଣ .... ପାକୁ (ମୋର ଡାକ ନାମ)

ନିଶ୍ଚୟ କିନ୍ତୁ ଆପଣ ?

ମୋତେ ଆଉ ଆପଣ ଡାକ ନାଇଁ, ତମେ ମୋ ପାଖରେ ସେଦିନ ତମେ ଥିଲ ଆଜି ବି ସେଇ ତମେ ।

ଶାନ୍ତି ତମେ ?

ହଁ ମୁଁ ଏକ କଲ୍ ଗାର୍ଲ ! ସ୍ପଷ୍ଟ ଉତ୍ତର । ସେ କହିଚାଲିଲା ତାର ଜୀବନ କାହାଣୀ । ଆଖିରୁ ଧାର ଧାର ଲୁହ ଗଡୁଛି । କିପରି ସେ ବିବାହ କଲା ସେ ବିବାହ କେମିତି ହେଲା ନିଷ୍ଫଳ । ବ୍ୟର୍ଥ ବାପାଙ୍କର ପରଲୋକ । ଆଉ ଏଇ ସହରରେ ତ ରହିଗଲା ସେ । ଆଉ ଗ୍ରହଣ କରିନେଲା ଏଇ ଜୀବନକୁ ଜୀବିକା ପାଇଁ ।

ସେ କାନ୍ଦୁଥିଲା । ମୁଁ ପଥର ପରି ଶୁଣୁଥିଲି । ମନ ପହଁରି ଚାଲିଥିଲା ସମ୍ବଲପୁରରୁ ବ୍ରହ୍ମପୁର । ବର୍ଷ ପରେ ବର୍ଷ ।

ମନା କରିବା ସତ୍ତ୍ୱେ ଦୁଇ ଜଣଙ୍କ ପାଇଁ ଖାଇବା ମଗାଇଥିଲି । ଏକାଠି ଖାଇଥିଲୁ । ମୋ ଗାଡ଼ି ନେଇ ତାକୁ ଛାଡ଼ି ଦେଇଥିଲା ସେ କହିବା ସ୍ଥାନରେ । ଗଲାବେଳେ ମୁଁ ତାକୁ ୫୦୦ଟଙ୍କା ଦେଇଥିଲି । ସେ ମନା କଲା ନେବା ପାଇଁ । ମୁଁ ତ ଯେଉଁଥିପାଇଁ ଆସିଥିଲି ସେ କାମ ତ ହେଲା ନାହିଁ ଆଉ ମୋର ରେଟ୍ ଶହେ ଟଙ୍କା । ଆଉ ତମେ ଦେଉଚ .....

କଥା ସରିବାକୁ ନ ଦେଇ ମୁଁ କହିଲି, ତମେ ମୋତେ ଯାହା ଦେଲ, ଯେଉଁ ପୁରୁଣା ସ୍ମୃତି ଉଖାରି ଦେଲ ତାହାର ମୂଲ୍ୟ ଶହେ ଟଙ୍କାରୁ ବହୁତ ବେଶି ।

ତାକୁ କହିଥିଲି ପରଦିନ ଆସିବା ପାଇଁ କିନ୍ତୁ ସେ ଆସିଲା ନାଇଁ । ରୁମ୍‌ରେ କିଏ ଦେଇଯାଇଥିଲା ସଫା ଲଫାପାଟିଏ । ସେଥିରେ ଥିଲା ଛୋଟିଆ ଚିଠିଟିଏ ।

ପାକୁ,

ମୁଁ ଯାଇ ପାରିବି ନାହିଁ ।
ଲାଜ ମାଡୁଛି ।
ତମର ଶୁଭ କାମନା କରୁଛି ।
ଦେଖା ଆଉ ହେବ ନାହିଁ ।
କୃତଜ୍ଞ ମୁଁ ତୁମ ପାଖରେ । ଶାନ୍ତି

ସେ ଆଉ ଆସି ନାଇଁ । ସମୟ ଅତିକ୍ରାନ୍ତ ହୋଇଛି । ତଥାପି ସେ ମନେପଡ଼େ ।

ଗଞ୍ଜାମରେ ପହଞ୍ଚିଲୁ ପୁଣି ଥରେ । ୧୯୪୬ ମସିହା । ମାଟି ଦୁଲୁକୁଛି ।

ଶାନ୍ତି ସାଙ୍ଗରେ ଆଉ ଦେଖା ହୋଇ ନାଇଁ, ହେବାର ଆଶା ବା ଆଶଙ୍କା ଖୁବ୍ କମ୍ କିନ୍ତୁ ଆଜି ବି ତାର ସ୍ମୃତି ମୋତେ ଘାରେ । କଣ ହେଲା ତାର ଜୀବନରେ ! ତତ୍‌କାଳୀନ ମଧ୍ୟବିତ୍ତ ପରିବାରରୁ ଆସିଥିଲା ସେ । ବାପା ପୁଲିସ୍ କର୍ମଚାରୀ ଥିଲେ । ସେଦିନ ସେ କହିଥିଲା ଏତିକି ଯେ ତାର ବିହାହ ହୋଇଥିଲା କିନ୍ତୁ ସେ ବିବାହ ବ୍ୟର୍ଥ ହୋଇଯାଇଥିଲା । କାହିଁକି ? କହିଥିଲା ଆଉ ଥରେ ଆସିଲେ କହିବ ବୋଲି । ଆସିଲା ତ ନାଇଁ, ଆଉ ଆସିବ ବି ନାଇଁ, ସେ ପ୍ରଶ୍ନ ରହିଯିବ ସେଇପରି ଅସମାହିତ ହୋଇ !

ରାହୁର ଛାୟା ଭଳି ଖାଲି ତାର ଛାଇ ମୋତେ ଗୋଡ଼ାଇଛି ତା' ନୁହେଁ ।

ସେଇ ସମୟର କଥା ।

ରାଜଧାନୀରେ ଏକ ବିଶାଳ ସମ୍ମିଳନୀ ହେଉଥାଏ । ଏକ ଅତିଥିଶାଳାରେ ଆସ୍ଥାନ ଜମାଇ ଥାନ୍ତି ମି. ମାଲହୋତ୍ରା ! ସେ ଜଣେ ପୋଖତ ଜନସମ୍ପର୍କ ଅଫିସର । ସେ ଲୋକମାନଙ୍କୁ କଲଟିଭେଟ୍ (cultivate) କରୁଛନ୍ତି ବୋଲି କହନ୍ତି । ପ୍ରତିଷ୍ଠିତ ବ୍ୟକ୍ତିମାନଙ୍କର ଜନ୍ମ ତାରିଖ, ସ୍ତ୍ରୀଙ୍କର ଜନ୍ମ ତାରିଖ, ବିବାହ ବାର୍ଷିକୀ, ତ୍ରୁଟି, ଅଭିରୁଚି, ଦୁର୍ବଳତା ସବୁ ଟିପାଥାଏ ତାଙ୍କର । ଏପରିକି କେଉଁ ପ୍ରକାର ଖାଦ୍ୟ, କେଉଁ ପ୍ରକାରର ପାନୀୟ ପ୍ରତି ସେମାନଙ୍କର ଦୁର୍ବଳତା ବା ଆଗ୍ରହ ରହିଛି ତା ମଧ୍ୟ ଟିପା ଥାଏ ତାଙ୍କର ।

ଅତିଥିଶାଳାର ତିନୋଟି ବିଶାଳ ବିଶାଳ କୋଠରି ତାଙ୍କ ପାଇଁ ସଂରକ୍ଷିତ । ସବୁ ରୁମ୍ ଫର୍ଣ୍ଣିସ୍ଡ (furnished) । ଗୋଟାଏ କୋଠରିରେ ସଜାଇ ରଖାଯାଇଛି ବିଦେଶୀ ଉପହାର ସାମଗ୍ରୀ । କସ୍‌ମେଟିକ୍ସଠାରୁ ଆରମ୍ଭ କରି ବଡି ସ୍ପ୍ରେ, ବିଭିନ୍ନ ପ୍ରକାରର ସାମଗ୍ରୀ । ଆଉ ଗୋଟିଏ କୋଠରିରେ ସଜାଇ ରଖାଯାଇଛି ଡ୍ରିଙ୍କ୍‌ସ । ବିଭିନ୍ନ ପ୍ରକାରର ଡ୍ରିଙ୍କ୍ସ । ତୃତୀୟ କୋଠରିଟିରେ କେବଳ ବିଭିନ୍ନ ପ୍ରକାରର ଖାଦ୍ୟ ରହିଛି । ସେ କିନ୍ତୁ ରହନ୍ତି ନାହିଁ ଏଇସବୁ କୋଠରିରେ । ସେ ରହନ୍ତି ଅନ୍ୟତ୍ର । ଆସନ୍ତି ଏବଂ ଫେରି ଯାଆନ୍ତି । କିନ୍ତୁ ତିନୋଟିଯାକ ବଖରାରେ ଦକ୍ଷ, ବିଶ୍ୱସ୍ତ ବଟଲର ସବୁବେଳେ ପ୍ରସ୍ତୁତ ।

ଦିନେ ମୁଁ ଯାଇ ପହଞ୍ଚିଲି ତାଙ୍କ ପାଖରେ । ସମ୍ମିଳନୀକୁ ଆସୁଥିବା ବିଭିନ୍ନ ବିଶିଷ୍ଟ ବ୍ୟକ୍ତିଙ୍କ ପାଇଁ ସ୍ୱତନ୍ତ୍ର ଆୟୋଜନର ଦାୟିତ୍ୱ ତାଙ୍କ ହାତରେ । ସ୍ୱାଗତ ଜଣାଇ ମୋତେ କହିଲେ ଯେ ଅପେକ୍ଷା କରନ୍ତୁ ଆଜି ଆପଣଙ୍କର ବି ଦାୟିତ୍ୱ ଅଛି । ବାଧ ହୋଇ ଅପେକ୍ଷା କଲି । ଯିଏ ଆସି ପହଞ୍ଚିଲେ ତାଙ୍କୁ ଜାଣି ନ ଥିଲେ ବି ତାଙ୍କ ସ୍ୱାମୀଙ୍କୁ ଜାଣିଥିଲି ମୁଁ ବେଶ ଭଲ ଭାବରେ । ସେ ଜଣେ ପ୍ରତିଷ୍ଠିତ ଅଫିସର । ମିସେସଙ୍କ ସାଙ୍ଗରେ ଜଣେ ଯୁବତୀ, ତାଙ୍କର କନ୍ୟା ବୋଲି ପରିଚିତ କରାଇଦିଆଗଲା ମୋ ସହିତ ।

କାଲି ତାଙ୍କର ବିବାହ ବାର୍ଷିକୀ ବୋଲି ମି. ମାଲହୋତ୍ରା କହିଲେ । ସେ ଆସିଛନ୍ତି ସୁଇଟେବଲ (Suitable) ବା ଉପଯୁକ୍ତ ଗିଫ୍ଟ ପାଇଁ ମାଲହୋତ୍ରାଙ୍କ ପାଖକୁ ! ଗିଫ୍ଟ ବାଛି ଚାଲିଲେ ସେ ଆଉ ତା' ସହିତ ଡ୍ରିଙ୍କ୍‌ସ ! ପେଗ୍ ପରେ ପେଗ୍ । କିଛି ସମୟ ପରେ ମାଲହୋତ୍ରା ମୋତେ କହିଲେ ଯେ ତାଙ୍କ ଝିଅକୁ ପାଖ ରୁମ୍‌କୁ ନେଇଯିବା ପାଇଁ । କାରଣ ସେ ଟିକିଏ ବେଶି ପିଇ ଦେଇଛି, ନିଦ ଲାଗୁଛି ।

ପାଖରୁମ୍ । ସେ ଝିଅଟି ଢୁଳଉଛି ଦେଖି ମୁଁ ତାଙ୍କୁ ଶୋଇଯିବା ପାଇଁ କହିଲି । Yes, but in Your laps and one more peg. ମୋର ଯେ ଦୁର୍ବଳତା ନ ଥିଲା ତା ମୁଁ କହୁ ନାହିଁ । କିନ୍ତୁ ଡର ବି ପଶିଗଲା । ବଟଲର୍ ଦେଇଗଲା ଗୋଟାଏ ପେଗ୍ । No two pegs. one for me and one for him, my friend. ଝିଅର ନାମ ଜାଣି ନାହିଁ ଆଉ ସେ ମୋର କେବେଠାରୁ ଫ୍ରେଣ୍ଡ ହୋଇଗଲାଣି ।

ମନେ ପଡିଲା । ମୋର ଜଣେ ବଂଧୁ ମନ୍ତ୍ରୀ ଥିଲେ । ତାଙ୍କର ନାରୀ ପ୍ରତି ଦୁର୍ବଳତା ଥିଲା କୁଆଡେ ବେଶ୍ । ସେ ଯୁଆଡ଼େ ଗସ୍ତରେ ଗଲେ ତାଙ୍କର ପ୍ରତ୍ୟେକ ରାତ୍ରିର ରହଣି ପାଇଁ ଦରକାର ପଡୁଥିଲା ନୂତନ ସାଥୀ । ପରିଚୟ ନାହିଁ । ସେ ଝିଅ ତାହାର ନାମ ଠିକଣା ସବୁ ମିଛ କହିବ । କାରଣ ସେ ଆସିଛି ଭଡ଼ାରେ ! ଆଉ ତା'ର ହସ, କାନ୍ଦ ମଧ ସବୁ ମିଛ, ପ୍ରତାରଣା ! ଏଇପରି ନାରୀ ସହିତ ସହବାସ ଗୋଟିଏ ସୁନ୍ଦର କାଠର ପ୍ରତିମୂର୍ତ୍ତି ସହିତ ସହବାସଠାରୁ କିଭଳି ଭିନ୍ନ ତାଙ୍କୁ ଥରେ ପଚାରିଥିଲି ସେ କେବଳ ଚୁପ୍ ହୋଇ ରହିଯାଇଥିଲେ ।

ମନେପଡ଼ିଲା ସେଇ କଥା ମୋ ହାତକୁ ଗୋଟିଏ ଗ୍ଲାସ ବଢ଼ାଇଦେଇ ଝିଅଟି କହିଲା, ଆପଣ ଟିକିଏ ପିଇ ମୋତେ ଗ୍ଲାସଟା ଦିଅନ୍ତୁ ଆଉ ସେ ନିଜେ ପିଇ ମୋତେ ବଢ଼ାଇଦେଲା ତାର ଗ୍ଲାସ । ମୁଁ ତ ପିଇ ନ ଥିଲି, ତେଣୁ ସେ ପେଗ୍‌ଟି ପିଇଦେବାରେ ମୋର କୌଣସି ଅସୁବିଧା ନ ଥିଲା ।

ସେ ପେଗ୍‌ଟି ପିଇଦେଇ ଢଳି ପଡ଼ିଲା ମୋ ଉପରେ ଆଉ ପଡ଼ିରହିଲା ସେମିତି । ଏହା କଣ ନାରୀର ଆଶ୍ଲେଷ ନା ଅକ୍ଟୋପସର ବାହୁ ।

ମନେପଡ଼ିଲା ଶାନ୍ତି କଥା! ସେ କଲ୍ ଗାର୍ଲ୍ ପାଲଟିଥିଲା ଦାରିଦ୍ର୍ୟରୁ ଆଉ ଇଏ କ'ଣ ?

ସେ ଦିନ ପରେ ଉକ୍ତ ଝିଅ ସାଂଗରେ ଦେଖାହୋଇଛି ଅନେକ ଥର ଅନେକ ଦିନ ଧରି ସେ ବ୍ୟବହାର କରିଛି ଯେମିତି କିଛି ଘଟି ନାହିଁ ବା ଯାହା ଘଟିଚି ତାହା ଏକ ମାମୁଲି ସାଧାରଣ ଘଟଣା ।

ରାହୁର ଛାୟା !

ପ୍ରସଙ୍ଗକ୍ରମେ କହିବି ସେ ଛାୟାର କୁହୁକ !

ମାଟି ଡୁଲୁକୁଛି

ଗଂଜାମ ଓଡ଼ିଶାର ଏକ ରାଜନୀତିକ ସଚେତନ ଜିଲ୍ଲା । ଜାତୀୟବାଦୀ ନେତା ଯେତିକି, ପ୍ରଗତିଶୀଳ ବାମପନ୍ଥୀ ନେତା ସେତିକି । ଓଡ଼ିଆ ଭାଷା, ସଂସ୍କୃତିକୁ ରକ୍ଷା କରିବା ପାଇଁ ନେତାମାନଙ୍କର ସଂଖ୍ୟା ଯେପରି ପ୍ରଚୁର, ରଇତ ଆନ୍ଦୋଳନ ପାଇଁ ନେତା ମଧ ସେହିପରି ପ୍ରଚୁର ।

ହାଇସ୍କୁଲରେ ସ୍ଥାନ ରିଜର୍ଭ ହୋଇଥିଲା । ହେଡ଼ମାଷ୍ଟର ହେଉଛନ୍ତି ଶ୍ରୀ ଦିବ୍ୟସିଂହ ପଟ୍ଟନାୟକ । ତାଙ୍କ ପୁଅ ସୁରସିଂହ ପଟ୍ଟନାୟକ ମୋର ସହପାଠୀ । ସେମାନେ ପାରିବାରିକ ବଂଧୁ । ସୁରସିଂହ ଅବସରପ୍ରାପ୍ତ ସମବାୟ ବିଭାଗ ଅଫିସର । ସେ ଅବିବାହିତ । ବର୍ତ୍ତମାନ ଗୋପାଳପୁରର ସ୍ଥାୟୀ ବାସିନ୍ଦା । ସେ ମଧୁସୂଦନ ଦାସଙ୍କ ସମ୍ପର୍କରେ ଗବେଷଣା କରି ବହୁ ନୂତନ ତଥ୍ୟ ଲୋକଲୋଚନକୁ ଆଣିଛନ୍ତି । ଏହାଛଡ଼ା ବୌଦ୍ଧଧର୍ମର ବିପାସନା ଉପରେ ଅଧ୍ୟୟନ କରି ସମ୍ମାନିତ ହୋଇଛନ୍ତି ।

ଗଲାଥର ଏହି ହାଇସ୍କୁଲରେ ପଢ଼ିଲାବେଳେ ପ୍ରବାଦ ପୁରୁଷ ପର୍ଶୁରାମ ବ୍ରହ୍ମା ଥିଲେ ପ୍ରଧାନ ଶିକ୍ଷକ । ତାଙ୍କର ସଢୁ ଦିବ୍ୟସିଂହ ପଟ୍ଟନାୟକ ବର୍ତ୍ତମାନ ପ୍ରଧାନ ଶିକ୍ଷକ । ଦୁହେଁ ଜାତୀୟବାଦୀ । ଓଡ଼ିଆ ଭାଷାର ରକ୍ଷା ପାଇଁ ଉଭୟ ପୁରୀ ଜିଲ୍ଲାରୁ ଯାଇ ତତ୍‌କାଳୀନ ମାନ୍ଦ୍ରାଜ ପ୍ରେସିଡ଼େନ୍‌ସୀ ଅନ୍ତର୍ଭୁକ୍ତ ଗଂଜାମ ଜିଲ୍ଲାରେ ଶିକ୍ଷକତା କରୁଥିଲେ ।

ନାମ ଲେଖା ହେବାକ୍ଷଣି ମୋର ପୂର୍ବତନ କ୍ଲାସ ଟିଚର ସୁରେଲ ସିଂହ ମୋତେ ନେଇ ସ୍କୁଲର ସବୁ କ୍ଲାସରେ ପରିଚୟ କରାଇଦେଲେ । ମୁଁ କୁଆଡ଼େ ଚତୁର୍ଥ ଶ୍ରେଣୀ (ସ୍କୁଲର ସବୁଠାରୁ ନିମ୍ନକ୍ଲାସ)ରେ ପାଠ ପଢୁଥିଲାବେଳେ ସ୍କୁଲ ଇନ୍‌ସପେକ୍ଟର ଆସିଥିଲେ ସ୍କୁଲ

ପରିଦର୍ଶନ ପାଇଁ । ମତେ ସେ କଣ ପଚାରିଥିଲେ ଏବଂ ମୁଁ ହିଁ ତାର ଉତ୍ତର ଦେଇଥିଲି । ମୋର କଣ ଟିକିଏ ଝାପସା ମନେଅଛି ମାତ୍ର ।

ଗଂଜାମ ଜିଲ୍ଲାରେ ମାକାଲେ ପ୍ରଚଳିତ ଟେଷ୍ଟ ପରୀକ୍ଷାରେ ଅଟକ ରଖିବା ପଦ୍ଧତି ବିରୋଧରେ ଛାତ୍ର ଆନ୍ଦୋଳନ ମୁଣ୍ଡ ଟେକିଥିଲା । ସେତିକିବେଳେ ରେଭେନ୍ସା କଲେଜରେ ୟୁନିଅନ ଜ୍ୟାକ ପତାକା ବିରୋଧୀ ଆନ୍ଦୋଳନ ସାରା ପ୍ରଦେଶ(ବର୍ତ୍ତମାନ ରାଜ୍ୟ)ରେ ଉଦ୍‌ବେଳନ ସୃଷ୍ଟି କରିଥିଲା । ସ୍ୱାଭାବିକ ଭାବରେ ଆମ ହାଇସ୍କୁଲ ସେଥିରୁ ମୁକ୍ତ ରହି ନ ଥିଲା । ଏହି ସମୟରେ ବ୍ରହ୍ମପୁରରେ ଛାତ୍ର ସଂଘର ସମ୍ମିଳନୀ । ସେଇଠି ପରିଚିତି ହୁଏ ୰ଶଶିଭୂଷଣ ପଟ୍ଟନାୟକ, ୰ ପୂର୍ଣ୍ଣଚନ୍ଦ୍ର ଦାସ, ୰ଶ୍ୟାମସୁନ୍ଦର ମହାପାତ୍ର, ୰ ଜଗତ କୃଷ୍ଣ ପ୍ରଭୃତିଙ୍କ ସହିତ । ଗଂଗାଧର ରଥ, ନିରୁପମା ରଥ, ନନ୍ଦିନୀ ପାଣିଗ୍ରାହୀ (ଶତପଥୀ) ପ୍ରଭୃତିଙ୍କୁ ଦେଖିବାକୁ ମିଳିଥିଲା । ୰ ବିଜୟ ଚନ୍ଦ୍ର ଦାସ ୰ ସଦାନନ୍ଦ ମହାନ୍ତି ପ୍ରଭୃତିଙ୍କ ସହିତ ଆଗରୁ ପରିଚିତ ହୋଇଥିଲା ଭଂଜନଗରରେ ।

ସାହସ ବଢ଼ିଥିଲା । ମୋର ଦାଦା ୰ ବିରଞ୍ଚି ନାରାୟଣ ପଟ୍ଟନାୟକଙ୍କ ଯୋଗୁଁ ଆମ ଘରେ ୰ ନିରଞ୍ଜନ ପଟ୍ଟନାୟକ, ୰ ବନମାଳୀ ପଟ୍ଟନାୟକ ପ୍ରଭୃତି ମିଳିତ ହେଉଥିଲେ । ସେଇଯୋଗୁଁ ସାହସ ବଢ଼ିବାର ବି କାରଣ ଥିଲା ।

ଭାରତ ସ୍ୱାଧୀନ ହେବାକୁ ଡେରି ନାହିଁ । କିନ୍ତୁ ରାତି ପାହିବା ପୂର୍ବରୁ ଅଂଧାର ଭଳି । ଏକ ପଟରେ ବ୍ରିଟିଶ ସରକାରକୁ ଭୟ । କାଳେ ଯିବେ ନାହିଁ କି ? ଆର ପଟରେ ମଧ୍ୟବର୍ତ୍ତୀକାଳୀନ ସରକାର ଗଢ଼ାହୋଇଯାଇଛି ଦିଲ୍ଲୀରେ, ସେମାନଙ୍କୁ ବି ଭୟ, ଦେଶରେ ଚାଲିଛି ସାଂପ୍ରଦାୟିକ ରକ୍ତସ୍ନାନ ।

ଓଡ଼ିଶା ପ୍ରଦେଶ (ରାଜ୍ୟନାମରେ ନାମିତ ହେଲା ସମ୍ବିଧାନ କାର୍ଯ୍ୟକାରୀ ହେଲା ପରେ ୧୯୫୦ ମସିହା ଜାନୁଆରୀ ୨୬ ରୁ) ରେ ଡକ୍ଟର ମହତାବଙ୍କ ନେତୃତ୍ୱରେ ସରକାର ଗଢ଼ା ହୋଇଛି । ସେମାନଙ୍କୁ ମଧ ଭୟ ।

ହରେକୃଷ୍ଣ ମହତାବ ଆସିଛନ୍ତି ରସେଲକୋଣ୍ଡା (ଭଂଜନଗର) ବିରାଟ ସାଧାରଣ ସଭା । ଜନସମୁଦ୍ର ଭିତରେ ମୋ ଭଳି ସ୍କୁଲ ଛାତ୍ର ବି ବହୁତ । ଆମ ବସିବା ସ୍ଥାନରେ ଆଗଧାଡ଼ିରେ ବସିଛନ୍ତି ଆମର ଜଣେ ଶିକ୍ଷକ । ବୋଧ ହୁଏ ସବ୍‌ଦର ଅଲ୍ଲି ବୋଲି ହେତୁ ହେଉଛି । ଜିଲ୍ଲା ବୋର୍ଡ ସଭାପତି ଦୀନବନ୍ଧୁ ବେହେରା ହେଉଛନ୍ତି ସଭାର ସଭାପତି । ଆମ ସ୍କୁଲ ବୋର୍ଡ଼ ପରିଚାଳିତ ସ୍କୁଲ ।

ମହତାବ ଭାଷଣ ଦେଇସାରିଲାପରେ ପଚାରିଲେ କାହାରି କିଛି ପ୍ରଶ୍ନ ଅଛି କି ? ମୋର ମନେପଡୁଚି ଯେ ଆଗରେ ବସିଥିବା ଶିକ୍ଷକ କଣ ଗୋଟିଏ ପ୍ରଶ୍ନ ପଚାରିଲେ ଇଂରାଜୀରେ ।

ଶିକ୍ଷକ ତ ପଚାରିଲେଣି । ଆଉ ଶିଷ୍ୟ ବାଦ ପଡ଼ନ୍ତେ କାହିଁକି ? ବୋଧହୁଏ କିଛି ପିଲା ଚିହାଇଦେଲେ । ମୁଁ ଉଠି ଠିଆ ହେଲି ପ୍ରଶ୍ନ ପଚାରିବା ପାଇଁ । ସାନ ପିଲା, ଜନ

ସମୁଦ୍ର ଏବେ ବି ବାଙ୍ଗରା । ପାଟି ଖନି ବି ବାଜିଲା । ଶୁଭିଲା ନାହିଁ ବୋଧହୁଏ । ଡକା ହେଲି ଷ୍ଟେଜ୍ ଉପରକୁ ।

ମୋର ବକ୍ତବ୍ୟ ଥିଲା ତିନୋଟି । ସ୍କୁଲ ପାଇଁ ଘର । ହଷ୍ଟେଲ ପାଇଁ ଘର । ବେଲଗୁଣ୍ଠାକୁ ଯିବାପାଇଁ ନଦୀ ଉପରେ ପୋଲ । କାରଣ ଅନେକ ପିଲା ଆସନ୍ତି ନଦୀ ସେ ପଟରୁ । ମୋର ମନେପଡୁଛି ଦୀନବନ୍ଧୁବାବୁ କିଞ୍ଚିତ୍ ଖପା ହୋଇ ମୋତେ ଅଧିକ କହିବାକୁ ବାରଣ କଲେ । ଆଉ ମହତାବବାବୁ ତାଙ୍କର ଚିରାଚରିତ ଢଙ୍ଗରେ ତାଙ୍କୁ ସେଥିରୁ ନିବୃତ୍ତ କଲେ, ମୋତେ ଉତ୍ସାହିତ କଲେ କହିବା ପାଇଁ । ମୁଁ କହିଲି ଏବଂ ମହତାବବାବୁ ଘୋଷଣା କଲେ ଯେ ତିନୋଟିଯାକ ଦାବି ପୂରଣ ହେବ ଶୀଘ୍ର । (ପୂରଣ ବି ହେଲା)

ସଭା ସରିଲା । ମୁଁ ଯାଏ କୁଆଡ଼େ ? ସମସ୍ତେ ହାତଠାରି ମୋତେ ଦେଖାଇଲେ । ଏଇ ସେଇ ପିଲା... ଏଇ ସେଇ.... ଦେଖାଯାଉ କଣ ହେଉଛି ? ସମସ୍ତଙ୍କର ଅହେତୁକ ଭୟ, ବିସ୍ମୟଭରା ଭୟ, ସଭାରେ ଅନେକ ସରକାରୀ କର୍ମଚାରୀ ଥିଲେ । ସେମାନେ ସିଧା ଆସି ଘରେ ହାଜର ।

ପୁଅ ପଚାରିଛି ପ୍ରଶ୍ନ ପ୍ରଧାନମନ୍ତ୍ରୀଙ୍କୁ ! କଣ ହେବ କେଜାଣି ! ପୁଅ ଘରକୁ ଫେରିନି । ବାଧ ହୋଇ ଦାଦା ଖୋଜି ବାହାରିଲେ ପୁତୁରାକୁ ଆଉ ପୁତୁରାକୁ ନେଇ ଚାଲିଲେ ସାଇକେଲରେ ବଙ୍ଗଳାକୁ, ଯେଉଁଠି ପ୍ରଧାନମନ୍ତ୍ରୀ ରହୁଥିଲେ । ସେମାନେ କଲେଜ୍ ମେଟ୍ । ମହତାବବାବୁ ଦାଦାଙ୍କୁ କୁଣ୍ଢେଇ ପକାଇଥିଲେ । ଦାଦା ମୋତେ ପରିଚିତ କରାଇଦେଲେ ମହତାବବାବୁଙ୍କ ସହିତ । ବୋଧହୁଏ କିଛି ଖିଆ ବି ହେଲା ସେଇଠି ।

ଭୟ କଟିଯିବାର ଉପକ୍ରମ ଆରମ୍ଭ ହେଲା । ଦାଦା ମୋତେ ନେଇ ଘରେ ପହଞ୍ଚାଇଲେ ଆଉ କହିଲେ, ସବୁ ଘଟଣା । ପଚାରିଲା ତ ପଚାରିଲା କଣ ହେଲା ସେଇଠୁ ? ସଭା ମଉଳି ଯାଇଥିଲା । ହେଡମାଷ୍ଟର ୰ ଦିବ୍ୟସିଂହ ପଟ୍ଟନାୟକ, ଶିକ୍ଷକମାନେ (ବିଶେଷତଃ ୰ ସାଭଲ ସିଂ) ଖୁସି ହେଲେ । ପିଲାମାନଙ୍କର ହଠାତ୍ 'ନେତା' ହୋଇଗଲି ।

ତା'ପରେ ଜୀବନରେ ମହତାବବାବୁଙ୍କ ସହିତ ଭେଟ ହୋଇଛି, କାମ କରିବାର ସୁଯୋଗ ମିଳିଛି ।

ମୋର ମନେ ପଡୁଛି ।

ସୀମା ଆନ୍ଦୋଳନର ପରେ ନବବାବୁ ଶାସନଗାଦିରୁ ଗଲେ ଓ ମହତାବବାବୁ ବମ୍ବେ (ମୁମ୍ବାଇ) ରାଜ୍ୟପାଳ ପଦବୀ ଛାଡ଼ି ପୁଣି ମୁଖ୍ୟମନ୍ତ୍ରୀ ହୋଇ ଆସିଲେ । ଆମେ ଦୁହେଁ ଓଡ଼ିଶାର କୌଣସି ଏକ କଲେଜରେ ଭାଷଣ ଦେବାକୁ ଯାଇଥିଲୁ । ସଭା ଶେଷରେ ଆରମ୍ଭ ହେଲା ପ୍ରଶ୍ନବାଣ । ଅପର ପଟରୁ ପ୍ରତିବାଦ ବି ଆରମ୍ଭ ହେଲା ।

ଭୀଷଣ ଗଣ୍ଡଗୋଳ । ଦେଖିଲି ମହତାବବାବୁ ତାଙ୍କୁ ସମର୍ଥନ କରୁଥିବା ପିଲାମାନଙ୍କୁ ଚୁପ୍ ରହିବାକୁ କହୁଛନ୍ତି । ସେମାନେ ମୋତେ ପ୍ରଶ୍ନ କରିବାକୁ ଚାହୁଁଛନ୍ତି । ବକ୍ତାକୁ ପ୍ରଶ୍ନ ପଚାରିବାର ଅଧିକାର ଶ୍ରୋତାମାନଙ୍କର ରହିଛି । ତମେମାନେ ସେଥିପାଇଁ ଉତ୍ତେଜିତ

ହେବାର କାରଣ କଣ ମୁଁ ବୁଝିପାରୁ ନାହିଁ ମହାତାବବାବୁଙ୍କ ଏଭଳି  ଉକ୍ତିରେ ସ୍ୱାଭାବିକ ଭାବରେ ସଭାରେ ନିସ୍ତବ୍ଧତା ଖେଳିଗଲା । ସବୁଠାରୁ ଉତ୍ତେଜିତ ହୋଇ ପ୍ରଶ୍ନ ପଚାରୁଥିବା ଛାତ୍ରକୁ ଲକ୍ଷ୍ୟ କରି ମହତାବବାବୁ ପଚାରିଲେ, କଣ ତମର ପ୍ରଶ୍ନ ? ପିଲାଟି ଉତ୍ତେଜିତ ସ୍ୱରରେ ପଚାରିଲା, ଆପଣ ବମ୍ବେରେ ରାଜ୍ୟପାଳ ଥିଲେ, ହଠାତ୍ କାହିଁକି ଚାଲି ଆସିଲେ ଓଡିଶାକୁ ମୁଖ୍ୟମନ୍ତ୍ରୀ ହେବାପାଇଁ ।

ସ୍ୱଭାବସୁଲଭ ଭଂଗୀରେ ମହତାବବାବୁ କହିବାକୁ ଆରମ୍ଭ କଲେ । ଦେଖିଲେ, ଯିଏ ପ୍ରଶ୍ନଟି ପଚାରିଲେ ସେ ମୋର ବଂଧୁ । ଅନେକ ଦିନୁ ଭାବୁଥିଲି ମୋତେ ଇମିତି ପ୍ରଶ୍ନଟିଏ କିଏ ପଚାରନ୍ତା କି ? ପ୍ରଶ୍ନ କରିବାକୁ ଧନ୍ୟବାଦ ଜଣାଇ ମହତାବବାବୁ ଓଲଟା ଏକ ପ୍ରଶ୍ନ ପଚାରିଲେ ତାଙ୍କୁ । ଆପଣ ଖେଳାଖେଳି କରନ୍ତି କି ? ପିଲାଟି ଉତ୍ତର ଦେଲା, ଖେଳେ ଫୁଟବଲ । କେଉଁ ପୋଜିସନ୍‌ରେ ମହତାବବାବୁଙ୍କ ପ୍ରଶ୍ନ, ଫରଓ୍ୱାର୍ଡ ଲାଇନରେ, ସେଣ୍ଟର ଫରଓ୍ୱାର୍ଡ । ଆପଣ ଗୋଲକିପର ଭାବେ ଖେଳିବେ କି ? ପିଲାଟି ଦୃଢ଼ଭାବରେ ନାହିଁ କଲା ।

ରାଜନୀତି ଏକ ଫୁଟବଲ ଖେଳଭଳି  । ମୁଁ ପିଲାଦିନୁ ଫରଓ୍ୱାର୍ଡ ଲାଇନରେ ଖେଳି ଆସିଛି । ରାଜ୍ୟପାଳ ପଦବୀ ଏକ ଗୋଲକିପର ପୋଷ୍ଟ, ଦୈବାତ୍ ଗୋଲକିପରର ଦେହ ଖରାପ ହେଲେ ଯେପରି ଫରଓ୍ୱାର୍ଡ ଲାଇନରେ ଖେଳୁଥିବା ପିଲା କିଛି ଦିନପାଇଁ ଗୋଲକିପର ଭାବରେ ଖେଳିବାକୁ ରାଜିହୁଏ ଠିକ୍ ସେଇପରି ମହାରାଷ୍ଟ୍ରରେ ରାଜ୍ୟପାଳ ପଦବୀ ଖାଲି ପଡ଼ିବାରୁ ମୋତେ ପଣ୍ଡିତ ନେହେରୁ ସେଇ ପଦବୀରେ କିଛିଦିନ ରହିବାକୁ କହିଲେ । ମୁଁ ତାଙ୍କୁ ଅସନ୍ତୁଷ୍ଟ କରନ୍ତି କିମିତି ? ସେ କିମିତିକା ଲୋକ ସମସ୍ତେ ଜାଣନ୍ତି  । ସେ ଆମ ଟିମର କାପଟେନ୍ । ତାଙ୍କୁ ଅମାନ୍ୟ କଲେ ଚଳିବ ? କିନ୍ତୁ ଫରଓ୍ୱାର୍ଡ ଲାଇନରେ ଖେଳୁଥିବା ଖେଳାଳି କେତେ ଦିନ ଗୋଲକିପର ହୋଇ ରହିପାରିବ ? ତେଣୁ ... ।

ସଭା ସୁରୁଖୁରୁରେ ସରିଲା ।

ମହତାବବାବୁ ସିନା କହିଲେ ଯେ ପଣ୍ଡିତ ନେହେରୁ ହେଉଛନ୍ତି ଟିମ୍‌ର କ୍ୟାପଟେନ । ତାଙ୍କୁ ଅସନ୍ତୁଷ୍ଟ କରି ଚଳିହେବ ? ସେ ମହାରାଷ୍ଟ୍ରର ରାଜ୍ୟପାଳ ହୋଇଗଲା ପରେ ବିଧାନ ଚନ୍ଦ୍ର ରାୟ କୁଆଡେ ମନ୍ତବ୍ୟ ହେଲେ - ମୁଁ ସବୁବେଳେ କହିଛି, ଯାହା କରୁଛ କର କିନ୍ତୁ ପଣ୍ଡିତଜୀ ସାଥିରେ ଲାଗ ନାଇଁ  । ତମେ କଣ ଜାଣନା ଯେ ସେ ସୂର୍ଯ୍ୟ ଭଳି  । ଦୁଇଶହ ମାଇଲ ଦୂରରେ ମଧ କାହାକୁ ରହିବାକୁ ଦିଏ ନାହିଁ । ସବୁ ଗିଳିଯାଏ ହରେକୃଷ୍ଣ ! ତମେ ଠିକ୍ କରିଚ ବମ୍ବେର ରାଜ୍ୟପାଳ ପଦବୀ ଗ୍ରହଣ କରି ।

ମହତାବବାବୁ ଜଣେ ପୂରାପୂରି ରାଜନୀତିଜ୍ଞ କିନ୍ତୁ ସେ ସେଇପରି ଏକ ରାଜନୀତିଜ୍ଞ ଯେ ଜୀବନର ସବୁ ବିଭାବ (aspect) ଉପରେ ଆପଣାର ଆଲେଖ୍ୟ ରଖିବାକୁ ଚାହିଁଛନ୍ତି, କ୍ରୀଡ଼ା ଠାରୁ ଇତିହାସ,  ସାହିତ୍ୟରୁ କଳା ସବୁ ବିଭାବରେ ।

ସରୋଜିନୀ ନାଇଡୁ ଆସିଥିଲେ ଓଡ଼ିଶା ୧୯୩୮ ମସିହାରେ । ରେଭେନ୍ସା କଲେଜ ଛକରେ ଥିବା ଏକ ଗୃହରେ ସେ ଭେଟିଥିଲେ କଂଗ୍ରେସ ନେତାମାନଙ୍କୁ । ତରୁଣ ହରେକୃଷ୍ଣ ମହତାବଙ୍କ ପିଠିରେ ଥାପୁଡ଼େଇ ସେ କୁଆଡ଼େ କହିଥିଲେ - ଓଡ଼ିଶାର ଏଇ ରାଜନୀତିକ ସୃଷ୍ଟି (product) ପାଇଁ ସାବଧାନ ରହିଥାଅ ସମସ୍ତେ ।

ଭୈରବ ଚନ୍ଦ୍ର ମହାନ୍ତି ନିର୍ବାଚିତ ହୋଇଛନ୍ତି ପାର୍ଲିଆମେଣ୍ଟକୁ । ତାଙ୍କୁ ସମ୍ବର୍ଦ୍ଧନା ଦିଆଯାଉଚି ବାରବାଟୀ ପଡ଼ିଆରେ । ଅନେକ ଉତ୍‌ଥାନ ପତନ ଟଣାଓଟରା ପରେ ସେ ଯାଇଛନ୍ତି ପାର୍ଲିଆମେଣ୍ଟକୁ । ଡକ୍ଟର ସଦାଶିବ ମିଶ୍ର କହନ୍ତି ମଜାଳିଆ କଥା, ଟିକିଏ ଚିମୁଟାଥାଏ ତାଙ୍କ କଥାରେ ।

ସେ କହିଲେ ତାଙ୍କ ଭାଷାରେ । ଓଡ଼ିଆମାନଙ୍କର ଟିକିଏ କଙ୍କଡ଼ା ଅଭ୍ୟାସ ଅଛି । ପଛରୁ ଟାଣିବା ସେମାନଙ୍କର ଅଭ୍ୟାସ । ସେସବୁକୁ କାଟି ଭୈରବବାବୁ ପାର୍ଲିଆମେଣ୍ଟକୁ ଯାଇଚନ୍ତି । ତାଙ୍କୁ ବଧେଇ ।

ମହତାବବାବୁ ସଭାପତି । ତାଙ୍କୁ କଥାଟା ଲାଗିଗଲା । କାରଣ ଭୈରବବାବୁଙ୍କ ଉତ୍‌ଥାନ ପତନ ସହିତ ଜଡ଼ିତ ସେ ।

ସେ ତାଙ୍କ ଭାଷଣରେ କହିଲେ, ସଦାଶିବବାବୁ ପ୍ରଖ୍ୟାତ ଅର୍ଥନୀତିଜ୍ଞ, ଅଧ୍ୟାପକ କିନ୍ତୁ ସେ ତାଙ୍କ ପୁଅଙ୍କ ପରି ଖେଳାଳି ନୁହନ୍ତି । (ଡକ୍ଟର ସଦାଶିବ ମିଶ୍ରଙ୍କ ପୁଅ ଡକ୍ଟର ପ୍ରଭାତ ମିଶ୍ର ଜଣେ ଖେଳାଳି ଏବଂ କ୍ରୀଡ଼ା ସଂଗଠକ) ସେଇଯୋଗୁଁ ସେ ଜାଣନ୍ତି ନାହିଁ ଯେ ଗୁଡ଼ିକୁ ତଳକୁ ନ ଟାଣିଲେ ତାହା ଉପରକୁ ଯାଏନା । ଫୁଟବଲକୁ ତଳକୁ ନ ବାଡ଼େଇଲେ ଏହା ଉପରକୁ ଯାଏନା । ଭୈରବବାବୁ ଜଣେ ଖେଳାଳି । ତାଙ୍କୁ ତଳକୁ ଟାଣିବା ଯୋଗୁ ହିଁ ସେ ଉପରକୁ ଉଠି ପାରିଛନ୍ତି ।

ମହତାବବାବୁ ଐତିହାସିକ । ଓଡ଼ିଶାରେ ଇତିହାସ କଂଗ୍ରେସ ବସିଥିଲା ବୋଧହୁଏ ୧୯୫୦ ମସିହାରେ । ଜଗନ୍ନାଥ ବୌଦ୍ଧ ନା ଜୈନ ? ଏଇ ବିତର୍କରେ ଦୁଇଦିନ ବିତିଗଲା । ମହତାବବାବୁ ଜଗନ୍ନାଥଙ୍କୁ ଜୈନ କହିଲାବେଳେ ଅନ୍ୟତମ ପଣ୍ଡିତ ନୀଳକଣ୍ଠ ଦାସଙ୍କ ମତରେ ଜଗନ୍ନାଥ ହେଉଛନ୍ତି ବୌଦ୍ଧ ।

ମନେପଡୁଚି ୧୯୮୯ ମସିହାର କଥା । କଟକ ନଗରର ସହସ୍ର ବାର୍ଷିକୀ ପାଳନର ପ୍ରସ୍ତୁତି । ବାରବାଟୀ ଦୁର୍ଗ ଖନନର କଥା ଉଠିଲା । ବାରବାଟୀ ଦୁର୍ଗ ଭିତରେ ରହିଛି ସ୍ତୂପ । ତାହାର ଖନନ ହେଲେ ଓଡ଼ିଶାର ଲୁକ୍କାୟିତ ରହିଥିବା ଛଅଶହ ବର୍ଷର ଇତିହାସ ଉପରେ ଆଲୋକପାତ ହୋଇପାରନ୍ତା । ଡକ୍ଟର କରୁଣା ସାଗର ବେହେରା, ଡକ୍ଟର ଜଗନ୍ନାଥ ପଟ୍ଟନାୟକ, ଡକ୍ଟର ହରିଶ୍ଚନ୍ଦ୍ର ଦାସ ପ୍ରଭୃତିଙ୍କର ପ୍ରସ୍ତାବ ପରେ ସଭାପତି ଜଷ୍ଟିସ ହରିହର ମହାପାତ୍ର ମତଦେଇ କହିଲେ ବାରବାଟୀ ଦୁର୍ଗ ଭିତରେ ଏଇ ସ୍ତୂପ ଥିବା ସତ୍ତ୍ୱେ ଐତିହାସିକ ମୁଖ୍ୟମନ୍ତ୍ରୀ ଡକ୍ଟର ମହତାବଙ୍କ ଆଖିରୁ ଏହା ଏଡ଼ାଇଗଲା କାହିଁକି ?

ବାରବାଟୀ ଦୁର୍ଗ ଖନନ ହେଲା ସତ୍ୟ, କିନ୍ତୁ ଜଷ୍ଟିସ ମହାପାତ୍ରଙ୍କ ଆଶଙ୍କା ସତ୍ୟ ବୋଲି ପ୍ରମାଣିତ ହେଲା । କାରଣ ଏଇ ଦୁର୍ଗର ଖନନ କିଛି କାଳ ଚାଲି ବନ୍ଦ ହୋଇଗଲା, ଆଠୋଟି ଅସ୍ଥାୟୀ ଗୃହର ଅପସାରଣ ହୋଇ ନ ପାରିବା ଯୋଗୁଁ ଅଥଚ ଏଇଘରଗୁଡ଼ିକ ଥିଲା ଅସ୍ଥାୟୀ ନିର୍ମାଣ ବେଆଇନ୍ ଏବଂ ରାଜ୍ୟ ସରକାର ମଧ୍ୟ ବହୁବର୍ଷ ପୂର୍ବରୁ ଏଗୁଡିକୁ ବିପଜ୍ଜନକ ବୋଲି ଘୋଷଣା କରିସାରିଥିଲେ । ଖନନ କାର୍ଯ୍ୟ ଭିତରେ ଅନେକ ଅନାବିଷ୍କୃତ ତଥ୍ୟ ଦୃଷ୍ଟିକୁ ଆସିଲା । ଖନନ କାର୍ଯ୍ୟ ସମ୍ପୂର୍ଣ୍ଣ ହେଲେ ଓଡ଼ିଶାର ବହୁ ବର୍ଷର ଲୁକ୍କାୟିତ ତଥ୍ୟ ଜଣାପଡ଼ନ୍ତା ।

ଗୋଟିଏ ଉଦାହରଣ ।

ବାରବାଟୀ ଦୁର୍ଗକୁ ଦେଖି ଜେନେରାଲ ହାରକୋଟ୍ ଏହାକୁ ଇଂଲଣ୍ଡର ଉଇଣ୍ଡସର୍ କ୍ୟାସଲ (Windsor Castle) ଭଳି ଦେଖାଯାଉଥିବା ବୋଲି ବର୍ଣ୍ଣନା କରିଛନ୍ତି । ଏହି ଦୁର୍ଗ ନଅ ମହଲା ଥିଲା ନା ନଅ ସାହାଲା ଥିଲା ସେ ସମ୍ପର୍କରେ ମତଭେଦ ଥିଲା । ବାରବାଟୀ ଦୁର୍ଗ ଖନନରୁ ଦେଖାଗଲା ଯେ ୩୫ ମିଟର ପର୍ଯ୍ୟନ୍ତ ମାଟିତଳେ ପ୍ରାସାଦର ଅବଶିଷ୍ଟାଂଶ ରହିଛି । ତେଣୁ ଏହା ନଅ ମହଲା ଥିବାର ସ୍ପଷ୍ଟ ପ୍ରମାଣ ମିଳୁଛି ।

ଓଡ଼ିଶାରେ କୌଣସି ପ୍ରାଚୀନ ଦୁର୍ଗର ଅବସ୍ଥିତି ବର୍ତ୍ତମାନ ନାହିଁ । କଣ ହେଲା ଏହି ସବୁ ଦୁର୍ଗର ? ଏ ଗୁଡ଼ିକ ପଥରରେ ହୋଇଥିଲା ନା ମାଟିରେ ହୋଇଥିଲା, ଏଇ ପ୍ରଶ୍ନ ମନକୁ ଆସୁଚି । କାରଣ ଉତ୍ତର ଭାରତରେ ବହୁ ପୁରାତନ ଦୁର୍ଗ ରହିଚି ବର୍ତ୍ତମାନ ପର୍ଯ୍ୟନ୍ତ । ଓଡ଼ିଶାର କୌଣସି ଗୋଟିଏ ପ୍ରାଚୀନ ଦୁର୍ଗର ସ୍ଥିତି ନାହିଁ ।

ବାରବାଟୀ ଦୁର୍ଗର ଖନନରୁ ଦେଖାଗଲା ଯେ ଏଥିରୁ ପ୍ରାୟତଃ ମାଙ୍କଡ଼ା ପଥର ମିଳୁଛି । ସେଇଥିରୁ ଅନୁମାନ କରାଯାଏ ଯେ ଏଇ ଦୁର୍ଗ ମାଙ୍କଡ଼ା ପଥରରେ ହୁଏତ ନିର୍ମିତ ହୋଇଥିଲା । ବାରବାଟୀ ଦୁର୍ଗର ପତନ ପରେ ଏହା ହୋଇଥିଲା ଅଣଅଧ୍ୟୁଷିତ ଏବଂ ଏହାର ପଥର ବିକ୍ରି ହୋଇଗଲା ଶହ ପାଞ୍ଚଟଙ୍କାରେ । କ୍ୟାଣ୍ଟନମେଣ୍ଟ ରୋଡ୍, ଜୋବ୍ରା ଆନିକଟ, ଯୋବ୍ରା ଖୁଣ୍ଟ, ମହମ୍ମଦିଆ ବଜାର, ଶେଖ୍ ବଜାରର ବହୁ ଘର , ଏପରିକି ପାରାଦ୍ୱୀପ ବତିଘରରେ ମଧ୍ୟ ଏଇ ବାରବାଟୀ ଦୁର୍ଗର ପଥର ଲାଗିଛି । ସମୟର ବାତଚକ୍ରରେ କେବଳ ମାଟି ଉପରେ ରହିଛି ଏକ କୁଦ ବା ସ୍ତୂପ ।

ଆକ୍ରମଣ, ବିଜୟ ଏବଂ ପରବର୍ତ୍ତୀ କାଳରେ ଅବ୍ୟବହାରର ଏହା ହୋଇଛି ଫଳ । ସେଇକଥା ହୋଇଛି କି ଓଡ଼ିଶାର ବହୁ ଦୁର୍ଗର କାହାଣୀ । ଐତିହାସିକମାନେ ଏ ସମ୍ପର୍କରେ ଗବେଷଣା କରିବା ଉଚିତ । ବିଶେଷତଃ ଚଉଦୁଆର ଦୁର୍ଗ, ଚୁଡ଼ଙ୍ଗଗଡ଼ ପ୍ରଭୃତି ଉପରେ ଅଧିକ ଗବେଷଣା, ଆବଶ୍ୟକ ହେଲେ ଖନନ କରାଯିବା ଉଚିତ ।

ବର୍ତ୍ତମାନ ବନ୍ଦ ହୋଇଯାଇଥିବା ଚୌଦ୍ୱାର ଲୁଗାକଳ ଅଞ୍ଚଳରେ ଥିଲା ପୁରାତନ ଚୌଦ୍ୱାର ଦୁର୍ଗ । ତାହା ଉପରେ ଗବେଷଣା କରିବାକୁ ହେଲେ ଏହି ଲୁଗା କଳ ଓଡ଼ିଶା ସରକାରଙ୍କ ଅଧୀନରେ ରହିବା ଉଚିତ ।

ଏଇ ସବୁ ପ୍ରଶ୍ନ ଉଠିଥିଲା କଟକ ନଗରର ସହସ୍ର ବାର୍ଷିକୀ ପାଳନ ସମୟରେ । ସେଇଯୋଗୁଁ ବୋଧହୁଏ ଐତିହାସିକ ହରେକୃଷ୍ଣ ମହତାବ ବାରବାଟୀ ଗଡ଼ ଖନନ ପ୍ରତି ନଜର ଦେଇ ନ ଥିଲେ ।

ସହସ୍ର ବାର୍ଷିକୀ ପାଳନ କମିଟି ଆନୁକୂଲ୍ୟରେ ଏହି ଦୁର୍ଗ ଖାଇର ପୁନରୁଦ୍ଧାର ପାଇଁ ଉଦ୍ୟମ କରାଯାଇଥିଲା । ତତ୍କାଳୀନ କେନ୍ଦ୍ରମନ୍ତ୍ରୀ ଶ୍ରୀକାନ୍ତ ଜେନାଙ୍କ ଉଦ୍ୟମରେ ପ୍ରଥମ କିସ୍ତିରେ ଦଶଲକ୍ଷ ଟଙ୍କା ଏଥିପାଇଁ ଭାରତ ସରକାର ମଞ୍ଜୁର କରିଥିଲେ । କିନ୍ତୁ ଏଇ ଟଙ୍କା କିଏ ଖର୍ଚ୍ଚ କରିବ - କଟକ ପୌର ସଂସ୍ଥା ନା କଟକ ସହର ଉନ୍ନୟନ କମିଟି - ସେଇ ବିବାଦରେ ଏ ଟଙ୍କା ଖର୍ଚ୍ଚ ନ ହୋଇ ଫେରିଗଲା ।

କଟକ ସହର ବୃହତ୍ତମ ନାଳ ବାରବାଟୀ ଖାଇରୁ ଯାଇ କାଠଯୋଡ଼ିରେ ପଡ଼ିଛି ଯାହା storm water channel ନାମରେ ପରିଚିତ । ବାରବାଟୀ ଖାଇର ପୁନରୁଦ୍ଧାର ଠିକ୍ ହୋଇପାରିଥିଲେ, ଏଇ storm water channel ରପ୍ରଶସ୍ତିକରଣ ଏବଂ ପୁନର୍ଗଠନ ହୋଇପାରିଥାନ୍ତା ଏବଂ କଟକ ସହରର ଜଳ ନିଷ୍କାସନର ବିରାଟ ସମସ୍ୟା ସମାଧାନରେ ଅନେକ ସାହାଯ୍ୟ କରିପାରିଥାନ୍ତା । ଏଇ ନାଳର ଦୁଇ ପାଖରେ ଥିବା ଜମିର ଜବରଦସ୍ତ ଏବଂ ବେଆଇନ୍ ଦଖଲକୁ ଉଠାଯାଇପାରିଥିଲେ, ଦୁଇ ପଟରେ ରାସ୍ତା ହୋଇପାରିଥାନ୍ତା ଗମନାଗମନ ପାଇଁ । କଟକ ପୌରସଂସ୍ଥାର ଶତବାର୍ଷିକୀ ସମୟରେ ୰ବିନୋଦ ଝା ଥିଲେ ଜିଲ୍ଲାପାଳ । ତାଙ୍କର ପ୍ରଚେଷ୍ଟାରେ ପ୍ରଭାତ ସିନେମାଠାରୁ ଛତ୍ରବଜାର ପର୍ଯ୍ୟନ୍ତ ନାଳର ଗୋଟିଏ ପାଖରେ ଏହିପରି ଏକ ରାସ୍ତା ସମ୍ଭବ ହୋଇପାରିଛି । ନାନା କାରଣରୁ ବିଶେଷତଃ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀର ଉପରୁ ଚାପ ଫଳରେ ଏହା ସେତିକିରେ ରହିଗଲା ।

ହରେକୃଷ୍ଣ ମହତାବ ଏପରି ଏକ ବ୍ୟକ୍ତି ଯେ ଯାହା ଉପରେ ନିଷ୍ପତ୍ତି କରୁଥିଲେ ତାହା କାର୍ଯ୍ୟକାରୀ କରିବାପାଇଁ ଲାଗି ଯାଉଥିଲେ । ଗଡ଼ଜାତ ମିଶ୍ରଣ ପାଇଁ ଭାରତବର୍ଷର ଇତିହାସରେ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ସ୍ମରଣୀୟ ହୋଇ ରହିବେ । କିନ୍ତୁ ଇତିହାସରେ ଏହା ମଧ୍ୟ ଉଲ୍ଲେଖ ରହିବା ଉଚିତ ଯେ ଗଡ଼ଜାତ ମିଶ୍ରଣର ଆଦ୍ୟ ପର୍ବ ଆରମ୍ଭ ହୋଇଥିଲା ନୀଳଗିରି ଗଡ଼ଜାତ ମିଶ୍ରଣରୁ । ଗଡ଼ଜାତ ମିଶ୍ରଣର ବହୁ ପୂର୍ବରୁ ଓଡ଼ିଶା ସରକାର ଆପଣାର ପୁଲିସ ବାହିନୀ ପଠାଇ ନୀଳଗିରିକୁ ଓଡ଼ିଶାରେ ମିଶାଇ ଦେଇଥିଲେ ଏବଂ ଓଡ଼ିଶାର ପ୍ରଧାନମନ୍ତ୍ରୀ (ମୁଖ୍ୟମନ୍ତ୍ରୀ) ଥିଲେ ହରେକୃଷ୍ଣ ମହତାବ ।

ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଗଡ଼ଜାତ ରାଜାମାନଙ୍କୁ ସାକ୍ଷାତ୍ କରିବା ପାଇଁ ଭୁବନେଶ୍ୱର ବିମାନ ବନ୍ଦରରୁ କଟକ ଆସିଲାବେଳେ (ବାରଙ୍ଗ ଦେଇ ପୁରୀଘାଟ ପର୍ଯ୍ୟନ୍ତ) କାରଣ ସେତେବେଳକୁ କାଠଯୋଡ଼ି, କୁଆଖାଇ ପୋଲ ହୋଇ ନାହିଁ । ବାଟତମାମ ଓଡ଼ିଶାର ବିଭିନ୍ନ ଗଡ଼ଜାତରୁ ଆସିଥିବା ଲୋକେ ଯେଉଁ ବିରାଟ ବିକ୍ଷୋଭ ପ୍ରଦର୍ଶନ କରିଥିଲେ ତାହା

ସର୍ଦ୍ଦାର ପଟେଲଙ୍କୁ ଗଭୀର ଭାବରେ ପ୍ରଭାବିତ କରିଥିଲା । ସେଇ ବିଶାଳ ବିକ୍ଷୋଭ ମାନ ହୋଇଥିଲା ମହତାବବାବୁଙ୍କ ଉଦ୍ୟମରେ । ସେ ଉଦ୍ୟମ କଣ ଏବଂ କିପରି ଥିଲା ତାହା ସ୍ୱତନ୍ତ୍ର କଥା ।

ମହତାବବାବୁ ଯାହା ଚାହୁଁଥିଲେ ତାହା କରିବା ପାଇଁ ସବୁ ପ୍ରକାର ପ୍ରଚେଷ୍ଟା କରୁଥିଲେ । କୌଣସି ଏକ ବିଧାନସଭା ନିର୍ବାଚନରେ କଂଗ୍ରେସ ଦଳ ସଂଖ୍ୟାଗରିଷ୍ଠତା ପାଇଲା ନାହିଁ । (ମୋର ଆଉ ମନେପଡୁ ନାହିଁ ବର୍ଷକର କଥା) ସେ ଅନ୍ୟ ଦଳରୁ ସଭ୍ୟ 'ଯୋଗାଡ଼' କରି ମନ୍ତ୍ରିମଣ୍ଡଳ ଗଠନ କଲେ, ପଚାରିବାରୁ ଉତ୍ତର ଦେଲେ ଆମେ ହେଲୁ ଯାତ୍ରା ପାର୍ଟିର ମ୍ୟାନେଜର ଭଳି । ବଇନା ନେଇଚୁ ଯାତ୍ରା କରିବୁ ବୋଲି । ଦୈବାତ୍ କୌଣସି ଅଭିନେତାର ଦେହ ଖରାପ ହେଲେ ଆମେ ଲୋକ ଯୋଗାଡ଼ କରି ଡ୍ରାମା କରିବୁ ନା ନ କରି ଢେଲାମାଡ଼ ଖାଇବୁ । ଆମେ ଲୋକଙ୍କୁ କହିଚୁ ସରକାର ଗଢ଼ିବୁ । ଶାସନ ଚଳାଇବୁ, ଲୋକେ ଭୋଟ ବି ଦେଇଛନ୍ତି ସେଇଥିପାଇଁ । ଦୈବାତ୍ ଦି' ଚାରିଜଣ କମ ପଡ଼ିଗଲେ, ଆମେ ସରକାର ଚଳାଇନେବୁ ନା ଚଳାଇ ନ ପାରି ଅପଦସ୍ତ ହେବୁ ।

ମହତାବବାବୁ କଟକ ଚଣ୍ଡୀଙ୍କ ପାଖରେ ବଳିକୁ ବନ୍ଦ କରିଦେଲେ । ବହୁ ବର୍ଷ ଧରି ଏଇ ନାରକୀୟ, ଲୋମହର୍ଷଣ ବଳିପ୍ରଥା ଚାଲି ଆସୁଥିଲା । ସେ ଜଘନ୍ୟ ଦୃଶ୍ୟ ଯିଏ ନ ଦେଖିଚି ସେ ଜାଣିପାରିବ ନାହିଁ । ପରମ୍ପରା ନାମରେ, ଧର୍ମ ନାମରେ ଏହା ଚାଲି ଆସିଥିଲା ଏବଂ ଅନେକ ଲୋକ (ବିଶିଷ୍ଟ ଲୋକ) ଏହାକୁ ଯଥାର୍ଥ ବୋଲି କହୁଥିଲେ । ଅନେକେ ଏହାକୁ 'ଅନେକ ଦିନରୁ ଚାଲି ଆସିଚି ତ' ବୋଲି କହି ଏହାର ପ୍ରତିରୋଧ କରୁ ନ ଥିଲେ । କିନ୍ତୁ ମହତାବବାବୁଙ୍କ ନେତୃତ୍ୱରେ ଏହା ବନ୍ଦ ହୋଇଗଲା । ତଥାକଥିତ ଲୋକପ୍ରିୟତାକୁ ସେ ଭୟ କରି ନ ଥିଲେ ।

ଲାଞ୍ଚ ଚାଲିଛି ସବୁଠି, ସବୁ ଅଫିସରେ, ଅଳ୍ପ ବହୁତ । ଏହାକୁ ପଞ୍ଜାବ, ଦିଲ୍ଲୀରେ କହୁଛନ୍ତି ସ୍ପିଡ୍ ମନି (speed money) ଲାଞ୍ଚକୁ ଡିଗ୍ନିଫାଏଡ଼ (dignified) ବା ସମ୍ମାନଜନକ ଏବଂ ଆଇନସମ୍ମତ କରାଯାଇଛି ।

ଥରେ ମହତାବବାବୁଙ୍କୁ ମୁଁ ପଚାରିଲି ଏଇ ଲାଞ୍ଚ କଥା, ସେ କହିଲେ ତାଙ୍କର ସ୍ୱଭାବସୁଲଭ ଭଙ୍ଗୀରେ । ପଟ୍ଟନାୟକ ମହାଶୟ, ଆପଣ ତ ରାଜନୀତି ବିଜ୍ଞାନର ଛାତ୍ର । ଆପଣ ଜାଣନ୍ତି, ଆଇନ୍ ଏବଂ କନଭେସନ୍ କଥା । ଆଇନ୍ ଲିଖିତ କିନ୍ତୁ କନ୍‌ଭେନସନ୍ ଲିଖିତ ନୁହେଁ । ଏହା ସତ୍ତ୍ୱେ କନ୍‌ଭେନ୍‌ସନ୍ ବେଶ୍ ଶକ୍ତିଶାଳୀ ଏବଂ ସମୟ ସମୟରେ ଆଇନ୍‌ଠାରୁ ବେଶୀ ଶକ୍ତିଶାଳୀ । ଇଂଲଣ୍ଡ ପରି ଦେଶଟା ପରା କନ୍‌ଭେନସନ୍ ବଳରେ ଶାସିତ ହେଉଛି । ଫିସ୍ ବା ପ୍ରାପ୍ୟ ହେଉଛି ଲିଖିତ । ଆପଣ ଯାହା କହୁଛନ୍ତି ସେଇଟା କନ୍‌ଭେନସନ ପାଲଟିଗଲାଣି । ସେଇଟା ଆମ ଜୀବନର ଅଙ୍ଗ ପାଲଟି ଯାଇଛି ।

ମୋର କିଛି କହିବାର ନ ଥିଲା ତା'ପରେ ।

ମହତାବବାବୁ ପୂରାପୂରି ପଲିଟିକାଲ । କୁହାଯାଏ ଯେ ମୃତ୍ୟୁର ଠିକ୍ ପୂର୍ବରୁ ସେ ଆଖି ଖୋଲିଥିଲେ ଏବଂ ପଚାରିଥିଲେ - ଦିଲ୍ଲୀରୁ କିଛି ସମ୍ବାଦ ଆସିଲାଣି ନା ନାହିଁ ?

ମହତାବବାବୁ ଗଡ଼ଜାତ ପ୍ରଜା ଆନ୍ଦୋଳନର ନେତା ଥିଲେ । ସେଇଟା ବୋଧହୁଏ ୧୯୩୮ ମସିହାର କଥା । ରଣପୁର ଯାଇଥାନ୍ତି ପଲିଟିକାଲ ଏଜେଣ୍ଟ ବେଜଲ୍‌ଗେଟ୍ । ସେଇଠି ତାଙ୍କର ମୃତ୍ୟୁ ହୋଇଯାଏ । ସେଦିନ ରଣପୁରରେ ଏକ ସଭାର ଆୟୋଜନ ହୋଇଥିଲା ପ୍ରଜାମଣ୍ଡଳ ତରଫରୁ । ମହତାବବାବୁଙ୍କର ଭାଷଣ ଦେବାର ଥିଲା ସେଇ ସଭାରେ । ମହତାବବାବୁ ରଣପୁର ଯିବା ବାଟରେ ଟାଙ୍ଗୀଠାରେ ଶୁଣିଲେ ବେଜଲଗେଟଙ୍କ ହତ୍ୟା ଖବର । ମହତାବବାବୁ ରଣପୁରବାସୀଙ୍କୁ ତୁରନ୍ତ ରଣପୁର ଛାଡ଼ି ପାଖ ମୋଗଲବନ୍ଦି ଓଡ଼ିଶାକୁ ପଳାଇବା ପାଇଁ, ରାସ୍ତା ଘାଟ ଭାଙ୍ଗିଦେବା ପାଇଁ, ଗଛ ସବୁ କାଟି ରାସ୍ତା ଅବରୋଧ କରିବା ପାଇଁ କହି ଆସିଲେ । ଫଳତଃ ସାମରିକ ବାହିନୀ ପହଞ୍ଚିବାରେ ବିଳମ୍ବ ହୋଇଥିଲା ଏବଂ ସତେବେଳକୁ ରଣପୁର ଖାଲି ହୋଇଯାଇଥିବାରୁ ସାମରିକ ଅତ୍ୟାଚାର ହୋଇପାରି ନ ଥିଲା ।

ସେ ନିଜେ ଟାଙ୍ଗୀ ଥାନାକୁ ଯାଇ ଏକ ଏଫ୍.ଆଇ.ଆର୍., ଦରଜ କଲେ ଏବଂ ସମୟ ମଧ ଉଲ୍ଲେଖ କରି କପି ଆଣିଲେ ସାଙ୍ଗରେ । ବାଟରେ ଖୋର୍ଦ୍ଧା, ଭୁବନେଶ୍ୱର ଏବଂ ଲାଲବାଗ ଥାନାରେ ଏଫ୍.ଆଇ.ଆର୍ ଦେଇ ତା'ର କପି ନେଲେ ଏବଂ ତାଙ୍କର ଉପସ୍ଥିତି ଏବଂ ସମୟର ପ୍ରମାଣ ରଖିଗଲେ । ବେଜଲଗେଟ୍ ହତ୍ୟା ମୋକଦ୍ଦମାରେ ଅଭିଯୁକ୍ତ ହରେକୃଷ୍ଣ ମହତାବ ସେଇଯୋଗୁଁ ନିର୍ଦ୍ଦୋଷରେ ଖଲାସ ହେଲେ । ତାଙ୍କ ବିରୋଧରେ ସବୁ 'ଚାକ୍ଷୁଷ ' ପ୍ରମାଣ ମିଥ୍ୟା ବୋଲି ପ୍ରମାଣିତ ହେଲା ।

ମହତାବବାବୁ ଦେବତା ନ ଥିଲେ, ମନୁଷ୍ୟ ଥିଲେ । ଅନେକ ଦୋଷଦୁର୍ବଳତା ଥିଲା ତାଙ୍କର । ତାହାର ବିରୋଧ କରି ମୋ ଭଳି ଲୋକ ଜେଲ ଯାଇଛି, ପଳାତକ ହୋଇଛି କିନ୍ତୁ ତାଙ୍କର ଅବର୍ତ୍ତମାନରେ ତାଙ୍କର ଜୀବନର ଅସ୍ତିମୂଳକ ଦିଗ ହିଁ ମନେରଖିବା ଉଚିତ ।

ଭାରତଛାଡ଼ ପ୍ରସ୍ତାବରେ କେତେକ ସଂଶୋଧନ ଦାବି କରିଥିବା କମ୍ୟୁନିଷ୍ଟ ପାର୍ଟିର ବହୁ ନେତା ଭାରତଛାଡ଼ ଆନ୍ଦୋଳନରେ ବନ୍ଦୀ ହୋଇଥିଲେ । କୁହାଯାଏ ଯେ, ଓଡ଼ିଶାର ବ୍ରହ୍ମପୁର ଜେଲ୍‌କୁ ଯେତିକି କମ୍ୟୁନିଷ୍ଟ ନେତା ବନ୍ଦୀ ହୋଇଯାଇଥିଲେ ଫେରିଲା ବେଳକୁ ସେମାନଙ୍କ ସଂଖ୍ୟା ବହୁଗୁଣ ହୋଇଯାଇଥିଲା । ଅର୍ଥାତ୍ ବହୁ କଂଗ୍ରେସ କର୍ମୀ ଏଇ ଜେଲ୍‌ଖାନା ଭିତରେ କମ୍ୟୁନିଷ୍ଟ ହୋଇଯାଇଥିଲେ ।

'ଡଗର' ପତ୍ରିକାର ସଂପାଦକ, ପ୍ରସିଦ୍ଧ ଲେଖକ (ପରବର୍ତ୍ତୀ କାଳରେ ମନ୍ତ୍ରୀ) ନିତ୍ୟାନନ୍ଦ ମହାପାତ୍ର ଏଇ ଜେଲ୍‌ଖାନା ଭିତରେ ଲେଖିଥିଲେ ଏକ ସଂଗୀତ, ଯାହା କମ୍ୟୁନିଷ୍ଟମାନଙ୍କର ସର୍ବକାଳୀୟ ସଂଗୀତରେ ପରିଚିତ ହୋଇଛି ।

ଗୀତଟି ଏଇପରି -
ଏହି ଲାଲ ପତାକାର ତଳେ ହୁଅ ଆଗୁସାର
ଦୁନିଆର ବିଦଳିତ ଦଳେରେ
ଦଳେ, ଦଳେ, ଦଳେ, ଦଳେ, ଦଳେରେ (ଘୋଷା)
ଯେ ରକତ ଝାଳ ହୋଇ ବହିଗଲା ଭୂଇଁରେ
ସେତ ଆମ ଧୂର୍ଜଟି ଜଟାରେ
ଯେଉଁ ଲୁହ ଲହୁ ହୋଇ ପାଦ ଗଲା ଛୁଇଁରେ
ଲାଲ ଆଖିର ଘନଘଟାରେ
ଉଠ ଜାଗ ଭୋକୀ ଶୋଷୀ ବନ୍ଦୀ
ତୋ ଜଠର ଅନଳରେ
ଜଳି ହେଉ ଛାରଖାର
ଶୋଷଣର ପୁରାତନ ଫନ୍ଦି
ଜଳେ, ଜଳେ, ଜଳେ, ଜଳେ, ଜଳେରେ ।
ଯେ ହାଡ଼ ରକତ ଦେଇ କ୍ଷିତି କଲା ଶ୍ୟାମଳ
ସେ ହାତର ଦା'ଆ ତୋର ଡାକଇ
ଯେ ପେଷି ବସାଣେ ଭୂଷା ସମାଜ ଏ ଆମର
ସେ ପେଷି ହାତୁଡ଼ି ଆଜି ହାଁକଇ
ଶୋଷଣର କଷଣର ଫ଼ଳେ ଆଣି ଏକତା
ବଳେ ଚାଲ ଚଉଦିଗ ଗୁନ୍ଧି
ବଳେ, ବଳେ, ବଳେ, ବଳେ, ବଳେରେ ।
କେତେ ରକତର ଚାତି ଏ ପତାକା ସହିଛି
କେତେ ଲୁହ ଲହୁ ଅଛି ଜଷାଇ
କେତେ ତମ ଉଆସର ଦୁଃଖ ଏ ସହିଛି
ଆଶାର ତାରକା ଆଗେ ବସାଇ
ଉଠ ଜାଗ ଭୋକୀ ଶୋଷୀ ବନ୍ଦୀ
ଅତୀତର ଅମା କାଟି ଫାଟିଲାଣି ଲାଲିମା
ପଡ଼ିଛିରେ ବେଳ ଘଡ଼ି ସନ୍ଧି
ଝଳେ, ଝଳେ, ଝଳେ, ଝଳେରେ ।

ଏଇ କବିତାର ଲେଖକ କମ୍ୟୁନିଷ୍ଟ ନ ଥିଲେ କି ନାହାନ୍ତି । ଲେଖିଥିଲେ ଭାରତଛାଡ଼ ଆନ୍ଦୋଳନରେ ବନ୍ଦୀ ହୋଇ ରହିଥିବା ସମୟରେ, କମ୍ୟୁନିଷ୍ଟ, ସହବନ୍ଦୀମାନଙ୍କ ପ୍ରେରଣାରେ ଏବଂ ଫାସିବାଦ ବିରୋଧୀ ସଂଗ୍ରାମରେ ସାମ୍ୟବାଦୀମାନଙ୍କର ଭୂମିକାରେ ଉଦ୍‌ବୁଦ୍ଧ ହୋଇ ।

ଆଉ ସେତିକିବେଳେ ଜାତୀୟତାବାଦୀ କବିଙ୍କର ଗୀତ ଶୁଭୁଥିଲା ।
ତୁମେ କେତେ ଜଣ ଜୀବନକୁ ପାଣି
ଛଡ଼େଇ ନ ଦେଲେ ଚଳିବ କି ?
ଦଧୀଚିର ହାଡ଼ ଉଜାଡ଼ି ନ ଦେଲେ
ଦେଶର ଭାଗ୍ୟ ଫେରିବ କି ?
ଧଳା ବଦଳରେ କଳା ହେଲେ ଜୋକ,
ମେଣ୍ଟିବ କି କୋଟି ଗରିବଙ୍କ ଦୁଃଖ
ଗେରୁଆ ବସନ, ମଧୁର ବଚନ,
ତୁମ ଶୁଣି ଚା' ଭୁଲିବ କି ?

ବ୍ରହ୍ମପୁର ଜେଲ୍ । ଲକ୍ଷ୍ମଣ ନାୟକଙ୍କର ଫାଶୀ । ଜାତୀୟ ପତାକା ଉତ୍ତୋଳନ ପାଇଁ ସଂଗ୍ରାମ । ବନ୍ଦୀମାନଙ୍କ ଭିତରେ ଥିବା ରାଜନୀତିକ ମତଭେଦର ପ୍ରାଚୀର ଟଳି ପଡୁଥିଲା । ବାହାରେ ବୈଷ୍ଣବ ପଟ୍ଟନାୟକ, ଦୀନକର ମେହେଟା ସମାନ୍ତରାଳ ସରକାର ଗଠନ କରିବାର ଉଦ୍ୟମ କରୁଥିଲେ । ଅଜୟ ମୁଖାର୍ଜୀଙ୍କ ନେତୃତ୍ୱରେ (ପରେ ବାମପନ୍ଥୀମାନଙ୍କ ସହିତ ମିଳିତ ସରକାରରେ ପଶ୍ଚିମବଙ୍ଗରେ ମୁଖ୍ୟମନ୍ତ୍ରୀ) ମେଦିନୀପୁରରେ ସମାନ୍ତରାଳ ସରକାର ଗଠନ ପାଇଁ ସଂଗ୍ରାମ ଚାଲିଥିଲା । ସଂଗ୍ରାମରେ ଅଂଶ ଗ୍ରହଣ କରି ନ ଥିବା ବ୍ୟକ୍ତିମାନେ ତାତ୍ତ୍ୱିକ ବିଭେଦ ଖୋଜୁଥିଲେ ଆପଣାର ନିରାପଦ କର୍ମପନ୍ଥା ପାଇଁ ।

ଦୁଇ ଦୁଇଟା ମହାଯୁଦ୍ଧ ହୋଇଥିଲା ପୃଥିବୀକୁ ଆଉଥରେ ବାଣ୍ଟିନେବା ପାଇଁ, ସାମ୍ରାଜ୍ୟବାଦୀମାନଙ୍କ ଭିତରେ । ଏହି ଭିତରେ ଜନ୍ମଲାଭ କରିଛି ସୋଭିଏଟ୍ ୟୁନିଅନ୍, ସାମ୍ରାଜ୍ୟବାଦ ପାଇଁ ପଠା ଘା' । ସେଥିଯୋଗୁଁ ସାମ୍ୟବାଦୀ ରୁଷ୍‌କୁ ଧ୍ୱଂସ କରିବା ପାଇଁ ହିଟଲରକୁ ସବୁ ପ୍ରକାର ସାହାଯ୍ୟ । ହିଟ୍‌ଲର ସନ୍ଧିଚୁକ୍ତି ଭାଙ୍ଗିଛି, ଟ୍ରାକ୍ଟର ଜାଗାରେ ଟ୍ୟାଙ୍କ, ବବିନ ଜାଗାରେ ବୋମା ତିଆରି କରିଛି । କିନ୍ତୁ ସାମ୍ରାଜ୍ୟବାଦୀମାନେ ନୀରବ ରହିଛନ୍ତି । ବ୍ରିଟିଶ ପ୍ରଧାନମନ୍ତ୍ରୀ ଚାମ୍ବରଲେନ୍ ତା'ର ଉଦାହରଣ ମାତ୍ର । କିନ୍ତୁ ଘଟଣାଚକ୍ରରେ ସେମାନଙ୍କ ଭିତରେ ବିବାଦ ଉପୁଜିଲା । ଅସଲ ଶତ୍ରୁ ସୋଭିଏଟ୍ ୟୁନିଅନ୍ ଖସିଗଲା କିଛି ସମୟ ପାଇଁ, ଆଉ ସେଇ ଯୋଗୁଁ ଅତର୍କିତ ଭାବରେ ନାଜୀ ବାହିନୀ ଆକ୍ରମଣ କଲେ ସୋଭିଏଟ୍ ୟୁନିଅନ୍‌କୁ ।

ଯଦି ଫାସିବାଦର ବିଜୟ ହୋଇଥା'ନ୍ତା, ତା'ହେଲେ କ'ଣ ହୋଇଥା'ନ୍ତା ଆମର, କ'ଣ ହୋଇଥା'ନ୍ତା ପୃଥିବୀର ? ଏ ପ୍ରଶ୍ନ କେବଳ ଜବାହରଲାଲଙ୍କୁ ଘାରି ନ ଥିଲା, ଘାରିଥିଲା ଗାନ୍ଧିବାଦୀ ତରୁଣ ସର୍ବେଶ୍ୱର ଦାସଙ୍କୁ (ପରେ ଅଧ୍ୟାପକ) ସେ ରାଜେନ୍ଦ୍ର ପ୍ରସାଦଙ୍କୁ ଏଇ ପ୍ରଶ୍ନ ପଚାରିଥିଲେ ଭାରତଛାଡ଼ ଆନ୍ଦୋଳନର ଉପକଣ୍ଠରେ ।

ସେଥିଯୋଗୁଁ ଭାରତଛାଡ଼ ପ୍ରସ୍ତାବ ସହିତ ଏକମତ ନ ହେଲେ ହେଁ ପ୍ରାୟତଃ କମ୍ୟୁନିଷ୍ଟମାନେ ଆନ୍ଦୋଳନରେ ଯୋଗଦେଇ କାରାବରଣ କଲେ ବା ଆତ୍ମଗୋପନ କରି ଫାସିବାଦୀ ବିରୋଧୀ ସଂଗ୍ରାମକୁ ସଂଗଠିତ କଲେ ।

ଓଡ଼ିଶାରେ ଢେଙ୍କାନାଳ ମଢ଼ି ଥାନା ଦଖଲର ମହାରଥୀ ବୈଷ୍ଣବ ପଟ୍ଟନାୟକ ନେଇଗଲେ ପ୍ରଜାମଣ୍ଡଳ ଆନ୍ଦୋଳନକୁ ଆନ୍ତର୍ଜାତିକ ସ୍ତରକୁ । କମ୍ୟୁନିଷ୍ଟ ନେତା ମୋହନ ଦାସ, ପ୍ରାଣନାଥ ପଟ୍ଟନାୟକ ପ୍ରଭୃତି କାରାବରଣ କଲେ ।

ଖାଲି କମ୍ୟୁନିଷ୍ଟମାନେ କ'ଣ ଭାରତଛାଡ଼ ଆନ୍ଦୋଳନ ସହିତ ଏକମତ ହୋଇ ନ ଥିଲେ ? ରାଜଗୋପାଳଚାରୀଙ୍କଠାରୁ ଆରମ୍ଭ କରି ନୀଳକଣ୍ଠ ଦାସଙ୍କ ପର୍ଯ୍ୟନ୍ତ, ଗୋଦାବରୀଶ ମିଶ୍ର, ବିଧାନଚନ୍ଦ୍ର ରାୟଙ୍କଠାରୁ ଆରମ୍ଭକରି ନାରାୟଣ ବୀରବର ସାମନ୍ତ (କୁଜଙ୍ଗ ଗାନ୍ଧୀ ଭାବରେ ପରିଚିତ) ତ ୧୯୪୨ ଆନ୍ଦୋଳନରେ ଯୋଗଦେଇ ନ ଥିଲେ । କେଉଁଠି ଜଣେ କିଏ କମ୍ୟୁନିଷ୍ଟ କ'ଣ କରିଥିଲା ବୋଲି ସେଥିପାଇଁ ସମସ୍ତଙ୍କୁ ଦାୟୀ କରିବା ଉଚିତ ନୁହେଁ ।

ଦେଶପ୍ରେମ କାହାରି ଏକଚାଟିଆ ବା ଠିକାଦାରୀ ନୁହେଁ ।

ଆଉ ସେଇ ଆଳରେ କିଏଂ କୁଆଡ଼େ ଖସିଗଲା ସେ କଥା ମଧ୍ୟ ହେଜିବା ଉଚିତ ନୁହେଁ । ମନସ୍ତତ୍ତ୍ୱବିତ୍‌ମାନେ କହନ୍ତି ଯେ, ଜଣେ ଲୋକ କୌଣସି କଥା କରିବାକୁ ଚାହିଁଲେ ସେଥିପାଇଁ ଆଳ ଖୋଜେ । ଏହା ରାଜା ରାମଚନ୍ଦ୍ରଙ୍କ ପ୍ରତି ଯେପରି ପ୍ରଯୁଜ୍ୟ, ରାମିଆ ଭଣ୍ଡାରି ପାଇଁ ସେଇପରି ପ୍ରଯୁଜ୍ୟ ।

ରେଭେନ୍ସା କଲେଜ ସେତେବେଳେ ପ୍ରଚଣ୍ଡ ଡାଏଲଗ୍ ବା ବିତର୍କର କେନ୍ଦ୍ର ଥିଲା । କଂଗ୍ରେସ, ସୋସାଲିଷ୍ଟ ଏବଂ କମ୍ୟୁନିଷ୍ଟମାନଙ୍କ ମଧ୍ୟରେ ଏଇ ବିତର୍କ ରେଭେନ୍ସା କଲେଜକୁ ଜୀବନ୍ତ କରି ରଖିଥିଲା । କଲେଜ ୟୁନିଅନ ନିର୍ବାଚନରେ ମଧ୍ୟ ପ୍ରତିଦ୍ୱନ୍ଦ୍ୱିତା ହେଉଥିଲା ତୀବ୍ର । ରାଜନୀତିକ ଦଳର ଛାତ୍ର କର୍ମୀମାନେ ପ୍ରାର୍ଥୀ ସ୍ଥିର କରୁଥିଲେ । ନେତାମାନଙ୍କର ହସ୍ତକ୍ଷେପ ବା ଅର୍ଥଯୋଗାଣ ନ ଥିଲା । କେତେ ଟଙ୍କା ବି ଖର୍ଚ୍ଚ ହେଉଥିଲା କି ଏଇସବୁ ନିର୍ବାଚନରେ ? କେହି କାହାର ପୋଷ୍ଟର ଚିରୁ ନ ଥିଲେ । ପ୍ରତିଦ୍ୱନ୍ଦ୍ୱୀମାନଙ୍କୁ କ୍ଲାସ୍‌ରୁମ୍‌ମାନଙ୍କରେ କହିବା ପାଇଁ ସମାନ ସୁଯୋଗ ଦାବି କରୁଥିଲେ ପ୍ରାର୍ଥୀମାନେ । ନିର୍ବାଚନ ହେଉଥିଲା ପ୍ରାୟ ଅଗଷ୍ଟ ୧୪ କିମ୍ବା ୧୬ତାରିଖରେ । ନିର୍ବାଚିତ ପ୍ରାର୍ଥୀମାନଙ୍କୁ କାମ କରିବା ପାଇଁ ସମୟ ପର୍ଯ୍ୟାପ୍ତ ଥିଲା । ନିର୍ବାଚନ ଫଳ ବାହାରିବା ସହିତ ଅବସ୍ଥା ଫେରିଯାଉଥିଲା ପୂର୍ବ ସମୟକୁ ଏବଂ ତା'ପରେ ନିର୍ବାଚନ ସଂକ୍ରାନ୍ତରେ କୌଣସି ମାଡ଼ଗୋଳ ବା ମାଲିମୋକଦ୍ଦମାର ପ୍ରଶ୍ନ ଉଠୁ ନ ଥିଲା ।

ଏଇ ସମୟରେ ମନମୋହନ ମିଶ୍ରଙ୍କ ରଚିତ ନାଟକ 'କ୍ୟାବିନେଟ୍ ମିସନ' ମଞ୍ଚସ୍ଥ ହେଲା । ଝିଅପିଲାମାନେ ଅଭିନୟ କଲେ ରେଭେନ୍ସା କଲେଜ ରଙ୍ଗମଞ୍ଚରେ । ମୋର ଯାହା ମନେପଡୁଛି, କମ୍ୟୁନିଷ୍ଟ ମନମୋହନ ମିଶ୍ର ନାଟକର ଲେଖକ ଏବଂ ସୋସାଲିଷ୍ଟ ମନୋରଞ୍ଜନ ଦାସ ନାଟକର ଡାଇରେକ୍ଟର । ବୋଧହୁଏ ଶ୍ୟାମଳୀ ଲାହିଡ଼ି, ନନ୍ଦିନୀ ଶତପଥୀ ନାଟକରେ ଅଭିନୟ କରିଥିଲେ ।

ସେତେବେଳେ ବିଧାନସଭା ହେଉଥିଲା ରେଭେନ୍ସା କଲେଜ ହଲ୍‌ରେ । ବିଧାନସଭା ଅଧିବେଶନ ଚାଲୁଥିବା ବେଳେ ବିତର୍କ ଶୁଣିବା ପାଇଁ କଲେଜ ଛାତ୍ରମାନଙ୍କୁ ଅନୁମତି ମିଳୁଥିଲା ବିନା ବାଧାରେ । ଅନେକ ଉଚ୍ଚଦରର ବିତର୍କ ଶୁଣିବାର ସୁଯୋଗ ମିଳିଥିଲା । ଠିକ୍ ସେହିପରି ମନେପଡୁଛି ତୁତୁମା ଧର୍ମଘଟ କଥା ଏବଂ ବିଧାନସଭା ଆଗରେ ବିକ୍ଷୋଭ ଏବଂ ନବକୃଷ୍ଣ ଚୌଧୁରୀଙ୍କର ମନମୋହନ ମିଶ୍ରଙ୍କୁ ସାଟାୟାର୍, ମନମୋହନ ପିଲାଙ୍କୁ ଚକ୍‌ଲେଟ୍ ଦିଅ ।

କାମ କରିବା ଭିତରେ ନନ୍ଦିନୀ ଦେବୀଙ୍କ ସହିତ ଆତ୍ମୀୟତା ବଢ଼ି ଯାଇଥିଲା । ସେ ମୋ'ଠାରୁ ବଡ଼ । ସାନମାନେ ତାଙ୍କୁ ଡାକନ୍ତି କୁନିନାନୀ । କାରଣ ସେ ବ୍ରାହ୍ମଣଘର ଝିଅ । ଦିବ୍ୟସିଂହ ପାଣିଗ୍ରାହୀ ('ତୁ ମୋ ମା' ବହିର ଲେଖକ) କାଳିନ୍ଦୀଚରଣ ପାଣିଗ୍ରାହୀ ('ମାଟିର ମଣିଷ'ର ଲେଖକ) ଏବଂ ଭଗବତୀଚରଣ ପାଣିଗ୍ରାହୀ (ଓଡ଼ିଶାରେ କମ୍ୟୁନିଷ୍ଟ ପାର୍ଟିର ପ୍ରତିଷ୍ଠାତା ଏବଂ ଘିନୁଆ ଗଳ୍ପର ଲେଖକ) କେତେ ବ୍ରାହ୍ମଣ ଥିଲେ ତା' ଅଲଗା କଥା । ନନ୍ଦିନୀ ଦେବୀ କାଳିନ୍ଦୀବାବୁଙ୍କ ଜ୍ୟେଷ୍ଠା କନ୍ୟା । ମୋ ପାଇଁ କିନ୍ତୁ ସେ ଥିଲେ କୁନିଅପା ।

ଏଇ ସମୟରେ ନିଖିଳ ଉତ୍କଳ ଛାତ୍ର ସଂଘର ସମ୍ମିଳନୀ ହେଲା କଟକରେ । ଚାନ୍ଦା ସଂଗ୍ରହ ପାଇଁ ଏକ ସ୍କ୍ୱାର୍ଡ଼ ଗଠିତ ହେଲା । ଏଥିରେ ଚାରିଜଣ ଥିଲେ । ଥଟ୍ଟାରେ ସେମାନଙ୍କୁ ବ୍ୟାଙ୍କ (BANK)ବୋଲି କୁହାଯାଉଥିଲା । ସେ ଚାରିଜଣଙ୍କ ଭିତରୁ ଦୁଇଜଣ ଆଉ ଇହଧାମରେ ନାହାନ୍ତି । ସେମାନେ କ'ଣ ଚପଳତା ପ୍ରଦର୍ଶନ କରିଥିଲେ ବୋଲି କୁହାଗଲା ।

ନନ୍ଦିନୀ ଦେବୀ ନଭେମ୍ବର ୧୯ ତାରିଖରେ ଅଭିଯୋଗର ସମ୍ମୁଖୀନ ହେଲେ ପାର୍ଟି କମିଟିର । ସେ ବୈଠକ ଆହୂତ ହୋଇଥିଲା ଡାକ୍ତର ନିରୁପମା ରଥଙ୍କ ଘରେ । ବୋଧହୁଏ ବୈଦ୍ୟନାଥ ରଥ ସଭାରେ ସଭାପତିତ୍ୱ କରିଥିଲେ । ନନ୍ଦିନୀ ଦେବୀଙ୍କୁ ପାର୍ଟିରୁ ବହିଷ୍କାର କରିବାର ନିଷ୍ପତ୍ତି ହେଲା । ମୁଁ ସେତେବେଳେ ପାର୍ଟିର ଆପ୍ଲିକାଣ୍ଟ ସଭ୍ୟ । ସୁତରାଂ ମୁଁ ବୈଠକରେ ଯୋଗ ଦେବା ପାଇଁ ହକ୍‌ଦାର ନ ଥିଲି । ସେଇ ରାତିରେ ନନ୍ଦିନୀ ଦେବୀ ଆତ୍ମହତ୍ୟା ଉଦ୍ୟମ କଲେ, ସିନ୍ଦୂର ଓ ଗୁଡ଼ ମିଶାଇ ଖାଇଦେଇ । ସେ ବଂଚିଗଲେ । ବୈଦ୍ୟନାଥବାବୁ ତାଙ୍କୁ କୋଳରେ ଧରି ବସିରହିଲେ ଦିନସାରା ଡାକ୍ତରଖାନାରେ । ନନ୍ଦିନୀ ଦେବୀ ପାର୍ଟିର ନୟନପିତୁଳା । ସାହସ, କର୍ମ କ୍ଷମତା ପାଇଁ ସେ ଥିଲେ ସମସ୍ତଙ୍କର ଆଦୃତ । ପୁଣି ୰ଭଗବତୀଚରଣ ପାଣିଗ୍ରାହୀଙ୍କ ଝିଆରୀ ବୋଲି ଦରଦ ବେଶି ।

ଚପଳତା ପାଇଁ ତାଙ୍କୁ ପାର୍ଟିରୁ ବହିଷ୍କାର କରାଗଲା । ସେ ପାର୍ଟି କଣ୍ଟ୍ରୋଲ କମିଶନଙ୍କୁ ପୁନର୍ବିଚାର ପାଇଁ ନିବେଦନ କଲେ । ଭବାନୀ ସେନ ସେତେବେଳେ କଣ୍ଟ୍ରୋଲ କମିଶନର ସଭ୍ୟ । ସେ କେବଳ ପଣ୍ଡିତ ନ ଥିଲେ, ଗଭୀର ମାନସିକତା ତାଙ୍କର ବିଶେଷ ଗୁଣ । ମୋର ମନେପଡୁଛି ସୀମା ଆନ୍ଦୋଳନ ପରେ ମୁଁ ଯାଇଥିଲି କୋଲକାତା ।

ହଠାତ୍ ଭବାନୀ ସେନ ଓ ୰ ସୋମନାଥ ଲାହିଡ଼ୀ (ଦୁହେଁ ପ୍ରସିଦ୍ଧ) ମୋତେ ନିର୍ଦ୍ଦେଶ ଦେଲେ ଯେ ଆଜି ସନ୍ଧ୍ୟାରେ ସହିଦ ମିନାର ପାଖ ମଇଦାନରେ ଏକ ସଭା ହେବ ଏବଂ ଅନ୍ୟମାନଙ୍କ ଭିତରେ ମୁଁ ଭାଷଣ ଦେବି । ମୁଁ ମଇଦାନରେ ପହଞ୍ଚିଲା ବେଳକୁ ଯେ ବିପୁଳ ଜନସମାଗମ । ପାଞ୍ଚ ଦଶଲକ୍ଷ ଲୋକ ହେବେ । ଏତେ ବଡ଼ ସମାଗମ ମୁଁ ଦେଖି ନ ଥିଲି । ପଛକୁ ଅନାଇ ଦେଖେ ମଞ୍ଚ ଉପରେ ବିଭିନ୍ନ ଦଳର ଯେଉଁ ନେତାମାନେ ଉପସ୍ଥିତ ଅଛନ୍ତି ସମସ୍ତେ ବକ୍ତା ଭାବରେ ଭାରତ ବିଖ୍ୟାତ ୰ ଡକ୍ଟର ପ୍ରତାପଚନ୍ଦ୍ର ଚନ୍ଦ୍ର, ସୋମେନ ଟାଗୋର, ହେମନ୍ତ ବସୁଙ୍କ ନାମ ମନେପଡୁଛି । ସତରେ ମୁଁ ନର୍ଭସ ହୋଇଯାଇଥିଲି । ଏକେ ତ ଲୋକସଂଖ୍ୟା ! ଦ୍ୱିତୀୟରେ କହିବି କେଉଁ ଭାଷାରେ ? ଭବାନୀବାବୁ ଠିକ୍ ଠଉରାଇଲେ । ପଚାରିଲେ, ଗିରିଜା, କ'ଣ ତମେ ନର୍ଭସ୍ । ମୁଁ କହିଲି ଯେ, ନର୍ଭସ ନୁହେଁ ଯେ କେଉଁ ଭାଷାରେ କହିବି ? ସେ ସ୍ମିତହାସ୍ୟରେ କହିଲେ, ଲାଟିନ୍, ଗ୍ରୀକ୍, ଜର୍ମାନ । ମୁଁ କହିଲି ମୁଁ କ'ଣ ସେ ଭାଷାସବୁ ଜାଣେ ? ସେ କହିଲେ ଯେ ତୁମେ ଓଡ଼ିଆରେ କୁହ, ବଙ୍ଗଳାରେ କୁହ, ହିନ୍ଦୀରେ କୁହ ବା ମିଶାମିଶି କରି କୁହ । କିଛି ଭୟ କର ନାହିଁ । ଏମାନେ ସବୁ ଆମରି ଲୋକ ।

ମହତାବବାବୁ କୋଲକାତା ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଭାଷାରେ ଭାଷଣ ଦେଇଥିଲେ । ମନେ ପଡ଼ିଲା । ସାହସ ଆସିଲା । ମୁଁ ବଙ୍ଗଳାରେ ଆରମ୍ଭ କଲି । ମୁଁ ଆପଣଙ୍କୁ ଓଡ଼ିଆରେ କହିବି, ଏଇତକ ବଙ୍ଗଳାରେ କହୁଛି । କାରଣ ମୁଁ ଭଲ ବଙ୍ଗଳା କହିପାରିବି ନାହିଁ । ମୋର ଆଶା ଆପଣମାନେ ବୁଝିପାରିବେ । କାରଣ ଓଡ଼ିଆ, ବଙ୍ଗଳା, ଅସମିୟା ଭାଷା ଭିତରେ ଏତେ ସାମଞ୍ଜସ୍ୟ ଅଛି ଯେ, ଏଇ ଭାଷାର ଲୋକ ଯଦି କହେ ଯେ ମୁଁ ଆର ଭାଷା ବୁଝିପାରୁ ନାହିଁ, ତା'ହେଲେ ବୁଝାଯିବ ଯେ, ସେ ନିଜ ଭାଷା ମଧ୍ୟ ଭଲ ଭାବରେ ଜାଣେ ନାହିଁ । ହେଲା କରତାଳି । ସାହସ ବଢ଼ିଗଲା । କୋଲକାତା ହେଉଛି ବୃହତ୍ତମ ଓଡ଼ିଆ ନଗରୀ । କାରଣ ତେରଲକ୍ଷ ଓଡ଼ିଆ ଏଇ ସହରରେ ରହନ୍ତି । ପୁଣି କରତାଳି । ସାହସ ବେଶ୍ ବଢ଼ିଗଲା । କହିଲି ଓଡ଼ିଆ, ବଙ୍ଗଳା, ହିନ୍ଦୀ, ଦୁଇ ଚାରିଧାଡ଼ି । ସଭା ସରିଲା । ଭବାନୀବାବୁ ପିଠି ଥାପୁଡ଼େଇ ବେଶ୍ ଭଲ କହିଲ ତ ଆଉ ନର୍ଭସ ହେଲା ପରି ଲାଗୁଥିଲ କାହିଁକି ?

ଭବାନୀବାବୁ ନନ୍ଦିନୀ ଦେବୀଙ୍କର ଆପିଲ୍ ପାଇ ଓଡ଼ିଶା ପାର୍ଟି ସମ୍ପାଦକ ରାମକୃଷ୍ଣ ପତିଙ୍କୁ ଡକାଇଲେ କୋଲକାତା । 'କ'ଣ ଦୋଷ କଲା ନନ୍ଦିନୀ ?' ରାମକୃଷ୍ଣ ପତି ଉତ୍ତର ଦେଲେ ଚାରିତ୍ରିକ ଚପଳତା । ଭବାନୀବାବୁ ପଚାରିଲେ, ନନ୍ଦିନୀର ବୟସ କେତେ ରାମବାବୁ ? ରାମବାବୁ ଉତ୍ତର ଦେଲେ କୋଡ଼ିଏ । ଭବାନୀବାବୁ କହିଲେ କୋଡ଼ିଏ ବୟସରେ ଚପଳ ହେବ ନାହିଁ ଆଉ କ'ଣ ବୁଢ଼ୀ ହେଲେ ହେବ ? ଆଉ ଚାରିତ୍ରିକ ଦୁର୍ବଳତାରୁ କ'ଣ ଆମେ ସବୁ ଏ ବୟସରେ ମୁକ୍ତ । ଯାଆନ୍ତୁ, ତାକୁ ଟିକେ ଗେଲ କରିଦିଅନ୍ତୁ, ଆଉଁଶି ଦିଅନ୍ତୁ । କାମ ଚାଲୁ । ବହିଷ୍କାର ଆଦେଶ ପ୍ରତ୍ୟାହାର ହେଲା ।

ମୋତେ କିନ୍ତୁ ସତରେ ଏକ ସକ୍ ଲାଗିଗଲା ସେଦିନ । କାରଣ ନନ୍ଦିନୀ ଦେବୀଙ୍କ ସହିତ ମୋର ସଂପର୍କ ଥିଲା ଖୁବ୍ ନିବିଡ଼ । ଅନେକ ଗଳ୍ପ ମୁଁ ଶୁଣିଛି ସେ ବିଷୟରେ । ଆଜି ଜୀବନର ସନ୍ଧ୍ୟା ଉପଗତ । ନନ୍ଦିନୀ ଦେବୀ ମଧ୍ୟ କୁଆଡ଼େ ଶୋଇରହିଛନ୍ତି । ତାଙ୍କୁ ଦେଖିବାକୁ ଯାଇପାରୁ ନାହିଁ, ପ୍ରବଳ ଇଚ୍ଛା ଥିଲେ ବି ଏହି ବହି ଲେଖୁ ଲେଖୁ ସେ ଚାଲିଗଲେଣି ପରପାରିକୁ । ଅନେକ ଦିନ କାମ କରିଛୁ, ପୋଷ୍ଟର ଲେଖିଛୁ, ଏକାଠି ଖାଇଛୁ, ତାଙ୍କ ଘରେ ରହିଛି । କିନ୍ତୁ ଏଇ ତଥାକଥିତ ଚପଳତା ମୁଁ କେବେ ଦେଖି ନାହିଁ କି ଅନୁଭବ କରି ନାହିଁ । ତାଙ୍କର ପତଳା ଓଠରେ ଅଛି ଏକ ଟେରୁବିକ୍ ସ୍ମାଇଲ୍, ମନରେ ଅଛି ଅପୂର୍ବ ସାହସ । ଭୟ ତାଙ୍କୁ ସ୍ପର୍ଶ କରି ନାହିଁ । ଅଛି କଠୋର ପରିଶ୍ରମ କରିବାର ଦକ୍ଷତା । ସେ ସୁନ୍ଦରୀ ନୁହନ୍ତି କିନ୍ତୁ ଅସମ୍ଭବ ଫଟୋଜେନିକ୍ । ଏଇସବୁ ଗୁଣ ଯୋଗୁଁ ତାଙ୍କ ପ୍ରତି ଅନେକ ଆକୃଷ୍ଟ ହୋଇଛନ୍ତି । ତାଙ୍କ ଜୀବନରେ ବିବାହ ପର୍ଯ୍ୟନ୍ତ ଅନେକ ଘଟଣା ଘଟିଛି, ଯାହା ମୁଁ ଜାଣେ; କିନ୍ତୁ ଚପଳତା କେବେ କେମିତି ପ୍ରକାଶ ପାଇଛି ମୁଁ କହିପାରିବି ନାହିଁ । କମ୍ୟୁନିଷ୍ଟ ପାର୍ଟିରେ ଅନେକ ଅବିବାହିତ ସାଥୀ ତାଙ୍କୁ ଜୀବନ ସାଥୀ କରିବା ପାଇଁ ଆଗ୍ରହୀ ଥିଲେ ବୋଲି ମୁଁ ଶୁଣିଛି । ସେ ହସନ୍ତି, ସେ ହସ ଯେତିକି ସ୍ନେହ ସୃଷ୍ଟି କରେ, ସେତିକି ଆଦର ସୃଷ୍ଟି କରେ ଓ ସେତିକି ଭୟ ବି ସୃଷ୍ଟି କରେ । ସେ ହସର କିନାରା ପାଇବା କଷ୍ଟ । ସେଇ ହସ ଭୟ, ଭକ୍ତି ସୃଷ୍ଟି କରୁଥିଲା ଅଫିସରମାନଙ୍କ ଭିତରେ ।

ତାଙ୍କର ଆତ୍ମହତ୍ୟା ପାଇଁ ଉଦ୍ୟମ ସଂପର୍କରେ ମୋତେ ବଡ଼ିସକାଳୁ ଖବରଦେଲେ ତତ୍କାଳୀନ ଛାତ୍ରନେତା ଲୋକନାଥ ଚୌଧୁରୀ । ସେ କ୍ଷୁବ୍ଧ, କ୍ରୁଦ୍ଧ ଏବଂ ବିବ୍ରତ ।

ସେହିଦିନ କମ୍ୟୁନିଷ୍ଟ ପାର୍ଟିର ମୁଖପତ୍ର ମୁକ୍ତିଯୁଦ୍ଧ (ନା ସନ୍ଧାନ, ଠିକ୍ ମନେପଡୁନି) ମନମୋହନ ମିଶ୍ରଙ୍କ ଏକ କବିତା ପ୍ରକାଶ ପାଇଲା –

କମରେଡ୍,
ଲେନିନ ହେବା ସହଜ ନୁହେଁ,
ଅବା ଷ୍ଟାଲିନ
ଅଥଚ
ସେଥିଲାଗି ଲୋଡ଼ା ନାହିଁ
ଖାଲି ପାଠ ବ[illegible]ବା ଦିନ୍ ।
[illegible]

[illegible]ୀନ୍
ତାରି ବାଲି ପଢ଼ିଆର,
କେଉଁ କାଠ କୁଡ଼ିଆର
ଓନିପତି ତାସ୍ ଖେଳାବାଳା
ଗୁଲିଖିଆ ଚୁଟେ,

ଯାର ଆଦରଣେ ଆଜି
ଲାଲ ସେନା ଛୁଟେ
ରାଶି ରାଶି ଡୋଲାର ପର୍ବତ, ଫୁଲି ଐରାବତେ
ଧରା ତଳେ ଲୁଟେ
ଚୀନର ସେ କାଳର କେଉଁ ଏକ
ତିନିପତି ତାସଖେଳା ବାଲା
ଗୁଲିଖିଆ ଚୁଟେ ।

କିନ୍ତୁ ବୁଝାଗିନ
ବଣିକ ଫିସାଦ ପୋଥି କରି ଛିନ୍ନଭିନ,
ଯିଏ ଦେଲା ସର୍ବହରା ହାତେ, ଲାଲ ନେତ ସାଥେ
ବିପ୍ଳବର ଦର୍ଶନ ବିଜୟ
ସେଇ ବୁଝାଗିନେ
ଭୀରୁତାର ପେଚା ପୁଣି ଜାନ ବାଡ଼ିଲା ଦିନେ
ମୂର୍ଖ ସେଇ ଆଦରଣେ
ମହା ସୋଭିଏଟ୍ ହେଲା ତାର ଭୟ
ଅତର୍କିତେ ଲାଖିଗଲା କଣ୍ଠେ ତାର
ଫାସିଷ୍ଟର ଜୟ
କାରାଗାରେ ଲେଖିଗଲା ସେହୁ ନିଜ ନାମେ ରାୟ
ବିପ୍ଳବୀ ସନ୍ତ୍ରାସ ଅକ୍ଷୟ ।

ଝଡ଼ର ସାମ୍ନାରେ
ଯିଏ ନିର୍ବିକାରେ ଛିଡ଼ା ହୁଏ
ଟାଣି ନିଏ ଊର୍ଦ୍ଧ୍ୱେ ଶତ ଭଗ୍ନ ମହାରଥୀ
ଯାରେ ଦେଖି ଜାଣେ ସ୍ନେହ
ମମତା ପୀରତି
ସାଥୀ ଦୁର୍ବଳତା ଆଉ ଦୁଃଖର ଆକୃତି
ଏଡ଼ି ଦିଏ ଯିଏ,
ଗମ୍ଭୀର ମୃତ୍ୟୁର ନୂତନ ସେହି ହୁଏ
ଅମୃତର ସାଥୀ

କମରେଡ୍
ଆଗରୁ ରହିଚି କହି ସେଇଥିପାଇଁ
ସମସ୍ତେ ହଠାତ୍ ଲେନିନ ହୁଅନ୍ତି ନାଇଁ
ଅବା ଷ୍ଟାଲିନ୍,
ହେବା ଲାଗି ଲୋଡ଼ା ନାହିଁ ପାଠ, ବୟସ ବା ଦିନ୍ ।
ଝଡ଼ର ସାମ୍‌ନାରେ
ପଡ଼ିଯାଏ କ୍ଷଣାରେ
ସେଥିପାଇଁ ବୁଖାରିନ୍ ଗ୍ରନ୍ଥକୀଟ ଭୀରୁ ବିଭୀଷଣ
ସେଥିପାଇଁ ଲେନିନ, ଲେନିନ୍
ସେଥିପାଇଁ ପଥଚାରୀ ତିନିପତି ତାସ ଖେଳାବାଲା ଚୁଟେ
ନେତା ପଦେ ବରେ ମହାଚୀନ୍ ।

ଆଖିରୁ ଲୁହ ଝରିଥିଲା । କୋହ ଉଠିଥିଲା । ନନ୍ଦିନୀ ଫେରିଥିଲେ । ୧୯୫୧ ଛାତ୍ର ଆନ୍ଦୋଳନରେ ତାଙ୍କର ଆହତ ଓ ମୃତ୍ୟୁ ସମ୍ବାଦ ଛାତ୍ର ସମାଜକୁ, କଟକ ସହରକୁ ଉଦ୍‌ବେଳିତ କରିଥିଲା । ୧୯୫୨, ୧୯୫୩ ଛାତ୍ରସଂଘର ସମ୍ମିଳନୀରେ ସେ, ବ୍ରଜବନ୍ଧୁ ମିଶ୍ର, ଅଖିଳମୋହନ ପଟ୍ଟନାୟକ, ପ୍ରବୀର ପାଲିତ, ବିଶ୍ୱମ୍ଭର ସାମନ୍ତ, ଯୋଗେନ୍ଦ୍ର କୁମାର ଦାସ, ରାମଚନ୍ଦ୍ର ବକ୍ସିପାତ୍ର, ଶିବାଜି ପଟ୍ଟନାୟକ, ନୀଳକଣ୍ଠ ଦାସ ପ୍ରଭୃତିଙ୍କ ସହ ନେତୃତ୍ୱକୁ ଯାଇଥିଲେ ।

ତା'ପରେ ଭୂଦାନ । ତା'ପରେ ଇନ୍ଦିରା ଗାନ୍ଧୀ । ତା'ପରେ କଂଗ୍ରେସ, କେନ୍ଦ୍ରରେ ମନ୍ତ୍ରୀ, ଓଡ଼ିଶାର ମୁଖ୍ୟମନ୍ତ୍ରୀ ଏବଂ ପରିଶେଷରେ ସେଥିରୁ ବିଦାୟ ।

ଶ୍ରୀମା ଓ ଶ୍ରୀ ଅରବିନ୍ଦଙ୍କର ଶିଷ୍ୟା । ଦେବେନ୍ଦ୍ର ଶତପଥୀଙ୍କ ସହିତ ବିବାହ । ଧରିତ୍ରୀ କାଗଜ ।

ସେଇ ହସ ସେମିତି ରହିଛି । ବାଳ ଧଳା ହୋଇଯାଇଛି । ଚମଡ଼ା ଶୁଖି ଗଲାଣି । କ୍ଷମତାର ଶିଡ଼ିରେ ଉପରକୁ ଉପରକୁ ଉଠିଗଲା ପରେ ନୂଆ ବନ୍ଧୁ ପହଞ୍ଚିଛନ୍ତି, ନୂଆ ସହଯୋଦ୍ଧା ମିଳିଛନ୍ତି । ଅତୀତର ବନ୍ଧୁ ଭାବରେ କେବେ ଦେଖା ହୋଇଗଲେ ସେଇ ହସର ରେଖା ଆଲୋଡ଼ନ ସୃଷ୍ଟି କରେ ।

ସେ ଜେଲ୍‌ଖାନାରେ ଅନଶନ କରୁଥିଲେ । ଶଙ୍କରପୁର, ବିଡ଼ାନାସୀ, ଚାନ୍ଦିନୀଚୌକର ଶ୍ରମଜୀବୀ ମଣିଷ ସମବେତ ଗୀତ ଗାଉଥିଲେ ।

ଏକ ପରିବାର ନନ୍ଦିନୀ ଦୁଲାଳି
ଆଜି ଲକ୍ଷ ମାତା ପିତାର ଶଙ୍ଖାଳି
ଲକ୍ଷ ଜୀବନରେ ଭରି ଯେତେ ପରମାୟୁ

ଡାଳି ବଞ୍ଚାଇବୁ ତୁମ ପ୍ରାଣବାୟୁ
ତୁମ ଶୃଙ୍ଖଳା ଧମନୀରେ ବରଷୁ
ଲକ୍ଷ ନାଡ଼ିର ଲହୁକଣିକା
କହ ଜାତି ଲଲାଟର ରକ୍ତଟୀକା
କହ ମଜୁର ଚାଷୀର ମୁକ୍ତି ଶିଖା

ମନମୋହନ ମିଶ୍ର ଏହି କବିତାର ଲେଖକ । ସେତେବେଳେ ସେ ଆତ୍ମଗୋପନକାରୀ, ପଳାତକ । କାଳିଆବୋଦା ମଠ ଡେନ୍‌ରେ ସେ ଲେଖନ୍ତି, ଖାଆନ୍ତି ଏବଂ ଲୁହ ଝରାନ୍ତି ଆଖିରୁ ।

ବଇଷ୍ଣବ ବ୍ରଜ ବନମାଳୀ ଦାସ
ତୁମେ ନାମ ନୁହଁ, ତୁମେ ଇତିହାସ
ତୁଚ୍ଛ କରେ ତୁମ ପ୍ରାଣ ବଳିଦାନ
କିଏ କିଏ ସେହି ଭଣ୍ଡ ବେଇମାନ
ଜାତି ମୁକତି ଛାଉଣୀ ଯେହୁ ତେଜି
ବିଲାତର ପାଦେ ପ୍ରାଣ କଲା ଭିକ୍ଷା
କହ ଜାତି ଲଲାଟର ରକ୍ତ ଟୀକା
କହ ମଜୁର ଚାଷୀର ମୁକ୍ତି ଶିଖା

ଫେବୃୟାରୀ, ୧୯୪୮ । ପି.ସି. ଯୋଶୀ ଯାଆନ୍ତି ପାର୍ଟି ନେତୃତ୍ୱରୁ । ବି.ଟି. ରଣଦିଭେ ପାର୍ଟି ସେକ୍ରେଟାରୀ ହୁଅନ୍ତି । ପାର୍ଟି ଲାଇନ୍ ବଦଳି ଯାଏ । ବୁର୍ଜୁଆ ଗଣତାନ୍ତ୍ରିକ ବିପ୍ଳବ ସମ୍ପୂର୍ଣ୍ଣ ହୋଇଛି । ଜାତୀୟ ବୁର୍ଜୁଆର ଆଉ କୌଣସି ପ୍ରଗତିଶୀଳ ଭୂମିକା ନାହିଁ । ସଶସ୍ତ୍ର ସଂଗ୍ରାମର ବାଟ ହିଁ ଏକମାତ୍ର ବାଟ । ଶ୍ରମଜୀବୀମାନେ ହିଁ ହେବେ ଏହାର ନେତା । ଶ୍ରମଜୀବୀ ଦର୍ଶନ କୁଳାକ ନୁହେଁ, ଶ୍ରମିକମାନେ ହିଁ ହେବେ ନେତା । ସହରମାନଙ୍କରେ ଶ୍ରମଜୀବୀମାନଙ୍କର ସଶସ୍ତ୍ର ଅଭ୍ୟୁତ୍‌ଥାନ ହିଁ ବାଟ, ସମାଜବାଦ ପ୍ରତିଷ୍ଠାର ବାଟ ।

ସଂଗ୍ରାମ ଠିକ୍ । କିନ୍ତୁ ଦୁଃସାହସିକବାଦ (adventurism) ? ରେଲବାଇ ଧର୍ମଘଟର ଡାକରା, ଜୟପ୍ରକାଶ ନାରାୟଣ ଏବଂ ତାଙ୍କର ୟୁନିଅନ ଧର୍ମଘଟରୁ ଓହରିଯିବା ଯେପରି ଗୋଟିଏ ଦିଗ । ଏକାକୀ ଧର୍ମଘଟ କରିବା ପାଇଁ ଉଦ୍ୟମ ଠିକ୍, ସେଇପରି ଅନ୍ୟ ଦିଗ । ଗୋଟାଏ ଯେପରି ସୁବିଧାବାଦ ବା ସୁଧାରବାଦ, ଅପରଟା ସେଇପରି ଦୁଃସାହସିକତାବାଦ । ସୋସାଲିଷ୍ଟ ଏବଂ କମ୍ୟୁନିଷ୍ଟମାନଙ୍କ ମଧ୍ୟରେ ଏଇ ମତଭେଦ ଏବଂ ଐକ୍ୟର ଅଭାବ ଯୋଗୁଁ ପାସୋନରିଆଙ୍କ ନେତୃତ୍ୱରେ ଗଠିତ ସ୍ପେନ୍‌ର ରିପବ୍ଲିକାନ୍ ସରକାରର ପତନ ଘଟିଛି, ଜେନେରାଲ୍ ଫ୍ରାଙ୍କୋଙ୍କ ବିଜୟ ହୋଇଛି, ଜର୍ମାନୀରେ ହିଟଲରର ବିଜୟ ସମ୍ଭବ ହୋଇଛି । ପୂର୍ବ ୟୁରୋପରେ ଏହି ବିବାଦ ବହୁ ନିର୍ଦ୍ଦୋଷ ନେତାମାନଙ୍କର ହତ୍ୟାର କାରଣ ହୋଇଛି । ଶକ୍ତିଶାଳୀ ବାମପନ୍ଥୀ ଆନ୍ଦୋଳନ ସତ୍ତ୍ୱେ

ଇଟାଲୀ ଏବଂ ଫ୍ରାନ୍ସରେ ସମାଜବାଦୀ ସରକାର ପ୍ରତିଷ୍ଠା ହୋଇପାରି ନାହିଁ । ୧୯୪୨ ଭାରତଛାଡ଼ ଆନ୍ଦୋଳନର ମହାନେତ୍ରୀ ଅରୁଣା ଆସଫ୍ ଅଲ୍ଲୀ ଇଉରୋପ ଗସ୍ତ ପରେ ସୋସାଲିଷ୍ଟ ପାର୍ଟି ଛାଡ଼ି, କମ୍ୟୁନିଷ୍ଟ ପାର୍ଟିରେ ଯୋଗ ଦେଇଛନ୍ତି । କିନ୍ତୁ କମ୍ୟୁନିଷ୍ଟ ପାର୍ଟି ମଧ ତାଙ୍କୁ ବେଶିଦିନ ରଖିପାରି ନାହିଁ । କିନ୍ତୁ ସୋଭିଏଟ୍ ୟୁନିଅନର ବନ୍ଧୁ ହୋଇ ରହିଛନ୍ତି ମୃତ୍ୟୁ ପର୍ଯ୍ୟନ୍ତ ।

ପରବର୍ତ୍ତୀ କାଳରେ ଯେତେବେଳେ ସୋସାଲିଷ୍ଟ ଏବଂ କମ୍ୟୁନିଷ୍ଟମାନେ ଏକାଠି ହୋଇଛନ୍ତି, ସେମାନେ ଶ୍ରମଜୀବୀ ମଣିଷର ବହୁ ସଂଗ୍ରାମକୁ ସଫଳ କରିପାରିଛନ୍ତି । କିନ୍ତୁ ସୋସାଲିଷ୍ଟ ପାର୍ଟି ଭାଙ୍ଗି ବିଲୁପ୍ତ ହୋଇଗଲା । ପରିଶେଷରେ ସୋସାଲିଷ୍ଟମାନେ ହଜିଗଲେ ବିଭିନ୍ନ ଦଳରେ । ସେମାନଙ୍କର ସମାଜବାଦୀ ଚରିତ୍ର ମଧ ଲୋପ ପାଇଗଲା ।

ଏହାର ସ୍ୱତନ୍ତ୍ର ଉଦାହରଣ ଜର୍ଜ ଫର୍ଣ୍ଣାଡେଜ୍ । ତାଙ୍କର ଚରିତ୍ର ନାଟକୀୟ । ମିଟିଂ ପାଇଁ ଇସ୍ତ୍ରି ହୋଇ ନ ଥିବା ଲୋଚାକୋଚା ଶାର୍ଟ ତାଙ୍କ ପାଇଁ ସ୍ୱତନ୍ତ୍ର ଥାଏ ଏବଂ ନାରୀ ପାଇଁ ଦୁର୍ବଳତା ତାଙ୍କୁ ପଳାତକ ଜୀବନରେ ଯେପରି ସାହାଯ୍ୟ କରିଛି, ସରକାରକୁ ଗଲା ପରେ ସମସ୍ୟା ମଧ ସୃଷ୍ଟି କରିଛି । ଅଗ୍ନିମୁଖ ସୋସାଲିଷ୍ଟ ପରିଶେଷରେ ଭାରତୀୟ ଜନତା ପାର୍ଟିର ବାହୁ ଛାୟା ତଳେ ରହିବାକୁ ଏବଂ ନିର୍ବାଚନ ଜିତିବାକୁ ଶ୍ରେୟ ମନେ କରିଛନ୍ତି ।

ଠିକ୍ ସେଇପରି କମ୍ୟୁନିଷ୍ଟ ପାର୍ଟି ମଧ ବହୁଧା ବିଭକ୍ତ ହୋଇଛି । ମୂଳ ଅବିଭକ୍ତ କମ୍ୟୁନିଷ୍ଟ ପାର୍ଟିରୁ ଅଲଗା ହୋଇଯାଇଥିବା ମାର୍କ୍ସବାଦୀ କମ୍ୟୁନିଷ୍ଟ ପାର୍ଟି ବେଶି ଶକ୍ତିଶାଳୀ ହୋଇଛି । ସିପିଏମ୍‌ରୁ ଅଲଗା ହୋଇଯାଇ ଉଗ୍ର ବାମପନ୍ଥୀମାନେ ନକ୍ସଲବାଦୀ ନାମରେ ପରିଚିତ । ତାହା ମଧ ବିଭିନ୍ନ ଗ୍ରୁପ୍, ଗୋଷ୍ଠୀରେ ବିଭକ୍ତ । ସିପିଆଇ (ଏମ୍.ଏଲ୍), ସିପିଆଇ (ଲିବରେସନ୍), ପିପୁଲ୍‌ସ ୱାର ଗ୍ରୁପ୍, କମ୍ୟୁନିଷ୍ଟ ପାର୍ଟି (ମାଓବାଦୀ) ପ୍ରଭୃତି ବିଭିନ୍ନ ଗୋଷ୍ଠୀରେ ବିଭକ୍ତ । ସେମାନଙ୍କ ମଧରେ ଐକ୍ୟ ବହୁ ଦିନ ପର୍ଯ୍ୟନ୍ତ ନ ଥିଲା ଏବଂ ଗୋଟାଏ ଗ୍ରୁପ୍ ଅନ୍ୟ ଗ୍ରୁପ୍ ପ୍ରଥମ ନମ୍ବର ଶ୍ରେଣୀ ଶତ୍ରୁ ଭାବରେ ବିଚାର କରୁଥିଲେ । ଏପରିକି ମୋର ସହପାଠୀ ପ୍ରସିଦ୍ଧ ନକ୍ସଲବାଦୀ ନେତା ନାଗଭୂଷଣ ଅନ୍ୟ ଗୋଷ୍ଠୀର ଶରବ୍ୟ ହୋଇ ଅଳ୍ପକରେ ବଞ୍ଚିଯାଇଥିଲେ ।

ଏବେ ସେମାନଙ୍କ ମଧରୁ କିଛି ଗୋଷ୍ଠୀ ମଧରେ ଐକ୍ୟ ପ୍ରତିଷ୍ଠା ହୋଇ ମାଓବାଦୀ କମ୍ୟୁନିଷ୍ଟ ପାର୍ଟି ନାମରେ ସେମାନେ ପରିଚିତ ହେଉଛନ୍ତି । ସରକାର ସ୍ୱୀକାର କରୁଛନ୍ତି ଯେ, ସତରଟି ରାଜ୍ୟର ୧୫୬ଟି ଜିଲ୍ଲାରେ ସେମାନଙ୍କର ବିପୁଳ ପ୍ରଭାବ ରହିଛି । ପ୍ରତ୍ୟେକ ସପ୍ତାହରେ କୁଆଡ଼େ ଦୁଇଟି ଜିଲ୍ଲା ସେମାନଙ୍କ କବଳକୁ ଆସୁଛି । ଆନ୍ଧ୍ର ଝାଡ଼ଖଣ୍ଡରେ ସେମାନେ ବେଶ୍ ଶକ୍ତିଶାଳୀ । କିନ୍ତୁ ଓଡ଼ିଶାର କୋରାପୁଟ ସହର ଦଖଲ ଏବଂ ବିହାରର ଜେହାନାବାଦ କାରାଗାର ଲୁଣ୍ଠନ ସେମାନଙ୍କୁ ଆଣିଦେଇଛି ବିପୁଳ ପ୍ରଚାର । ସମ୍ବାଦପତ୍ରମାନେ କହନ୍ତି ଯେ, ଦଣ୍ଡକାରଣ୍ୟକୁ (ଆନ୍ଧ୍ର, ମଧପ୍ରଦେଶ, ଓଡ଼ିଶାର ସୀମାନ୍ତ) ସେମାନେ ମୁକ୍ତ ଅଞ୍ଚଳ ଅର୍ଥାତ୍ ଚୀନରେ ମାଓଙ୍କ ୟେନାନ୍ ଭାବରେ

ଗଢ଼ିତୋଳିବାକୁ ଚାହାନ୍ତି । ଯେନାନ୍‌ର ତିନିପଟରେ ଥିଲା ସୋଭିଏଟ୍ ୟୁନିୟନ୍ । ସେତେବେଳେ ଅସ୍ତ୍ର ମଧ୍ୟ ଏତେ ଆଧୁନିକ ନ ଥିଲା । ଦଣ୍ଡକାରଣ୍ୟ ଘେରି ହୋଇରହିଛି ତିନୋଟ ରାଜ୍ୟ ଭିତରେ ଏବଂ ଭାରତ ଏକ ଆଧୁନିକ ରାଷ୍ଟ୍ର ।

ନକ୍ସଲବାଦୀ ବା ମାଓବାଦୀଙ୍କର ଦେଶପ୍ରେମ ପ୍ରତି କାହାରି ଅବିଶ୍ୱାସ କରିବାର ନାହିଁ । ଯେତେବେଳେ ଲାଇସେନ୍ସ କୋଟା ପରମିଟ୍‌ର ରାଜ୍ ଚାଲିଛି, ଯେତେବେଳେ ଚାଲିଛି ଟେଣ୍ଡର ଫିକ୍ସିଂର ଯୁଗ, ଯେତେବେଳେ ଜନସାଧାରଣଙ୍କ ସଂପତ୍ତିକୁ ଲୁଟ୍ କରିବାକୁ, ସରକାରୀ ଜମି ହଡ଼ପ କରିବାକୁ ଏଫିସିଏନ୍ସି ବା ଦକ୍ଷତା ବୋଲି ବିଚାର କରାଯାଉଛି, ପୁଅ, ଶଳା, ରକ୍ଷିତା ଯେତେବେଳେ ଲୁଣ୍ଠନ ସମ୍ପତ୍ତିର ଯୋଗ୍ୟ ଉତ୍ତରାଧିକାରୀ ବୋଲି ବିବେଚିତ ହେଉଛନ୍ତି, ସେତେବେଳେ ସାଧାରଣ ମଣିଷ ପାଇଁ ଆପଣାର ଜୀବନକୁ ବାଜି ଲଗାଇବାଠାରୁ ବଡ଼ ଦେଶପ୍ରେମ କ'ଣ ଅଧିକା ହୋଇପାରେ ?

କିନ୍ତୁ Left wing communism ର infantile disorder ଭିତର ଦେଇ ନିଜେ ଗତି କରିଛି ମୁଁ । ଖାଲି ଭାନ୍‌ଗାର୍ଡ଼ ପ୍ରସ୍ତୁତ ହେଲେ କ'ଣ ହେବ, ଜନସାଧାରଣ ପ୍ରସ୍ତୁତ ଥିଲେ ତ ? ସାମ୍ୟବାଦର ଅଯୁତ ବିନ୍ଧାଣି ଲେନିନ୍ ଏହି କଥା ଆପଣାର ପ୍ରସିଦ୍ଧ ନିବନ୍ଧ Lefting communism an infantile disorder ରେ ଏଇକଥା ଲେଖିଛନ୍ତି । ସାମ୍ୟବାଦୀ ଆନ୍ଦୋଳନର ପ୍ରବାଦପୁରୁଷ ପି.ସି. ଯୋଶୀ ମୋତେ ଏଇକଥା କହିଥିଲେ ଜବାହରଲାଲ ନେହେରୁ ବିଶ୍ୱବିଦ୍ୟାଳୟରେ । ଦେଶରେ ବୈପ୍ଳବିକ ପରିସ୍ଥିତି ଥିଲେ ମୁଁ ଏଇ ଭଗ୍ନ ହୃଦୟରେ ଏଠି ବସି ପୋଥିଚାଷ କରୁ ନ ଥାନ୍ତି, ଏଇ ଥିଲା ତାଙ୍କର ଉକ୍ତି ସେଦିନ ।

ଏକଥା ସତ୍ୟ ଯେ, ଭାରତ ରାଜନୀତିକ ଦୃଷ୍ଟିରୁ ସିନା ସେଦିନ ବିଭକ୍ତ ହୋଇଗଲା, ଭାରତ ଓ ପାକିସ୍ତାନରେ କିନ୍ତୁ ସାମାଜିକ, ଆର୍ଥନୀତିକ ଦୃଷ୍ଟିରୁ ଭାରତ ବିଭାଜିତ ହୋଇଗଲା ପୁଣିଥରେ । ଭାରତର ସମ୍ବିଧାନରେ ଲେଖାହୋଇଛି, India, that is Bharat, ଦେଶ ସତରେ ବିଭକ୍ତ ହୋଇଗଲା ଇଣ୍ଡିଆ ଏବଂ ଭାରତରେ । ଇଣ୍ଡିଆରେ ରହିଲେ ଶତକଡ଼ା ଆଠରୁ ଦଶ ଭାଗ ଲୋକ । ସେମାନେ ସବୁ ଫାଇଦା ଉଠାଇଲେ । ଜାତୀୟ ସମୃଦ୍ଧି, ଜାତୀୟ ଆୟର ବହୁଭାଗ ସେମାନେ ଉପଭୋଗ କଲେ ।

ମନେପଡୁଛି । ରେଲବାଇ ଧର୍ମଘଟ ପାଇଁ ପ୍ରସ୍ତୁତିରେ ରେଲଲାଇନ୍ କଡ଼େ କଡ଼େ କଟକରୁ ବାଲେଶ୍ୱର ସୀମାନ୍ତ, କଟକରୁ ଆଜିର ଆନ୍ଧ୍ର (ସେ ବେଳର ମାନ୍ଦ୍ରାଜ) ରାଜ୍ୟର ସୀମାନ୍ତ ପର୍ଯ୍ୟନ୍ତ ଗ୍ୟାଙ୍ଗ କୁଲିମାନଙ୍କୁ ସଂଗଠିତ କରିବା, ଭେଟିବା, ଆଲୋଚନା କରିବା ପାଇଁ ଯାତ୍ରା ।

ବାଟରେ ଗ୍ୟାଙ୍ଗ କୁଲିମାନଙ୍କ ପାଇଁ ଉଦ୍ଦିଷ୍ଟ ଗୃହମାନଙ୍କରେ ରହଣି ସେମାନଙ୍କ ସହିତ ସମବେତ ଭୋଜନ । ମାଟିର ମଣିଷ ଲୁହାର ମଣିଷରେ ପାଲଟିଛି ବୋଲି ମୋର ଜଣେ ଆତ୍ମୀୟ କହିଲେ । ରେଲ୍‌ରାସ୍ତା କଡ଼ରେ କୌଣସି ଏକ ଲେବୁଲ୍ କ୍ରସିଂରେ ସାକ୍ଷାତ୍ ।

ଦେଖା ହୋଇଛି ଗ୍ୟାଙ୍ଗ କୁଲିମାନଙ୍କ ସହିତ, ପଏଣ୍ଟସ୍‌ମାନଙ୍କ ସହିତ, ଲେବୁଲ କ୍ରସିଂ ଜଗୁଥିବା ରେଲ୍‌ବାଇ ରକ୍ଷୀ ସହିତ । ସେମାନଙ୍କ ଭିତରେ ଅସନ୍ତୋଷ ରହିଛି, କିଛିଙ୍କ ଭିତରେ ତାହା ବିସ୍ଫୋରକ ପାଲଟିଛି, କିନ୍ତୁ ତାହା ସୀମିତ ରହିଛି କୌଣସି ଉପରିସ୍ଥ ଅଫିସର ବା ଯାଉଥିବା ମନ୍ତ୍ରୀଙ୍କ ସହିତ କଠୋର ବ୍ୟବହାରରେ । ଭୁବନେଶ୍ୱର ସହର ଗଢ଼ା ଆରମ୍ଭ ହୋଇଛି । ସହର ଭିତରକୁ ଯିବାକୁ ହେଲେ ଆଜିର ଅଶୋକନଗର କଡ଼ରେ ଥିବା ଲେବୁଲ୍ କ୍ରସିଙ୍ଗ୍ ପାର ହୋଇ ଯିବାକୁ ପଡ଼େ । ସେଇଠି ଜଣେ ଲେବୁଲ୍ କ୍ରସିଙ୍ଗ୍‌ର ରକ୍ଷୀ ସହିତ ତତ୍କାଳୀନ ପୂର୍ତ୍ତମନ୍ତ୍ରୀ ଲାଲ୍ ରଣଜିତ୍ ସିଂହ ବରିହାଙ୍କ ଗଣ୍ଡଗୋଳ ହୁଏ । ମନେହୁଏ ଲେବୁଲ୍ କ୍ରସିଙ୍ଗ୍ ବନ୍ଦ ହୋଇଯାଇଛି ଗାଡ଼ି ଆସିବା ପାଇଁ, ମନ୍ତ୍ରୀ ଯାଇ ପହଞ୍ଚିଛନ୍ତି ଏବଂ ପଏଣ୍ଟସ୍‌ମ୍ୟାନ୍‌ଙ୍କୁ କହିଛନ୍ତି ବାଟ ଖୋଲିଦେବା ପାଇଁ । ସେ ଖୋଲି ନାହିଁ । ଆପଣାର ବାନ୍ଧବୀମାନଙ୍କ ସହିତ ଯାଉଥିବା ମନ୍ତ୍ରୀ ତାକୁ ଚାପୁଡ଼ାଟାଏ ପକାଇଛନ୍ତି ଏବଂ ଉତ୍‌କ୍ଷିପ୍ତ ହାତରେ ଧରିଥିବା ଦୁଇଟି ସିଗ୍‌ନାଲ ପତାକାର ବାଡ଼ିରେ ପିଟିଛି ତାଙ୍କୁ । ଏଇଆ ଶୁଣାଯାଇଥିଲା କାହାଣୀ । ସେଇଟା ଉକ୍ତ ଲୋକର ଉତ୍‌କ୍ଷିପ୍ତ ଟେମ୍ପର ହୋଇପାରେ, ହୁଏତ ହୋଇପାରେ, କିନ୍ତୁ ଏହା ବିପ୍ଲବର ସୂଚନା ବହନ କରେ ନାହିଁ ।

ଭାନ୍‌ଗାର୍ଡ଼ ବା କର୍ମୀ ପ୍ରସ୍ତୁତ, କିନ୍ତୁ ସାଧାରଣ ଶ୍ରମିକ, ଚାଷୀ ! ସେମାନେ କେତେବାଟ ଯିବାପାଇଁ ପ୍ରସ୍ତୁତ । ତଥାପି କଟକ ସହରରେ ସଭା ହୁଏ ରୀତିମତ, ଶୋଭାଯାତ୍ରା ବାହାରେ । ଅଣଚାଶ, ପଚାଶ ମସିହା ବେଳକୁ ସଂଘର୍ଷ, ପୁଲିସ ସହିତ ସଂଘର୍ଷ ବୃଦ୍ଧିପାଇଥିଲା । ସେତେବେଳକୁ ମୁଁ ଜେଲ୍‌ରେ ବା ପଳାତକ । ମୋର ସମସାମୟିକମାନଙ୍କ ମଧ୍ୟରେ ବିଶ୍ୱମ୍ଭର ସାମନ୍ତ ସବୁଠାରୁ ବେଶି ଏବଂ ବହୁତ ଥର ଆଘାତପ୍ରାପ୍ତ ହୋଇଥିଲେ ବୋଲି ମନେପଡୁଛି । ଜେଲ୍‌ଖାନାରେ ଅନଶନ କରୁଥିଲେ ବନ୍ଦୀମାନେ, କଟକ ଜେଲ୍‌ର ବନ୍ଦୀମାନେ ୪୮ ଦିନ ଏବଂ ବ୍ରହ୍ମପୁର ଜେଲ୍‌ର ବନ୍ଦୀମାନେ ୫୬ଦିନ ଅନଶନର ରେକର୍ଡ଼ ସ୍ଥାପନ କରିଥିଲେ । ପାର୍ଟି ନେତୃତ୍ୱ କିନ୍ତୁ ନିର୍ଦ୍ଦେଶ ଦେଉଥିଲା ଯେ 'ତମମାନଙ୍କ ମଧ୍ୟରୁ ଅଧିକାଂଶ ମୃତ୍ୟୁବରଣ କରିବା ପର୍ଯ୍ୟନ୍ତ ଅନଶନ ଚାଲୁରଖ' । ଏହାର ଉତ୍ତରରେ କଟକ ଜେଲ୍ କମିଟି ଲେଖିଥିଲା ' ବାଣୀ ବନ୍ଦ କର' (stop sermination) ତେଲେଙ୍ଗାନା, କାକଦ୍ୱୀପ (ବଙ୍ଗଳା)ରେ 'ମୁକ୍ତ ଅଞ୍ଚଳ' ରଖିବାପାଇଁ କମ୍ରେଡ଼୍‌ମାନେ ବଳି ପଡୁଥିଲେ । ମିଛ, ତାହାମିଛ 'ଏନ୍‌କାଉଣ୍ଟର' ନାମରେ ବହୁ ବ୍ୟକ୍ତିଙ୍କୁ ପୁଲିସ୍ ହତ୍ୟା କରୁଥିଲା । ପରେ ତାହାକୁ 'ଏନ୍‌କାଉଣ୍ଟର' ବୋଲି ପ୍ରଚାର କରାଯାଉଥିଲା ।

ଗୋଟିଏ ଉଦାହରଣ ।

ହରିଶ୍ଚନ୍ଦ୍ର ବକ୍ସିପାତ୍ରଙ୍କର ଘର ରାୟଗଡ଼ା । ବାପା ଗୋପୀନାଥ ବକ୍ସିପାତ୍ର ଧନାଢ଼୍ୟ ଜମିମାଲିକ । ଉତ୍କଳ ସମ୍ମିଳନୀ ତଥା କଂଗ୍ରେସ ସଂଗଠନ ସହିତ ଜଡ଼ିତ । ସ୍ୱାଧୀନତା ପରେ ପରେ ପ୍ରଧାନମନ୍ତ୍ରୀ (ମୁଖ୍ୟମନ୍ତ୍ରୀ) ହରେକୃଷ୍ଣ ମହତାବ ଏବଂ ରାଜସ୍ୱ ମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ରାୟଗଡ଼ା ଗସ୍ତରେ ଯାଇଥିଲେ ଏବଂ ଗତାନୁଗତିକ ଭାବରେ ରହିଥିଲେ ସର୍କିଟ

ହାଉସ୍‌ରେ । ସକାଳୁ ସେଠାରେ ଆପଣାର ବାଡ଼ିରେ ଭରାଦେଇ ଗୋପୀନାଥ ବକ୍ସିପାତ୍ର ହାଜର "କିସ ହେ ! ଗୋପୀନାଥ ବକ୍ସିପାତ୍ର ମରିଗଲା କି ଯେ ତମେ ଆସି ସର୍କିଟ୍ ହାଉସ୍‌ରେ ରହିଗଲ । ଚାଲ, ଚାଲ, ଏଠାରୁ ଶୀଘ୍ର ଆମ ଘରକୁ" । ଦୁହିଁଙ୍କୁ ନୀରବରେ ଆସିବାକୁ ପଡ଼ିଲା ଗୋପୀନାଥ ବକ୍ସିପାତ୍ରଙ୍କ ଘରକୁ । ଏହି ଥିଲା ତାଙ୍କର ପାରିବାରିକ ପ୍ରତିଷ୍ଠା ।

ଗୋପୀନାଥ ବକ୍ସିପାତ୍ରଙ୍କ ବଡ଼ପୁଅ କୃଷ୍ଣଚନ୍ଦ୍ର ବକ୍ସିପାତ୍ର କଂଗ୍ରେସ ଦଳର (ବର୍ତ୍ତମାନ ବିଜୁ ଜନତା ଦଳର) ଏବଂ ପରେ ଜନତା ଦଳର ନେତା । ଦ୍ୱିତୀୟ ପୁତ୍ର ହରିଶ୍ଚନ୍ଦ୍ର ବକ୍ସିପାତ୍ର କିନ୍ତୁ ପାରଳାଖେମୁଣ୍ଡି କଲେଜରେ ପଢ଼ିଲାବେଳରୁ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ହୋଇଥିଲେ । ତାଙ୍କୁ ରିକ୍ରୁଟ କରିଥିଲା ଆନ୍ଧ୍ର କମ୍ୟୁନିଷ୍ଟ ପାର୍ଟି ଏବଂ ତାଙ୍କୁ ବ୍ୟବହାର କରୁଥିଲା ଡେନ୍ ଭାବରେ ଆନ୍ଧ୍ରରୁ ପଳାଇ ଆସି ଓଡ଼ିଶାରେ ଆଶ୍ରୟ ନେଉଥିବା କମ୍ୟୁନିଷ୍ଟ ପାର୍ଟିର ନେତାମାନଙ୍କର ଆଶ୍ରୟସ୍ଥଳୀ ଭାବରେ ।

ତାଙ୍କର ଗୋଟିଏ ଘର ଥିଲା ରାୟଗଡ଼ା ରେଲ୍‌ବାଇ ଷ୍ଟେସନ ପାଖରେ ଏବଂ ସେହି ଘରକୁ ଆଶ୍ରୟସ୍ଥଳ ଭାବରେ ବ୍ୟବହୃତ କରୁଥିଲେ ଆନ୍ଧ୍ର କମ୍ୟୁନିଷ୍ଟ ପାର୍ଟିର ପଳାତକ ନେତାମାନେ । ତେଲେଙ୍ଗାନାର ମୁକ୍ତ ଅଞ୍ଚଳକୁ ଘେରି ରହିଥିଲେ ଭାରତୀୟ ସେନାବାହିନୀ । ବିରାଟ ଗଣ ସଂଗଠନ, ବହୁଦିନ ରାଜାକାର୍‌ମାନଙ୍କ ସହିତ (ନିଜାମ୍‌ଙ୍କର ସଶସ୍ତ୍ର ଗୁଣ୍ଡା) ସଂଗ୍ରାମରେ ଶାଣିତ, ଅଭିଜ୍ଞ କ୍ୟାଡର୍ ଏବଂ ଗଭୀର ଅରଣ୍ୟାନୀ । ପ୍ରଗତିଶୀଳ ବୁଦ୍ଧିଜୀବୀ, ଛାତ୍ରମାନଙ୍କର ସକ୍ରିୟ ଅଂଶଗ୍ରହଣ ହେତୁ ମୁକ୍ତ ଅଞ୍ଚଳ ତିଷ୍ଠି ରହିଥିଲା ସତ୍ୟ, କିନ୍ତୁ ମୂଲ୍ୟ ଦେବାକୁ ପଡୁଥିଲା ବହୁତ ।

ସରୋଜିନୀ ନାଇଡୁଙ୍କ ଭାଇ ପ୍ରଗତିଶୀଳ ବାମପନ୍ଥୀ, ବିଶିଷ୍ଟ ଲେଖକ, ଗାୟକ, ନର୍ତ୍ତକ ଏବଂ ବକ୍ତା ହାରୀନ୍ଦ୍ର ନାଥ ଚଟ୍ଟୋପାଧ୍ୟାୟ । ଏହି ତେଲେଙ୍ଗାନା ଅଞ୍ଚଳରୁ ଏକାଧିକ ପାର୍ଲାମେଣ୍ଟ ଏବଂ ବିଧାନସଭାକୁ ନିର୍ବାଚିତ ହେଲେ । ଏହା ଭାରତବର୍ଷର ଏକ ରେକର୍ଡ଼, ଯାହା ଭାଙ୍ଗିପାରି ନାହାନ୍ତି କେହି । ଠିକ୍ ସେହିପରି ଏହି ପ୍ରଥମ ସାଧାରଣ ନିର୍ବାଚନରେ ଭାରତବର୍ଷରେ ସବୁଠାରୁ ବେଶି ଭୋଟ ପାଇ ଲୋକସଭାକୁ ନିର୍ବାଚିତ ହେଲେ ତେଲେଙ୍ଗାନା ଆନ୍ଦୋଳନର ମହାରଥୀ ରବିନାରାୟଣ ରେଡ୍ଡି । ହାରୀନ୍ଦ୍ରନାଥ ବିଦେଶ ଗଲେ ଭ୍ରମଣରେ ଏବଂ କହିଲେ ଯେ ମୁଁ ନେଇଯାଉଛି ଆଧୁନିକ ଯୁଗର ରାମାୟଣ 'ତେଲେଙ୍ଗାନାର କାହାଣୀ' । ସେ ତ୍ୟାଗ, ବଳିଦାନର ପଟାନ୍ତର ନାହିଁ କିନ୍ତୁ ଏହା ସାହସ ଥିଲା ନା ଥିଲା ଦୁଃସାହସ ?

ସେତିକିବେଳେ ଦିନେ ରାତିରେ ହରିଶ୍ଚନ୍ଦ୍ର ବକ୍ସିପାତ୍ରଙ୍କ ରେଲ୍‌ବାଇ ଷ୍ଟେସନ୍‌ରେ ଆଶ୍ରୟ ନେଲେ ପାଞ୍ଚ ଛଅଜଣ ପ୍ରଖ୍ୟାତ କମ୍ୟୁନିଷ୍ଟ ନେତା, ଯେଉଁମାନେ ଥିଲେ ଆନ୍ଧ୍ରର । ସେମାନଙ୍କ ମଧ୍ୟରୁ ଥିଲେ ଜଣେ ପ୍ରଖ୍ୟାତ ଅଧ୍ୟାପକ (ବୋଧହୁଏ ପଦାର୍ଥ ବିଜ୍ଞାନର, ନାମ ଭୁଲିଯାଇଛି) ସେଇ ରାତି ବା ତା ପର ରାତିରେ ଆନ୍ଧ୍ରରୁ ଆସିଥିବା ସଶସ୍ତ୍ର ସାମରିକ ପୁଲିସ ଆସି ସେମାନଙ୍କ ଉପରେ ଶୋଇଥିବାବେଳେ ଚଢ଼ାଉ କରି ସେମାନଙ୍କୁ

ନେଇଗଲେ ଟ୍ରେନ୍‌ରେ ଏବଂ ହତ୍ୟା କରିସାରିବା ପରେ ଜଣାଶୁଣା ରୀତିରେ ଘୋଷଣା କଲେ ଯେ 'ସଶସ୍ତ୍ର ଏନ୍‌କାଉଣ୍ଟର' ରେ ସେମାନେ ମରିଛନ୍ତି ।

କିଏ ଦେଲା ଆନ୍ଧ୍ର ପୁଲିସ୍‌କୁ ଏ ଖବର ? ସ୍ୱାଭାବିକ ଭାବରେ ହରିଶ୍ଚନ୍ଦ୍ର ବକ୍ସିପାତ୍ରଙ୍କ ଉପରେ ଏ ସନ୍ଦେହ ହେଲା । କାରଣ ସେ ହିଁ ଜାଣିଥିଲେ ସେମାନଙ୍କର ଆଶ୍ରୟସ୍ଥଳ । ହରିଶ୍ଚନ୍ଦ୍ରଙ୍କ ଉପରେ ଝୁଲିଲା ମୃତ୍ୟୁର ତରବାରି । ସେ ତ କିଛି ଜାଣି ନ ଥିଲେ, କହି ବି ପାରୁ ନାହାନ୍ତି କାହାକୁ । ସେ ରାୟଗଡ଼ାରୁ ଆସି ପାରଳାରେ ରହିଲେ, ମୃତ୍ୟୁର ଭୟ ସହିତ ।

ପ୍ରାୟ ଛଅ ମାସ ପରେ ଜଣାପଡ଼ିଲା ଯେ ଉକ୍ତ ମୃତ୍ୟୁବରଣ କରିଥିବା ଅଧ୍ୟାପକଙ୍କ ସହିତ ଆନ୍ଧ୍ରର କୌଣସି ପାର୍ଟି ସହଯୋଦ୍ଧାର ମତଭେଦ ତ ନୁହେଁ ଝଗଡ଼ା ଥିଲା ଏବଂ ସେ ହିଁ ଖବର ଦେଇଥିଲା ପୁଲିସ୍‌କୁ ସେମାନଙ୍କ ଆଶ୍ରୟସ୍ଥଳ ସମ୍ପର୍କରେ । ସେ ମଧ୍ୟ ଆସିଥିଲା ସେନାବାହିନୀ ସାଙ୍ଗରେ । ସେ ଧରିନେଇଥିଲା ପଳାତକ ଛଅଜଣଯାକ ମରିବେ ଏବଂ ତା କଥା କହିବ କିଏ ?

କିନ୍ତୁ ସାମରିକ ପୁଲିସ ଦଳ ଭିତରେ ବି ଥିଲେ ଜଣେ ଦୁଇ ଜଣ ପାର୍ଟି ସମର୍ଥକ । ସେମାନଙ୍କ ହାତରେ ଏକ ଚିଟ୍ ଦେଇଯାଇଥିଲେ ଉକ୍ତ ଅଧ୍ୟାପକ, ପଞ୍ଚମ ବାହିନୀର ପ୍ରକୃତ ପରିଚୟ ଦେଇ । ଉକ୍ତ ଚିଠି ବିଭିନ୍ନ ବାଟରେ ଘୂରି ଯଥାସ୍ଥାନରେ ପହଞ୍ଚିଲା ବହୁ ଡେରିରେ ଏବଂ ତା'ପରେ ?

ଉକ୍ତ ପଞ୍ଚମ ବାହିନୀ କର୍ମୀ ଜାଣି ନ ଥିଲେ ଯେ ତାଙ୍କର ସ୍ୱରୂପ ଧରାପଡ଼ିଯାଇଛି ବୋଲି । ଦିନେ ତାଙ୍କୁ ଡାକି ନିଆଗଲା ଏକ ଘଞ୍ଚ ଜଙ୍ଗଲର ପର୍ବତ ଶିଖରକୁ । ସେଇଠି ତାଙ୍କର ବିଚାର ହେଲା । ଅଧ୍ୟାପକଙ୍କର ଚିଟ୍ ତାଙ୍କୁ ଦେଖାଗଲା ଏବଂ ବାଧହୋଇ ସେ ମାନିଗଲେ ସବୁ ଦୋଷ । ତାଙ୍କୁ ଶେଷ କରିଦେଇସାରିଲା ପରେ, ପୁଣି ଖୋଜାଗଲା ହରିଶ୍ଚନ୍ଦ୍ର ବକ୍ସିପାତ୍ରଙ୍କୁ । ସେ ଯାଇ ପାରଳାରେ । ସେଠାକୁ ଲୋକ ପଠାଗଲା ଏବଂ ତାଙ୍କୁ ନିର୍ଦ୍ଦୋଷ ବୋଲି ଘୋଷଣା କରାଗଲା ।

ସେ ଆଉ ଆନ୍ଧ୍ର କମ୍ୟୁନିଷ୍ଟ ପାର୍ଟିରେ ନ ରହି ଓଡ଼ିଶା କମ୍ୟୁନିଷ୍ଟ ପାର୍ଟିକୁ ଫେରିଲେ । ସେଇଯୋଗୁଁ ସେ ୧୯୫୩-୫୪ ମସିହା ପର୍ଯ୍ୟନ୍ତ ଖୋଲାଖୋଲି କାମ କରିପାରି ନ ଥିଲେ ଓଡ଼ିଶାରେ, କମ୍ୟୁନିଷ୍ଟ ପାର୍ଟିରେ ବା ଛାତ୍ର-ଯୁବ ଆନ୍ଦୋଳନରେ ।

ଭାରତୀୟ କମ୍ୟୁନିଷ୍ଟପାର୍ଟିର ତଥାକଥିତ ରଣଦିଭେ ନୀତିର ବିପର୍ଯ୍ୟୟ ଆନ୍ତର୍ଜାତିକ କମ୍ୟୁନିଷ୍ଟ ଆନ୍ଦୋଳନରେ ଉଦ୍‌ବେଗ ସୃଷ୍ଟି କଲା । ଫରାସୀ କମ୍ୟୁନିଷ୍ଟ ପାର୍ଟିର ନେତା ଫରାସୀ ପାର୍ଟି ଜାନସଦୀ ବିରୋଧୀ ସଂଗ୍ରାମର ପ୍ରବାଦ ପୁରୁଷ ମରିସ୍ ଥୋରେ ଏକ ଚିଠି ଦେଲେ ରଣଦିଭେଙ୍କୁ । ସେ ଚିଠି ନେଇ ଆସିଥିଲେ ଭାରତୀୟ ବିଜ୍ଞାନ କଂଗ୍ରେସକୁ ବୈଦେଶିକ ପ୍ରତିନିଧି ଭାବରେ ଆସିଥିବା ନୋବେଲ୍ ପୁରସ୍କାର ବିଜେତା ଫ୍ରେଡ଼ରିକ୍ ଜୁଲିଏଟ୍ କ୍ୟୁରି । ସେ ଓ ତାଙ୍କର ସ୍ତ୍ରୀ ଜୁଲିଏଟ୍ କ୍ୟୁରି (ମ୍ୟାଡାମ୍ କ୍ୟୁରିଙ୍କ କନ୍ୟା)

ଆସିଥିଲେ ବୈଦେଶିକ ପ୍ରତିନିଧି ଭାବରେ । ଦୁହେଁ ଫରାସୀ କମ୍ୟୁନିଷ୍ଟ ପାର୍ଟିର ସଭ୍ୟ ଥିଲେ । ଫ୍ରେଡରିକ୍ ଜୁଲିୟଟ୍ କ୍ୟୁରି ଫରାସୀ କମ୍ୟୁନିଷ୍ଟ ପାର୍ଟିର କେନ୍ଦ୍ର କମିଟିର ସଭ୍ୟ । ସେ ଆଣିଥିଲେ ଚିଠି । ରଣଦିଭେ ସେ ଚିଠିକୁ ଗ୍ରହଣ କଲେ କିନ୍ତୁ ଫ୍ରେଡ୍‌ରିକ୍ ଜୁଲିୟଟ୍ କ୍ୟୁରିଙ୍କ ସମ୍ପର୍କରେ କହିଲେ ଯେ, ସେ ତ ବୁଦ୍ଧିଜୀବୀ ଏବଂ ମୁଁ ହେଉଛି ଶ୍ରମଜୀବୀ ନେତା । ମୋତେ କ'ଣ ସେ ବୁଦ୍ଧି ଦେବେ କେଉଁଟା ଭୁଲ୍, କେଉଁଟା ଠିକ୍ । ଠିକ୍ ସେଇପରି ଚୀନ୍ କମ୍ୟୁନିଷ୍ଟ ପାର୍ଟି ମଧ୍ୟ ଚାହିଁଥିଲା କଥାବାର୍ତ୍ତା । ନିର୍ଦ୍ଦିଷ୍ଟ ଜାହାଜ ଲାଗି ସାରିଥିଲା । ନିର୍ଦ୍ଦିଷ୍ଟ ପାସ୍ ମଧ୍ୟ ପଠା ସରିଥିଲା । କିନ୍ତୁ ସେଇ ଯୁକ୍ତି । ମାଓ ଜଣେ ସଫଳ ସାମ୍ୟବାଦୀ ନେତା । କିନ୍ତୁ ସେ ହେଉଛନ୍ତି ମୁଖ୍ୟତଃ ଚାଷୀ ନେତା । ସେ କ'ଣ ଦିଗ୍‌ଦର୍ଶନ ଦେବେ ଶ୍ରମିକ ଶ୍ରେଣୀର ନେତାଙ୍କୁ ।

ବାଧ୍ୟ ହୋଇ କୋମିନୋ ଫର୍ମ ଆପଣାର (for lasting peace, for a peoples democracy ମୁଖପତ୍ରରେ ହସ୍ତକ୍ଷେପ କଲା । The trust of the Indian communism) ଶିରୋନାମାରେ ଗୋଟିଏ ଛୋଟିଆ ପାରାଗ୍ରାଫ୍‌ରେ ଉଲ୍ଲେଖ ଥିଲା ଯେ, ପ୍ରସ୍ତାବିତ ସାମ୍ମୁଖ୍ୟରେ ଜାତୀୟ ବୁର୍ଜୁଆ ମଧ୍ୟ ସାମିଲ ହେବ । ଏଥିରୁ ସ୍ପଷ୍ଟ ଯେ, ବୁର୍ଜୁଆ ଗଣତାନ୍ତ୍ରିକ ବିପ୍ଳବ ସରି ନାହିଁ ଏବଂ ଜାତୀୟ ବୁର୍ଜୁଆର ତଥାପି ପ୍ରଗତିଶୀଳ ଭୂମିକା ଅଛି ।

ତଥାପି ଭାରତୀୟ ନେତୃତ୍ୱ ଗ୍ରହଣ କରିବାକୁ ନାରାଜ । ପାର୍ଟିର ବିପର୍ଯ୍ୟୟ ବିଦ୍ରୋହ ସୃଷ୍ଟି କରିଛି । ଓଡ଼ିଶାରେ ବିଜୟଚନ୍ଦ୍ର ଦାସ ସମ୍ବଲପୁର ଜେଲ୍‌ରୁ ଆପଣାର ମତଭେଦ ଜଣାଇ ସାରିଲେଣି । ବୈଦ୍ୟନାଥ ରଥ ପଳାତକ ଜୀବନରୁ ବାହାରି ଆସି ବିଧାନସଭାରେ ଯୋଗଦେଲେଣି । ଏହା ତ କେବଳ ଓଡ଼ିଶାର ଚିତ୍ର । ଭାରତରେ ଅନ୍ୟତ୍ର ମଧ୍ୟ ଏହି ମତଭେଦ ଦେଖାଯାଇଥିଲା । ପ୍ରସିଦ୍ଧ କମ୍ୟୁନିଷ୍ଟ ନେତା ମୋହନକୁମାର ମଙ୍ଗଳମ୍ ତେଲେଙ୍ଗାନା ଭିତରୁ ଖସିଆସି ମାନ୍ଦ୍ରାଜରେ ଆତ୍ମପ୍ରକାଶ କରି ମତଭେଦ କଥା ପ୍ରକାଶ କଲେ ।

ବିଟି ରଣଦିଭେଙ୍କ ନୀତି ପ୍ରତ୍ୟାହୃତ ହେଲା । ରାଜେଶ୍ୱର ରାଓ ପାର୍ଟିର ନୂଆ ସମ୍ପାଦକ ହେଲେ ଏବଂ ସହରରେ ସଶସ୍ତ୍ର ଅଭ୍ୟୁତ୍ଥାନ ଏବଂ ଗ୍ରାମାଞ୍ଚଳରେ ସିଭିଲ୍ ଓ୍ୱାରର ନୀତି ହେଲା ପାର୍ଟିର ନୂଆ ନୀତି । ବିଜୟ ଦାସ କହିଲେ ଯେ ରଣଦିଭେଙ୍କ ନୀତି ବୁଝି ହେଉଥିଲା, ରାଜେଶ୍ୱର ରାଓଙ୍କ ନୀତି ବୁଝି ବି ହେଉ ନାହିଁ । କାରଣ ଗ୍ରାମାଞ୍ଚଳରେ ସିଭିଲ୍ ଓ୍ୱାର୍ କହିଲେ ତେଲେଙ୍ଗାନା, କାକଦ୍ୱୀପ ଏବଂ ଉତ୍ତରପ୍ରଦେଶର ଆଜମ୍‌ଗଡ଼ କଥା କୁହାଯାଉଥିଲା । କିନ୍ତୁ ଆଜମଗଡ଼ ଏବଂ କାକଦ୍ୱୀପରେ ସଶସ୍ତ୍ର ଅଭ୍ୟୁତ୍ଥାନ ଖୁବ୍ କମ୍ ସମୟ ପାଇଁ ତିଷ୍ଠି ପାରିଥିଲା । ଆଉ ତେଲେଙ୍ଗାନାରେ ସଂଗ୍ରାମ ଖୁବ୍ ରକ୍ତାକ୍ତ ଓ ଭୟାନକ ପାଲଟିଥିଲା ।

କିନ୍ତୁ ପାର୍ଟିର ନିଷ୍ପତ୍ତିକୁ କାର୍ଯ୍ୟକାରୀ କରିବା ପାଇଁ ବହୁ ଯୁବକ ତଥାପି ତିଆର ଥିଲେ । ମୁଁ ପଳାତକ ହେଲି । ସେଇଦିନ ଅଧ୍ୟାପକ କୃଷ୍ଣପ୍ରସାଦ ପଟ୍ଟନାୟକ ମଧ୍ୟ ପଳାତକ

ହେଲେ । ସେଦିନ ଆମେ ପଳାତକ ନ ହୋଇଥିଲେ ପାଞ୍ଚଦିନ ପରେ ପୁଲିସ୍ ପୁଣି ବାନ୍ଧି ନେଇଥା'ନ୍ତା । ମୋର ସହକର୍ମୀ କଲ୍ୟାଣ ମଜୁମ୍‌ଦାର ପଳାତକ ହେବା ପାଇଁ ଶଙ୍କରପୁର ଗ୍ରାମ ଭିତରେ ପଶି ସାରିଥିଲେ କିନ୍ତୁ କେତେକ କାରଣରୁ ସେ ଫେରି ଆସିଥିଲେ ଏବଂ ଆଉ ନିଜକୁ ଗୋପନ କରିବାକୁ ସେ ରାଜି ହେଲେ ନାହିଁ । ସେ ଗିରଫ ହୋଇଗଲେ ଆମେ ଦୁଇଜଣ ଆତ୍ମଗୋପନ କରିବାର ପାଞ୍ଚଦିନ ପରେ ।

ଅଧ୍ୟାପକ କୃଷ୍ଣପ୍ରସାଦ ପଟ୍ଟନାୟକ ରହିଲେ କଟକ ସହରରେ ଥିବା ପାର୍ଟିର ଗୁପ୍ତ କେନ୍ଦ୍ର ଅଫିସ୍‌ରେ । ମୁଁ ଚାଲିଲି ଦୁର୍ଗା ମହାନ୍ତିଙ୍କ ସାଙ୍ଗରେ ପଟିଆ କିଲାକୁ, କଲ୍ୟାଣପୁର ଗ୍ରାମକୁ । ପରବର୍ତ୍ତୀ ସମୟରେ କେଶବ ଦାସ ଯୋଗଦେଲେ । ପଟିଆ କିଲା ଥିଲା କମ୍ୟୁନିଷ୍ଟ ପାର୍ଟିର ଅଭେଦ୍ୟ ଦୁର୍ଗ । ସହଜରେ ପୋଲିସ୍ ଏ ଭିତରକୁ ପଶୁ ନ ଥିଲେ । ପଶିଲାବେଳେ ବହୁସଂଖ୍ୟକ ପୋଲିସ୍ ଆବଶ୍ୟକ ହେଉଥିଲା । ଠିକ୍ ସେଇପରି ଶଙ୍କରପୁର । ସେତେବେଳେ ଲିଙ୍କରୋଡ୍ ହୋଇ ନାହିଁ, କାଠଯୋଡ଼ି ପଥରବନ୍ଧର ରିଙ୍ଗ୍‌ରୋଡ୍ ଖାନନଗର ଶ୍ମଶାନ ପରଠାରୁ ପ୍ରାୟ ଚଲାବାଟ ଥିଲା । ଏଇ ବିରାଟ ଅଞ୍ଚଳ ବାଇଗଣ କିଆରି, କିଆବୁଦା ଏବଂ ତମ୍ପ ସାପରେ ଭର୍ତ୍ତି । ସେ ମାନଚିତ୍ର ବର୍ତ୍ତମାନ କଳ୍ପନା କରାଯାଇପାରିବ ନାହିଁ ।

ସେଇ ଯୋଗୁଁ ଆତ୍ମଗୋପନ କରିବାକୁ ହେଲେ ପ୍ରଥମେ ଶଙ୍କରପୁର ଭିତରେ ପ୍ରବେଶ କରିବାକୁ ପଡ଼େ ଏବଂ ତାକୁ ଡାଲ କରି ଯିବାକୁ ହୁଏ ଅନ୍ୟତ୍ର । କେତେ ବନ୍ଧୁ ଜୀବିତ ଅଛନ୍ତି, କେତେ ଚାଲିଗଲେଣି । ସେମାନଙ୍କର ଘର ପାର୍ଟି ଓ ଡେନ୍ (Den) ମାନେ ଗୁପ୍ତରେ ରହିବା ସ୍ଥାନ ଭାବରେ ବ୍ୟବହାର କରୁଥିଲା । ପ୍ରଫେସରପଡ଼ା, ଷ୍ଟେସନବଜାର, କାଳିଆବୋଦା, ବିଡ଼ାନାସୀ, ତୁଳସୀପୁର ବିଭିନ୍ନ ଅଞ୍ଚଳରେ ଏସବୁ ବିକ୍ଷିପ୍ତ ଥିଲା ।

ଆତ୍ମଗୋପନ କରିଥିବା କାଳର କଥା ପରେ କହିବି । କମ୍ୟୁନିଷ୍ଟ ପାର୍ଟିର ନୀତି ପରିବର୍ତ୍ତନ ହେଲା ।

ନୀତି ପରିବର୍ତ୍ତନ ହେଲା ପାର୍ଟି ଭିତରେ ଆତ୍ମସମୀକ୍ଷା ଏବଂ ଉଦ୍‌ବେଳନ ଯୋଗୁଁ । ଅଜୟ ଘୋଷ ପାର୍ଟି ସମ୍ପାଦକ ନିର୍ବାଚିତ ହେଲେ । ପାର୍ଟି ଫେରିଲା ପାର୍ଲ୍ୟାମେଣ୍ଟାରୀ ଗଣତନ୍ତ୍ରର ନୀତିକୁ ।

ଏ କଥା ଲେଖିବାର ସ୍ୱାତନ୍ତ୍ର୍ୟ ଏଇ ଯୋଗୁଁ ଯେ କମ୍ୟୁନିଷ୍ଟ ପାର୍ଟି ବାହ୍ୟ ଶକ୍ତି ଦ୍ୱାରା ପରିଚାଳିତ ହେଉଛି ବୋଲି ଅଭିଯୋଗ ହୋଇଛି । ତା' ହୋଇଥିଲେ ବୋଧହୁଏ କମ୍ୟୁନିଷ୍ଟ ପାର୍ଟି ଆପଣାର ଶକ୍ତିକୁ ଏପରି ବ୍ୟବହାର କରି ନ ଥା'ନ୍ତା । ପରିବର୍ତ୍ତନ ଯାହା ଘଟିଛି ନିଜ କ୍ୟାଡରମାନଙ୍କ ଦ୍ୱାରା । ଆଗରୁ କହିଛି ଯେ ଫରାସୀ ଚୀନ୍ କମ୍ୟୁନିଷ୍ଟ ପାର୍ଟିର ଉପଦେଶକୁ ପାର୍ଟି ନେତୃତ୍ୱ ଗ୍ରହଣ କରି ନାହିଁ ।

ଏପରି କି ଏକ ସ୍ତରରେ ଭାରତୀୟ କମ୍ୟୁନିଷ୍ଟ୍ ପାର୍ଟିର ଏକ ପ୍ରତିନିଧି ଦଳ ଷ୍ଟାଲିନ୍‌ଙ୍କୁ ସାକ୍ଷାତ୍ କରିବାକୁ ଗଲେ ଗୁପ୍ତରେ ସୋଭିଏଟ୍ ରୁଷ୍ । ଷ୍ଟାଲିନ୍ ସେତେବେଳେ

ବିଶ୍ୱ କମ୍ୟୁନିଷ୍ଟ୍ ପାର୍ଟିର ସର୍ବୋଚ୍ଚ ନେତା । ସୋଭିଏଟ୍ କମ୍ୟୁନିଷ୍ଟ୍ ପାର୍ଟିର ବିଂଶ କଂଗ୍ରେସ ହେବାକୁ ଡେରି ଅଛି । ସେମାନେ ଗଲେ, ଶୁଣିଲେ । କେତେ ପ୍ରଭାବିତ, ପରିଚାଳିତ ହେଲେ ତାଙ୍କ କଥାନୁସାରେ ?

ଷ୍ଟାଲିନ୍‌ଙ୍କ ସହିତ ଆପଣାର ମତାନୈକ୍ୟ ହୁଏତ ସେମାନେ ପ୍ରକାଶ କଲେ ନାହିଁ । କିନ୍ତୁ ତାଙ୍କ ସହିତ ଏକମତ ବି ହେଲେ ନାହିଁ । ଷ୍ଟାଲିନ୍‌ଙ୍କ ସହିତ ମତର ଭେଦକୁ ଯେଉଁମାନେ ଜଣାଇପାରିଥାନ୍ତେ ସେମାନେ ବି ନ ଜଣାଇବାରୁ ବେଶି ସମସ୍ୟା ଉପୁଜିଲା । ବିଶେଷତଃ ଦ୍ୱିତୀୟ ମହାଯୁଦ୍ଧ ପରେ ଫାସିବାଦର ପରାଜୟ ପରେ ଏହି ମତପାର୍ଥକ୍ୟକୁ ଜଣାଇବାରେ କୌଣସି ଅସୁବିଧା ନ ଥିଲା । ବିଶେଷତଃ ଫରାସୀ କମ୍ୟୁନିଷ୍ଟ ପାର୍ଟି ଓ ତାହାର ନେତା ମରିସ୍ ଥୋରେ ଇଟାଲୀ କମ୍ୟୁନିଷ୍ଟ ପାର୍ଟି ଓ ତାହାର ନେତା ଟୋଗଲିଆଟି ଏହା କରିପାରିଥାନ୍ତେ । ମାର୍ଶାଲ ଟିଟୋଙ୍କ ମତଭେଦ ଯେପରି ବ୍ୟକ୍ତିଗତ ସ୍ତରକୁ ଚାଲିଗଲା, ତାହା ଯାଇ ନ ଥାନ୍ତା ।

ଷ୍ଟାଲିନ୍‌ଙ୍କ ଅପେକ୍ଷା ଟ୍ରଟ୍‌ସ୍କି ଖୁବ୍ ବଡ଼ ପଣ୍ଡିତ ଥିଲେ, ଏଥିରେ କୌଣସି ସନ୍ଦେହ ନାହିଁ । ତାଙ୍କର ସ୍ଥାନ ମଧ୍ୟ ଥିଲା ଲେନିନଙ୍କ ପରେ ଦ୍ୱିତୀୟ ସ୍ଥାନରେ । ସୋଭିଏଟ୍ ୟୁନିଅନ୍‌ର ପ୍ରଥମ ପ୍ରକାଶନମାନଙ୍କରେ ଲେନିନ ଟ୍ରଟସ୍କି ଏବଂ ଷ୍ଟାଲିନ୍ ବୋଲି ଲେଖାଯାଉଥିଲା । କିନ୍ତୁ ଷ୍ଟାଲିନ୍‌ଙ୍କର ସଂଗଠନ ସହିତ ସଂପର୍କ ଏବଂ ସାଙ୍ଗଠନିକ ଶକ୍ତି ହିଁ ତାଙ୍କୁ ଆଣି ଦେଇଥିଲା ସାଫଲ୍ୟ । ସେ ବଢ଼ିଥିଲେ ଷଡ଼ଯନ୍ତ୍ର ଭିତରେ । ପ୍ରଥମେ ଜାରସାହୀଙ୍କୁ ଧ୍ୱଂସ କରିବା ପାଇଁ ବହୁ ଷଡ଼ଯନ୍ତ୍ର ହୋଇଛି । ଠିକ୍ ସେଇପରି ସୋଭିଏଟ୍ ବିପ୍ଳବରେ ମଧ୍ୟ ଶିଶୁ ସୋଭିଏଟ୍ ରାଷ୍ଟ୍ରକୁ ଭାଙ୍ଗିବା ପାଇଁ ବହୁ ଷଡ଼ଯନ୍ତ୍ର ହୋଇଛି । ଷ୍ଟାଲିନ୍ ବଢ଼ିଛନ୍ତି ତାହାରି ଭିତରେ । ମତଭେଦକୁ ସେ ଶତ୍ରୁତା ବୋଲି ଧରିନେଇଛନ୍ତି । ତାଙ୍କର ଏଇ ଚରିତ୍ରକୁ ସୋଭିଏଟ୍ ୟୁନିଅନ୍ ଭିତରେ ଯେପରି ପ୍ରତିରୋଧ କରାଯାଇପାରି ନାହିଁ ଠିକ୍ ସେଇପରି ଆନ୍ତର୍ଜାତିକ କମ୍ୟୁନିଷ୍ଟ ନେତାମାନେ ତାହାର ପ୍ରତିରୋଧ କରି ନାହାନ୍ତି । କାଳେ ଆପଣାର କାର୍ଯ୍ୟ ପୃଥିବୀର ପ୍ରଥମ ସାମ୍ୟବାଦୀ ରାଷ୍ଟ୍ରର କ୍ଷତି ସାଧନ କରିବ, ସେଇଥିପାଇଁ ଅନେକ ଆପଣାର ଭିନ୍ନ ମତକୁ ପ୍ରକାଶ କରି ନାହାନ୍ତି । ଅପରପକ୍ଷରେ ଶିକ୍ଷା, ଶିଳ୍ପ, କୃଷିରେ ପଶ୍ଚାତ୍‌ପଦ ରୁଷ ପାଲଟିଯାଇଛି ଆମେରିକାକୁ ଆହ୍ୱାନ ଦେଲା ଭଳି ଶକ୍ତି । ଦ୍ୱିତୀୟ ମହାଯୁଦ୍ଧରେ ଫାସିବାଦର ପରାଜୟ ଷ୍ଟାଲିନ୍‌ଙ୍କୁ ପ୍ରବାଦ ପୁରୁଷରେ ପରିଣତ କରିଛି ।

ଷ୍ଟାଲିନ୍‌ଙ୍କ ମୃତ୍ୟୁ ପରେ ଭାରତୀୟ ପାର୍ଲ୍ୟାମେଣ୍ଟରେ ଶୋକ ପ୍ରସ୍ତାବ ଆଗତ କରି ଜବାହରଲାଲ କହିଲେ ଯେ, ଷ୍ଟାଲିନ୍ ରୁଷର ପ୍ରଧାନମନ୍ତ୍ରୀ କି ରାଷ୍ଟ୍ରପତି ନ ଥିଲେ, କିନ୍ତୁ ଚଳନ୍ତି ସମୟରେ ଯଦି କୌଣସି ଲୋକର ନାମରେ ପୃଥିବୀର ବିଭିନ୍ନ ଦେଶରେ ଲୋକ ମରିବା ପାଇଁ ପ୍ରସ୍ତୁତ ତା'ହେଲେ ସେ ହେଉଛନ୍ତି ଷ୍ଟାଲିନ୍ ।

ଷ୍ଟାଲିନ୍ ଆସନ୍ତି ତେହେରାନ ଦ୍ୱିତୀୟ ମହାଯୁଦ୍ଧ ସମୟରେ ତ୍ରିଶକ୍ତି ଶୀର୍ଷ ସମ୍ମିଳନୀରେ ଯୋଗଦେବା ପାଇଁ । ପୂର୍ବଦିନ ରାତ୍ରିରେ ଭୀଷଣ ବିତର୍କ ହୋଇଯାଇଛି ଦ୍ୱିତୀୟ ରଣସାମ୍ମୁଖ୍ୟ

ଖୋଲିବା ସଂପର୍କରେ ବିଶେଷତଃ ଷ୍ଟାଲିନ୍ ଏବଂ ଚର୍ଚ୍ଚିଲଙ୍କ ଭିତରେ । ଚର୍ଚ୍ଚିଲ ଦ୍ୱିତୀୟ ସାମ୍ମୁଖ୍ୟ ଖୋଲିବା ପାଇଁ ସମ୍ମତ ନୁହନ୍ତି । କାରଣ ତାଙ୍କ ମତରେ ଇମିତି ତ ଇଉରୋପ କବଳିତ ହୋଇସାରିଛି ଫାସିବାଦ ଦ୍ୱାରା । ବର୍ତ୍ତମାନ ମୁଖ୍ୟ ଯୁଦ୍ଧ ଚାଲିଥାଉ ଫାସିବାଦୀ ଶକ୍ତିର ସୋଭିଏଟ୍ ୟୁନିଅନ ବିରୋଧରେ । ଦ୍ୱିତୀୟ ସାମ୍ମୁଖ୍ୟ ଖୋଲିଲେ ଫାସିବାଦୀମାନଙ୍କୁ ଏପଟରେ ବି ଯୁଦ୍ଧ କରିବାକୁ ପଡ଼ିବ ଏବଂ ସୋଭିଏଟ୍ ୟୁନିଅନ୍ ଉପରେ ଚାପା କମିଯିବ । ରୁଜଭେଲ୍ଟ (ଆମେରିକାର ରାଷ୍ଟ୍ରପତି) ଏହା ସହିତ ଏକମତ ନ ଥିଲେ । ଦ୍ୱିତୀୟ ସାମ୍ମୁଖ୍ୟ ଖୋଲିଲା କିନ୍ତୁ ବିଳମ୍ବରେ, ଷ୍ଟାଲିନ୍‌ଗ୍ରାଡ୍ ଯୁଦ୍ଧ ପରେ ।

ରାତିରେ ହୋଇଯାଇଛି ତିକ୍ତତା । ସକାଳୁ ତିନିହେଁ ବସିଛନ୍ତି ଗମ୍ଭୀର ମୁହଁରେ । ଅବସ୍ଥାକୁ ସହଜ କରିଦେବା ପାଇଁ ରୁଜ୍‌ଭେଲ୍ଟ ଆରମ୍ଭ କଲେ ଗଳ୍ପ, ମିଷ୍ଟର ଚର୍ଚ୍ଚିଲ୍ । ମୁଁ କାଲି ରାତିରେ ଏକ ଅଦ୍‌ଭୁତ ସ୍ୱପ୍ନ ଦେଖିଲି । ଭଗବାନ୍ ମୋତେ ସମଗ୍ର ବ୍ରିଟିଶ ସାମ୍ରାଜ୍ୟ ଉପରେ ରାଜତ୍ୱ କରିବା ପାଇଁ ନିର୍ଦ୍ଦେଶ ଦେଉଛନ୍ତି । ଚର୍ଚ୍ଚିଲ ଆପଣାର ଚୁରୁଟ୍‌ରୁ କଳେ ଧୂଆଁ ଛାଡ଼ି କହିଲେ, କି ଆଶ୍ଚର୍ଯ୍ୟ କଥା, ମିଷ୍ଟର ରୁଜ୍‌ଭେଲ୍ଟ, ମୁଁ ବି ସେଇ ସ୍ୱପ୍ନ ଦେଖିଲି ଯେ ଭଗବାନ୍ ମୋତେ ସାରା ପୃଥିବୀ ଉପରେ ଶାସନ କରିବାକୁ ପଠାଇଛନ୍ତି । ଦୁହେଁ ଅନେଇଲେ ଷ୍ଟାଲିନ୍‌ଙ୍କୁ । ଷ୍ଟାଲିନ୍ ଗମ୍ଭୀର ମୁହଁରେ କିଛି ସମୟ ଚିନ୍ତାକରି ଆପଣା ପାଇପ୍‌ରୁ ଧୂଆଁ ଛାଡ଼ି କହିଲେ, ମୁଁ ତ କାହାକୁ ଏପରି କହିଲା ପରି ମନେହେଉ ନାହିଁ !

ହସର ରୋଳ ଖେଳିଗଲା ଏବଂ କଥା ଆରମ୍ଭ ହେଲା ।

ଷ୍ଟାଲିନ୍‌ଙ୍କୁ ଭେଟିବା ଭାରତର ରାଷ୍ଟ୍ରଦୂତ ବିଜୟଲକ୍ଷ୍ମୀ ପଣ୍ଡିତଙ୍କ ପକ୍ଷରେ ସମ୍ଭବ ହୋଇ ନ ଥିଲା । କିନ୍ତୁ ଭାରତର ପରବର୍ତ୍ତୀ ରାଷ୍ଟ୍ରଦୂତ ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍ ଷ୍ଟାଲିନ୍‌ଙ୍କୁ ଭେଟିଥିଲେ ଦୁଇଥର । ରାଧାକ୍ରିଷ୍ଣନ୍‌ଙ୍କ ଅଭ୍ୟାସ ହେଉଛି ରାତି ଦଶଟା ସୁଦ୍ଧା ବିଶ୍ରାମ ନେବା । କୂଟନୀତିଜ୍ଞମାନଙ୍କର ପରମ୍ପରା ହେଉଛି ଯେ ସେମାନେ ଏକାଠି ମିଳିତ ହେଲାବେଳେ ସମସ୍ତେ ଏକାଠି ଉଠନ୍ତି ବିଦାୟ ନେବା ପାଇଁ । ଏହି ପର୍ବ ସରୁ ସରୁ ସ୍ୱାଭାବିକ ଭାବରେ ରାତ୍ରି ବିଳମ୍ବିତ ହୋଇଯାଏ । କିନ୍ତୁ ରାଧାକ୍ରିଷ୍ଣନ୍ ଠିକ୍ ନଅଟା ବେଳେ ବିଦାୟ ନିଅନ୍ତି । ଅନ୍ୟମାନେ କେବଳ ମନ୍ତବ୍ୟ ଦିଅନ୍ତି– "There goes the Philosopher Diplomat."

ଏଣେ ଷ୍ଟାଲିନ୍‌ଙ୍କ ଅଭ୍ୟାସ ବିଚିତ୍ର । ସେ କାମ କରନ୍ତି ପାହାନ୍ତିଆ ପର୍ଯ୍ୟନ୍ତ । ଜବାହରଲାଲ ମଧ୍ୟ କାମ କରୁଥିଲେ ଦିନକୁ ବାଇଶଘଣ୍ଟା । ଷ୍ଟାଲିନ୍ ଡାକିଲେ ରାଧାକ୍ରିଷ୍ଣନ୍‌ଙ୍କୁ ମଧ୍ୟରାତ୍ରି ପରେ । କଥାବାର୍ତ୍ତା ଚାଲିଲା ପାହାନ୍ତିଆ ପର୍ଯ୍ୟନ୍ତ । ରାଧାକ୍ରିଷ୍ଣନ୍‌ଙ୍କୁ ଆଚମ୍ବିତ ପ୍ରେସ୍‌ବାଲା ପଚାରିଲେ, କ'ଣ କଥାବାର୍ତ୍ତା ହେଲା ଷ୍ଟାଲିନ୍‌ଙ୍କ ସହିତ ଏତେ ସମୟ ? ସେ ଉତ୍ତର ଦେଲେ ଯେ କେବଳ ବେଦ, ଉପନିଷଦ ହିଁ ଆଲୋଚନା ହୋଇଛି ।

ରାଧାକ୍ରିଷ୍ଣନ୍‌ଙ୍କ ଅଭ୍ୟାସ ହେଉଛି ଯେ ସେ ଯାହା ସାଙ୍ଗରେ ଭେଟ ହୁଅନ୍ତି, କଥାବାର୍ତ୍ତା ଶେଷରେ ସେ ଉକ୍ତ ବ୍ୟକ୍ତିର ମୁଣ୍ଡ ଉପରେ ହାତ ଥାପି ଆଖି ବୁଜି ଦିଅନ୍ତି । ଷ୍ଟାଲିନ୍‌ଙ୍କ

କ୍ଷେତ୍ରରେ ମଧ୍ୟ ସେଇଆ କଲେ । ବିଚଳିତ ହୋଇ ଉଠିଲେ ରକ୍ଷୀବୃନ୍ଦ । କିନ୍ତୁ ଷ୍ଟାଲିନ୍‌ଙ୍କ ଆଖିରେ ଲୁହ ଦେଖାଗଲା ଏବଂ ସେ କହିଲେ ଯେ ଯାହାହେଉ ପରିଶେଷରେ ଅନ୍ତତଃ ଜଣେ ବ୍ୟକ୍ତି ମୋତେ ମଣିଷ ବୋଲି ବିଚାର କଲେ ।

ଷ୍ଟାଲିନ୍ ପାଲଟି ଯାଇଥିଲେ ଦେବତା ନଚେତ୍ ରାକ୍ଷସ । ମୁଁ ପ୍ରଥମଥର ସୋଭିଏଟ୍ ରୁଷ ଗଲାବେଳକୁ ମସୋଲିୟମ୍‌ରେ ଲେନିନ୍ ଓ ଷ୍ଟାଲିନ୍ ଉଭୟଙ୍କର ମରଦେହ ରହିଥିଲା ଏବଂ ଶ୍ରଦ୍ଧାଞ୍ଜଳି ଜଣାଇବା ପାଇଁ ସବୁ ସମୟରେ ଲାଗିଥିଲା ଲମ୍ବା, ବହୁତ ଲମ୍ବା ଧାଡ଼ି । ବିଂଶ ପାର୍ଟି କଂଗ୍ରେସ ସରି ଯାଇଥିଲା । ମାର୍ଶାଲ ଟିଟୋ ମସୋଲିୟମ୍‌କୁ ଯାଇଥିଲେ ଗୋଟିଏ ସ୍ତବକ ନେଇ, କେବଳ ଲେନିନ୍‌ଙ୍କ ପାଇଁ । ତେଣୁ ଗୋଟିଏ ସ୍ତବକ ନେବା ପାଇଁ ରାଷ୍ଟ୍ର ଅନୁମତି ଦେଇସାରିଥିଲା ।

ଏହା ସତ୍ତ୍ୱେ ସମସ୍ତେ ନେଇଯାଇଥିଲେ ଦୁଇଟି ସ୍ତବକ । କାହାରି ହାତରେ ଗୋଟିଏ ନ ଥିଲା । ଏଇକଥା ଲକ୍ଷ୍ୟ କରିବା ପାଇଁ ମୁଁ ବାରମ୍ବାର ଯାଇଛି ମସୋଲିୟମ୍‌କୁ । ଯୁବ କମ୍ୟୁନିଷ୍ଟ ନେତା ରୋମାନଭସ୍କିଙ୍କୁ ପଚାରିଲି, ସେ କିନ୍ତୁ ଚୁପ୍ ରହିଛନ୍ତି ।

ଠିକ୍ ସେହିପରି ରୁଷର ପ୍ରଖ୍ୟାତ ବୈଦେଶିକ ମନ୍ତ୍ରୀ ମଲତୋଭଙ୍କୁ କ୍ରୁଷ୍ଚେଭ କହିଥିଲେ ଯେ ସେ ହେଉଛନ୍ତି କଳା ଘୁଷୁରି ଯାହାଙ୍କ ଲାଙ୍ଗୁଡ଼ ଟାଣି ବାହାର କରି ଦିଆଯାଇଛି । ଏଇ କଥା ଯେତେବେଳେ ମୁଁ ଇଂରେଜୀ ଭାଷା ଜାଣିଥିବା ସୋଭିଏଟ୍ ବନ୍ଧୁମାନଙ୍କୁ କହିଲି, ସେମାନେ ବ୍ୟଥିତ ହୋଇ କହିଲେ ଯେ ସେମାନେ ଆମର ପ୍ରିୟ ନେତା, ସେମାନଙ୍କୁ ଆପଣ ଏପରି ଆଖ୍ୟା ଦେଉଛନ୍ତି କାହିଁକି ? ଏହା ମୋର ମତ ନୁହେଁ, ମୁଁ କମ୍ରେଡ୍ କ୍ରୁଷ୍ଚେଭଙ୍କୁ ଉଦ୍ଧୃତ କରୁଛି ମାତ୍ର ! ଆଉ ତା'ପରେ ନୀରବତା ।

ଏଥିରୁ ମନେହୁଏ ଷ୍ଟାଲିନ୍, ମଲତୋଭ ପ୍ରଭୃତି ଯେଉଁ ନେତାମାନେ କ୍ରୁଷ୍ଚେଭଙ୍କଦ୍ୱାରା ନିନ୍ଦିତ ହୋଇଥିଲେ ସେମାନେ ପାର୍ଟି ଭିତରେ ହୁଏତ ଅନେକ ତ୍ରୁଟି କରିଛନ୍ତି କିନ୍ତୁ ଜନସାଧାରଣଙ୍କ ଭିତରେ ସେମାନେ ଥିଲେ ପ୍ରିୟ । କାରଣ ଏକ ପଶ୍ଚାତ୍‌ପଦ ରାଷ୍ଟ୍ରକୁ ସେମାନେ ଏକ ଆଧୁନିକ ଶକ୍ତିଶାଳୀ ରାଷ୍ଟ୍ରରେ ପରିଣତ କରିଥିଲେ । ଏହା ମଧ୍ୟ ଏବେ ପ୍ରମାଣିତ ହୋଇଛି ପାଶ୍ଚାତ୍ୟ ଦେଶମାନଙ୍କର ଏଜେନ୍ସି ଦ୍ୱାରା ହୋଇଥିବା ସର୍ଭେରୁ । ଷ୍ଟାଲିନ୍ ବର୍ତ୍ତମାନ ମଧ୍ୟ ରୁଷର ସବୁଠାରୁ ଜନପ୍ରିୟ ନେତା ।

ଯାଇଥିଲି ପୋଟ୍‌ସ୍‌ଡ୍ୟାମ୍ । ଜର୍ମାନୀର ଏଇ ସହରରେ ବସିଥିଲା ମିତ୍ର ଶକ୍ତିର ଶେଷ ଶୀର୍ଷ ସମ୍ମିଳନୀ । ରୁଜ୍‌ଭେଲ୍‌ଟଙ୍କର ପରଲୋକ ହୋଇଯାଇଛି । ସମ୍ମିଳନୀକୁ ଆସିଛନ୍ତି ରାଷ୍ଟ୍ରପତି ଭାବରେ ଟ୍ରୁମାନ୍ । ଆମେରିକାର ଉପରାଷ୍ଟ୍ରପତିଙ୍କ ସଂପର୍କରେ ରାଜନୀତି ବିଜ୍ଞାନରେ ପଢ଼ାଯାଏ ଯେ, ଉପରାଷ୍ଟ୍ରପତିଙ୍କର କାମ ହେଉଛି ଯେ ସେ ପ୍ରତିଦିନ ହ୍ୱାଇଟ୍ ହାଉସ୍‌କୁ ଯିବେ, ଡୋର୍ ବେଲ୍ (Door Bell) ବା କବାଟର ଘଣ୍ଟି ବଜାଇବେ ଏବଂ ପଚାରିବେ ଯେ, ରାଷ୍ଟ୍ରପତି ଜୀବିତ ଅଛନ୍ତି କି ନାହିଁ । ଯଦି ଜୀବିତ ତା'ହେଲେ ସେ ଆରାମରେ ଘରକୁ ଫେରିଯାଇ ନିଜ କାମରେ ବ୍ୟସ୍ତ ରହିପାରନ୍ତି । କିନ୍ତୁ ଯଦି ମୃତ

ତା'ହେଲେ ସେ ରାଷ୍ଟ୍ରପତି ଭାବରେ ଶପଥ ଗ୍ରହଣ କରିବେ ଏବଂ ମୃତ ରାଷ୍ଟ୍ରପତିଙ୍କର ଅନ୍ତ୍ୟେଷ୍ଟିକ୍ରିୟାର ଆୟୋଜନ କରିବେ । ଟ୍ରୁମାନ୍ ଥିଲେ ଉପରାଷ୍ଟ୍ରପତି । ଯୁଦ୍ଧର ବିଭୀଷିକାର ଧାସ ଲାଗି ନାହିଁ । ଜର୍ମାନୀର ପରାଜୟ ହୋଇଛି । ଇଟାଲୀରେ ମୁସୋଲିନୀକୁ କମ୍ୟୁନିଷ୍ଟ ପାର୍ଟିଜାନ ବାହିନୀ ଫାସି ଦେଇସାରିଛନ୍ତି । ତଥାପି ଜାପାନର ପରାଜୟ ବାକି ଅଛି ।

ଏଇ ସମୟରେ ପୋଷ୍ଟଡାମ ସମ୍ମିଳନୀ । ଟ୍ରୁମାନ ସଗର୍ବରେ କହିଲେ ଯେ, ଆମ ହାତରେ ଏପରି ଏକ ଅସ୍ତ୍ର ଅଛି, ଯାହା ସମଗ୍ର ପୃଥିବୀକୁ କବଳିତ କରିବା ପାଇଁ ଆମକୁ ସାହାଯ୍ୟ କରିବ । ସାଙ୍ଗେ ସାଙ୍ଗେ ଷ୍ଟାଲିନ୍ ଆପଣାର ବୈଦେଶିକ ମନ୍ତ୍ରୀ ମଲତୋଭଙ୍କୁ ଇଙ୍ଗିତ ଦେଲେ ଯେ ନିଶ୍ଚୟ ଆମେରିକା ପରମାଣୁ ବୋମା ପରୀକ୍ଷା କରିସାରିଛି । ଆମକୁ ସେଇ ଅନୁଯାୟୀ ପ୍ରସ୍ତୁତ ହେବାକୁ ହେବ । ତା'ପର କଥା ଇତିହାସ । ହିରୋସୀମା ନାଗାସାକିରେ ପରମାଣୁ ବୋମାର ପ୍ରୟୋଗ ଏବଂ ମାତ୍ର କେଇବର୍ଷ ଭିତରେ ସୋଭିଏତ୍ ରୁଷର ପରମାଣୁ ବୋମା ପରୀକ୍ଷା ।

ଦ୍ୱିତୀୟ ବିଶ୍ୱଯୁଦ୍ଧ । ହିଟ୍‌ଲର ପଣ କରିଛି ଯେ, ମଇ ପହିଲା ଦିନ ଷ୍ଟାଲିନ୍ ନୁହେଁ, ସେ ଭାଷଣ ଦେବ ଲାଲଚୌକରେ । ମସ୍କୋଠାରୁ ମାତ୍ର ଚାଳିଶ କିଲୋମିଟର ଦୂରରେ ଯଦି ଝଟିକା ବାହିନୀ ବା ପାସେଞ୍ଜର ଫୋର୍ସ । ନିରାପତ୍ତା ପାଇଁ ମସ୍କୋ ସହରକୁ ଖାଲି କରାଯାଉଛି । ଲେନିନ୍‌ଙ୍କ ମରଦେହ ସ୍ଥାନାନ୍ତରିତ ହୋଇସାରିଛି । କିନ୍ତୁ ଷ୍ଟାଲିନ୍ ମସ୍କୋ ଛାଡ଼ିବାକୁ ନାରାଜ । ପଲିଟିବ୍ୟୁରୋ ନିଷ୍ପତ୍ତି ନେଇଛି ଯେ, ଷ୍ଟାଲିନ୍‌ଙ୍କୁ ମସ୍କୋ ଛାଡ଼ିବାକୁ ପଡ଼ିବ, ନିରାପତ୍ତା ଦୃଷ୍ଟିରୁ । ମସ୍କୋ ଷ୍ଟେସନ୍‌ରେ ଟ୍ରେନ୍ ଅପେକ୍ଷା କରିଛି । ଷ୍ଟାଲିନ୍ ପହଞ୍ଚିଲେ ଷ୍ଟେସନ୍‌ରେ । ଦ୍ରୁତଗତିରେ ପଦଚାରଣ କଲେ ଷ୍ଟେସନ୍‌ର ପ୍ଲାଟ୍‌ଫର୍ମ ଉପରେ । ତା'ପରେ ଘୋଷଣା କଲେ ଯେ ମୁଁ ମସ୍କୋ ଛାଡ଼ିବି ନାହିଁ । ସେନାବାହିନୀ ସହିତ ମରିବା ପାଇଁ ମୁଁ ପ୍ରସ୍ତୁତ ।

ଏ କି ବୈଦ୍ୟୁତିକ ସ୍ପନ୍ଦନ ! ନାଜୀ ସେନାଧ୍ୟକ୍ଷ ନୋଟ୍ କରୁଛନ୍ତି ଡାଇରୀରେ । କ'ଣ ସୋଭିଏତ୍ ସୈନ୍ୟଗୁଡ଼ାକ ପାଗଳ ହୋଇଯାଇଛନ୍ତି ନା କ'ଣ ? ଉଦଣ୍ଡ ଆକ୍ରମଣରେ ସେମାନେ ପଛକୁ ଠେଲି ଚାଲିଛନ୍ତି ନାଜୀ ବାହିନୀକୁ । ଷ୍ଟାଲିନ୍‌ଙ୍କ ଘୋଷଣା ପରେ ସୋଭିଏତ୍ ସୈନ୍ୟ ବାହିନୀରେ ଯେଉଁ ଉନ୍ମାଦନା ସୃଷ୍ଟି ହେଲା ତାହା ଅଭୂତପୂର୍ବ । ଷ୍ଟାଲିନ୍‌ଙ୍କ ପୁଅ ବନ୍ଦୀ ହୋଇଛି ହିଟ୍‌ଲର ହାତରେ । ଜର୍ମାନ୍ କମାଣ୍ଡର ରୋମେଲ ବନ୍ଦୀ ହୋଇଛନ୍ତି ଷ୍ଟାଲିନ୍‌ଙ୍କ ହାତରେ । ହିଟ୍‌ଲର ସର୍ତ୍ତ ବାଢ଼ିଛି ଯେ, ରୋମେଲକୁ ଖଲାସ କରିଦେଲେ ଷ୍ଟାଲିନ୍‌ଙ୍କ ପୁଅକୁ ଛାଡ଼ି ଦିଆଯିବ । କମାଣ୍ଡର ତ କମାଣ୍ଡର, କୌଣସି ବନ୍ଦୀ ନାଜୀ ସୈନିକଙ୍କୁ ବି ଛାଡ଼ି ଦିଆଯିବ ନାହିଁ–ଷ୍ଟାଲିନ୍‌ଙ୍କ ଉତ୍ତର । ଷ୍ଟାଲିନ୍‌ଙ୍କ ପୁଅର ପତ୍ତା ମିଳିଲା ନାହିଁ ଆଉ ।

ପଣବନ୍ଦୀ ବିନିମୟର ପାଲା ଆମ ଦେଶରେ କିମିତି ଚାଲିଛି ? ମନ୍ତ୍ରୀ ମୁଫତି ମହମ୍ମଦ ସୟିଦଙ୍କ ଅପହୃତ କନ୍ୟାର ମୁକ୍ତି ପାଇଁ ପାଞ୍ଚଜଣ ପ୍ରଖ୍ୟାତ

ସନ୍ତ୍ରାସବାଦୀମାନଙ୍କୁ ଖଲାସ କରାଯାଇଛି । ପଣବନ୍ଦୀମାନଙ୍କର ଉଦ୍ଧାର ପାଇଁ ମନ୍ତ୍ରୀ ଆପଣାର ଉଡ଼ାଜାହାଜରେ ନେଇ ଯାଉଛନ୍ତି ସନ୍ତ୍ରାସବାଦୀ ବନ୍ଦୀମାନଙ୍କୁ, କାବୁଲ୍, ପଣବନ୍ଦୀ, ଯାତ୍ରୀଙ୍କୁ ମୁକ୍ତ କରିବା ପାଇଁ ।

କେଉଁଟା ଠିକ୍, କେଉଁଟା ଭୁଲ୍, ସେଇଟା ପ୍ରଶ୍ନ ନୁହେଁ । କାର୍ଯ୍ୟର ପ୍ରତିକ୍ରିୟା କ'ଣ ସୃଷ୍ଟି ହେଲା ଶତ୍ରୁ ଶିବିରରେ ସେଇଟା ବଡ଼କଥା ।

ଅବରୁଦ୍ଧ ଷ୍ଟାଲିନ୍‌ଗ୍ରାଡ୍ । ଲାଲସେନା ପଣ କରିଛି ଏଇଠାରୁ ଶତ୍ରୁ ସୈନ୍ୟଙ୍କୁ ଫେରିବାକୁ ହେବ । ଘୋଡ଼ାମାଂସ ଖାଇ ସଂଗ୍ରାମ କରୁଛନ୍ତି ସୈନ୍ୟମାନେ, ପ୍ରତି ଘର ପାଇଁ ପ୍ରତିରୋଧ ସଂଗ୍ରାମ । କିନ୍ତୁ ସୈନ୍ୟବାହିନୀକୁ ତ ଅସ୍ତ୍ର ଯୋଗାଇବାକୁ ପଡ଼ିବ । ଅସ୍ତ୍ର ଯିବ କେମିତି ? ଶତ୍ରୁ ସୈନ୍ୟ ସହରକୁ ଘେରି ରହିଛନ୍ତି । ଏତିକିବେଳେ ଛିଟିକି ଆସିଲେ ଜଣେ ଓଡ଼ିଆ ଯୁବକ । ସେ ଆପଣାର ଉଡ଼ାଜାହାଜରେ ଶତ୍ରୁର ବଳୟ ଭେଦ କରି ଥରେ ନୁହେଁ ସତେଇଶଥର ଭେଦ କରି ଯୋଗାଇଲେ ଅସ୍ତ୍ର । ଯୁଦ୍ଧର ୫୦ ବର୍ଷ ପୂର୍ତ୍ତି ଉପଲକ୍ଷେ ଇଂଲଣ୍ଡ, ରୁଷ୍, ଫ୍ରାନ୍ସ, ଆମେରିକା ଚାରି ରାଷ୍ଟ୍ରର ମିଳିତ ସମ୍ବର୍ଦ୍ଧନା ତାଙ୍କୁ ଦିଆଗଲା । ପରେ ମିଳିଲା ଆନ୍ତର୍ଜାତିକ ସ୍ୱୀକୃତି । ସେ ହେଉଛନ୍ତି ବିଜୁ ପଟ୍ଟନାୟକ ।

ମୁଁ କଲେଜରେ ପଢ଼ିବାକୁ ଆସିଲା ବେଳକୁ ତାଙ୍କୁ ଦେଖାଯାଏ କଟକ ସହରର ରାସ୍ତାରେ ଏବଂ କଟକ-ଚୌଦ୍ୱାର ରାସ୍ତାରେ ଏକ ସାଇକେଲରେ । ମହାନଦୀରେ ପୋଲ ହୋଇ ନାହିଁ । ସେ ଯାଆନ୍ତି ଚୌଦ୍ୱାର, ଅନେକ ସମୟରେ ସାଇକେଲରେ ବସାଇ ନେଇ ଯାଆନ୍ତି ତାଙ୍କ ସ୍ତ୍ରୀଙ୍କୁ । ସେତେବେଳେ ସ୍ତ୍ରୀଲୋକମାନଙ୍କୁ ସାଇକେଲରେ ବସାଇ ନେବା ପ୍ରଚଳିତ ନ ଥିଲା ।

ବିଜୁ ପଟ୍ଟନାୟକ । କୁହାଯାଏ ଯେ ମଧୁସୂଦନ ଦାସଙ୍କ ପରେ ଓଡ଼ିଶାର ସ୍ୱାଭିମାନର ସେ ହେଉଛନ୍ତି ପ୍ରତୀକ । ଓଡ଼ିଶାର ଜନମାନସର ସୂକ୍ଷ୍ମତନ୍ତ୍ରୀକୁ ସେ କେତେ ଛୁଇଁ ଯାଇଥିଲେ, ତାହା ଜଣାପଡ଼ିଲା ତାଙ୍କ ପରଲୋକରେ ଉଦ୍‌ବେଳିତ ଜନସମୁଦ୍ରରୁ ।

ବିଜୁ ପଟ୍ଟନାୟକ ସ୍ୱପ୍ନ ଦେଖୁଥିଲେ ଉତ୍କଳ ନୁହେଁ, କଳିଙ୍ଗର । ଖାରବେଳ ତାଙ୍କର ଆଦର୍ଶ ଥିଲେ । ବିଜୁ ପଟ୍ଟନାୟକ ଦିଲ୍ଲୀ ଜେଲ୍‌ରେ ବନ୍ଦୀ । ତାଙ୍କର ସହବନ୍ଦୀ ହେଉଛନ୍ତି କମ୍ୟୁନିଷ୍ଟ ନେତା ୮ ବି.ଡ଼ି.ଯୋଶୀ । ସେ ସ୍ମୃତି ପଖାଳନ୍ତି ବନ୍ଦୀ ଜୀବନର । ଶହ ଶହ ବନ୍ଦୀ ବିଭିନ୍ନ ଦଳର, ମତର ଏବଂ ସମୟର । ସମସ୍ତେ ସ୍ୱପ୍ନ ଦେଖନ୍ତି ସ୍ୱାଧୀନତା ପରବର୍ତ୍ତୀ ସମୟର, ଦେଶରେ କେମିତି କେଉଁଠି ଶିଳ୍ପ ପ୍ରତିଷ୍ଠା ହେବ ତା'ର ସ୍ୱପ୍ନ ଦେଖନ୍ତି ଖୁବ୍ କମ୍ ଲୋକ । ସେମାନଙ୍କ ମଧ୍ୟରେ ବିଜୁ ପଟ୍ଟନାୟକ ଅନ୍ୟତମ । ବିଜୁ ପଟ୍ଟନାୟକ ଆର୍ଥନୀତିକ ଦୃଷ୍ଟିରୁ ପଶ୍ଚାତ୍‌ପଦ କିନ୍ତୁ ପ୍ରାକୃତିକ ସମ୍ପଦରେ ଭରପୂର ଓଡ଼ିଶାକୁ ସେ ଚାହିଁଥିଲେ ଏକ ଶିଳ୍ପ ସମୃଦ୍ଧ ଓଡ଼ିଶା ହେବ ତାଙ୍କର ଆର୍ଥନୀତିକ ଓ ରାଜନୀତିକ ଭିତ୍ତି ।

ଏହା ତାଙ୍କ ପାଇଁ କେତେ ଶୁଭଙ୍କର ହେଲା ତା' ସମସ୍ତେ ଜାଣନ୍ତି । ଜବାହରଲାଲ ନେହେରୁଙ୍କର ପ୍ରିୟ ତ ସେ ନିଶ୍ଚୟ ଥିଲେ, କିନ୍ତୁ ତା' ସହିତ ତାଙ୍କୁ ଜବାହରଲାଲ

ନେହେରୁଙ୍କର ଉତ୍ତରାଧିକାରୀ ଭାବରେ ବିବେଚନା କରାଯାଉଥିଲା । କାହିଁକି ତାହା ହୋଇପାରିଲା ନାହିଁ ? ଏପରିକି ତାଙ୍କ ନାମରେ ଦିଲ୍ଲୀର ରାସ୍ତାଟିଏ ନାମିତ କରିବା ପାଇଁ ପ୍ରତିଶ୍ରୁତି ବିଭିନ୍ନ ସରକାର ଦେଇଥିଲେ ମଧ ତା' ହୋଇପାରିଲା ନାହିଁ । କିନ୍ତୁ ଭାରତବର୍ଷର ସେ ଏକମାତ୍ର ଜନନାୟକ, ଯାହାଙ୍କ ନାମରେ ଏକ ରାଜନୀତିକ ଦଳ ରହିଛି ଏବଂ ସେଇ ଦଳ ସରକାର ଗଢ଼ିବାକୁ ବି ସମର୍ଥ । ମୃତ୍ୟୁର ଦୁଇ ଦଶନ୍ଧି ଅତିକ୍ରମ ହେଲା ପରେ ବି ତାଙ୍କ ନାଆଁରେ, ତାଙ୍କ ସ୍ୱପ୍ନର ନାଆଁରେ ଭୋଟ୍ ମଗାଯାଉଛି । ନବୀନ ପଟ୍ଟନାୟକ ଏବଂ କେତେକ ତାଙ୍କର ବିରୋଧୀ ଉଭୟେ କହୁଛନ୍ତି ବିଜୁ ପଟ୍ଟନାୟକଙ୍କର ସ୍ୱପ୍ନ କଥା ।

ଏଇମାତ୍ର ଜଣେ ବରିଷ୍ଠ ପ୍ରଶାସକ କୁହନ୍ତି ଯେ ବିଜୁ ପଟ୍ଟନାୟକ ହୋଇଥିଲେ ସେ କଳିଙ୍ଗ ନଗରକୁ ଚାଲି ଯାଇଥାନ୍ତା ଗୁଳିକାଣ୍ଡ ପରଦିନ ବିନା ଏସ୍କର୍ଟରେ ଏବଂ ଭୁବନେଶ୍ୱର ଏୟାର୍‌ପୋର୍ଟରେ ହଠାତ୍ ପହଞ୍ଚି ଯାଇଥାନ୍ତା ସୋନିଆ ଗାନ୍ଧୀଙ୍କୁ ଚକିତ କରି ଭେଟିବା ପାଇଁ ଏବଂ ସୋନିଆଙ୍କୁ 'ହେଲୋ ସୋନିଆ' କହି ଉପଦେଶ ଦେଉଥା'ନ୍ତା ଯେ ଭାରତ ସରକାର କ'ଣ ସବୁ କରିବା ଉଚିତ ।

ବିଜୁ ପଟ୍ଟନାୟକଙ୍କର ପରଲୋକ ହୋଇଗଲାଣି ।

ବିଜୁ ପଟ୍ଟନାୟକ ଦକ୍ଷ ପାଇଲଟ୍ । ଲର୍ଡ ଡ୍ୟାଭେଲ୍ (ଭାରତର ତତ୍କାଳୀନ ବଡ଼ଲାଟ୍)ଙ୍କ ପର୍ସନାଲ୍ ପାଇଲଟ୍ । ଓଡ଼ିଶା ଆସିଛନ୍ତି । ଓଡ଼ିଶାର ରାଜ୍ୟପାଳ ହଥୋର୍ଣ୍ଣ ଲୁଇ । ପାରଳା ମହାରାଜା ବିଜୁଙ୍କୁ ପରିଚୟ କରାଇଦେଇ କହିଲେ, ଇୟୋର୍ ଏକ୍ସଲେନ୍ସି ! ମୁଁ ଆପଣଙ୍କୁ ବିଜୁ ପଟ୍ଟନାୟକଙ୍କୁ ପରିଚୟ କରାଇ ଦେଉଛି । ଇଏ ହେଉଛନ୍ତି ଆମର ଦକ୍ଷ ପାଇଲଟ୍ । ଆମ ଲକ୍ଷ୍ମୀନାରାୟଣ ପଟ୍ଟନାୟକଙ୍କ ପୁଅ ।

ହଲୋ ବିଜୁ !

ହଲୋ ଲୁଇ !

ଚକିତ ପାରଳା ମହାରାଜା ! କ'ଣ ଗଭର୍ଣ୍ଣର ସାର୍ ହଥୋର୍ଣ୍ଣ ଲୁଇଙ୍କୁ ହଲୋ ଲୁଇ !

ହଁ ମ । ଆମ ସାଙ୍ଗରେ ଗଲ୍‌ଫ ଖେଳୁଥିଲା ତ ଦିଲ୍ଲୀରେ । ବିଜୁ ପଟ୍ଟନାୟକଙ୍କର ଉତ୍ତର ।

ପୃଥିବୀରେ ଗୋଟିଏ ଦଶନ୍ଧି ଭିତରେ ଇମିତି ଘଟଣା ଘଟିବ ନାହିଁ, ବିଭିନ୍ନ ଦେଶରେ । ଆଉ ସେ ସବୁଥିରେ ଆପଣାର ଆଲେଖ୍ୟ ରଖିଯିବ ନାହିଁ ଜଣେ ମଣିଷ । ସେ ବିଜୁ ପଟ୍ଟନାୟକ ।

ଷ୍ଟାଲିନ୍‌ଗ୍ରାଡ୍ ଯୁଦ୍ଧକଥା କହିଛି ।

୧୯୪୨ ଭାରତଛାଡ଼ ଆନ୍ଦୋଳନର ମହାନେତ୍ରୀ ପଳାତକ ଅରୁଣା ଆସଫ ଅଲ୍ଲୀଙ୍କୁ ନେଇ ଖୋଦ୍ ବଡ଼ଲାଟ୍‌ଙ୍କ ଉଡ଼ାଜାହାଜରେ ଗୋଟାଏ ସ୍ଥାନରୁ ଅନ୍ୟ ସ୍ଥାନକୁ ନେଇଯିବା ମଧ କରିଥିଲେ ଏଇ ଯୁବକ, ସେ ବିଜୁ ପଟ୍ଟନାୟକ ।

ଦେଶଦ୍ରୋହ ଅପରାଧରେ ସେ ବନ୍ଦୀ ଲାଲକିଲାରେ । ଗଭର୍ଣ୍ଣର ଚନ୍ଦୁଲାଲ ମାଧବଲାଲ ତ୍ରିବେଦୀ । ବନ୍ଦୀକୁ ପିଇବା ପାଣି ଦିଆଯାଉ ନାହିଁ, ତୃଷାର୍ତ୍ତ ବନ୍ଦୀ

ମାଗିଲେ ପାଣି ପିଇବା ପାଇଁ ଗଭର୍ଣ୍ଣରଙ୍କୁ । ଉତ୍ତରରେ ଚନ୍ଦୁଲାଲ ଏକ ପାତ୍ରରେ ପରିସ୍ରା କରି ତାଚ୍ଛଲ୍ୟ କରି କହିଲେ ଯେ, ଶାଲାକୋ ପିନେ ଦୋ ଦୋ । ପରବର୍ତ୍ତୀ ମୁହୂର୍ତ୍ତରେ ଦେଖାଗଲା ଯେ ସେ ପାତ୍ର ଓ ପରିସ୍ରାକୁ ବନ୍ଧୀ ମାରିଛି ଗଭର୍ଣ୍ଣରଙ୍କ ମୁହଁକୁ ।

ଇନ୍ଦୋନେସିଆ ଗସ୍ତରେ ଯାଇଛନ୍ତି ବିଜୁ ପଟ୍ଟନାୟକ । ପଣ୍ଡିତ ନେହେରୁ କହିଛନ୍ତି ଯେ ଟିକିଏ ବୁଝି ଆସିବୁ ଦେଶ କଥା ! କ'ଣ ସମ୍ବାଦ ମିଳିଛି ଯେ ଡଚ୍ କର୍ତ୍ତୃପକ୍ଷ ପୁଣି ଥରେ ଇନ୍ଦୋନେସିଆ ଦଖଲ କରିବା ପାଇଁ ଉଦ୍ୟମ କରୁଛନ୍ତି । ସତକୁ ସତ, ବିଜୁ ପଟ୍ଟନାୟକ ପହଞ୍ଚିଲା ବେଳକୁ ଡଚ୍ ବାହିନୀ ଅବରୁଦ୍ଧ କରିଛନ୍ତି ଜାକର୍ତ୍ତା ସହରକୁ ଏବଂ ଶତ୍ରୁ ବଳୟକୁ ଭେଦ କରି ସିଙ୍ଗଲ୍ (ଏକ) ଇଞ୍ଜିନ୍‌ର ଉଡ଼ାଜାହାଜରେ ଇନ୍ଦୋନେସିଆର ରାଷ୍ଟ୍ରପତି ମହମ୍ମଦ ହାଟାଙ୍କୁ ନେଇ ବିଜୁ ପଟ୍ଟନାୟକ ପହଞ୍ଚିଛନ୍ତି ଦିଲ୍ଲୀରେ ।

ମୋର ମନେ ପଡୁଛି । ଠିକ୍ ସାଲ୍‌ଟା ମନେପଡୁ ନାହିଁ । ବୌଦ୍ଧ ଜୈନ ଦର୍ଶନ ଉପରେ ଆନ୍ତର୍ଜାତିକ ସେମିନାରର ପ୍ରସ୍ତୁତିପର୍ବ । ମୁଁ ମହତାବବାବୁଙ୍କୁ ଖୋଜି ପହଞ୍ଚିଲି ଜନତା ଦଳ ଫରେଷ୍ଟପାର୍କ ଅଫିସ୍‌ରେ । ଶୁଣିଲି ମହତାବବାବୁ ଯାଇଛନ୍ତି ନୟାଗଡ଼ କ'ଣ ଗୋଟାଏ ସ୍ପୋର୍ଟସ୍ କାର୍ଯ୍ୟକ୍ରମରେ ଯୋଗଦେବା ପାଇଁ । ଭବାନୀ ପଟ୍ଟନାୟକଙ୍କ ସାଙ୍ଗରେ ଦେଖାହେଲା । କହିଲେ ଯେ, ତୁମେ ବିଜୁ ପଟ୍ଟନାୟକଙ୍କୁ ଯଦି ଦେଖାକରିବାକୁ ଆସିଚ ଦେଖାକର ନାହିଁ । ସେ ଯାଇଥିଲେ ନିର୍ବାଚନ ପ୍ରଚାରରେ, ହେଲିକପ୍ଟର ଖରାପ ହୋଇଗଲା । ସେସବୁ ପ୍ରୋଗ୍ରାମ୍ ବାତିଲ୍ କରି ଫେରିଆସିଛନ୍ତି, ଘାଇଲା ବାଘ ପରି ଗର୍ଜୁଛନ୍ତି । ତାଙ୍କର କାଲି ଇନ୍ଦୋନେସିଆ ଯିବା କଥା ଭୂମିପୁତ୍ର ଉପାଧି ପାଇବା ପାଇଁ । ସେ ପ୍ରୋଗ୍ରାମ୍‌କୁ ବାତିଲ କରି ଟିକେଟ୍ ଫେରାଇଦେବାକୁ କହିଛନ୍ତି ।

ମୋର ତ ରାଜନୀତି ସହିତ ସଂପର୍କ ତୁଟି ସାରିଥିଲା । ବିଜୁ ପଟ୍ଟନାୟକଙ୍କ ପାଖରେ କାମ ବି କ'ଣ ? ତେବେ ନିଷେଧାଦେଶକୁ ଭାଙ୍ଗିବାର ଆନନ୍ଦ ରହିଛି ସବୁବେଳେ । ନନ୍ଦିନୀ ଦେବୀଙ୍କ ସହିତ ପାର୍ଟି କ୍ୟାଡ଼ର୍‌ମାନେ ସଂପର୍କ କାଟି ଦେଇଥିଲେ କିଛି ସମୟ ପାଇଁ । ମୁଁ କାଟି ନାହିଁ । ଜାନକୀବାବୁ କେନ୍ଦ୍ରରେ ମନ୍ତ୍ରୀ ଥାଆନ୍ତି, ସେ କଟକ ଆସିଲେ ଭେଟିବାକୁ ଡର । ମୁଁ ଭେଟିଛି । ବନ୍ଧୁମିଳନ ଆୟୋଜନ କରିଛି । ଏକ ଖରାପ ସମୟରେ ମହତାବବାବୁ ଆସିଛନ୍ତି ଷ୍ଟାଡ଼ିୟମ୍‌କୁ ଭୈରବବାବୁ ପ୍ରଭୃତି ନାହାନ୍ତି । ଯେଉଁମାନେ ଥିଲେ ସେମାନଙ୍କ ନାମ କହି ଲାଭ ନାହିଁ । ଯେଉଁମାନେ ଉଠି ଠିଆ ହେଲେ, ସେମାନଙ୍କ ମଧ୍ୟରେ ମୁଁ ଜଣେ । ଏଥିପାଇଁ ଆଶ୍ଚର୍ଯ୍ୟ ପ୍ରକାଶ କରାଯାଇଛି । ନୀଳମଣିବାବୁ ପାରିବାରିକ ବନ୍ଧୁ । ସେ କଟକରେ ରହୁଥିଲେ । ସେ ମନ୍ତ୍ରୀ ଅଛନ୍ତି କି ନାହାନ୍ତି, ତାଙ୍କ ଉପରେ ନଜର ରଖାଯାଉଛି କି ନାହିଁ, ସେଥିରୁ କ'ଣ ମିଳିବ ? ବିଜୁ ପଟ୍ଟନାୟକଙ୍କ ରୁମ୍ ପର୍ଦ୍ଦା ଟେକି ମୁଁ ପ୍ରବେଶ କଲି । ସେ ମୋତେ କଠୋର କଣ୍ଠରେ ପଚାରିଲେ, କୁଆଡ଼େ ଆସିଲ ? ନାଇଁ, ଆପଣଙ୍କର ତ ଆଜି ପ୍ରୋଗ୍ରାମ ଥିଲା ପଶ୍ଚିମ ଓଡ଼ିଶାରେ, ଶୁଣିଲି ଆପଣ ଫେରି ଆସିଛନ୍ତି । କେମିତି ପ୍ରୋଗ୍ରାମ ହେଲା ? ସେ ଖିଙ୍କାରି

ଉଠିଲେ । ମିଟିଂ ନା ଚୋପା ? ହେଲିକପ୍ଟର ଖରାପ ହୋଇଗଲା । କାର୍‌ରେ ଗଲେ ନାହିଁ ? ମୋର ପ୍ରଶ୍ନ । କାର୍‌ରେ ଯାଇ କ'ଣ କରିଥା'ନ୍ତି ? ଲୋକ ଆଣିଥା'ନ୍ତି କେଉଁଠୁ ? ମୁଁ ହସିଦେଇ କହିଲି ଯଦି ହେଲିକପ୍ଟର ପାଇଁ ଲୋକ, ଆପଣଙ୍କ ପାଇଁ ନୁହନ୍ତି , ତା'ହେଲେ ମୁଁ ଗଲେ ବରଂ ଭଲ । କାରଣ ଆପଣଙ୍କ ଅପେକ୍ଷା ମୁଁ ଭଲ କହିପାରିବି । ଆଉ ଆପଣ କୁଆଡ଼େ ଇଣ୍ଡୋନେସିଆ ଯାଉ ନାହାନ୍ତି ? କେମିତି ଯିବି, ଏଆଡ଼େ ନିର୍ବାଚନ, କ'ଣ ମିଳିବ ସେ ଉପାଧିରୁ । ଆପଣଙ୍କ ଉପାଧି ବ୍ୟକ୍ତିଗତ ନୁହେଁ, ଏହା ଜାତୀୟ ଗୌରବ । ଆଉ ମାତ୍ର ଚାରିଦିନରେ, ଆପଣଙ୍କର ଭୂମିପୁତ୍ର ଉପାଧି ଲାଭ ଆପଣଙ୍କର ଚାରିଦିନର ନିର୍ବାଚନ ପ୍ରଚାର ଅପେକ୍ଷା ବେଶୀ ଫଳପ୍ରଦ । ସେ ଗମ୍ଭୀର ହୋଇ ଚିନ୍ତା କଲେ । ଟିକଟ ଫେରାଇ ଦେବାକୁ ଯାଇଥିବା ବ୍ୟକ୍ତିକୁ ଫେରାଇ ଅଣାଗଲା । ସେ ଗଲେ ଇଣ୍ଡୋନେସିଆ ।

କାଶ୍ମୀର ଉପରେ ପାକିସ୍ତାନୀ ଆକ୍ରମଣ, ଭିନ୍ନ ୟୁନିଫର୍ମରେ । ଶ୍ରୀନଗରଠାରୁ ମାତ୍ର ଷୋହଳ କିଲୋମିଟର ଦୂରରେ ଆକ୍ରମଣକାରୀ । ରାଜା ହରି ସିଂହ ଭାରତ ସହିତ କାଶ୍ମୀରର ମିଶ୍ରଣ ପାଇଁ ଚୁକ୍ତି କରିଛନ୍ତି କିନ୍ତୁ ଶ୍ରୀନଗରକୁ ରକ୍ଷା କରାଯାଇ ପାରିବ କିପରି ? ଆକ୍ରମଣକାରୀମାନେ ଆଧୁନିକ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ । ପଣ୍ଡିତ ନେହେରୁ ଡାକିଛନ୍ତି ସେନାଧକ୍ଷମାନଙ୍କ ବୈଠକ । ସେମାନେ ସମସ୍ତେ ଅକ୍ଷମତା ପ୍ରକାଶ କରିଛନ୍ତି ଯେ ଏଇ ସମୟ ଭିତରେ ଶ୍ରୀନଗର ବିମାନ ବନ୍ଦରରେ ଉଡ଼ାଜାହାଜ ଓହ୍ଲାଇ ତାକୁ ଆପଣାର ଅକ୍ତିଆରକୁ ଆଣିବା ସମ୍ଭବ ନୁହେଁ । ତା'ହେଲେ କ'ଣ ଆମେ ସବୁଦିନ ପାଇଁ ହରାଇବା କାଶ୍ମୀରକୁ ? ପଣ୍ଡିତ ନେହେରୁଙ୍କର ବିଷାଦଭରା ଉକ୍ତି ।

ନା, ମୁଁ ଓହ୍ଲାଇଯିବି ଶ୍ରୀନଗର ବିମାନ ବନ୍ଦରରେ । ଅକ୍ତିଆରକୁ ନେଇ ଆସିବି କଣ୍ଟ୍ରୋଲ୍ ଟାୱାର । ପରବର୍ତ୍ତୀ କାମ ଆମ ସେନାବାହିନୀର । ନେହେରୁଙ୍କ ପଛପଟରେ ଠିଆ ହୋଇଥିବା ଯୁବକଙ୍କର ଏହି ଉତ୍ତର । ସମସ୍ତଙ୍କୁ ବିସ୍ମିତ ବିଚଳିତ କରି ସେ ଓହ୍ଲାଇ ଯାଇଥିଲେ ଶ୍ରୀନଗର ବିମାନ ବନ୍ଦରରେ । କାଶ୍ମୀର ରହିପାରିଲା ଭାରତବର୍ଷରେ ।

ଏଇସବୁ ଘଟଣା ବିଜୁ ପଟ୍ଟନାୟକଙ୍କୁ ପ୍ରବାଦ ପୁରୁଷରେ ପରିଣତ କରିଥିଲା ।

ବିଧାନସଭାର ସଦସ୍ୟ ଥିଲାବେଳେ ବି ସେ ଆସନ୍ତି ରେଭେନ୍ସା କଲେଜ କ୍ରୀଡ଼ା ପ୍ରତିଯୋଗିତାକୁ । ସାଙ୍ଗରେ ଆସନ୍ତି ମଣିସାହୁ ଛକର ଭ୍ରମରବର ସାହୁ । ତାଙ୍କର କଟକରୁ ପେଶାବାର ସାଇକେଲ ଯାତ୍ରାର ସାଥୀ । ଏଇ ପ୍ରବାଦପୁରୁଷ କିନ୍ତୁ ରହିଗଲେ ଓଡ଼ିଶାର ମୁଖ୍ୟମନ୍ତ୍ରୀ, କେନ୍ଦ୍ରମନ୍ତ୍ରୀ, ଜନତା ଦଳର କ୍ରାଇସିସ୍ ମ୍ୟାନେଜର୍ ସ୍ତରରେ କିନ୍ତୁ ସେ ଆଉ ଯାଇପାରିଲେ ନାହିଁ ଉପରକୁ କାହିଁକି ? ହାର୍ଡ୍ଗେନ କହନ୍ତି 'ଆପଣାର ନେହେରୁଙ୍କ ପରେ କିଏ ?' ପୁସ୍ତକରେ ଯେ ବିଜୁ ପଟ୍ଟନାୟକ ଆସିଥିଲେ ଆର୍ଥନୀତିକ ଏବଂ ରାଜନୀତିକ ଦୃଷ୍ଟିରୁ ପଶ୍ଚାତ୍‌ପଦ ଓଡ଼ିଶାରୁ । ଏହା ସତ୍ୟ କିନ୍ତୁ ଏହା ବି ସତ୍ୟ ଯେ ଭାରତର ଅନେକ ଏକଚାଟିଆ ବ୍ୟବସାୟୀ ତାଙ୍କୁ ସହିପାରିଲେ ନାହିଁ । ସେ ନିଜେ ଶିଳ୍ପପତି । ବିଧାନସଭା

ସଭ୍ୟ ପଦରେ ଆପଣାର ରାଜନୀତିକ ଜୀବନକୁ ସୀମିତ କରି ସେ ରଖିପାରିଲେ ନାହିଁ । ରାଜନୀତିରେ ବି ତାଙ୍କୁ ଉପରକୁ ଉଠିବାକୁ ହେଲା । ସମୟର ବାତଚକ୍ରରେ ଏବଂ ସେ ଖାଲି ସାହସୀ ନ ଥିଲେ, ଥିଲେ ଦୁଃସାହସୀ । ମୋର ମନେପଡୁଛି । କୃଷ୍ଣମେନନ୍‌ଙ୍କ ପରେ ପ୍ରତିରକ୍ଷା ମନ୍ତ୍ରୀ ପଦ ତାଙ୍କୁ ମିଳିବ ବୋଲି ସେ ଆଶା କରିଥିଲେ । କିନ୍ତୁ ଆମେରିକା ଗସ୍ତ ସମୟରେ ସେ ଦେଇଥିବା ବିବୃତିସବୁକୁ ଯେ ପ୍ରତିପକ୍ଷ ଲବି ତାଙ୍କ ବିରୋଧରେ ବ୍ୟବହାର କରିବ ସଫଳ ଭାବରେ, ଏକଥା କ'ଣ ସେ ଜାଣିଥିଲେ ? ଏହା ମୋର ପ୍ରତ୍ୟକ୍ଷ ଅନୁଭୂତି ଯେ, ତାଙ୍କର ଦୁଃସାହସ ପାଇଁ ସେ ଯେପରି ପ୍ରିୟ ଯୁବସମାଜ ପାଖରେ, ସେଇ ଦୁଃସାହସ ପାଇଁ ଦାଉ ସାଧିଲା ରାଜନୀତିକ ପଶାପାଲିରେ । ନେହେରୁଙ୍କ ଛଡ଼ା କୌଣସି ରାଜନୀତିଜ୍ଞଙ୍କୁ ସେ ଯେପରି ପାସଙ୍ଗରେ ପକାଇଲେ ନାହିଁ, ଗାନ୍ଧୀବାଦ ଦ୍ୱାରା ଶାଣିତ ଭାରତୀୟ ଶିଳ୍ପପତିମାନଙ୍କୁ ସେ ବିଚାରକଲେ ସମାସ୍କନ୍ଧ ଭାବରେ ବା ପାସଙ୍ଗରେ ପକାଇଲେ ନାହିଁ ।

କୁହାଯାଏ ଥରେ ପଣ୍ଡିତ ନେହେରୁ ଡାକ୍ତର ବିଧାନଚନ୍ଦ୍ର ରାୟଙ୍କୁ ପଚାରିଲେ ସେ ବିଜୁ ପଟ୍ଟନାୟକଙ୍କୁ ଭେଟିଛନ୍ତି କି ନାହିଁ ? ବିଧାନବାବୁ ନାହିଁ କରିବାରୁ ସେ କହିଲେ ଯେ, ତାକୁ ଭେଟ । ମୁଁ ଏଇଭଳି ସାହସୀ ଏବଂ ଫରଓ୍ୱାର୍ଡ଼ ଲୁକିଙ୍ଗ୍ ଯୁବକମାନଙ୍କୁ ଭଲପାଏ । କିନ୍ତୁ ଭୟ ହୁଏ ଯେ ସେମାନେ କେଉଁଠି ନେଇ ତୁମକୁ ଥୋଇଦେବେ !

ପଣ୍ଡିତ ନେହେରୁଙ୍କ ଉପରେ ଆପଣାର ପ୍ରଭାବ ବିସ୍ତାର କରି ସେ ପାରାଦ୍ୱୀପ ବନ୍ଦର ଆଣିପାରିଛନ୍ତି, ମିଗ୍ ଫ୍ୟାକ୍ଟରୀ ପ୍ରତିଷ୍ଠା କରିପାରିଛନ୍ତି କିନ୍ତୁ ରାଜନୀତିକ କ୍ଷେତ୍ରରେ ଯେଉଁ ଉଚ୍ଚକୁ ଯାଇପାରିଥାନ୍ତେ ତାହା ହୋଇ ନାଇଁ ।

ଭାରତ-ପାକିସ୍ତାନ ଯୁଦ୍ଧ ବେଳେ ପାକିସ୍ତାନ ମାଗିଲା ବୁଡ଼ାଜାହାଜ ବାହିନୀ ଇଣ୍ଡୋନେସିଆକୁ । ଇଣ୍ଡୋନେସିଆର ପ୍ରଧାନମନ୍ତ୍ରୀ ସୁକର୍ଣ୍ଣ ଜଣେ ମର୍କ୍ୟୁରିଆଲ୍ ବ୍ୟକ୍ତିତ୍ୱ । ସେ ରାଜି ହୋଇଗଲେ । ଏ ଖବର ପାଇଲେ ପ୍ରଧାନମନ୍ତ୍ରୀ ଲାଲବାହାଦୁର । ସେ ବିଜୁ ପଟ୍ଟନାୟକଙ୍କୁ ତୁରନ୍ତ ପଠାଇଲେ ଇଣ୍ଡୋନେସିଆ । ବିଜୁ ପଟ୍ଟନାୟକ ସେଇ ରାତ୍ରିରେ ଚାହିଁଲେ ଭେଟିବାକୁ ସୁକର୍ଣ୍ଣଙ୍କୁ । ସେଇ ରାତି ଥିଲା ମେଘମେଦୁର । ତେଣେ ସୁକର୍ଣ୍ଣଙ୍କ ସ୍ତ୍ରୀ ଆସନ୍ନପ୍ରସବା । ସୁକର୍ଣ୍ଣ ପରଦିନକୁ ଟାଳି ଦେବାକୁ ଚାହିଁଲେ ସାକ୍ଷାତ୍‌ର ସମୟକୁ । କିନ୍ତୁ ବିଜୁ ପଟ୍ଟନାୟକ ନଛୋଡ଼ବନ୍ଧା । ସେଇ ରାତିରେ ହିଁ ସେ ସାକ୍ଷାତ୍ କରିବେ । ଏହା ହେଉଛି 'ଭୂମିପୁତ୍ର'ର ଦାବି । ସୁକର୍ଣ୍ଣ ବାଧ ହୋଇ ରାଜି ହେଲେ । ବିଜୁବାବୁ ତାଙ୍କୁ ଦେଖାକରି ଦାବି କଲେ ଫେରାଇ ଆଣିବାକୁ ବୁଡ଼ାଜାହାଜ ବନ୍ଦରକୁ । ସେମାନେ ତ ପାକିସ୍ତାନ ଜଳ ସୀମାରେ ପହଞ୍ଚି ସାରିଥିବେ ଏବଂ ଏହି ବହର କ'ଣ ଯୁଦ୍ଧର ଗତି ପରିବର୍ତ୍ତନ କରିଦେବ ? ସୁକର୍ଣ୍ଣଙ୍କ ଏହି ଉକ୍ତିର ଜବାବରେ ବିଜୁ ପଟ୍ଟନାୟକ କହିଲେ ଯେ, ଏହା ହେଉଛି ଆପଣଙ୍କ ପାଖରେ ଭୂମିପୁତ୍ରର ଦାବି । ବୁଡ଼ାଜାହାଜ ବହର ଫେରିଥିଲା । ତା'ର ପରବର୍ତ୍ତୀ କାହାଣୀ ସମସ୍ତେ ଜାଣନ୍ତି ।

ଓଡ଼ିଶାର ସ୍ୱାଭିମାନକୁ ଉଦ୍‌ବେଳିତ କରିବାରେ ମଧୁସୂଦନ ଦାସଙ୍କ ପରେ ହେଉଛନ୍ତି ବିଜୁ ପଟ୍ଟନାୟକ । ଦୁହେଁ ଓଡ଼ିଶାକୁ ହିଁ ଆପଣାର ଭିତ୍ତି ଭାବରେ ଗ୍ରହଣ କରିଥିଲେ ଯଦିଓ ଦୁହିଁଙ୍କ ପାଇଁ ଭାରତବର୍ଷ ଉନ୍ମୁକ୍ତ ଥିଲା । ମଧୁସୂଦନଙ୍କୁ ଅନେକ କ୍ଷେତ୍ରରେ ଆପଣାର ଗୁରୁ ବୋଲି ମହାତ୍ମା ଗାନ୍ଧୀ କହିଛନ୍ତି- ଲେଖିଛନ୍ତି । ବିଜୁ ପଟ୍ଟନାୟକଙ୍କୁ ପଣ୍ଡିତ ନେହେରୁଙ୍କର ଉତ୍ତରାଧିକାରୀ ବୋଲି ବିଚାର କରାଯାଇଥିଲା । ସାହସରେ ମଧ ଦୁହେଁ ଥିଲେ ଅଦ୍ୱିତୀୟ ।

ପାଟନା ହାଇକୋର୍ଟର ମୁଖ୍ୟ ବିଚାରପତି ଆସିଛନ୍ତି ଓଡ଼ିଶା ପରିଭ୍ରମଣରେ, ହୋଇଛନ୍ତି କନିକା ରାଜାଙ୍କ ଅତିଥି । ପଡ଼ିଲା ନବବର୍ଷ । ଅନେକ ବିଶିଷ୍ଟ ଆଡ଼ଭୋକେଟ୍ ନବବର୍ଷର ଶୁଭେଚ୍ଛା ଜଣାଇବାକୁ ପହଞ୍ଚିଲେ ତାଙ୍କ ପାଖରେ । ସମସ୍ତେ ନବବର୍ଷର ଶୁଭେଚ୍ଛା ଜଣାଇବା ପରେ ମଧୁସୂଦନ କହିଲେ ମୁଁ ଏକ ଦୁଃଖଦ ହୃଦୟରେ ଆପଣଙ୍କୁ ଶୁଭେଚ୍ଛା ଜଣାଉଛି । ମୁଁ କନିକା ରାଜାଙ୍କ ଓକିଲ । ଆପଣଙ୍କ କୋର୍ଟରେ ମୋର ବହୁ ମୋକଦ୍ଦମା ତାଙ୍କ ତରଫରୁ । କିନ୍ତୁ ଆପଣ ତାଙ୍କ ଆତିଥ୍ୟ ଗ୍ରହଣ କରିବା ପରେ ମୁଁ କିପରି ଏକ ସ୍ୱଚ୍ଛ ହୃଦୟରେ ନ୍ୟାୟ ପାଇବା ପାଇଁ ଆପଣଙ୍କ କୋର୍ଟରେ ନିରପେକ୍ଷ ରାୟ ପାଇଁ ଠିଆ ହୋଇପାରିବି ?

ସମସ୍ତେ ଆଚମ୍ବିତ, ତଟସ୍ଥ ।

ରମାଦେବୀ ପ୍ରଭୃତି ସଂଗ୍ରହ କରୁଥାନ୍ତି କସ୍ତୁରବା ଗାନ୍ଧୀ ସ୍ମାରକୀ ପାଣ୍ଠି । ଯାଇ ପହଞ୍ଚିଲେ ଆନନ୍ଦ ଭବନରେ । ବିଜୁ, ତମେ କିଛି ଦିଅ । ବିଜୁ ପଟ୍ଟନାୟକଙ୍କର ପ୍ରଥମ ପ୍ରଚେଷ୍ଟା ହେଉଛି ଭୁବନେଶ୍ୱର ଫ୍ଲାଇଙ୍ଗ୍ କ୍ଲବ୍ । ସେଇଥିପାଇଁ ସେ ଆଣିଥା'ନ୍ତି ଲକ୍ଷେ ଟଙ୍କା । ପାଞ୍ଚହଜାର ସେଥିରୁ ଦେଇଥାନ୍ତି ଭାଇକୁ ଆମେରିକା ଯିବା ପାଇଁ । ବାକି ଅଛି ପକେଟ୍‌ରେ ୯୫ ହଜାର ଟଙ୍କା । ସେଇସବୁ ସମ୍ବଳ । ବିଜୁ ଉଠିଲେ ଏବଂ ପକେଟ୍‌ରୁ ୯୫,୦୦୦ ଟଙ୍କା ଆଣି ବଢ଼ାଇଦେଲେ ରମାଦେବୀଙ୍କୁ ।

ସେଦିନ ତାଙ୍କ ପାଖରେ ଆଉ ପଇସା ନ ଥିଲା ଆଗାମୀ କାଲି ପାଇଁ । ରାତିକୁ ବୌଦି (ଜର୍ଜ ପଟ୍ଟନାୟକଙ୍କ ସ୍ତ୍ରୀ) କରିଥିବା ରୁଟି ଆଉ ମାଂସ ସିନା ମିଳିଯିବ ଖାଇବା ପାଇଁ, କିନ୍ତୁ ବାକିସବୁ ପାଇଁ ଖର୍ଚ୍ଚ ? ଅଛି ଭାଇ ଡାକ୍ତର ଜର୍ଜ ପଟ୍ଟନାୟକଙ୍କ ପକେଟ୍ । 1.0.0. ରୁପିଜ୍ ଫାଇଭ୍‌ର ଟିପାଟିଏ ! ଜର୍ଜ ପଟ୍ଟନାୟକ ହସନ୍ତି, କ'ଣ କହିବେ ଏପରି ଭାଇକୁ ?

ମଧୁସୂଦନ ଦାସ ଶିଳ୍ପ ପ୍ରତିଷ୍ଠା କଲେ, କୁଟୀର ଶିଳ୍ପ, ହସ୍ତଶିଳ୍ପ । କିନ୍ତୁ ମାର୍କେଟିଂର ଯାଦୁ ତାଙ୍କୁ ମାଲୁମ ନ ଥିଲା । ବିଜୁ ପଟ୍ଟନାୟକ ଶିଳ୍ପ ପ୍ରତିଷ୍ଠା କଲେ । ଶରବ୍ୟ ହେଲେ ରାଜନୀତିକ ନେତାମାନଙ୍କର, ଶରବ୍ୟ ହେଲେ ଏକଚାଟିଆ ବ୍ୟବସାୟୀ ଗୋଷ୍ଠୀର । ଉଭୟଙ୍କର ନିଜର ତ୍ରୁଟି ଥିଲା ନିଶ୍ଚୟ । କାରଣ ସେମାନେ ମଣିଷ, ତଥାକଥିତ ଦେବତା ନୁହନ୍ତି । ଆଉ କୋଉ ଦେବତାଙ୍କର ବି ତ୍ରୁଟି ନାହିଁ କି ?

ମଧୁସୂଦନ ଦାସ, ବିଜୁ ପଟ୍ଟନାୟକ ଉଭୟଙ୍କର (inferiority complex) ନ ଥିଲା । ଦୋଷ ଦୁର୍ବଳତା ନିଶ୍ଚୟ ଥିଲା, ଏଥିରେ କୌଣସି ସନ୍ଦେହ ନାହିଁ । ଉଭୟେ ଓଡ଼ିଶାକୁ ହିଁ ଆପଣାର ଭିତ୍ତିଭୂମି କରିଥିଲେ । ଯଦିଓ ଏହାକୁ ସମ୍ପ୍ରସାରିତ କରିବାର ସୁଯୋଗ ଉଭୟଙ୍କର ଥିଲା । କିନ୍ତୁ ସେମାନେ ଓଡ଼ିଶାର ସ୍ୱାଭିମାନକୁ ସ୍ପର୍ଶ କରିଥିଲେ ଏବଂ ସେଇ ସ୍ୱାଭିମାନର ପ୍ରତୀକ ଥିଲେ ।

ରେଭେନ୍ସା କଲେଜକୁ ଆସିଲା ବେଳକୁ ଜାତୀୟତାର ଉଦ୍‌ବେଳନ ମଥା ପିଟୁଥିଲା ଏବଂ ଛାତ୍ର ସମାଜ ସେଥିରୁ ମୁକ୍ତ ନ ଥିଲା । ସେଇ ଉଦ୍‌ବେଳନ ଭିତରେ ସମାଜବାଦର ମହାମନ୍ତ୍ରରେ ଦୀକ୍ଷା ଏବଂ ଛାତ୍ର ସଂଗଠନରୁ ଶ୍ରମିକ ସଂଗଠନରେ କାର୍ଯ୍ୟ, ରେଲ୍‌ଲାଇନ୍ କଡ଼େ କଡ଼େ ଗ୍ୟାଙ୍ଗକୁଲିମାନଙ୍କୁ ସାକ୍ଷାତ୍ ।

ବିପ୍ଳବର ଆଗଛାମୁଆ ବାହିନୀ ହୁଏତ ପ୍ରସ୍ତୁତ କିନ୍ତୁ ଜନସାଧାରଣ ? କମ୍ୟୁନିଷ୍ଟ ପାର୍ଟି ପଟିଆବନ୍ଧ ବିନା ସରକାରୀ ସାହାଯ୍ୟରେ ଜନସାଧାରଣଙ୍କୁ ସଂଗଠିତ କରି ତିଆରି କରିଛି ମାନ୍ ବେସ୍ ବା ଗଣଶକ୍ତି, ଠିକ୍ ସେଇପରି ତିଆରି କରିଛି ବେସ୍ ଅର୍ଦ୍ଧାଉଳିଆରେ ବା ମଙ୍ଗଳପୁରରେ । ଶ୍ରମିକ ସଂଗଠନ ଗଢ଼ିଉଠିଛି ବାରଙ୍ଗ କାଚ କାରଖାନାରେ, ବ୍ରଜରାଜନଗର କାଗଜ କଳରେ ବା କଟକ ପ୍ରେସ୍ ଶ୍ରମିକ ଭିତରେ, ବା ଗିଲିଫ୍ କାମ ଛରିଆରେ ଶଙ୍କରପୁରରେ ତିଆରି ହୋଇଛନ୍ତି କ୍ୟାଡ଼ର । ଦୁର୍ଗା କର ଠାରୁ ଯଦୁନନ୍ଦନ ବିଶ୍ୱାଳଙ୍କ ପର୍ଯ୍ୟନ୍ତ କିନ୍ତୁ ତାହା କ'ଣ ଏକ ବିପ୍ଳବ ପାଇଁ କୁଳାନ ? ସେମାନେ ପ୍ରସ୍ତୁତ କାରାବରଣ କରିବା ପାଇଁ, ଲାଠିମାଡ଼ ଖାଇବା ପାଇଁ, କିନ୍ତୁ ତାହା କ'ଣ କୁଳାନ ଏଇ ବ୍ୟବସ୍ଥାକୁ ଭାଙ୍ଗିଦେବା ପାଇଁ, ପଟିଆର ନାଥ ସ୍ୱାଇଁ, ରେଭେନ୍ସା କଲେଜର ବିଶ୍ୱମ୍ଭର ସାମନ୍ତ, ଅର୍ଦ୍ଧାଉଳିଆର ଶରତ ମହାନ୍ତି ପ୍ରସ୍ତୁତ, କିନ୍ତୁ ଆମ୍ଜନତା ? ତଥାପି ଶଙ୍କରପୁରର ଚାଷୀ, ପଟିଆର ଚାଷୀ ବହୁ କଷଣ ସହିଛନ୍ତି । ଜେଲ୍‌ଗେଟ୍ ସାମ୍ନାରେ କଠୋର ପ୍ରଚେଷ୍ଟା କରିଛନ୍ତି । ସେଇଯୋଗୁଁ ପାର୍ଟିର ପ୍ରଭାବ ବଢ଼ିଛି ସମ୍ମାନ ବଢ଼ିଛି କିନ୍ତୁ ସଂଗଠନ ସେଇ ଅନୁଯାୟୀ ବଢ଼ି ନାହିଁ ।

ମୋର ହେତୁ ରହିଛି ୰ ଆଡ୍‌ଭୋକେଟ୍ ରଘୁନାଥ ଦାସ କୋମିନୋ ଫର୍ମର ମୁଖପତ୍ରରେ ପ୍ରକାଶିତ ଲେଖାକୁ ଦେଖାଇ କହିଥିଲେ, 'ସେଣ୍ଟର ପାର୍ଟିକୁ ଲେଖିବା ପାଇଁ । କିନ୍ତୁ ସେଣ୍ଟର ପାର୍ଟିର ଅନେକ ରଣଦିଭେ ଏବଂ ପରେ ରାଜେଶ୍ୱର ରାଓଙ୍କ ନୀତିର ସାଫଲ୍ୟର ସ୍ୱପ୍ନ ଦେଖୁଥିଲେ ଯଦିଓ ପାର୍ଟିର ଦୁର୍ଗ ଭାଙ୍ଗି ପଡୁଥିଲା ବିଭିନ୍ନ ସ୍ଥାନରେ ।

ପଳାତକ ହୋଇ ଗଲି ପ୍ରଥମେ ପଟିଆ କିଲା । ସେମାନେ ସମସ୍ତେ ଗଲେଣି । ନାଥ ସ୍ୱାଇଁ, ମୂଷା ଜେନା, ଭ୍ରମର ପ୍ରଧାନ... ଆଉ ନାମ ମନେପଡୁ ନାହିଁ । କାମ କଅଣ ? ପାର୍ଟିର ପ୍ରଭାବ ପ୍ରଚୁର । ତଥାପି ଯ ପଳାୟତି ସ ଜୀବତି । କାରଣ ଅହରହ ପୁଲିସ୍ ଆକ୍ରମଣ । ହେତୁ ଥିବା ଭିତରେ ଆମର ତତ୍କାଳୀନ ଏସ୍‌କର୍ଟ ନିତ୍ୟାନନ୍ଦ, ବର୍ତ୍ତମାନ କଂଗ୍ରେସ ନେତା । ସମୟ ବଦଳିଛି ।

ଥରେ କଳାରାହାଙ୍ଗ ଗ୍ରାମରେ ଥିଲାବେଳେ ହୋଇଗଲା ପ୍ରଥମ ଅଗ୍ନିପରୀକ୍ଷା । ହଠାତ୍ ପୁଲିସ୍ ଆକ୍ରମଣ । ମୋତେ ଗୋଟିଏ ଛୋଟ ଧାନ ଅମାର ଘରେ ଭର୍ତ୍ତି କରି ବାହାରୁ ତାଲା ପକାଇ ଦିଆଗଲା । ଭିତରେ ନିରାପଦ, କିନ୍ତୁ ଘୁଞ୍ଚିବା ପାଇଁ ଇଞ୍ଚେ ଜାଗା ନାହିଁ । ଆଉ ଅସଂଖ୍ୟ ଧାନପୋକ ସାଙ୍ଗକୁ ପିମ୍ପୁଡ଼ି । ସନ୍ଧ୍ୟାବେଳେ ମୋତେ ଘର ଭିତରୁ ବାହାର କଲାବେଳକୁ ମୋର ଦେହଯାକ ଘା' ଆଉ ଯନ୍ତ୍ରଣା ।

ଠିକ୍ ସେଇପରି ପଦାସାହି ମୂଷା ଜେନାଙ୍କ ଘରେ ବହୁ ପାଳଗଦା, ତା' ଭିତରୁ ଗୋଟିକରେ ତିଆର ହୋଇଛି ଆମର ରାତ୍ରି ବିଶ୍ରାମସ୍ଥଳ । ହଠାତ୍ ସେଦିନ ସକାଳଟାରୁ ପୁଲିସ୍ ଚଢ଼ଉ । ଗୋଟାଏ ପାଳଗଦା ଭିତରେ ମୋତେ ପକାଇ ଘୋଡ଼ାଇ ଦିଆଗଲା ନଡ଼ା । କିଏ ଜାଣିଥିଲା ଯେ ଭିତରଟା ଓଦା ଥିଲା ଏବଂ ସେଥିରେ ଥିଲେ ଅସଂଖ୍ୟ ଜନ୍ଦା । ମୁଁ କେବଳ କାନ ଦୁଇଟାକୁ ବନ୍ଦ କରି ଆଙ୍ଗୁଳିରେ ବନ୍ଦ କରି ରଖିଲି ଆଖିକୁ । ଭ୍ରମରି ଆସନ କଲାପରି । ଦୁଇଘଣ୍ଟା ପରେ ମୋତେ ସେଥିରୁ ବାହାର କଲା ବେଳକୁ ମୁଁ ପ୍ରାୟ ଅଚେତ ।

କାଳିଆବୋଦା ଆଶ୍ରମ, ସେତେବେଳେ ମହାନଦୀ ବିହାର ହୋଇ ନାହିଁ । କେବଳ କୁଷ୍ଠାଶ୍ରମ, ଆଉ ରେଲ୍ ଲାଇନ୍ ପାଖରୁ ନୂଆବଜାର ପର୍ଯ୍ୟନ୍ତ ସବୁ ନିଶୂନ । ଖାଲି କାଳିଆବୋଦା ଆଶ୍ରମର ଦୁଇ ଧାଉଡ଼ି ବସ୍ତି, ବସ୍ତିବାଲା ଉଠନ୍ତି ପାହାନ୍ତିଆ ଚାରିଟା ବେଳୁ, ଡାକ ଶୁଭେ । ଓ ! ଭକ୍ତବୃନ୍ଦମାନେ । ଆମକୁ ନିତ୍ୟକର୍ମ ସାରିବାକୁ ପଡ଼େ ମହାନଦୀରେ ତା'ପୂର୍ବରୁ । ପୂରା ଅନ୍ଧାର । କାଳିଆବୋଦା ଶ୍ମଶାନ, ପୋଡ଼ାହୁଏ ଯେତିକି ନଈପାଖରେ ଫୋପାଡ଼ି ଦିଆଯାଏ ସେତିକି । ଅନେକ ସମୟରେ ଗୋଡ଼ ପଡ଼ିଯାଏ ଶବ ଉପରେ, ସେଇ ଅନ୍ଧାରରେ ।

ଦିନେ ରାତିରେ । କେଶବ (ଛଦ୍ମନାମ ଟିପୁ) ଏବଂ ମୁଁ (ଛଦ୍ମନାମ ନରି) ଯାଇଥିଲୁ ଗାଧୋଇ । ମୋର ଗୋଡ଼ତଳେ ଲାଗିଲା ଲମ୍ବା ବାଳ । ମୁଁ ଚମକି ପଡ଼ିଲି । ଡାକିଲି ଟିପୁକୁ । ସେ ଭାରି ନିର୍ଭୟ । କହିଲା ଦେଖ୍, କାହାର ମୁଣ୍ଡବାଳ ହୋଇଥିବ । ସେଇ ଶବଟା ଥିଲା ଜଣେ ନାରୀର । ତା'ର ମୁକୁଳା ବାଳ ଉପରେ ମୁଁ ଠିଆ ହୋଇଥିଲି । ଚମକି ଡେଇଁପଡ଼ିଲି । ଗୋଡ଼ ପଡ଼ିଗଲା ଶବର ପେଟ ଉପରେ । ଆଉ ତା' ପରେ ଯାହା ବାହାରିଲା ତାହାର ଖଦ୍ଧ ଓ ଗନ୍ଧ ମଂଜ ଥରାଇଦେବା ପାଇଁ ଯଥେଷ୍ଟ ।

ଆମର ଡେନ୍ କିପର୍ ଧନି । ତାଙ୍କ ନାଁରେ ଘରଭଡ଼ା ନିଆଯାଇଛି । ପାଖ ଘରଟା ଖାଲି ଥିଲା । ସେଠି ଆସି ରହିଲେ ଜଣେ ପୁଲିସ୍ ଇନ୍ସପେକ୍ଟର । ବାବାଙ୍କ ଭକ୍ତ । କ'ଣ କରାଯିବ ? ବାଧ ହୋଇ ଟେକି ଆଣିଲୁ ଦୁଇଟା ଶବ ମଶାଣିରୁ । ଦୁଇପଟ କବାଟରେ ଆଉଯାଇ ବାନ୍ଧି ଦିଆଗଲା । ରାତି ପାହାନ୍ତାରୁ ଉଠି ପୁଲିସ୍ ବାବୁ ଗୋଟାଏପଟ କବାଟ ଖୋଲନ୍ତେ ଗୋଟାଏ ଶବ ତାଙ୍କ ଉପରେ ପଡ଼ିଗଲା । ଇଲୋ ମୋ ବୋପାଲୋ କହି ଆରପଟ କବାଟ ଖୋଲିଲାକ୍ଷଣି ଆଉ ଗୋଟାଏ ଶବ । ପୁଲିସ୍‌ବାବୁଙ୍କର ମୂର୍ଚ୍ଛା ଓ ପତନ । ତା' ପରେ ପଳାୟନ ସେ ସ୍ଥାନରୁ ।

ଏଇ ସମୟରେ ମୋର ଏକ ସମ୍ପୂର୍ଣ୍ଣ ବିଚିତ୍ର ଅନୁଭୂତି । କଟକ ସହରର ଜଣେ ଅଫିସର ଏବଂ ତାଙ୍କ ସ୍ତ୍ରୀ ରହିଥାନ୍ତି ଏକ ଘରେ । ସେ ଆମର କଣ୍ଟାକ୍ଟ । ନିହାତି ଦରକାର ପଡ଼ିଲେ ତାଙ୍କ ଘରେ ଅସ୍ଥାୟୀ ଆଶ୍ରୟ ନିଆଯାଏ । ମୁଁ ଥରେ ତାଙ୍କ ଘରେ ପହଞ୍ଚିଲି । ୰ ଦୁର୍ଗା ମହାନ୍ତି କିଛି କାମ ଦେଇଥିଲେ, କପି କରିବା ପାଇଁ । ହଠାତ୍ ଉକ୍ତ ଅଫିସରଙ୍କ ଘରେ ତାଙ୍କର ଜଣେ ବନ୍ଧୁ ଓ ତାଙ୍କର ସ୍ତ୍ରୀ ଆସି ପହଞ୍ଚିଗଲେ ଅତିଥି ହେବା ପାଇଁ । ସେମାନେ ରହିବେ ସାତଆଠ ଦିନ । ବାଧ ହୋଇ ମୋତେ ପରିଚୟ କରାଇ ଦିଆଗଲା ଘରର ଚାକର ବୋଲି । ତା'ପରେ ଦେଖ, ଉକ୍ତ ଭଦ୍ରମହିଳାଙ୍କ ବରାଦ ମୋ ଉପରେ । ଗଦାଏ ଲୁଗା କାଚିବାକୁ ବରାଦ କଲେ । ମୁଁ ଆଉ ଲୁଗା କଚା ! କିନ୍ତୁ ଉପାୟ କ'ଣ ? ତା'ପରେ ବରାଦ କଲେ ଗୋଡ଼ ଓ ପରେ ଦେହ ଘଷିବା ପାଇଁ । ଆଉ ଘଷିଲା ବେଳେ ସେ ସମ୍ପୂର୍ଣ୍ଣ ଅନାବୃତ ହୋଇପଡ଼ନ୍ତି । ଶିକ୍ଷିତା, ବେଶ୍ ଉଚ୍ଚଶିକ୍ଷିତା ଝିଅ । ବୟସ ମୋରି ପାଖାପାଖି । ବାହା ହୋଇଛନ୍ତି ବର୍ଷେ ବି ହୋଇ ନାହିଁ । ବେଶ୍ ବଡ଼ଲୋକର ଝିଅ । ଦରିଦ୍ର ପରିବାରରୁ ଆସିଥିବା ଅଫିସର ବାହା ହୋଇପଡ଼ିଛନ୍ତି ପ୍ରତିଷ୍ଠା ପାଇଁ ଏବଂ ଯୌତୁକ ପାଇଁ ।

ଲାଜ ମାଡୁଥିଲା ମୋତେ । ସେ ମୋତେ ସାହସ ଦେବା ପାଇଁ କହିବାକୁ ଲାଗିଲେ । କ'ଣ ସୁନ୍ଦରିଆ ଯୁଆନ ଟୋକାଟା ତୁ, କିଛି ବୁଝିପାରୁ ନାହିଁ ନା କ'ଣ ? ଭଲକରି ଘଷୁନୁ । ଆଉ ହସି ହସି କହନ୍ତି ଯେ ତୋ ମାଲିକାଣୀ କ'ଣ ତୋତେ ଘଷିବା ଶିଖାଇନି ନା କ'ଣ ? ଆଉ ମୋର ମାଲିକାଣୀ ସହିତ ଯାହା ସଂପର୍କ, ତାହା ତ ମୁଁ କହିପାରିବି ନାହିଁ । ଆଉ ପ୍ରତିଦିନ ଏଇ ପର୍ବ ଚାଲିଲା । ସନ୍ଧ୍ୟାବେଳେ ବାବୁ ଦୁହେଁ ବୁଲିବାକୁ ଯାଆନ୍ତି, 'ମାଲିକାଣୀ' ରୋଷେଇରେ ବ୍ୟସ୍ତ ଆଉ ଆଗନ୍ତୁକା ଅତିଥିଙ୍କର ଆରମ୍ଭ ହୁଏ ଘଷିବା ପର୍ବ । କଥାଟା ବଢ଼ିଲା ଯେଉଁଦିନ ମୋର 'ମାଲିକ ଆଉ ମାଲିକାଣୀ'ଙ୍କୁ ଯିବାକୁ ପଡ଼ିଲା ଏକ ସାମାଜିକ କାର୍ଯ୍ୟରେ । ଆଉ ଦୈବାତ୍ ଉକ୍ତ ଭଦ୍ରମହିଳାଙ୍କ ସ୍ୱାମୀ ବି ସେଦିନ ନ ଥିଲେ । ଆଉ ଏଇ ଅବସରରେ ମୋତେ ଉକ୍ତ ଭଦ୍ରମହିଳା ଶିଖାଇବାକୁ ଚାହିଁଲେ ସେଇ କୌଶଳ, ଯାହା ଜଣେ ପୁରୁଷକୁ ବାନ୍ଧି ରଖେ ନାରୀ ପାଖରେ । କେବଳ ସେତିକି ନୁହେଁ, ସେ ଶିଖାଇଲେ ମୋତେ ତାଙ୍କ ସାଙ୍ଗରେ ଯାଇ ତାଙ୍କ ଘରେ ରହିବା ପାଇଁ । ସାଧାରଣ ପରିସ୍ଥିତି ହୋଇଥିଲେ ମୋର କ'ଣ ହୋଇଥାନ୍ତା, ସେ ଅଲଗା କଥା । କିନ୍ତୁ ମୋର ଡର ପଶିଯାଇଥିଲା ବେଶୀ ।

ସେଦିନ ମୋର 'ମାଲିକାଣୀ' ଫେରିବା ପରେ ଉକ୍ତ ଭଦ୍ରମହିଳା ମୋତେ ପଠାଇବାକୁ ଚାହିଁଲେ ବଜାରକୁ । କଟକ ସହରରେ ଯେ ମୁଁ ପ୍ରସିଦ୍ଧ ବା ଜଣାଶୁଣା ଥିଲି ତା' ନୁହେଁ । କିନ୍ତୁ ଉକ୍ତ ଅଞ୍ଚଳଟା ମୋର ପରିଚିତ ଅଞ୍ଚଳ । ହୁଏତ ବଜାରକୁ ଗଲେ ଆଉ ନ ଫେରିବାର ସମ୍ଭାବନା ବହୁତ ବେଶୀ । ଆଉ ବିପଦ ବି ବରଣ କରିବେ ମୋର 'ମାଲିକ ଏବଂ ମାଲିକାଣୀ ।'

ସେଇଟା ମଫସଲିଆଟା ନା ବଜାର ଜାଣେ ନା ବଜାର କରିଆସେ, ତାକୁ ମାଲିକାଣୀ ଏହିପରି କହି କଥାଟାକୁ ଏଡ଼ାଇଦେବାକୁ ଚାହିଁଲେ । ସତରେ ମ, ମଫସଲିଆଟା, ମୁଁ ଆଜି ତାକୁ ଦେଖିଲି ପରା ।

ଉକ୍ତ ଭଦ୍ରମହିଳା ବିନୟ କଲେ ମୋର 'ମାଲିକାଣୀ'କୁ ତୁ ପିଲାଟାଏ ଯୋଗାଡ଼ କରିପାରିବୁ । ମୋତେ ଏଇ ପିଲାଟିକୁ ଦେ ।

ବର୍ତ୍ତମାନ ମୋର 'ପଳାଇବା' ଛଡ଼ା ଉପାୟ ନାହିଁ । ଦୁର୍ଗା ମହାନ୍ତି ବି ସେଇଦିନ ମୋତେ ସେଇ ଇଙ୍ଗିତ ଦେଲେ, ମୋର 'ମାଲିକ' ଜରିଆରେ । ସନ୍ଧ୍ୟାବେଳକୁ ମୁଁ ଛୁ ସେଠାରୁ ।

କାଠଯୋଡ଼ି ନଈକୂଳରେ ନବ ମହାନ୍ତିଙ୍କ କଡ଼େଇ କାରଖାନାର ଏକ ପରିତ୍ୟକ୍ତ ଘର ଆମର ଥିଲା ଭେଟସ୍ଥଳ । ନାମ ଦେଇଥିଲୁ ବନ୍ଧୁଘର । ସେଇଠି ପହଞ୍ଚିଲି । ତା'ପରେ ପଟିଆ ।

କାଳିଆବୋଦାରେ ଆମେ ଥାଉ । ଦିନେ ଆସିଥିଲି କୌଣସି ଏକ ପାର୍ଟି ବୈଠକରେ ଯୋଗଦେବା ପାଇଁ, ସହରର ଆଉ ଗୋଟାଏ ଅଞ୍ଚଳକୁ । ପୁଲିସ୍ ଚଢ଼ଉ ହଠାତ୍ ହୋଇଗଲା । ପଳେଇଲି, ରାତି ହୋଇଗଲାଣି । ମୋର ଏସ୍‌କର୍ଟ ବନ୍ଧୁ କୁଆଡ଼େ ଗଲେଣି ଜଣାପଡୁ ନାହିଁ । ବାଧ ହୋଇ ମୋର ଜଣେ ପରିଚିତ ପୁଲିସ୍ ଅଫିସରଙ୍କ ଘରେ ପଶିଗଲି । ରହିଗଲି ରାତିଟା ସେଇଠି । ସକାଳୁ ତାଙ୍କ ଘରେ ଆଇ.ଜି. ହାଜର । କାରଣ ତଡ଼ିଥିବା ପୁଲିସ୍ ଖବର ଦେଇଛି ଯେ ମୁଁ ସେଇ ଘରେ ପଶିଛି । ଅବଶ୍ୟ ପୁଲିସ୍ ଜାଣେନା ମୋର ପରିଚୟ । କିନ୍ତୁ ଏତେବଡ଼ ପୁଲିସ୍ ଅଫିସରଙ୍କ ଘରକୁ ଯିଏ ପଶିଯାଇ ରହିପାରିଲା ସେ ନିଶ୍ଚୟ ଜଣେ ବଡ଼ ନେତା ହୋଇଥିବେ । ମୋର ଆଇ.ଜି.ଙ୍କ ନାମ ମନେପଡୁ ନାହିଁ । ତେବେ ବୋଧହୁଏ ରାଇଟ୍ ନେଭିଲ ବା ସେଇଭଳି କେହି ବୋଲି ହେତୁ ହେଉଛି ।

ଆଇ.ଜି. ପହଞ୍ଚିଲେ ହଠାତ୍ । କିନ୍ତୁ ପୁଲିସ୍ ଅଫିସର ସୁରାକ ପାଇଥିଲେ । ଅବିଚଳିତ ଭାବରେ ସେ ମୋ ସମେତ ତାଙ୍କର ସବୁ ପୁଅଝିଅଙ୍କୁ ବସାଇଲେ ସେଇ ଫାଷ୍ଟ ଟେବୁଲ୍‌ରେ । ମୋର ବୟସ ତ କମ୍ । ମୋତେ କିଏ ଚିହ୍ନିଛି ? ଆଇ.ଜି. ତ ଦୂରର କଥା । ସେ ପରିଚୟ ମୋତେ କରାଇଦେଲେ ଯେ, ମୁଁ ତାଙ୍କର ବଡ଼ଝିଅର ପ୍ରସ୍ତାବିତ ସ୍ୱାମୀ ହେବା ପାଇଁ ପ୍ରାର୍ଥୀ ।

ଦେଖ ମଜା ! ଆଇ.ଜି. ସେ ବଙ୍ଗଳାରୁ ବାହାରି ଶୋଧିଲେ ଉପସ୍ଥିତ ପୁଲିସ୍ ଅଫିସରମାନଙ୍କୁ ଯେ, ସେମାନଙ୍କ ଯୋଗୁଁ ଭୀଷଣ ଏମ୍ବାରାସଡ୍ ଏବଂ ଲଜ୍ଜିତ । ସବୁ ବଳୟ ଖାଲି । ସନ୍ଧ୍ୟାବେଳକୁ ମୁଁ ଯାଇ ହାଜର କାଳିଆବୋଦାରେ ।

କାଳିଆବୋଦାରେ ଲୋକେ ସନ୍ଦେହ କଲେ ଆମ ରହଣିକୁ । ମହାନଦୀ ଉପରେ ସଡ଼କ ପୋଲ ହୋଇ ନାହିଁ । କେବଳ ରେଳ ପୋଲ, ଯାହାକୁ କୁହନ୍ତି ଗାଳା । ଛୋଟ ଛୋଟ ବେପାରୀମାନେ ସେଇ ରେଲ୍ ପୋଲ ଉପରେ ଯାଆନ୍ତି ଏବଂ ସେମାନଙ୍କୁ ଅନେକ ସମୟରେ ଲୁଟିର ସମ୍ମୁଖୀନ ହେବାକୁ ପଡ଼େ । ଏଇଭଳି କିଛି ଲୋକ ଅଛନ୍ତି କି ଏଇ

ଘରେ ? ଘରକୁ ଘେରାଉ କରି ପୁଲିସ୍‌କୁ ଖବର ଦେଲେ । ଡାକୁ ବା ଚୋର ? ହଉ ଯିବା । ପୁଲିସ୍ ଆସିବାକୁ ବେଶ୍ ଡେରି ।

ଆମେ ଖବର ପାଇ ଘରଛାଡ଼ି ପଳେଇବାକୁ ସ୍ଥିର କଲୁ । ଦିନଟା, କିନ୍ତୁ ଉପାୟ କ'ଣ ? ମନମୋହନ ମିଶ୍ର ଆରମ୍ଭ କଲେ ତାଙ୍କର ଓଜସ୍ୱିନୀ ଭାଷଣ ଓ ଗୀତ । ସବୁ କାଗଜପତ୍ରରେ ନିଆଁ ଲଗାଇ ଦେଇ, ଧନୀ, ତା'ର ସ୍ତ୍ରୀ, ପୁଅଝିଅକୁ ଛାଡ଼ି ଆମେ ପଳେଇଲୁ । ଦୁର୍ଗା ମହାନ୍ତି, ମନମୋହନ ମିଶ୍ର, ମାଧବ ସିଂ, ଦୁଃଶାସନ ଜେନା, କେଶବ ଦାସ ଏବଂ ମୁଁ । ସମସ୍ତେ ଗଲେଣି ଚାଲି, ଅଛୁ କେବଳ କେଶବ ଓ ମୁଁ । ଦୁର୍ଗା ମହାନ୍ତି ରହିଗଲେ କଟକ ସହରରେ ଆଉ ଆମେ ସବୁ ଚାଲିଲୁ ପଟିଆ କଲ୍ୟାଣପୁର ଗାଁକୁ ।

ସେଦିନ ଦେଖାହୋଇଗଲା ପାଗଳାବାବାଙ୍କ ମାଟିତଳ ଘର ଏବଂ ସୁଡ଼ଙ୍ଗ । ବହୁ ଶିଷ୍ୟ ଶିଷ୍ୟାମାନଙ୍କୁ ମଧ୍ୟ ଭେଟିଲୁ । ବାବା କହିଲେ, ତାଙ୍କର ପତାକା ନାଲି, ଆମର ସବୁ ଡ୍ରେସ୍ ନାଲି । ମାଳିକା କହିଛି, ରୁଷିଆ ଆସିବ, ଉତ୍ତରେ ଗାଜିବ । ଛାଡ଼ିଦିଅ ସେମାନଙ୍କୁ । ପୁଲିସ୍ ଭାବିଛି ଆମେ ସାଲେପୁର ପଟକୁ ଯାଇଛୁ । କିନ୍ତୁ ଆମେ ଯେ ପଠା ପାର ହୋଇ ଗୁରୁଣ୍ଡି ଗୁରୁଣ୍ଡି କାଠଯୋଡ଼ି ଟପି ପଳେଇଛୁ, ସେକଥା ତାଙ୍କୁ ଜଣା ନାହିଁ । ଧନୀ, ତା' ସ୍ତ୍ରୀ, ପୁଅ, ଝିଅ ଉପରେ ମାଡ଼ ହେଲା ପୁଲିସ୍‌ର । କିନ୍ତୁ ସେ କେତେ ଜାଣିଚି ଆମ ସଂପର୍କରେ ? ଧନୀ ସାଙ୍ଗରେ ଆଉ ଦେଖା ହୋଇ ନାହିଁ ।

ପହଞ୍ଚିଲୁ ପଟିଆ କିଲାରେ, ମନମୋହନ ମିଶ୍ର, ଦୁଃଶାସନ ଜେନା, କେଶବ ଦାସ ଏବଂ ମୁଁ । ମାଧବ ସିଂ କଲ୍ୟାଣପୁରରେ ପହଞ୍ଚି ଚାଲିଗଲେ ବୋଧହୁଏ ବାରଙ୍ଗ ଦେଇ ତାଳଚେର । ଆସିଲା ବନ୍ୟା । ହଠାତ୍ ଖବର ମିଳିଲା ପୁଲିସ୍ ଚଢ଼ାଉ କରିପାରେ । ସନ୍ଧ୍ୟାବେଳେ ଖବର । ମନମୋହନ ମିଶ୍ର ଦୁଃଶାସନ ଜେନାଙ୍କୁ ନଈ ଆରପଟକୁ ନିଆଗଲା । ସେମାନେ ଆମଠାରୁ ସିନିଅର୍ । ସେମାନଙ୍କର ନିରାପତ୍ତା ଆମଠାରୁ ବେଶୀ ଜରୁରୀ ।

କେଶବ ଓ ମୁଁ ବାହାରିଲୁ ଯିବା ପାଇଁ ଗାଡ଼କଣ, ରଙ୍ଗମାଟିଆ । ସେଠାରେ ନିତ୍ୟାନନ୍ଦ ଏବଂ ବସନ୍ତ ଅପେକ୍ଷା କରିଥିବେ । ସେମାନେ ଆମକୁ ଏସ୍‌କର୍ଟ କରିନେଇଯିବେ ଚନ୍ଦକା ଜଙ୍ଗଲ ଭିତର ଗୁମ୍ଫାକୁ ବା କୌଣସି ଗ୍ରାମକୁ । ନିତ୍ୟାନନ୍ଦ ବର୍ତ୍ତମାନ ପ୍ରତିଷ୍ଠିତ ଏବଂ କଂଗ୍ରେସ ଦଳର ଅନ୍ତର୍ଭୁକ୍ତ । ବସନ୍ତ ମରିଗଲାଣି ହାତୀ ଆକ୍ରମଣରେ ।

ମଝିରେ ବୁଡ଼ ନଈ । ଅକାତ କାତ ପାଣି । ପୁଣି ବୁଡ଼ ନଈ ଦୁଇପଟକୁ ବହେ । ମୋତେ ପହଁରା ଆଦୌ ଆସେ ନାହିଁ । ପ୍ରଖର ସ୍ରୋତ । କେଶବ (ଟିପୁ) କହିଲା, ମୋ ପିଠି ଉପରେ ଶୋଇ ଯା' । ଜମା ଛାଡ଼ିବୁ ନାହିଁ । ମୁଁ ପହଁରୁଛି । କେତେ ଘଣ୍ଟା ସେ କେମିତି ପହଁରି ପାରିଲା, ମୁଁ କହିପାରିବିନି । କିଟିମିଟି ଅନ୍ଧାର, କମ୍ପ ଆସିଲାଣି ଥଣ୍ଡାରେ ।

ଆରକୂଳରେ ଲାଗିଲୁ ।

ଗାଡ଼ିକଣ ଶଅର ସାଇରେ ରହଣି । ଢାମଣା ସାପ, ଝଡ଼ିପୋକ ଖାଇବାକୁ ପଡ଼ିଛି । ନୂଆ ତିଆରି ହୋଇଛି କ୍ୟାପିଟାଲ । ବିରଟିଶ କରୁଛି (ବ୍ରିଟିଶ) ନଚେତ୍ କମ୍ପାନୀ କରୁଛି । ପୁଅ ଜନ୍ମ ହେଲେ ଶଅରସାଇରେ ନାମ ଦିଆଯାଉଛି କୁମ୍ପାନୀ ନ ହେଲେ ବିରଟିଶ୍ ।

ଏଇପରି ଏକ ଅଭିଜ୍ଞତା ଘଟିଲା ମହାବାତ୍ୟା ପରେ ଗୋବିନ୍ଦପୁର ଅଞ୍ଚଳରେ କମ୍ବଳ ବାଣ୍ଟିଲା ବେଳେ । ସାଙ୍ଗରେ ଇସ୍ରାଏଲ୍ ଦୂତାବାସର ପ୍ରତିନିଧି । ଯେଉଁ ପିଲା କମ୍ବଳ ନେବ ତା'ର ନାମ ପଚାରିବାରୁ ସେ କହିଲା 'ହିଟ୍ଲର୍' । ଚମକି ପଡ଼ିଲେ ଇସ୍ରାଏଲ୍ ପ୍ରତିନିଧି । ଶତ୍ରୁର ଶତ୍ରୁ ଆମର ବନ୍ଧୁ, ଏଇ ଧାରଣା ଥିବାରୁ ବ୍ରିଟିଶ ସରକାରଙ୍କର ଶତ୍ରୁ ହିଟ୍ଲର ଆମର ବନ୍ଧୁ ହୋଇପାରନ୍ତି । ଏହା ଖାଲି କ'ଣ ଗୋବିନ୍ଦପୁରର ଚାଷୀର ଧାରଣା, ନା ଏଇଭଳି ବିଶ୍ୱାସ ଥିଲା ଭାରତବର୍ଷର ବହୁ ଜାତୀୟତାବାଦୀ ନେତାଙ୍କର ? ସେମାନଙ୍କ ମଧ୍ୟରେ ସୁଭାଷ ବୋଷ ଅନ୍ୟତମ । ସେଇ ବିଶ୍ୱାସରେ ତ ସେ ଚାଲି ଯାଇଥିଲେ ଜର୍ମାନୀ । ସେହି କାରଣରୁ ମଧ୍ୟ କମ୍ୟୁନିଷ୍ଟମାନଙ୍କ ଆଖିରେ ସୁଭାଷ ବୋଷ ଫାସିବାଦୀ ବୋଲି ଅଭିଯୁକ୍ତ । କିନ୍ତୁ ମୁଁ ଜର୍ମାନୀ ଯାଇଥିଲା ବେଳେ ଦେଖିଲି ସେଇ ଅଭିଲେଖାଗାର, ଯେଉଁଠି ସଂରକ୍ଷିତ ରହିଛି ସୁଭାଷ ବୋଷଙ୍କ ଦଲିଲ୍ । ସେଠାରେ ଥିବା ଭାରତୀୟ ଗବେଷକମାନେ କହିଲେ ଯେ, ସୁଭାଷ ବୋଷଙ୍କ ସହିତ ତୀବ୍ର ମତଭେଦ ହୋଇଛି ହିଟ୍ଲରର । ଦଲିଲମାନଙ୍କରୁ ଏହା ପ୍ରମାଣିତ ହୋଇଛି ଏବଂ ସୁଭାଷ ପରିଶେଷରେ ନିଷ୍ପତ୍ତି କରିଛନ୍ତି ଜର୍ମାନୀ ଛାଡ଼ି ଜାପାନ ଚାଲିଯିବା ପାଇଁ । କାଳେ ଏସିଆ ମହାଦେଶର ଶକ୍ତି ଭାରତ ପରି ଅନ୍ୟ ଏସିଆ ମହାଦେଶର ଆଉ ଏକ ଦେଶର ମୁକ୍ତି ପାଇଁ ସହାୟକ ହୋଇପାରେ ବା ଅନୁକୂଳ ମତ ପୋଷଣ କରିପାରେ, ଏଇ ଆଶାରେ ।

ହିଟ୍ଲର ନାମଧାରୀ ସେଇ ବାଳକର ସନ୍ତକଟିକୁ ନେବା ପାଇଁ ଆଗ୍ରହ ପ୍ରକାଶ କରିଥିଲେ । ଠିକ୍ ଯେପରି ଆଗ୍ରହ ପ୍ରକାଶ କରିଥିଲେ ସ୍ୱିଜରଲ୍ୟାଣ୍ଡର ଅଧ୍ୟାପକ ଜିଲାଣ୍ଡ କର୍ଫ୍ୟୁ ପାସ୍‌ଟିକୁ ନେବା ପାଇଁ ।

ଅଧ୍ୟାପକ ଜିଲାଣ୍ଡ ଥାଆନ୍ତି କଟକରେ । ଆଦିବାସୀମାନଙ୍କ ଉପରେ ଗବେଷଣା ପାଇଁ ସେ ଆସିଥାଆନ୍ତି ଓଡ଼ିଶା । ସେଇଦିନ ତାଙ୍କର ସ୍ୱିଜରଲ୍ୟାଣ୍ଡ ଫେରିଯିବାର କଥା । କଟକରେ ସାନ୍ଧ୍ୟଆଇନ୍ ବା କର୍ଫ୍ୟୁ ଜାରି ହୋଇଗଲା । ତାଙ୍କୁ ଛାଡ଼ିବାକୁ ଯିବାକୁ ହେବ, ଏସ୍.ପି.ଙ୍କୁ ଫୋନ୍ କରି । ସେ ତାଙ୍କ ପାଇଁ, ମୋ ପାଇଁ ଏବଂ ଉମେଶ ପାଇଁ ତିନୋଟି କର୍ଫ୍ୟୁ ପାସ୍ ଦେଲେ ।

ସ୍ୱିଜରଲ୍ୟାଣ୍ଡର ଅଧ୍ୟାପକ । ସାନ୍ଧ୍ୟଆଇନ୍ କ'ଣ ଜାଣି ନାହିଁ, ଦେଖି ନାହିଁ ବା ଶୁଣି ନାହିଁ । ନିରପେକ୍ଷ ସ୍ୱିଜରଲ୍ୟାଣ୍ଡରେ କର୍ଫ୍ୟୁ କ'ଣ ବୁଝାଇବାକୁ ପଡ଼ିବ । ଗଲୁ ଭୁବନେଶ୍ୱର । ରାସ୍ତାଘାଟ ବାଟ ସବୁ ଖାଲି । ସ୍ୱାଭାବିକ ଭାବରେ ତାଙ୍କର ଇଚ୍ଛା ହେଲା କର୍ଫ୍ୟୁ ପାସ୍‌ଟିକୁ ରଖିବା ପାଇଁ ମେମେଣ୍ଟୋ ଭାବରେ ।

ଗାଡ଼କଣ ଶଅର ସାହି । ଝିଅମାନେ ଯାଆନ୍ତି କ୍ୟାପିଟାଲ୍‌କୁ କାମ କରିବାକୁ । ସମସ୍ତଙ୍କର ନରିଭାଇ ମୁଁ । ସିଗାରେଟ୍ ପିଏ ମୁଁ । କି ସିଗାରେଟ୍ ତୁମେ ପିଅ ନରିଭାଇ ? କ୍ୟାପ୍‌ଷ୍ଟାନ୍ । ଜଣକା ଗୋଟିଏ ଅକ୍ଷର ମନେରଖି ସିଗାରେଟ୍ ଆଣନ୍ତି ସନ୍ଧ୍ୟାକୁ । ଆରେ, ତମକୁ କିଏ କହିଲା ଆଣିବାକୁ ସିଗାରେଟ୍ । ଶଅର ଝିଅ କାହିଁକି କିଣିଲା ସିଗାରେଟ୍, କାହା ପାଇଁ ? ସତର୍କ ହେବାକୁ ହୁଏ । ସଙ୍ଗେ ସଙ୍ଗେ ଚାଲିଯିବାକୁ ହୁଏ ଜଙ୍ଗଲକୁ, ଠେକୁଆ ଶିକାର କରିବା ନାଆଁରେ ।

ଏଇପରି ଦିନେ ଆମେ ଥିଲୁ ପାଞ୍ଚ ଛଅଜଣ । ସେଦିନ ମାଧବ ସିଂ, ନଟବର ବନଛୋର, ଗୌରୀ ଦାସ ମଧ ଥିଲେ । ଦ୍ୱିତୀକୃଷ୍ଣ ପଣ୍ଡା ସେଇ ବାଟ ଦେଇ ଯାଇଛନ୍ତି । ପାର୍ଟିର ପ୍ରାଦେଶିକ କମିଟି ବୈଠକରେ ଯୋଗଦେବା ପାଇଁ । ନଟବର ବନଛୋର, ଗୌରୀ ଦାସ ଆସିଥା'ନ୍ତି ସମ୍ବଲପୁରରୁ । ଗୋକୁଳ ମୋହନ ରାୟ ଚୂଡ଼ାମଣି ଆସି ପହଞ୍ଚିଥାନ୍ତି । ସାଙ୍ଗରେ ଚନ୍ଦକା ଜଙ୍ଗଲର ଏକ ମ୍ୟାପ୍, ସଂଗ୍ରହ ହୋଇଛି ଚନ୍ଦକାବାସୀ ଫରେଷ୍ଟ ରେଞ୍ଜର ଉପେନ୍ଦ୍ର ଦାସଙ୍କଠାରୁ । ପାର୍ଟିର ନୂଆ ଲାଇନ୍, ଗ୍ରାମାଞ୍ଚଳରେ ଗରିଲା ଯୁଦ୍ଧ । ତେଣୁ ଜଙ୍ଗଲର ମ୍ୟାପ ହାତରେ । ଗରିଲା କିନ୍ତୁ ନାହାନ୍ତି । ପାର୍ଟିର ସୀମିତ କ୍ୟାଡ଼ରଙ୍କୁ ବାଦ ଦେଲେ ଜନତା ଭିତରେ ହୁଏତ ପ୍ରଭାବ ଅଛି । କିନ୍ତୁ କେତେ ବାଟ ଯିବେ ସେମାନେ ? ଆଉ ଅତ୍ୟାଧୁନିକ ରାଷ୍ଟ୍ରର ସିପାହୀ, ସାମରିକ ବାହିନୀକୁ ସେମାନେ ସାମ୍ନା କରିବେ କିମିତି ?

ହଠାତ୍ ପୁଲିସ୍ ଆକ୍ରମଣ । ପଳେଇଲୁ ଚନ୍ଦକା ଜଙ୍ଗଲର ଗୁମ୍ଫାକୁ । ମୁଁ ଟିକିଏ ଦେଖିଆସେ କହି ମାଧବ ସିଂ ଗଲେ ଗୁମ୍ଫା ପାଖକୁ ଆଉ ତଳ ଗୁମ୍ଫାରୁ ଝଟ୍‌କି ଗଲେ ବାଘବାଘୁଣୀ । ମାଧବ ସିଂ ବଳୁଆ ମଣିଷ । ଆଉଜି ଗଲେ କଡ଼କୁ । ବାଘବାଘୁଣୀ ବି ବିସ୍ମିତ ବୋଧହୁଏ ହୋଇଯାଇଥିଲେ ଏଇ ଅନୁପ୍ରବେଶ ଦେଖି ମଣିଷର ।

ସେଇ ସମୟରେ । ପାର୍ଟିର ପ୍ରାଦେଶିକ କମିଟି ଗୁପ୍ତରେ ବସିବ । ଦୁର୍ଗା ମହାନ୍ତି, ଗୌରୀ ଦାସ, ନଟବର ବନଛୋର, କେଶବ ଓ ମୁଁ ଆଉ ଗାଡ଼କଣ ଗାଁରେ, ଶଅରସାହିରେ । ସେଇ ସାହିଟା ପାଲଟିଗଲା ଆମ ପାଇଁ ନିରାପଦ ଆଶ୍ରୟସ୍ଥଳ । ପାଖରେ ପାହାଡ଼, ନିଘଞ୍ଚ ଜଙ୍ଗଲ ।

ଏଇ ଜଙ୍ଗଲକୁ ଆସିଥିଲେ କନିକାର ତତ୍କାଳୀନ ରାଜା ପାରିଧି କରି ଆଉ ପଡ଼ିଗଲେ ଶଉରୁଣୀଙ୍କ ହାବୁଡ଼ରେ । ଯାହା ହେଲା ତାକୁ ଦଶହରା ଭେଟି ବହିରେ ଲେଖାଗଲା –

ଲାଗେ ମତେ କାଲିପରି
ଶଉରୁଣୀ ଦେଲେ ମହତ ସାରି
ମଣିମା, ଯମ ଦୁଆରୁ ଆସିଛ ଫେରି ।

ହେଲା ମାନହାନୀ ମୋକଦ୍ଦମା । ଶହ ଶହ ବୁଦ୍ଧିଜୀବୀ ସାକ୍ଷ୍ୟ ଦେଲେ । ରାୟ ପ୍ରକାଶ ପାଇଲା, ଜମିଦାରଙ୍କର ମାନହାନି ହୋଇ ନାହିଁ । ବିଧାନସଭା ସଦସ୍ୟ ୰ଅରୁଣ ପଟ୍ଟନାୟକଙ୍କ ବାପା ଏହି ରାୟ ଦେଲେ । ତାଙ୍କର ନାମ ମୋର ମନେପଡୁ ନାହିଁ ।

ସେଇ ଜଙ୍ଗଲ । ଖବର ମିଳିଥିବା ପୋଲିସ୍ ଆକ୍ରମଣରୁ ନିଷ୍କୃତି ପାଇଁ ଆମେ ଚାଲି ଯାଇଥିଲୁ ଜଙ୍ଗଲକୁ । କନ୍ଦାମୂଳ ଖାଇ ଖାଇ, ବାଉଁଶନଟି ତଳ ପାଣି ପିଇ ପିଇ ଅବସ୍ଥା ଘାଇଲା । ଫେରିଲୁ ଗ୍ରାମ ସୀମାନ୍ତ ଜଙ୍ଗଲକୁ । ଟିପୁ (କେଶବ ଦାସ) ଗଲେ ଖବର ବୁଝିବା ପାଇଁ । ପ୍ରଦକ୍ଷିଣ ବା କନେୟଟରିଙ୍ଗ୍‌ରେ, ହଠାତ୍ ଆକ୍ରମଣ । ଆଉ ଆମେ ଚାରିଜଣ ଜିନିଷପତ୍ର ଫୋପାଡ଼ି ଲମ୍ଫ ଦେଲାବେଳକୁ ସେଇଟା ବାଉଁଶ ଜଙ୍ଗଲ । ତା'ରି ଭିତରେ ଆମର ପଳାୟନ ଏବଂ ପଛରେ ଅନୁଧାବନ । ସେ ଜଙ୍ଗଲ ଭିତରୁ ବାହାରିଲା ବେଳକୁ କେହି କାହାକୁ ଚିହ୍ନିବା ଅସମ୍ଭବ । ପିଠି, ମୁଣ୍ଡ, ଗୋଡ଼, ସବୁ ଖଣ୍ଡିଆ, ସମ୍ପୂର୍ଣ୍ଣ ରକ୍ତପାତ । ରକ୍ତ ପୋଛିଲୁ ପରସ୍ପରର । ଜଙ୍ଗଲରେ କେଉଁଠି ଟିକିଏ ନିଆଁର ସନ୍ଧାନ ପାଇ ଦେହର ଲୁଗାରୁ (ଦେହରେ ଯାହା ଲୁଗା ଥିଲା) ଖଣ୍ଡିଏ ପୋଡ଼ି ଲଗାଇଲୁ କ୍ଷତ ସ୍ଥାନମାନଙ୍କରେ । ଆଉ ତା'ପରେ ପୁଣି ଚାଲିଲୁ ।

ରଣପୁର, ମେଣ୍ଢାଶାଳ ଦେଇ ଡମପଡ଼ା । ଡମପଡ଼ାରୁ ବାଙ୍କୀ । ବାଙ୍କୀରୁ ମହାନଦୀ ପାର ହୋଇ ଆଠଗଡ଼ । ଆଠଗଡ଼-ଢେଙ୍କାନାଳ ସୀମାନା ଦେଇ କଟକ ଶଗଡ଼ିଆସାହି ଆମର ଅନ୍ୟତମ ଡେନ୍‌କୁ । ବାଟରେ ହାତୀ ପଲ ପଡ଼ିଲେ । ପୋଖରୀ ପଙ୍କରେ ବେକ ପର୍ଯ୍ୟନ୍ତ ବୁଡ଼ାଇ ରଖିଲୁ ରାତିସାରା । ସକାଳୁ ପରସ୍ପରକୁ ଭିଡ଼ି ବାହାରକଲୁ । ପଙ୍କ ଯୋଗୁଁ ହାତୀପଲ ପଶିଲେ ନାହିଁ କିନ୍ତୁ ଶୁଣ୍ଢରେ ଫୋପାଡ଼ିଲେ ଯାହା ପାଇଲେ । ଭାଗ୍ୟ ଭଲ ବଞ୍ଚିଗଲୁ । ଅଗନାଅଗନି ବନସ୍ତ । ବାଘ, ହାତୀ, ବାର୍‌ହା, ଗୟଳ ସବୁ ଜନ୍ତୁଙ୍କ ଭୟ । ଶଅରମାନେ ଧନୁତୀର ଧରି ଚାଲନ୍ତି ଗୋଟାଏ ସ୍ଥାନରୁ ନେଇ ଆର ସ୍ଥାନରେ ପହଞ୍ଚାଇବା ପାଇଁ । କିରେ ଡମପଡ଼ା କେତେ ବାଟ ? ଉତ୍ତର, ଡାଳଭଙ୍ଗା ତିନିକୋଶ । ଡାଳଭାଙ୍ଗି ହାତରେ ଧରି ଚାଲୁ, ଯେଉଁଠି ଡାଳ ଶୁଖିଯିବ ସେଇଟା ହେଲା କୋଶେ । ବାଙ୍କୀରୁ ପାର ହେବୁ ମହାନଦୀ । ଗୋଟାଏ ଗଛ ମୂଳରେ ଶୋଇଛୁ । ପ୍ରବଳ ବନ୍ୟା, ଗଛ ଉପରୁ ନାଗସାପ ଦମ୍ପତିଟିଏ ଖସିପଡ଼ିଲେ ଦୁର୍ଗା ମହାନ୍ତି ଓ ମୁଁ ଶୋଇଥିବା ମଝିରେ । ଏତେ ଉପରୁ ପଡ଼ିଥିଲେ ଯେ, ସେମାନଙ୍କର ଅବସ୍ଥା ଶୋଚନୀୟ ହୋଇଉଠିଥିଲା । ସେଇଯୋଗୁଁ ଆମେ ବଞ୍ଚିଗଲୁ । ଆଉ ରଣପୁରର ମଣିନାଗ ପାହାଡ଼ । ମୋର ସାପକୁ ଭାରି ଭୟ । ଆଉ ବିଷାକ୍ତ ସାପରେ ଭରା ସେଇ ପାହାଡ଼ । ଏବେବି ଦେହ ଶୀତେଇଉଠେ ।

ମହାନଦୀରେ ସେବର୍ଷ ବିରାଟ ବନ୍ୟା । ଡଙ୍ଗାରେ ଚଢ଼ିଲୁ ନଈ ପାରହେବା ପାଇଁ । ଗୋଟିକିଆ ଡଙ୍ଗାରେ ଯିବାକୁ ହେବ । ଚାପ ଥିଲା, କିନ୍ତୁ ସେଇଟା ଆମ ପାଇଁ ନିରାପଦ ନୁହେଁ । ବାଟରେ ମଙ୍ଗ କଟିଗଲା । ନାଉରିଆ ପଚାରିଲା ଆମ ସମସ୍ତଙ୍କୁ । ମା' ଚର୍ଚ୍ଚିକା ସାହା ! ତମକୁ ସବୁ ପହଁରି ଆସେ ତ !

ଏତେ ବିପଦରେ ବି ମନେପଡ଼ିଲା ସେଇ କାହାଣୀ । ଜଣେ ବିଶିଷ୍ଟ ଅଧ୍ୟାପକ ଟିକିଏ ସମୟ କଟାଇବା ପାଇଁ ବାହାରିଲେ ଇଂଲିଶ ଚାନେଲ୍‌ରେ ଡଙ୍ଗାରେ ବୁଲିଯିବା ପାଇଁ । ସାଙ୍ଗରେ କିନ୍ତୁ ନେଇଗଲେ ପୁଳାଏ ବହି । ଇଂଲିଶ ଚାନେଲର ରମଣୀୟ ଶୋଭା ଦେଖିବା ପରିବର୍ତ୍ତେ ସେ ବହିପଢ଼ି ଚାଲିଛନ୍ତି, ମୁହଁକୁ ବହିରେ ପୋତି । ନାଉରିଆ ପାଠଶାଠ ବିଶେଷ ପଢ଼ିନି । ତା' ପାଇଁ ଅସହ୍ୟ ମନେହେଲା ଏଇ ଦୃଶ୍ୟ । କି ଅଜବ ମଣିଷଟାଏ ? ଇଂଲିଶ ଚାନେଲ ବୁଲିବାକୁ ଆସିଲା, ଶୋଭା ଦେଖିବ କ'ଣ ନା ବହି ପଢ଼ି ଚାଲିଛି । ଆସିଲା କାହିଁକି କେଜାଣି ?

ପ୍ରଫେସର ! କ'ଣ ପଢୁଛ ?

ପ୍ରଫେସର ପଚାରିଲେ ତମେ ଫିଲସଫି କ'ଣ ଜାଣ ?

ନା ।

ତମର ଜୀବନର ତିନିଭାଗରୁ ଭାଗେ ବୁଡ଼ିଗଲା ଏଇ ଚାନେଲ୍‌ରେ ।

ସେ ପଢ଼ି ଚାଲିଲେ । ଟିକିଏ ନର୍ଭସ ନାଉରି ବୋହି ଚାଲିଲା ଡଙ୍ଗା ।

ପ୍ରଫେସର ! ଦେଖନ୍ତୁ କି ରମଣୀୟ ଦୃଶ୍ୟ ?

ପ୍ରଫେସର ମୁଣ୍ଡଟେକି ପଚାରିଲେ ତୁମେ ସାଇକୋଲୋଜି କିଛି ଜାଣ ?

ନା !

ତା'ହେଲେ ତମ ଜୀବନର ତିନିଭାଗରୁ ଆଉ ଏକଭାଗ ନଷ୍ଟ ହୋଇଗଲା ଏଇ ସମୁଦ୍ରରେ ।

ଡଙ୍ଗା ବହି ଚାଲିଲା ।

ପ୍ରଫେସର ! ଦେଖନ୍ତୁ ମେଘ ଉଠାଇଛି ଦିଗ୍‌ବଳୟରେ । ତା' ଉପରେ ସୂର୍ଯ୍ୟକିରଣ । କି ସୁନ୍ଦର ଦୃଶ୍ୟ ।

ପ୍ରଫେସର ପୁଣି ମୁଣ୍ଡ ଟେକି ପଚାରିଲେ, ତମେ ଆର୍କୋଲଜି ବିଷୟରେ କିଛି ଜାଣ ?

ନା ।

ତା'ହେଲେ ତମର ଜୀବନର ଆଉ ଯେଉଁ ଭାଗ ବଳିଥିଲା, ତାହା ଏଇ ଚାନେଲ୍‌ରେ...

ପ୍ରଫେସରଙ୍କ କଥା ସରି ନାହିଁ, ଡଙ୍ଗା ଟଳ ଟଳ ହେଲା । ଇଂଲିଶ ପାଗ । ଘଡ଼ିକୁ ଘଡ଼ିଏ ବଦଳିଯାଏ । ହଠାତ୍ ମେଘ ଆଉ ପବନ ।

ଡଙ୍ଗା ଜୋର୍‌ରେ ଟଳମଳ ହେବାକୁ ଲାଗିଲା । ବ୍ୟସ୍ତବିବ୍ରତ ଅଧ୍ୟାପକ ପଚାରିଲେ, ନାଉରି କ'ଣ ହେଲା ?

ନାଉରି ପଚାରିଲା, ପ୍ରଫେସର ! ତମେ ସୁଇମୋଲଜି କ'ଣ ଜାଣ ?

ସୁଇମୋଲଜି । ସେଇଟା କ'ଣ ?

ସେଇଟା ହେଉଛି ପହଁରିବା କୌଶଳ । ପ୍ରଚଣ୍ଡ ପବନ । ଡଙ୍ଗା ବୁଡ଼ି ଯାଉଛି ଆଉ ମୁଁ ଡେଇଁଲି ଚାନେଲ୍‌କୁ ପହଁରିବା ପାଇଁ । ତମର ସମଗ୍ର ଜୀବନ ବୁଡ଼ିଗଲା, ଏଇ ଇଂଲିଶ ଚାନେଲରେ ।

ସମସ୍ତେ ତ୍ରସ୍ତ । ମୋ ଛଡ଼ା ଅନ୍ୟମାନେ ପହଁରା ଜାଣନ୍ତି । କିନ୍ତୁ ଏଇ ବିଶାଳ ମହାନଦୀ ବନ୍ୟାରେ ପହଁରି ପାରିହେବା କ'ଣ ସମ୍ଭବ ? ଡଙ୍ଗା ଦୁଇଘଣ୍ଟା ପରେ କୌଣସିମତେ ଲାଗିଲା ଆଠଗଡ଼ । ଦିନ ଅଛି । ତେବେ ସନ୍ଧ୍ୟା ହୋଇ ଆସିଲାଣି । ସାପୁଆ ନଈ ପୋଲ ଉପରେ ଯିବା ନିରାପଦ ନୁହେଁ । ସାପୁଆ ନଈ ଖରସ୍ରୋତା, ଆଣ୍ଠୁଏ ପାଣିରେ ଠିଆହୋଇ ରହିବା କଷ୍ଟ । ପଶିଲୁ ନଈରେ । ନଈପାଣିରେ ଧରାଧରି ହୋଇ ଠେଲି ହୋଇ ଚାଲିଛୁ । ଅନ୍ଧାର ହୋଇଗଲାଣି । କେତେ ବାଟ ଇମିତି ଯାଇଛୁ କହି ହେବ ନାହିଁ । ଦୈବାତ୍ ଲାଖିଗଲୁ କୂଳରେ ।

ଚାରିଦିନ ପରେ ସେଇ ରାତିଟା ଶୋଇପାରିଲୁ ଏକ ଗାଁରେ । ଶୁଣିଲି ବାପା ସେଇଠି ଅଛନ୍ତି ଡିଭିଜନାଲ ଫରେଷ୍ଟ ଅଫିସର । ଭାବିଲି ଦେଖାକରି ଦେଇଯିବି । ଖବର ପଠାଗଲା । ଖାଇବାକୁ କିଛି ଅଧିକା ବା ସ୍ୱତନ୍ତ୍ର କରିବ ନାହିଁ । ମାମୁ ସେଇଠି ଅଛନ୍ତି । ତାଙ୍କୁ କହିବ ନାହିଁ ଆମେ ଯିବା କଥା ବା ମନାକରିବ ନାହିଁ ରହିବା ପାଇଁ । କୁଣିଆ ମୈତ୍ର ଯିଏ ଆସିବା ପାଇଁ କହିବେ, ମନା କରିବ ନାହିଁ । ମୁଁ ବାରିବାଟେ ଯିବି । ରହିବି ରାତିଟା । ବଙ୍ଗଳାଘର, ବହୁତ କୋଠରି । କିଛି ଜଣାପଡ଼ିବ ନାହିଁ । କମ୍ରେଡ୍ ୰ ବିବେକ ରଥ, ସ୍ଥାନୀୟ ଲୋକ ମୋର ଏସ୍‌କର୍ଟ ।

ସବୁ ନିୟମ ଉଲ୍ଲଘଂନ ହୋଇଥିଲା । ମାଂସ, ପିଠା ତିଆରି ହୋଇଥିଲା । ମିଠା ଆସିଥିଲା ଦୋକାନରୁ । ମାମୁଙ୍କୁ ସତର୍କ କରାଇ ଦିଆଯାଇଥିଲା । ଫଳତଃ ମୁଁ ଗଲି ଏବଂ ଫେରିଲି । ଟେକ୍ ନିୟମ (ଗୁପ୍ତରେ ରହିବାର ନିୟମ) ଉଲ୍ଲଘଂନ ହୋଇଥିବା ଯୋଗୁଁ ଗାଁ ବାସୁଦେବପୁରରେ ମଧ୍ୟ ରହିବା ନିରାପଦ ମନେ ହେଲା ନାହିଁ । ଗାଁ ଛାଡ଼ିଲୁ । ଆଠଗଡ଼ ଖୁଣ୍ଟୁଣି ରାସ୍ତା ସନ୍ଧ୍ୟା ପରେ ନିଛାଟିଆ । ଏତେ ରାତିରେ ଗଲେ ସନ୍ଦେହ ହେବ । ଆଖୁ କିଆରିରେ ରାତିଟା କଟାଇ ଖୁଣ୍ଟୁଣି । ସେଠାରେ ଚାଲିଥାଏ ସୋସାଲିଷ୍ଟ ପାର୍ଟିର ସଭା । ରାସ୍ତା ଉପରେ ପ୍ରବଳ ପୁଲିସ୍ । ପୁଣି ପଳାଅ ଜଙ୍ଗଲକୁ କହ୍ନେଇ ମିଶ୍ରଙ୍କ ବଗିଚା ଦେଇ ।

ଖୁଣ୍ଟୁଣିରୁ କଟକ । ବାଟରେ ନବକୃଷ୍ଣ ଚୌଧୁରୀଙ୍କ ଗାଡ଼ି । ସେତେବେଳେ ମୁଖ୍ୟମନ୍ତ୍ରୀ ବିନା ଏସ୍‌କର୍ଟରେ ଯାଉଥିଲେ । ସେ ମୋତେ ଚିହ୍ନି ନ ଥିଲେ କିନ୍ତୁ ଦୁର୍ଗା ମହାନ୍ତିଙ୍କୁ ଚିହ୍ନିଥିଲେ ଭଲ ଭାବରେ । ଗାଡ଼ିରୁ ଓହ୍ଲାଇ ତାଙ୍କ ସାଙ୍ଗରେ କଥାବାର୍ତ୍ତା ହେଲେ । ମୋର ପରିଚିତି ପାଇଲେ । କାରଣ ମୋର ଦାଦା ସ୍ୱାଧୀନତା ସଂଗ୍ରାମୀ ୰ ବିରଞ୍ଚି ନାରାୟଣଙ୍କୁ ସେ ଜାଣିଥିଲେ । ଏବେ ଆଉ ମନେପଡୁନି । ସେ ଆମକୁ ଆଣି କିଛିବାଟ ଛାଡ଼ିଦେଇଗଲେ ! ନବବାବୁ ମୁଖ୍ୟମନ୍ତ୍ରୀ, ଆଉ ଆମେ ପଳାତକ ।

ସନ୍ଧ୍ୟା ପରେ ମହାନଦୀ ପାର ହୋଇ ଆସିଲୁ ଯୋବ୍ରା । ବିଶ୍ୱମ୍ଭର ସାମନ୍ତ ଯୋଗ ଦେଇଥା'ନ୍ତି କମ୍ୟୁନିଷ୍ଟ ପାର୍ଟିରେ । ୰ ଜଳଧର ନନ୍ଦ, ତାଙ୍କର ସ୍କୁଲ୍ ଶିକ୍ଷକ ଏବଂ ରାଜନୀତିକ ଶିକ୍ଷକ । ସେ ଏକ ବିସ୍ମୃତ ଚରିତ୍ର । ତାତ୍ତ୍ୱିକ ଦୃଷ୍ଟିରୁ ସେ ଥିଲେ ଉନ୍ନତ ଏବଂ ଶାଣିତ । କିନ୍ତୁ ଅଲଟ୍ରା-ଲେଫ୍ଟ ତାଙ୍କ ସହିତ ବନ୍ଦୀ ଜୀବନ ବି କଟିଛି ବେଶ୍ କିଛିଦିନ । ଶାଣିତ ତାତ୍ତ୍ୱିକ ଯୁକ୍ତି କିନ୍ତୁ ବାସ୍ତବ ପରିସ୍ଥିତି ସଂପର୍କରେ କଳନା ଭୁଲ୍ । ଜନପ୍ରିୟ ଶିକ୍ଷକ, କିନ୍ତୁ ରହିପାରି ନାହାନ୍ତି କେଉଁଠି । ନିଃସଙ୍ଗ ଏବଂ ଆର୍ଥିକ ଦୁଃସ୍ଥିତି ଭିତରେ ତାଙ୍କର ପରଲୋକ ହୋଇଯାଇଛି । କିନ୍ତୁ ଆପଣାର ଶାଣିତ ଚିନ୍ତା ପାଇଁ ସେ ସ୍ମରଣୀୟ ହୋଇ ରହିବେ ତାଙ୍କର ସାଥୀମାନଙ୍କ ଭିତରେ, ଶିଷ୍ୟମାନଙ୍କ ଭିତରେ ।

ବିଶ୍ୱମ୍ଭର ତାଙ୍କର ଶିଷ୍ୟ । ବାପା ନାରାୟଣ ବୀରବର ସାମନ୍ତ ଏବଂ ମା' ରତ୍ନମାଳୀ ଜେମା ପ୍ରସିଦ୍ଧ ସ୍ୱାଧୀନତା ସଂଗ୍ରାମୀ, କଂଗ୍ରେସ ନେତା । ବିଶ୍ୱମ୍ଭର କୁଜଙ୍ଗର ପ୍ରସିଦ୍ଧ ଶେଣ୍ଢରାଜାଙ୍କ ଶେଷ କୁଳାଙ୍କୁର । ଜନଶ୍ରୁତିରୁ ଜଣାଯାଏ ଯେ, ଥରେ ତାଙ୍କ ଘରେ ଅଚ୍ୟୁତାନନ୍ଦ ଅତିଥି ହୋଇଥିଲେ ଏବଂ ଆତିଥ୍ୟରେ କ'ଣ ସବୁ ତ୍ରୁଟି ଥିବା ହେତୁ ସେ ବଂଶ ନିର୍ବଂଶ ହୋଇଯାଉ ବୋଲି ଅଭିଶାପ ଦେଲେ । ପରେ ତୁଷ୍ଟ ହୋଇ କହିଲେ ଯେ, ସେ ନିଜେ ଷଷ୍ଠ ପୁରୁଷରେ ଜନ୍ମ ଗ୍ରହଣ କରିବେ ଏବଂ ସେଇଠାରୁ ବଂଶ ଶେଷ ହୋଇଯିବ ।

ଗଣନା ଅନୁଯାୟୀ ବିଶ୍ୱମ୍ଭର ଷଷ୍ଠ ପୁରୁଷର । ବିଶ୍ୱମ୍ଭର ଅବିବାହିତ, ଭଉଣୀ ଉମୁନି ପ୍ରସିଦ୍ଧ ଲେଖକବନ୍ଧୁ ମନୋଜ ଦାସଙ୍କ ପତ୍ନୀ, ତାଙ୍କର ପିଲାପିଲି ନାହିଁ । ସାନଭଉଣୀ ବାଣୀ ଅବସରପ୍ରାପ୍ତ ଡାକ୍ତର ମଧ୍ୟ ଅବିବାହିତା ।

ବିଶ୍ୱମ୍ଭର ସାମନ୍ତଙ୍କର ପାରାଦ୍ୱୀପଗଡ଼ ଘର 'ଉଆସ' ନାମରେ ପରିଚିତ । ସେଇ ହତା ଭିତରେ କନକଦୁର୍ଗା ପ୍ରତ୍ୟକ୍ଷ ଦେବୀ ବୋଲି ସମସ୍ତଙ୍କର ବିଶ୍ୱାସ । ମୂର୍ତ୍ତି ଏବଂ ଖଟୁଲି ସୁନାରେ ତିଆରି, ନିଦା ସୁନା । କେହି ସେ ମନ୍ଦିର ଭିତରକୁ ଯିବାକୁ ସାହସ କରନ୍ତି ନାହିଁ, ଏକୁଟିଆ । ଦେବୀ ପ୍ରତ୍ୟକ୍ଷ । ଭେଟଣା ହୋଇଯିବ । ସନ୍ଧ୍ୟା ପରେ ତ ଯିବାର ପ୍ରଶ୍ନ ଉଠୁ ନାହିଁ ।

ସେଇ ମୂର୍ତ୍ତି ଚୋରି ହୋଇଗଲା । ସେ ଅଞ୍ଚଳରେ ତୀବ୍ର ଉତ୍ତେଜନା । ପୁଲିସ୍ ସନ୍ଦେହରେ ବହୁତ ଲୋକଙ୍କୁ ପିଟିଲେ । ନାରାୟଣ ବୀରବର ସାମନ୍ତ ସେତେବେଳେ ଥିଲେ କଟକରେ । ସେ ଖବର ପାଇ ସାଙ୍ଗେ ସାଙ୍ଗେ ନିର୍ଦ୍ଦେଶ ଦେଲେ, ପୁଲିସ୍ ଅତ୍ୟାଚାର ବନ୍ଦ କରିବା ପାଇଁ । ଏ ମୂର୍ତ୍ତିକୁ ଆମ ଅଞ୍ଚଳରେ ଛୁଇଁବ କିଏ ? ଏହାକୁ ବେଙ୍ଗୁଲି (ବିଶ୍ୱମ୍ଭରଙ୍କ ଡାକନାମ) ଛଡ଼ା ଆଉ କେହି ନେଇପାରିବେ ନାହିଁ । ପୁଲିସ୍ ଆକ୍ରମଣ ବନ୍ଦ ହୋଇଗଲା । କିନ୍ତୁ ବିଶ୍ୱମ୍ଭରଙ୍କ ସକ୍ ହୋଇଗଲା, ଯେତେବେଳେ ସେ ଜାଣିଲେ ଯେ କନକଦୁର୍ଗାଙ୍କୁ ଖଟୁଲି ଏବଂ କିଛି ଅଂଶ ଟ୍ରାନ୍‌ଜିଟ୍ ବା ପାର୍ଟି କେନ୍ଦ୍ରକୁ ଯିବା ବାଟରେ ହଜିଗଲା । ଆରମ୍ଭ ହେଲା ଯେଉଁ ପ୍ରଶ୍ନରୁ ପରିଣତି ତାର ହେଲା ଶ୍ରୀଅରବିନ୍ଦ ଆଶ୍ରମରେ ।

କେହି ତାଙ୍କୁ ଦୀକ୍ଷିତ କରି ନାହାନ୍ତି ସେଥିରେ । ସେ ନିଜେ ହିଁ ଖୋଜିଛନ୍ତି ଏବଂ ପାଇଛନ୍ତି ।

ବିଶ୍ୱମ୍ଭରଙ୍କ ଘରଟାକୁ ମୁଁ ଟର୍ଚ୍ଚ ମାରି ଦେଖାଇଦେଲି ଦୁର୍ଗା ମହାନ୍ତିକୁ । ଆଉ ସେଇଠି ଠିଆ ହୋଇଥିଲେ କିଛି ପୁଲିସ । ସେମାନେ ତଡ଼ିଲେ ଆମକୁ । ଆମେ ଦୌଡ଼ି ପାର । ଯୋବ୍ରାରୁ ରାଣୀହାଟ ଶଗଡ଼ିଆସାହି ପର୍ଯ୍ୟନ୍ତ ଦୌଡ଼ । ସେତେବେଳେ ରାଣୀହାଟ ପୋଲ ଏକପାଖିଆ । ଦୁଇପାଖିଆ ହେଲା ବହୁପରେ । ତେଣୁ ଭିଡ଼ ବେଶ୍ । ଆଉ ଆମକୁ ଖସିବାକୁ ସହଜ ।

ପଳାତକ ଜୀବନ । ଆଗରୁ ଏତେ କଷ୍ଟ ସହି ନ ଥିଲି । ଦେହ ଖରାପ ହେଲା । ମାମୁଁ ୰ଡାକ୍ତର ନବକିଶୋର ପଟ୍ଟନାୟକ ହୁକିଟୋଲାରେ ଅବସ୍ଥାପିତ । ସେଠାକୁ ଗଲି । ଚିକିତ୍ସା ହେଲା କିନ୍ତୁ ଭଲ ହେଲା ନାହିଁ ।

ହୁକିଟୋଲା ବତିଘର ଦେଖିଲି । ଗର୍କୀଙ୍କ ଏକ ଗପ ପଢ଼ିଥିଲି । ନାମ ମନେ ପଡୁନି । ବୋଧହୁଏ କାଷ୍ଟାଓ୍ୱେ । ଗପଟି ଏଇପରି । ବିପତ୍ନୀକ ପିତା ଆପଣା ପୁତ୍ର ସହିତ ରହନ୍ତି ଏକ ନିକାଞ୍ଚନ ସ୍ଥାନରେ । ହଠାତ୍ ମିଳେ ଏକ ଯୁବତୀ । ବାପା ତାକୁ ପତ୍ନୀ ଭାବରେ ଗ୍ରହଣ କରନ୍ତି । ସମୟ କଟିଚାଲେ ସେଇ ନିର୍ଜନ ସ୍ଥାନରେ । ବାପର ମୃତ୍ୟୁ ହୁଏ ଏବଂ ନିଛାଟିଆ ଏକାକୀତ୍ୱର ତାଡ଼ନାରେ ପୁତ୍ର ଗ୍ରହଣ କରେ ଉକ୍ତ କନ୍ୟାକୁ ଆପଣାର ପତ୍ନୀ ଭାବରେ ।

କି କଥା ! ଏହା କ'ଣ ସମ୍ଭବ ? ବିଶ୍ୱାସ ହୋଇ ନ ଥିଲା । ନିକାଞ୍ଚନତା, ଏକାକୀତ୍ୱ କ'ଣ ନ କରେ ମଣିଷକୁ ? ବତିଘରରେ ସେଇ ଘଟଣା ଦେଖିଲି । ବାପ, ପୁଅ ବତିଘର ଜଗନ୍ତି । ଚାରିଆଡ଼େ ପାଣି । ରବୀନ୍ଦ୍ରନାଥଙ୍କ କବିତା । " ଜଲ ସୁଧ ଜଲ୍, ଦେଖ ଦେଖେ ପ୍ରାନ୍ ତା'ର ହୟେଛେ ନିକଲ୍ ।" ହଠାତ୍ ସମୁଦ୍ରର ଢେଉରେ ଭାସିଆସି ଲାଗିଲା ଯୁବତୀଟିଏ । ବାପା ତାକୁ ଶୁଶ୍ରୂଷା କଲେ, ପାଖରେ ରଖିଲେ । ସେ ଯିବ କୁଆଡ଼େ ? ବାପାଙ୍କୁ ସାଥୀଟିଏ ମିଳିଗଲା, ପୁଅ ପାଇଁ ନୂଆ 'ମାଆ'ଟିଏ । କିଛି ବର୍ଷ କଟିଛି ନା ନାଇଁ, ବାପାର ମୃତ୍ୟୁ ହେଲା । ପୁଅ ଯୁଆନ ହୋଇ ଆସିଲାଣି । ବର୍ତ୍ତମାନ ସେଇ ନିକାଞ୍ଚନ ସ୍ଥାନରେ ପୁଅଟି ଏବଂ ଯୁବତୀଟି । ସେମାନଙ୍କ ମଧ୍ୟରେ ଆଉ ମାଆ ପୁଅର ସମ୍ପର୍କ ହୋଇ ରହିପାରିଲା ନାହିଁ । ସେମାନେ ସ୍ୱାମୀ ସ୍ତ୍ରୀ ପାଲଟିଗଲେ । ଚାରିଆଡ଼େ ପାଣିର ଲହରୀ । ତିନି ପଟରେ ନଈ, ଆଗରେ ସମୁଦ୍ର । କେବେ କେବେ ଫେରନ୍ତା ଡଙ୍ଗା ଆସେ । ସେଇଥିରେ ସେମାନେ ବରାଦ କରିଥିବା ସାମଗ୍ରୀ ଆସେ ଚଳିବା ପାଇଁ । ଦରମା କେତେ, କିମିତି, କେଉଁଠୁ ପାଆନ୍ତି ପଚାରିବାର ଅବକାଶ ନ ଥିଲା । ଦୂରରେ ବର୍ଦ୍ଧମାନ କୋଠି । ସମୁଦ୍ର ଯାହାର ପଦଧୌତ କରୁଛି । ନିକାଞ୍ଚନ ଜାଗା । କେହି ନାହାନ୍ତି କୋଠିରେ । ଭୂତକୋଠି ପାଲଟିଛି । ଶୁଣାଯାଏ ଦୁଇଟି ନାରୀକେଳବାହୀ ଜାହାଜ ଧକ୍କା ଖାଇ ଏଇଠି ଆଗ ସମୁଦ୍ରରେ ବୁଡ଼ିଯାଇଛି । ନାବିକମାନେ

ଥିଲେ ୟୁରୋପୀୟ । ସେମାନେ ବି ଭଜିଛନ୍ତି ସଲିଳସମାଧି । ସେମାନଙ୍କର ଭୂତ ଆଜି ବି ସିଗାରେଟ୍ ଟାଣନ୍ତି । ଦେଖାଯାଏ ସିଗାରେଟ୍ ନିଆଁ । ଶୁଭେ କୁଆଡ଼େ କଥୋପକଥନ । ଜାହାଜର ସେଇସବୁ ନଡ଼ିଆ ସମୁଦ୍ର ଉପକୂଳରେ ସୃଷ୍ଟି କରିଚି ବିରାଟ ନାରୀକେଳ ବଗିଚା । ଏହାକୁ ଏକ ପର୍ଯ୍ୟଟନ କେନ୍ଦ୍ର କରାଯାଇପାରନ୍ତା । କିନ୍ତୁ ଦରକାର ପ୍ରଚୁର ଇନ୍‌ଭେଷ୍ଟମେଣ୍ଟ । ଷ୍ଟିମର, ଫର୍ନିସିଙ୍ଗ, ଖାଦ୍ୟସବୁର ପାଇଁ ଦରକାର ବିପୁଳ ପୁଞ୍ଜିନିବେଶ । କିନ୍ତୁ ସେସବୁ ପାଇଁ ନିଘା ଦେବାକୁ ସମୟ ନ ଥିଲା । ବୟସ ବି ହୋଇ ନ ଥିଲା । ନବମାମୁ କେଉଁଠି ଡାକ୍ତର ଥିଲେ କହିପାରିବି ନାହିଁ । ସେ ତ ଦୁର୍ଗା ମହାନ୍ତିଙ୍କ ବନ୍ଧୁ । ଇତିହାସ ପ୍ରସିଦ୍ଧ ମେଡ଼ିକାଲ ଷ୍ଟ୍ରାଇକର ସେ ଥିଲେ ଅନ୍ୟତମ ମହାରଥୀ । ଦୁର୍ଗା ମହାନ୍ତିଙ୍କ ସହ ପରିଚୟ ସେଇ ଦିନରୁ । ପରବର୍ତ୍ତୀ ଜୀବନରେ ସେ ପାଲଟି ଗଲେ ଶ୍ରୀ ଅରବିନ୍ଦଙ୍କ ଭକ୍ତ । ଆଲ୍‌ଜମିର ବା ବିସ୍ମରଣରେ ସେ ଆକ୍ରାନ୍ତ ହେଲେ ଅନେକଦିନ ।

ସେଠାରୁ ଫେରିଲୁ ପୁଣି କଟକ । ରୋଗ କମିଲା ନାହିଁ । ଦୁର୍ଗାବାବୁ ମୋତେ ନେଇ ଚାଲିଲେ କୋଲକାତା । କଟକ ଷ୍ଟେସନରୁ ଟ୍ରେନ୍ ଚଢ଼ିବା ନିରାପଦ ନୁହେଁ । ତେଣୁ ଚଢ଼ିଲୁ ଜଗତ୍‌ପୁରରୁ । ରେଳବାଇ ଶ୍ରମିକମାନଙ୍କର ନେତା ଦୁର୍ଗା ମହାନ୍ତିଙ୍କର ରେଳବାଇ ଅଫିସର ମହଲରେ ମଧ୍ୟ ବେଶ୍ ପରିଚିତ । ତେଣୁ ରିଜର୍ଭେସନ ହୋଇପାରିଥିଲା ଅନାୟାସରେ ।

କୋଲକାତା । ସହର ସହିତ ମୋର ପରିଚିତି ଶୂନ୍ । ରହଣିକାଳ ପ୍ରାୟ ଦୁଇମାସ କି ତା'ଠାରୁ କମ୍ । ଏଠି ହୁକିଟୋଲା ପରି ମନେ ହେଲା । ସେଠି ପାଣି ଖାଲି ପାଣି । ଏଠି ଘର ଖାଲି ଘର । କିନ୍ତୁ ପରିଚିତି ନାହିଁ କି କୁଆଡ଼େ ଯିବାକୁ ଅନୁମତି ବି ନାହିଁ । ହାଡ଼କଟା ଲେନ୍‌ର ପ୍ରସିଦ୍ଧି ବିଷୟରେ ଅବଗତ ଥିଲି କିଛି କିଛି । ପ୍ରଚୁର ଭୟ ଥିଲା । ସନ୍ଧ୍ୟାପରେ ଏଠି ରାତ୍ରି ଆସେ ବାରବନିତାର ଭୀରୁ ଆଖିପତାରେ ଖାଲି ନୁହେଁ, ଡକାୟତ, ଲୁଣ୍ଠନକାରୀର ହିଂସ୍ର ଆଖି ଭିତରେ ମଧ୍ୟ । ଶାସନକଳ ଏଠାରେ କାମ କରେନା । କାମ କରେ ବନ୍ଧୁକ, ପିସ୍ତଲ, ଛୁରା, ଭୁଜାଲି ।

ତିନୋଟି ବଖରା ଘର । ଗୋଟିଏ କୋଠାରିରେ ଆମେ ତିନି ଜଣ ପଳାତକ । ତାହାର ଗୋଟିଏ ସଂଲଗ୍ନ ଛୋଟ କୋଠରି । ତାଆରି ଭିତରେ ସବୁଠାରୁ ସିନିଅର ନେତା ଅସୁସ୍ଥ, ବେଶ୍ ଅସୁସ୍ଥ । ତେଣୁ ତାଙ୍କ ପାଇଁ ସେଇ କୋଠରିଟି ଦିଆଯାଇଛି । ବାକି ଆମେ ଦୁଇଜଣ । ମଝିରେ ଗୋଟିଏ ବଡ଼ ବଖରା । ସିଟିଂ ରୁମ୍, କିନ୍ତୁ କାହାର ? ଆମେ ତ କେବେ ଯାଉନା । ତା' ଆର ପଟକୁ ଠିକ୍ ସେଇପରି ଗୋଟିଏ ବଖରା ଘର ଏବଂ ସଂଲଗ୍ନ ଏକ ଛୋଟ କୋଠରି । ସେଠାରେ କିଏ ରହନ୍ତି ତା' ଆମେ ଜାଣିବାର ଅବକାଶ ନାହିଁ । ତେବେ ନମିତା (ଛଦ୍ମ ନାମ ନିଶ୍ଚୟ) ସବୁ ଶୁଣିଛି ଯେ ସେଠାରେ 'ଆଶ୍ରୟ' ନେଉଥିବା ବ୍ୟକ୍ତିମାନେ ଡକାୟତ । ନମିତା କହିଲାବେଳେ ତାର ନାକ ଓ ଓଠରେ ଘୃଣାର ଉଦ୍ରେକ ହେବା ଦେଖାଯାଏ ।

ନମିତା କିଏ ? ନମିତାର ବୟସ ମୋରି ବୟସ ସହିତ ସମାନ କି ଟିକିଏ ବଡ଼ ହେବ ମୋ ଠାରୁ । ଭଲ ବଙ୍ଗଳା କହିପାରେ । ତେଣୁ ମନେହୁଏ ସେ ବଙ୍ଗାଳୀ । କିନ୍ତୁ ଠିକ୍ କହି ହେବନି । କାରଣ ଠିକ୍ ଆମ ପଳାତକ ଭଳି ସେମାନଙ୍କର ନିଜସ୍ୱ ନାମ ହଜିଯାଏ । ଘରବାଲୀ ( ?) ଯେଉଁ ନାମ ଦିଏ ସେଇ ନାମରେ ହିଁ ତା'ର ପରିଚିତି ଗଢ଼ିଉଠେ । ପରିବାରର ନାମ ଠିକଣା ତାକୁ ହଜିଯାଏ । ସେଠାରେ ମୋର ନାମ ଥିଲା ରୁବେନ୍, ଓଡ଼ିଶାରେ ନାମ ଥିଲା ନରି । ନମିତା ସହିତ ଆତ୍ମୀୟତା ଗଢ଼ିଉଠେ । କାରଣ ତା' ଭାଷାରେ ସେ ଆମ କୋଠରିରେ ଭଗିନୀ, କନ୍ୟା ଆଉ ଆର କୋଠରିର ତମେ କଅଣ ? ସେ ପ୍ରଶ୍ନର ଉତ୍ତର ମୁଁ ଦେଇପାରିବି ନାହିଁ କହି ସେ ଉଠି ଚାଲିଯାଏ ଲୁହଭରା ଆଖିରେ ।

ଦିନେ ଦିନେ ଦେଖିବାକୁ ମିଳେ ନମିତାକୁ କ୍ଷତବିକ୍ଷତ ଅବସ୍ଥାରେ । ଚିହ୍ନ, ରକ୍ତ ଦେଖାଯାଏ ଚିବୁକ ଉପରେ । ଯନ୍ତ୍ରଣା ନିଶ୍ଚୟ ହେଉଛି ନା, ନ ହେଲେ ମୁଖମଣ୍ଡଳ ଏତେ ବିକୃତ ହୁଅନ୍ତା କାହିଁକି ? ମୋ ପ୍ରଶ୍ନର ଉତ୍ତରରେ ତା'ଆଖିରୁ କେବଳ ଧାର ଧାର ଲୁହ। ମୋର ନିଜର ଭଉଣୀ ନାହିଁ । ହଠାତ୍ ମନେହେଲା,ସେ ମୋର ଭଉଣୀ କି ଆଉ !

ତମେ ନମିତା ଚାଲି ଯାଉନ ଏଠାରୁ ? ଏତେ କଷ୍ଟ, ଏତେ ଯନ୍ତ୍ରଣା । ସେ ମୋର ପାଟିକୁ ଚାପି ଧରିଲା । ଏଠାକୁ ଯେ ଆସେ ସେ ଆଉ ଫେରିବାର ପ୍ରଶ୍ନ ଉଠେନା । ଫେରିବାକୁ ଚାହିଁଲେ ଫେରିବ ତମର ଶବ । ଘରବାଲୀ ବୁଢ଼ୀ (ମାନେ ବୃଦ୍ଧା ବେଶ୍ୟା) ଏବଂ ଗୁଣ୍ଡାଙ୍କ ଆକ୍ରମଣରେ । ସୁତରାଂ ଫେରିବାର କଥା ଏଠି କେହି ଉଠାନ୍ତି ନାହିଁ । ସେ ପ୍ରଶ୍ନ ନିଷିଦ୍ଧ, ଠିକ୍ ଯେପରି ଏହି ଅଂଚଳ ନିଷିଦ୍ଧାଞ୍ଚଳ ।

ନମିତା ଖାଇବାକୁ ଆଣିଦିଏ । ଖୁଆଏ ଜିଗର କରି । ଝିଅ ବା ଭଉଣୀ ପରି । କାରଣ ଆଗରୁ କହିଚି ଯେ ଭାତ ଓ ଗାଈମାଂସ ଖାଇବା ମୋ ପାଇଁ ବା ମୋର ବନ୍ଧୁଙ୍କ ପାଇଁ ରୁଚିକର ନ ଥିଲା । ଯଦି ପୋଖତ ବିପ୍ଳବୀ ବୟସ୍କ ବନ୍ଧୁଙ୍କ ପାଇଁ ତାହା ଅରୁଚିକର ନ ଥିଲା । ସକାଳେ ସେ ଚା', ବିସ୍କୁଟ ଏବଂ ପାଉଁରୁଟି ଦିଏ ଖାଇବାକୁ । ଖାଇବାକୁ ଦିଏ, ବଳାଇ ବଳାଇ ଖୁଆଏ । କିନ୍ତୁ ନିଜେ ଖାଏନା । ଆମ ବାସନରେ ସେ ଆମକୁ ଖାଇବାକୁ ଦିଏ । ଧୋଇ ସଫାକରି ସେସବୁ ଆମ କୋଠରିରେ ରଖେ । ବାହାରକୁ ନ ଯିବା, କି ବାହାରୁ ଆଣେନା । ଆମ ପାଇଁ ଭାତ ଓ ମାଂସ, ଅଲଗା ଡେକିଚିରେ କରି ଟେକିଆଣେ । ଥରେ ତାକୁ ଆମେ କପେ ଚା' ପିଇବାକୁ ବାଧ କରିଥିଲୁ । ସେ ପିଇଲା କିନ୍ତୁ  କାଚ ଗିଲାସକୁ ନେଇଗଲା । ଆଉ ଥୋଇଲା ଆଣି ନୂଆ ଗିଲାସ । ପଚାରନ୍ତେ, ଲୁହ ଛଳ ଛଳ ଆଖିରେ କହିଲା ଆମର କି ରୋଗ ଥିବ କି ନ ଥିବ, ତୁମମାନଙ୍କୁ ସେ ରୋଗ ଡେଇଁବ କାହିଁକି ? ତମେମାନେ ପରା ଚିକିତ୍ସା ପାଇଁ ଆସିଛ ଏଠିକି ? ଏଇ ନିୟମ ସେପାଖ ଘରପାଇଁ ବି ପ୍ରଯୁଜ୍ୟ, ନା ଖାଲି ଆମ ପାଇଁ ? ମୋତେ ସେ କଥା ପଚାର ନାହିଁ । ସେ ଘର ଆଉ ଏ । ଘର ମୋ ପାଇଁ ଏକା ନୁହେଁ ।

ଚିକିତ୍ସା ସରିଥିଲା । ମୋର ବିଦାୟ ନେବାର ବେଳ ପହଞ୍ଚିଲା ! ଗୋଲାପ କଢ଼ିଟିଏ ଆଣି ମୋତେ ଧରେଇ ଦେଇ କହିଲା, ଗୁବେନ୍, ମୋ ସାଙ୍ଗରେ ଆଉ ଦେଖା ହେବ ନାହିଁ । ତମର କଳ୍ପିତ ସମାଜ କେବେ ଆସିବ,ଆଉ ଆମେ ସବୁ ମୁକ୍ତି ପାଇବୁ ମୁଁ ଜାଣେ ନା । ତେବେ ଏ ମୋର ମନେ ରହିବ ସବୁଦିନେ । ଆଉ ବି ମନେ ରହିବ ତମେ, ମୋର ଉତ୍ତର । ଆମର କଳ୍ପିତ ସାମ୍ୟବାଦ ଆସିବ । ଆଉ ତମେ ସବୁ ମୁକ୍ତି ପାଇବ । ଚୀନ୍ ଦେଶର ବାରବନିତାଙ୍କପରି ।  ନମିତା ଆଉ ମୋ ଆଖି ଉଭୟେ ଲୁହରେ ଭରା । ସେ ଟିକିଏ ଆଉଜେଇ ନେଲା ମୋତେ ତା'ର ବୁକୁ ଉପରକୁ।  ଆଉ ଫେରିଗଲା ଘର ଭିତରକୁ ।

ନମିତା ସାଙ୍ଗରେ ଆଉ ଦେଖାହୋଇ ନାହିଁ । ହେବାର କୌଣସି ଆଶା ବା ଆଶଙ୍କା ବି ନାହିଁ । କଳ୍ପିତ ସାମ୍ୟବାଦ ଆସି ନାହିଁ । କେବେ ଆସିବ ଜଣା ନାହିଁ । ଜୀବନର ବିଳମ୍ବିତ ଅପରାହ୍ନ । ସନ୍ଧ୍ୟା ହେବାପାଇଁ ଡେରି ନାହିଁ ।

ଏଇଠି ମନେପଡ଼ିଲା ଅନେକ ବର୍ଷ ପରର ଏକ ଅଭିଜ୍ଞତା । ନମିତା ଏକ ନାରୀ, ବାରବନିତା । କିନ୍ତୁ ଏଇ ପରବର୍ତ୍ତୀ କାଳରେ ନାରୀ ଥିଲା ଉଚ୍ଚଶିକ୍ଷିତା, ଧନାଢ଼୍ୟ ପରିବାରର କନ୍ୟା । ବାପା ଥିଲେ ବଡ଼ ଅଫିସର, ମାଆ ବେଶ୍ ସୋଫିଷ୍ଟିକେଟେଡ ନାରୀ । ତୁଳନା ତ କରିହେବ ନାହିଁ । ନମିତା ପ୍ରଚଳିତ ସମାଜ, ସଭ୍ୟତାର ଶିକାର । ତା' ଭିତରେ ଥିଲା କିନ୍ତୁ ନାରୀତ୍ୱ । ସେ ଥିଲା କନ୍ୟା, ଭଗ୍ନୀ ଆଉ ସୁଯୋଗ ମିଳିଥିଲେ ହୋଇଥାନ୍ତା ଏକ ଅଳଅଳୀ ପତ୍ନୀ । କିନ୍ତୁ ଏଇ ପରବର୍ତ୍ତୀ କାଳର ନାରୀ ସଭ୍ୟତାର ଶିକାର ତ ନିଶ୍ଚୟ । କିନ୍ତୁ କି ପ୍ରବଞ୍ଚନା, ପ୍ରତାରଣା ଏଇ ଜୀବନର ! ତେବେ ସେ କଥା ପରେ କହିବି, ଯଥା ସମୟରେ ।

ଆଗରୁ କହିଚି ଯେ କୋମିନୋଫର୍ମର ତାଗିଦା, ଚେତାବନୀ ବା ନିର୍ଦ୍ଦେଶ ସତ୍ତ୍ୱେ ଭାରତୀୟ କମ୍ୟୁନିଷ୍ଟ ପାର୍ଟି ତା'ର ନୀତି ପରିବର୍ତ୍ତନ କରି ନାହିଁ, ଜାନୁଆରୀ ୨୬,୧୯୫୦ ମସିହାରେ । ଭାରତ ରିପବ୍ଲିକ୍ ଗଠିତ ହେବା ଦିନ ଏଇ ଚେତାବନୀ ପ୍ରକାଶିତ ହୋଇଥିଲା । ଏହା ସତ୍ତ୍ୱେ ପରିବର୍ତ୍ତନ ହେଲା ନାହିଁ ଯଦିଓ ପାର୍ଟି ଭିତରେ ବିଦ୍ରୋହ ଦେଖାଦେଇଥିଲା ବିଭିନ୍ନ ସ୍ଥାନରେ ।

ପାର୍ଟି ସଭ୍ୟମାନେ ତ୍ୟାଗ କରିବାକୁ ପ୍ରସ୍ତୁତ । କିନ୍ତୁ ବୈପ୍ଳବିକ ପରିସ୍ଥିତି ନାହିଁ । ଏହାକୁ ତ କୁହାଯାଏ ଲେନିନ୍‌ଙ୍କ ଭାଷାରେ Left wing communism–an infantile disorder. ପାର୍ଟି କମ୍ରେଡ଼ମାନେ ଲଢ଼େଇ ଜାରି ରଖିଛନ୍ତି । ତାହା ସାହସିକତା ନୁହେଁ ଦୁଃସାହସିକତାରେ ପରିଣତହେବା ସାର ହୋଇଛି । ପାର୍ଟି କ୍ୟାଡ଼ରମାନଙ୍କର ବଳିଦାନ ସାର ହୋଇଛି । ଗୁଣାତ୍ମକ ପରିବର୍ତ୍ତନ ଘଟି ନାହିଁ ।

ଏହା ୧୯୫୦-୫୧ ମସିହାର କଥା ।

ବର୍ତ୍ତମାନର ମାଓବାଦୀ ବା ନକ୍ସଲବାଦୀମାନଙ୍କୁ ଦେଖିଲେ ସେଇ କଥା ମନେପଡ଼େ । ସେମାନଙ୍କର ତ୍ୟାଗର, ବଳିଦାନର କୌଣସି ତୁଳନା ନାହିଁ । ତେବେ

ବୈପ୍ଲବିକ ପରିସ୍ଥିତି ବିନା, ଗଣଆନ୍ଦୋଳନର ଗୁଣାତ୍ମକ ବିକାଶ ବିନା, ଅସ୍ତ୍ର ଧାରଣ ଆଡ଼ଭେଞ୍ଚରିଜମ୍ ବା ଦୁଃସାହସବାଦ ହୋଇଯିବାର ଭୟ ନାହିଁକି ? ଦେଶରେ ଅସନ୍ତୋଷ ବ୍ୟାପକ, ସବୁ ବିକାଶ ସତ୍ତ୍ୱେ ବେକାରୀ ବୃଦ୍ଧି ଘଟିଛି । ଦାରିଦ୍ର୍ୟର ସୀମାରେଖା ତଳେ ଶତକଡ଼ା ୬୫ ଭାଗ ମଣିଷ । କିନ୍ତୁ ସେଇ ପରିସ୍ଥିତି କ'ଣ ବୈପ୍ଲବିକ, ହୁଏତ ଖୁବ୍‌ବେଶୀ ହେଲେ କିଛି ଜାଗାରେ ବିସ୍ଫୋରକ ହୋଇପାରେ । ବିସ୍ଫୋରଣ ତ ବିପ୍ଳବ ନୁହେଁ ।

ଆନ୍ତର୍ଜାତିକ କମ୍ୟୁନିଷ୍ଟ ଆନ୍ଦୋଳନ ଯେଉଁସବୁ ନିର୍ଦ୍ଦେଶ ଦେଇଥିଲେ ତାହା ଭୁଲ୍ କି ଠିକ୍ ସେ ଏକ ସ୍ୱତନ୍ତ୍ର ପ୍ରଶ୍ନ । କିନ୍ତୁ ତାକୁ ଯେ ସବୁବେଳେ ଭାରତୀୟ କମ୍ୟୁନିଷ୍ଟ ପାର୍ଟି ମାନି ଆସିଛି ତାହା ଠିକ୍ ନୁହେଁ । କ୍ରୁଶେଭ କହିଲେ ଯେ, ସୋଭିଏଟ୍ ପ୍ରତିରକ୍ଷା ମନ୍ତ୍ରୀ ବେରିଆ ୧୯୨୧ରୁ ବ୍ରିଟିଶ ଗୁଇନ୍ଦା । କଥାଟା କିମିତି ଅଖାଡୁଆ ଲାଗିଲା । ଯଦି ଏହା ସତ୍ୟ ତା'ହେଲେ କ'ଣ ଏକ ଗୁଇନ୍ଦା କମ୍ୟୁନିଷ୍ଟ ପାର୍ଟିର ଶିଡ଼ିରେ ଚଢ଼ି ସବା ଉପରକୁ ବି ଯାଇପାରେ ? ଯଦି ତାହା ସମ୍ଭବ ତା'ହେଲେ ପାର୍ଟି ସଂଗଠନର କୌଣସି ମୌଳିକ ତ୍ରୁଟି ନିଶ୍ଚୟ ରହିଛି । ମୁଁ ନିଜେ କମ୍ୟୁନିଷ୍ଟ ପାର୍ଟିର ସଂପାଦକ ଅଜୟ ଘୋଷଙ୍କୁ ଏଇ ପ୍ରଶ୍ନ ପଚାରିଥିଲି ଏବଂ ସେ ସ୍ପଷ୍ଟ ଉତ୍ତର ଦେଲେ ଯେ ସେ ନିଜେ କ୍ରୁଶେଭଙ୍କ ଏଇ ଉକ୍ତି ସହ ଏକମତ ନୁହନ୍ତି । ଏଠାରେ ଉଲ୍ଲେଖ କରିବାର କଥା, ଯେଉଁ ବିଂଶତମ ସୋଭିଏଟ୍ କମ୍ୟୁନିଷ୍ଟ ପାର୍ଟି କଂଗ୍ରେସରେ କ୍ରୁଶେଭ ଷ୍ଟାଲିନ୍‌ଙ୍କ ଅତ୍ୟାଚାର ସଂପର୍କରେ ଲୋମହର୍ଷକ ବର୍ଣ୍ଣନା ବୟାନ କରିଥିଲେ ସେଇ ପାର୍ଟି କଂଗ୍ରେସରେ ଅଜୟ ଘୋଷ ହିଁ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ପ୍ରତିନିଧିତ୍ୱ କରିଥିଲେ । କିନ୍ତୁ ବିଂଶ ପାର୍ଟି କଂଗ୍ରେସରେ କ୍ରୁଶେଭ ଆପଣାର ବୟାନ ଦେଇ ନ ଥିଲେ । ପାର୍ଟି କଂଗ୍ରେସ ସରିଲା ପରେ ବୈଦେଶିକ ପ୍ରତିନିଧିମାନଙ୍କୁ ବିଦାକରି କ୍ରୁଶେଭ କେବଳ ସୋଭିଏଟ୍ ପ୍ରତିନିଧିମାନଙ୍କୁ ଆପଣାର ବୟାନ ଶୁଣେଇଥିଲେ । ବୈଦେଶିକ ପ୍ରତିନିଧିମାନେ ପରେ ଏହା ଜାଣିଲେ । କାହିଁକି ଏହା କରାଗଲା ତାହା ମୁଁ କହିପାରିବି ନାହିଁ । ବୋଧହୁଏ ବୈଦେଶିକ ପ୍ରତିନିଧିମାନଙ୍କ ମଧ୍ୟରେ କେତେକ ତୁଙ୍ଗ ନେତାଙ୍କୁ ଏଡ଼ାଇ ଯିବାପାଇଁ ଏହା କରାଯାଇଥିଲା ।

ଠିକ୍ ସେଇପରି ହଙ୍ଗେରୀ ଏବଂ ଚେକୋସ୍ଲୋଭାକିଆରେ ସୋଭିଏଟ୍ ହସ୍ତକ୍ଷେପ ଅନେକ କମ୍ୟୁନିଷ୍ଟମାନଙ୍କର ଗ୍ରହଣଯୋଗ୍ୟ ହୋଇ ନ ଥିଲା । ଭାରତୀୟ କମ୍ୟୁନିଷ୍ଟପାର୍ଟିର ପ୍ରତିନିଧି ୰ସୋମନାଥ ଲାହିଡ଼ୀ ଏବଂ ୰ନିଖିଲ ଚକ୍ରବର୍ତ୍ତୀ (ପରେ ମେନ୍‌ଷ୍ଟ୍ରୀମ୍‌ର ପ୍ରତିଷ୍ଠାତା-ସମ୍ପାଦକ) ସେମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ । ପୂର୍ବ ଜର୍ମାନୀରେ ଯେ ସୋଭିଏଟ୍ ରୁଷ ବିରୋଧୀ ମନୋଭାବ ବ୍ୟାପକ ଏ ସଂପର୍କରେ ଆମେ ଯାଇଥିବା ପ୍ରତିନିଧି ଦଳରେ କିଛି କମ୍ୟୁନିଷ୍ଟ ସଭ୍ୟ ଲେଖିକରି ପାର୍ଟି ନେତୃତ୍ୱକୁ ଦେଇଥିଲୁ । ଯେଉଁମାନେ କହିଲେ ଆନ୍ତର୍ଜାତିକ ସ୍ତରରେ ଆଲୋଡ଼ନ ସୃଷ୍ଟି ହେବ ସେମାନେ କହିଲେ ନାହିଁ ।

ଗପ ଅଛି ଯେ କ୍ରୁଶେଭ ଷ୍ଟାଲିନ୍‌ଙ୍କ ଅତ୍ୟାଚାର କଥା କହୁଥିଲେ ପାର୍ଟି କଂଗ୍ରେସରେ । ପଛପଟୁ ଜଣେ ଶ୍ରୋତା ଗୋଟିଏ ସ୍ଲିପ୍‌ରେ ଲେଖି ପଠାଇଲେ ଆପଣମାନେ

ସେତେବେଳେ କ'ଣ କରୁଥିଲେ ? ହାତକୁ ହାତ ହୋଇ ସ୍ଲିପ୍‌ଟି ପହଞ୍ଚିଲା କ୍ରୁଶେଭ୍‌ଙ୍କ ପାଖରେ । ସେ ପଚାରିଲେ ''ସ୍ଲିପ୍ କିଏ ପଠାଇଛି ?'' ବାରମ୍ବାର ସେ ପଚାରିବା ପରେ, କେହି ସାହସ କରି ଠିଆ ହେଲେ ନାହିଁ । କ୍ରୁଶେଭ ଉତର ଦେଇ କହିଲେ ଆମେ ସେଇଆ କରୁଥିଲୁ ।

କଥାଟା ଠିକ୍ । ଷ୍ଟାଲିନ୍‌ଙ୍କ କାର୍ଯ୍ୟରେ ପ୍ରତିବାଦ କେହି କଲେ ନାହିଁ । ସେ ସଂଗଠନକୁ ହାତରେ ରଖିଲେ ବିରୋଧୀମାନଙ୍କୁ ବିଲୁପ୍ତ କଲେ । ଖାଲି ସୋଭିଏଟ୍ ୟୁନିଅନ୍‌ରେ ନୁହେଁ ପୂର୍ବ ୟୁରୋପୀୟ ସବୁ ସମାଜବାଦୀ ରାଷ୍ଟ୍ରମାନଙ୍କରେ ଏଇ ଅବସ୍ଥା । ରାଷ୍ଟ୍ର ଟାଣ ହୋଇଛି, ଉତ୍ପାଦନ ବଢ଼ିଛି, କିନ୍ତୁ ସମାଜବାଦୀ ବ୍ୟବସ୍ଥା ଦୁର୍ବଳ ହୋଇଛି । ଶ୍ରମିକମାନଙ୍କ ପରିବର୍ତ୍ତେ ଅମଲାତନ୍ତ୍ର ହାତରେ ରହିଛି ସାମାଜିକ ବ୍ୟବସ୍ଥା ଏବଂ ଅଙ୍ଗୀକାର । ଭାରତବର୍ଷ ଏଥିରୁ ଅନେକ କଥା ଶିଖିବାର ଅଛି । ତଥାକଥିତ ସମାଜବାଦୀ ବ୍ୟବସ୍ଥାରେ 'ନିଉକ୍ଲାସ୍' ବା ନୂତନ ଶ୍ରେଣୀ ଗଢ଼ିଉଠିଛି । ସେମାନେ ପାର୍ଟି ଆପାତିଚିକ ଭାବରେ ଖ୍ୟାତ । ଦେଶର ଉତ୍ପାଦନ ବଢ଼ିଛି କିନ୍ତୁ ବଣ୍ଟନ ପ୍ରକ୍ରିୟାରେ ତ୍ରୁଟି ଯୋଗୁଁ ଶତକଡ଼ା ଖୁବ୍ ଅଳ୍ପସଂଖ୍ୟକ ଲୋକ ସେ ସୁବିଧା ଉପଭୋଗ କରୁଛନ୍ତି । ଏଇ ନିଉକ୍ଲାସ୍‌ର ଓଜନରେ ସାମାଜିକ ବ୍ୟବସ୍ଥା ଭାଙ୍ଗିପଡ଼ିଛି, ତାସ୍‌ର ଘର ପରି ।

ଭାରତୀୟ କମ୍ୟୁନିଷ୍ଟ ପାର୍ଟି ଯେ ଭୁଲ୍ କରି ନାହିଁ, ତା' ନୁହେଁ । ବାଳ ଗଙ୍ଗାଧର ତିଳକଙ୍କୁ ରାଜନୀତିକ ବିପ୍ଳବୀ କିନ୍ତୁ ସାମାଜିକ ପ୍ରତିକ୍ରିୟାଶୀଳ ନାମକରଣ ତାହା ମଧ୍ୟରେ ଅନ୍ୟତମ । କାରଣ ସେ ଗଣେଶପୂଜାକୁ ମହାରାଷ୍ଟ୍ରରେ ଜାତୀୟ ଉତ୍ସବରେ ପରିଣତ କରିଥିଲେ । ଏହି ବିଘ୍ନେଶଙ୍କ ପୂଜାକୁ ଯେ ସାମ୍ରାଜ୍ୟବାଦ ବିରୋଧୀ ପୀଠରେ ପରିଣତ କରିଥିଲେ ତାହା କମ୍ୟୁନିଷ୍ଟ ପାର୍ଟି ଭୁଲିଗଲା । ଏହା ଯେପରି ସତ୍ୟ ଠିକ୍ ସେଇପରି ସତ୍ୟ ଯେ ଏପରି କଳନାକୁ ସବୁ କମ୍ୟୁନିଷ୍ଟ ଗ୍ରହଣ କରି ନାହାନ୍ତି ।

ଠିକ୍ ସେଇପରି ମହାତ୍ମା ଗାନ୍ଧୀଙ୍କ ଉପରେ ଆକଳନ । ଜଣେ ଗାନ୍ଧିବାଦୀ ନ ହୋଇପାରେ ବା ମହାତ୍ମା ଗାନ୍ଧୀଙ୍କ ଅନୁସୃତ ସବୁ ନୀତି ସହିତ ଏକମତ ହୋଇ ନ ପାରେ । ମହାତ୍ମା ଗାନ୍ଧୀଙ୍କ ସହିତ କ'ଣ ସବୁ କଂଗ୍ରେସ ନେତା ସବୁବେଳେ ଏକମତ ଥିଲେ ? ଜବାହରଲାଲଙ୍କଠାରୁ ଆରମ୍ଭ କରି ସୁଭାଷ ବୋଷଙ୍କ ପର୍ଯ୍ୟନ୍ତ ଚକ୍ରବର୍ତ୍ତୀ ରାଜଗୋପାଳଚାରୀଙ୍କଠାରୁ ଆରମ୍ଭକରି ସି.ଆର୍.ଦାସଙ୍କ ପର୍ଯ୍ୟନ୍ତ ବହୁ ନେତା ଏଥିରେ ଅନ୍ତର୍ଭୁକ୍ତ । କିନ୍ତୁ ବୁଦ୍ଧଙ୍କ ପରେ ସେ ଯେ ହେଉଛନ୍ତି ସବୁଠାରୁ ବଡ଼ ଭାରତୀୟ ଗଣନେତା ଏଥିରେ କୌଣସି ସନ୍ଦେହ ନାହିଁ । ସେଇଯୋଗୁଁ ଯେତେବେଳେ କମ୍ୟୁନିଷ୍ଟମାନଙ୍କ ଉପରେ ବୈଦେଶିକ ସାହାଯ୍ୟର ଅଭିଯୋଗ ହେଲା, ସେତେବେଳେ କମ୍ୟୁନିଷ୍ଟ ପାର୍ଟିର ତତ୍କାଳୀନ ସଂପାଦକ ପି.ସି. ଯୋଶୀ ମହାତ୍ମା ଗାନ୍ଧୀଙ୍କ ପାଖରେ କମ୍ୟୁନିଷ୍ଟ ପାର୍ଟିର ସବୁ ଆକାଉଣ୍ଟ ଦେଖାଇବାପାଇଁ ପ୍ରସ୍ତୁତ ବୋଲି କହିଥିଲେ ।

ମୋର ମନେହୁଏ ଭାରତୀୟ କମ୍ୟୁନିଷ୍ଟପାର୍ଟିର ନୀତି ଯଦି କୌଣସି ବ୍ୟକ୍ତି ଦ୍ୱାରା ସବୁଠାରୁ ଓଡ଼ିଶା ପ୍ରଭାବିତ ହୋଇଛି ତା' ହେଲେ ସେ ହେଉଛନ୍ତି ପ୍ରସିଦ୍ଧ ତତ୍ତ୍ୱବିତ୍,

ବିଲାତ କମ୍ୟୁନିଷ୍ଟପାର୍ଟିର ଭାରତୀୟ ବଂଶୋଦ୍ଭବ ନେତା ରଜନୀପାମି ଦତ୍ତ । ସେ ଥିଲେ ବିରାଟ ପଣ୍ଡିତ । ତାଙ୍କ ଦ୍ୱାରା ଲିଖିତ 'ଇଣ୍ଡିଆ ଟୁ ଡେ' ବହି ତାହାର ପ୍ରମାଣ ବହନ କରେ । ବିଲାତରେ ପାଠ ପଢ଼ିବାକୁ ଯାଇଥିବା ଭାରତୀୟ ଛାତ୍ରଙ୍କୁ ସେ ପ୍ରଭାବିତ କରିଛନ୍ତି ଏବଂ ସେମାନଙ୍କ ମଧ୍ୟରୁ ଅନେକ କମ୍ୟୁନିଷ୍ଟ ହୋଇ ଯାଇଛନ୍ତି । ସେମାନଙ୍କ ମଧ୍ୟରେ ଜ୍ୟୋତି ବସୁ, ଭୂପେଶ ଗୁପ୍ତ, ନିଖିଲ ଚକ୍ରବର୍ତ୍ତୀ, ଏନ୍.ଏନ୍. କ୍ରିଷ୍ଣନ୍, ରେଣୁ ଚକ୍ରବର୍ତ୍ତୀ, ମୋହନକୁମାର ମଙ୍ଗଳମ, ପାର୍ବତୀ କ୍ରିଷ୍ଣନ ପ୍ରଭୃତି ବହୁ ନେତା ଅନ୍ତର୍ଭୁକ୍ତ । ପ୍ରଚଣ୍ଡ ମେଧା ଏବଂ ତତ୍ତ୍ୱବିତ୍ ରଜନୀପାମି ଦତ୍ତଙ୍କ ପ୍ରଭାବରୁ ଜବାହରଲାଲ, ସୁଭାଷ ବୋଷ, କୃଷ୍ଣମେନନ୍ ମଧ୍ୟ ମୁକ୍ତ ନ ଥିଲେ ।

କିନ୍ତୁ ଏଇ ତତ୍ତ୍ୱବିତ୍‌ଙ୍କର ଭାରତବର୍ଷର ଗ୍ରାଉଣ୍ଡ ରିଏଲିଟି (ବାସ୍ତବ ପରିସ୍ଥିତି) ସହିତ ସଂପର୍କ ନ ଥିଲା । କାରଣ ସେ ଭାରତବର୍ଷ ଆଦୌ ଆସି ନ ଥିଲେ । କେବଳ ଦ୍ୱିତୀୟ ମହାଯୁଦ୍ଧ ସମୟରେ ଫାସିବାଦ ବିରୋଧରେ ପ୍ରତିରୋଧ ଆୟୋଜନ ଦେଖିବାକୁ ଆସିଥିଲେ ସଂକ୍ଷିପ୍ତ ସମୟ ପାଇଁ । ସେତିକିବେଳେ କମ୍ୟୁନିଷ୍ଟପାର୍ଟିର ତତ୍କାଳୀନ ସଂପାଦକ ପି.ସି. ଯୋଶୀଙ୍କ ସହିତ ଜେ.ଆର୍.ଡି. ଟାଟା ପ୍ରଭୃତିଙ୍କ ସହିତ ମିଳିତ ହୋଇଥିଲେ । ଏଠାରେ ଉଲ୍ଲେଖ କରିବାର କଥା ଜେଆରଡ଼ି ଫ୍ରାନ୍ସର ଛାତ୍ର ଥିଲେ ଏବଂ ତାଙ୍କର ଶିକ୍ଷକ ତଥା ଅନେକ ସହପାଠୀ କମ୍ୟୁନିଷ୍ଟ ଥିଲେ ଏବଂ 'ମୁଁ କମ୍ୟୁନିଷ୍ଟ ହେଉ ହେଉ ଅଳ୍ପକେ ରହିଯାଇଛି' ବୋଲି ଆପଣାର ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି ।

ଏସବୁ ଉଲ୍ଲେଖ କରିବାର କାରଣ ହେଉଛି ଏଇସବୁ ପ୍ରଶ୍ନ ଓ ବିତର୍କ ଆମକୁ ତରୁଣ ବୟସରେ ଉଦ୍‌ବେଳିତ କରିଥିଲା ଏବଂ ଆଜି ମଧ୍ୟ ଉଦ୍‌ବେଳିତ କରୁଛି ଜୀବନର ଅପରାହ୍ନରେ ।

ଭାରତର ସ୍ୱାଧୀନତା ଏକ ଆଗୁଆ ପଦକ୍ଷେପ କିନ୍ତୁ ସମ୍ପୂର୍ଣ୍ଣ ନୁହେଁ । କାରଣ କେବଳ ରାଜନୀତିକ ସ୍ୱାଧୀନତା ସମ୍ପୂର୍ଣ୍ଣ ସ୍ୱାଧୀନତା ନୁହେଁ, ଆର୍ଥନୀତିକ ସ୍ୱାଧୀନତା ତାହା ସହିତ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ଦେଶର ବିକାଶ ସମ୍ପୂର୍ଣ୍ଣ ନୁହେଁ, ଆୟର ସମତୁଲ ବଣ୍ଟନ ବିନା ଏହା ଥିଲା ଆମର ପ୍ରଥମ କଳନା ।

ଦେଶ ଆଦୌ ସ୍ୱାଧୀନ ହୋଇ ନାହିଁ । ଏହାକୁ ସ୍ୱାଧୀନ କରିବାକୁ ହେଲେ ଆବଶ୍ୟକ ସଶସ୍ତ୍ର ସଂଗ୍ରାମ । ସ୍ୱାଧୀନତା ସାମ୍ରାଜ୍ୟବାଦୀମାନଙ୍କ ସହିତ ସାଲିସ୍, ସେମାନଙ୍କ ପାଖରେ ଆତ୍ମସମର୍ପଣ । ତେଣୁ ଶାସକମାନେ ହେଉଛନ୍ତି ସାମ୍ରାଜ୍ୟବାଦର ଗୋଡ଼ାଣିଆ କୁକୁର । ଏହା ଥିଲା ଆମର ଦ୍ୱିତୀୟ କଳନା ।

ଏହି କଳନାର ରୂପ ହେଉଛି 'ସହରାଞ୍ଚଳରେ ସଶସ୍ତ୍ର ସଂଗ୍ରାମ ଏବଂ ମୁକ୍ତାଞ୍ଚଳ ସୁରକ୍ଷା' । ଏହାର କିଞ୍ଚିତ୍ ପରିବର୍ତ୍ତନ ହେଉଛି ଗରିଲା ଯୁଦ୍ଧ ଏବଂ ସଶସ୍ତ୍ର ଅଭ୍ୟୁତ୍‌ଥାନର ନୀତି ।

ଭାରତ ସାଧାରଣତନ୍ତ୍ର ଗଠିତ ହୋଇସାରିବାର ପ୍ରାୟ ବର୍ଷକ ପରେ ପାର୍ଲାମେଣ୍ଟାରୀ ନୀତିକୁ ପ୍ରତ୍ୟାବର୍ତ୍ତନ ।

ପରବର୍ତ୍ତୀ କାଳରେ କମ୍ୟୁନିଷ୍ଟପାର୍ଟିରେ ମତଭେଦ । ସି.ପି.ଏମ୍. ଦଳ ଗଠନ । ପୁଣି ଆଗକୁ ନକ୍ସଲବାଦୀ ଦଳ ଗଠନ । ଆହୁରି ଆଗକୁ ସି.ପି.ଏମ୍.ଏଲ୍., ସିପିଆଇ(ମାଓବାଦୀ) ପ୍ରଭୃତି ବିଭିନ୍ନ ଉପଦଳରେ ବିଭକ୍ତ ଏବଂ ଆଉ କିଛି ଆଗକୁ ହେଉଛି ସିପିଆଇ ଏବଂ ସିପିଏମ୍‌ର ମିଳିତ କାର୍ଯ୍ୟକ୍ରମ ସହିତ ବହୁଧା ବିଭକ୍ତ ନକ୍ସଲବାଦୀମାନଙ୍କର ମାଓବାଦୀ ଦଳ ଭାବରେ ଏକତ୍ରୀକରଣ ଉଦ୍ୟମ । ଆପଣାର ସମ୍ପୂର୍ଣ୍ଣ ଦୁଃସାହସିକତାବାଦୀ ନୀତିର କିଞ୍ଚିତ୍ ପରିବର୍ତ୍ତନ ଘଟିଛି ବୋଲି ମନେହୁଏ । ଗଣ ସଂଗଠନ ଏବଂ ଗଣଆନ୍ଦୋଳନ ଉପରେ ସେମାନେ ନଜର ଦେଇଛନ୍ତି ବୋଲି ମନେହୁଏ । ଗଣ ଆନ୍ଦୋଳନର ଚୂଡ଼ାନ୍ତ ପର୍ଯ୍ୟାୟରେ ଅସ୍ତ୍ରଧାରଣ ସହ ଲେନିନ୍‌ବାଦୀ ଶିକ୍ଷା ସେମାନେ ଗ୍ରହଣ କରିବା ସ୍ୱାଗତଯୋଗ୍ୟ । କାରଣ ଜୀବନର ଅପରାହ୍ନରେ ଯେମିତି ମନେହେଉଛି ବୈପ୍ଳବିକ ପରିବର୍ତ୍ତନ କ'ଣ ବିନା ଅସ୍ତ୍ରରେ ସମ୍ଭବ ନୁହେଁ କି ? ମାଫିଆ ଆଉ ମାଓ ଭିତରେ ଯଦି ଜଣକୁ ବାଛିବାକୁ କୁହାଯାଏ କାହାକୁ ବାଛିବ ମଣିଷ ?

ସଂବିଧାନ ଗଢ଼ାହେଲା । ମନେହେଲା ଯେ ଆମେ ଏକ ସାର୍ବଭୌମ ରାଷ୍ଟ୍ର । ଆମର ରହିଛି ପାର୍ଲାମେଣ୍ଟ ଓ ବିଧାନସଭା । ଏହା ଜନସାଧାରଣଙ୍କ ପ୍ରତିନିଧିତ୍ୱ କରିବ, ଜନଗଣଙ୍କ ଆଶା ଆକାଙ୍‌କ୍ଷା ପ୍ରତିଫଳିତ ହେବ । କିନ୍ତୁ କ'ଣ ଦେଖାଗଲା ? ନିର୍ବାଚନ ହୋଇଗଲା ବ୍ୟୟବହୁଳ । ରାଜନୀତିକ ଶକ୍ତି ପରିବର୍ତ୍ତେ ଧନବଳ, ବାହୁବଳର ବିଜୟ ନିୟାମକ ହୋଇଗଲା । ଧନଶାଳୀ ବ୍ୟକ୍ତି ଏବଂ ମାଫିଆମାନେ ବା ସେମାନଙ୍କର ପୃଷ୍ଠପୋଷକତାରେ ହିଁ ବିଜୟ ସମ୍ଭବ । ନିର୍ବାଚିତ ସଭ୍ୟମାନଙ୍କ ମଧ୍ୟରେ ଯେ ଜନପ୍ରିୟ ନେତା ନାହାନ୍ତି, ତାହା ନୁହେଁ । କିନ୍ତୁ ସେମାନେ ପାଲଟି ଯିବାକୁ ବସିଛନ୍ତି ଏକ ନିଉକ୍ଲାସ୍ ଭାବରେ, ଯାହାର ଭାରାରେ ଦିନେ ସୋଭିଏଟ୍ ୟୁନିଅନ୍‌ର ସମାଜବାଦ ଭୁଶୁଡ଼ି ପଡ଼ିଲା । ସେଥିପାଇଁ ସି.ଆଇ.ଏ. ବା କୌଣସି ବାହ୍ୟ ଶକ୍ତିର ଆବଶ୍ୟକତା ପଡ଼ିଲା ନାହିଁ । ଭାରତବର୍ଷରେ ରାଷ୍ଟ୍ରପତିଙ୍କଠାରୁ ଆରମ୍ଭ କରି ପିଅନ ପର୍ଯ୍ୟନ୍ତ ସମସ୍ତେ ଦରମା ପାଆନ୍ତି କିନ୍ତୁ କାହାର ଦରମା ସେମାନେ ନିଜେ ସ୍ଥିର କରନ୍ତି କି ପାଉଥିବା ସୁବିଧା ମଧ୍ୟ ନିଜେ ସ୍ଥିର କରନ୍ତି ନାହିଁ ।

ପାର୍ଲାମେଣ୍ଟ ସଭ୍ୟମାନେ ସେଇ ପଦ୍ଧତି ଅନୁସରଣ କରିଥିଲେ ଶୁଭଙ୍କର ହୋଇଥା'ନ୍ତା, କିନ୍ତୁ ତାହା ହେଲା ନାହିଁ । ନିଜର ଦରମା ବୃଦ୍ଧି, ପେନ୍‌ସନ୍, ପାରିବାରିକ ପେନ୍‌ସନ୍, ଭତ୍ତା ବୃଦ୍ଧି, ସୁବିଧା ବୃଦ୍ଧି ସବୁ ସେମାନେ ନିଜେ କରି ଚାଲିଛନ୍ତି । ଯେଉଁମାନେ ଏହି ପଦ୍ଧତି ଠିକ୍ ବୋଲି ଭାବୁ ନାହାନ୍ତି ସେମାନେ ମଧ୍ୟ ସଂଖ୍ୟାଗରିଷ୍ଠତାର ଶିକାର ହୋଇ ଯାଉଛନ୍ତି । ନିର୍ବାଚିତ ପ୍ରତିନିଧିମାନେ ଆପଣାର ଦାୟିତ୍ୱ ତୁଲାଇବା ପାଇଁ ସବୁ ସୁବିଧା ପାଇବା ଉଚିତ, ଏଥିରେ କେହି ଦ୍ୱିମତ ନୁହନ୍ତି । କିନ୍ତୁ କେତେଜଣ ସଭ୍ୟ ଏହାର ଉଚିତ ବ୍ୟବହାର କରୁଛନ୍ତି । କାମ ନାହିଁ ତ ଦରମା ନାହିଁ, ଏହି ନିୟମ ସମାଜରେ ପ୍ରଚଳନ କରିବା ପାଇଁ ଦାବି କରୁଥିବା ସଭ୍ୟମାନେ ନିଜ ପ୍ରତି ତାହା ପ୍ରୟୋଗ କରୁ

ନାହାନ୍ତି । ଲୋକସଭାର ଅଧିକାଂଶ ସଭ୍ୟ ବିଜୟ ହାସଲ କରିଛନ୍ତି ସଂଖ୍ୟାଲଘୁ ଭୋଟର 'ଗରିଷ୍ଠତା' ଭିତ୍ତିରେ । ପ୍ରଚଳିତ ଲୋକସଭାର ମାତ୍ର ଛଅଜଣ ସଦସ୍ୟଙ୍କର ବିଜୟ ହୋଇଛି ପ୍ରକୃତ ସଂଖ୍ୟାଗରିଷ୍ଠତାରେ !

ସରକାରୀ କର୍ମଚାରୀଙ୍କୁ ପେନ୍‌ସନ୍ ମିଳେ ନିର୍ଦ୍ଦିଷ୍ଟ ବର୍ଷ କାର୍ଯ୍ୟ କଲେ । କିନ୍ତୁ ପାର୍ଲାମେଣ୍ଟ ସଭ୍ୟମାନଙ୍କ ପ୍ରତି ଏହା ପ୍ରଯୁଜ୍ୟ ହେଉ ନାହିଁ । ଏହା ଛଡ଼ା ରାଜନୀତିକ ଦଳମାନଙ୍କର ସଭ୍ୟ ବା କର୍ମୀମାନଙ୍କ ମଧ୍ୟରୁ ଶତକଡ଼ା କେତେ ଏଇ ସୁଯୋଗ ପାଆନ୍ତି ? ଯେଉଁ ବହୁସଂଖ୍ୟକ କର୍ମୀ ଏଇ ସୁଯୋଗ ପାଆନ୍ତି ନାହିଁ, ସେମାନଙ୍କର କାମ ପାଇଁ ପେନ୍‌ସନ୍, ପାରିବାରିକ ପେନ୍‌ସନ୍ କିଏ ଦେବ ?

ଏହା ଫଳରେ ଏକ ପଟରେ ଏଇ ସୁବିଧାକୁ ଏକଚାଟିଆ ଓ ପାରିବାରିକ କରିବା ପାଇଁ ଯେପରି ଉଦ୍ୟମ ହେବ ଠିକ୍ ସେଇପରି ଏହି ସୁବିଧା ପାଇଁ ପ୍ରତିଯୋଗିତା ହିଂସ୍ର ବି ହେବ ଏବଂ ନିକର୍ମା ସୁବିଧାଭୋଗୀମାନେ ହିଟ୍‌ଲିଷ୍ଟର ତାଲିକାଭୁକ୍ତ ବି ହେବେ । ଦଳେ ଏମାନଙ୍କୁ 'ବିଲୁପ୍ତ' କରିବାକୁ ଉଦ୍ୟମ କରିବେ ଏବଂ ଅନ୍ୟ ଦଳେ ଏଇ ନିଉକ୍ଲାସ୍ ବିରୋଧରେ ବିଦ୍ରୋହ ଘୋଷଣା କରିବେ ।

ଗଣତନ୍ତ୍ରର ପ୍ରଥମ ସ୍ତମ୍ଭର ବ୍ୟବସ୍ଥା ଏଇଆ ।

ବର୍ତ୍ତମାନ ଦ୍ୱିତୀୟ ସ୍ତମ୍ଭ, ଏକ୍‌ଜିକ୍ୟୁଟିଭ୍ ବା ବ୍ୟୁରୋକ୍ରାସି (ଅମଲାତନ୍ତ୍ର) ବ୍ରିଟିଶ ଶାସନର ଏଇ ଅବଦାନର ତୀବ୍ର ବିଦ୍ରୋହୀ ଜବାହରଲାଲଙ୍କ ପ୍ରଧାନମନ୍ତ୍ରୀତ୍ୱ କାଳରେ ହିଁ ଏହା ବେଶୀ ଦୃଢ଼ ହୋଇଛି । ଜନମଙ୍ଗଳ ରାଷ୍ଟ୍ରରେ ଆଇନ୍‌ର ପରିମାଣ ବୃଦ୍ଧି ହୋଇଛି ଏବଂ ଏହା ଜୀବନର ବିଭିନ୍ନ ବିଭାବକୁ ସମ୍ପ୍ରସାରିତ ହୋଇଛି । ଆଇନ୍‌କୁ କାର୍ଯ୍ୟକାରୀ କରିବା ପାଇଁ ନିୟମର ଆବଶ୍ୟକତା ପଡ଼ିଛି ଏବଂ ଏହା ଦେଇଛି ବ୍ୟୁରୋକ୍ରାସିକୁ ଅଖଣ୍ଡ କ୍ଷମତା, ଯାହାକୁ ଏକଦା ଲର୍ଡପୁଭର ନବ୍ୟ ସ୍ୱୈରାଚାର ନାମ ଦେଇଥିଲେ ବ୍ରିଟିଶ ସମାଜରେ ଏହାର ଲକ୍ଷଣ ଦେଖି । ବ୍ୟୁରୋକ୍ରାସି ବ୍ରିଟିଶ ଶାସନକାଳର ଦକ୍ଷତା ବା ନିରପେକ୍ଷତା ହୁଏତ ରଖିପାରି ନାହିଁ । ମନ୍ତ୍ରିମଣ୍ଡଳ ଯେତିକି ଅପାରଗ ଏବଂ କରପ୍ଟ ହୋଇଛନ୍ତି, ଅନେକ ବ୍ୟୁରୋକ୍ରାଟ୍ ତାହାର ସୁବିଧା ନେଇଛନ୍ତି । ଅନୁଗୃହୀତ ହୋଇଛନ୍ତି ଯେମିତି ଅନୁଗୃହୀତ କରାଇଛନ୍ତି ବି ସେମିତି । ମନ୍ତ୍ରୀମାନଙ୍କୁ, ସେମାନେ ମାନୁ ନାହାନ୍ତି ଏପରି ଅଭିଯୋଗ ମନ୍ତ୍ରୀମାନଙ୍କଠାରୁ ବି ଶୁଣିବାକୁ ମିଳୁଛି । ସବୁ ଅଫିସର ତାହା ନୁହନ୍ତି । କିନ୍ତୁ ସେମିତି ଅଫିସରଙ୍କ ସଂଖ୍ୟା କେତେ ? ଏପରିକି ତରୁଣ ଆଦର୍ଶବାଦୀ ଅଫିସରମାନେ ଭୋଟ ଦେଉଛନ୍ତି ସବୁଠାରୁ କରପ୍ଟ ଅଫିସର କିଏ ତାହା ସ୍ଥିର କରିବାପାଇଁ । କରପ୍ଟ କିନ୍ତୁ ଏଫିସିଏଣ୍ଟ ଇମିତି ଶବ୍ଦର ବ୍ୟାପକ ବ୍ୟବହାର ଦେଖାଦେଇଛି । କାରଣ ହୁଏତ ଜଣେ ଅଫିସର ସାଧୁ, କିନ୍ତୁ ଯେହେତୁ ସେ ନିର୍ଭୀକ ନୁହେଁ, ସେଥିଯୋଗୁଁ ଜନମଙ୍ଗଳ ନିଷ୍ପତ୍ତି ନେବାରେ ଅହେତୁକ ବିଳମ୍ବ । ଏଇ ରୋଗ ଠିକ୍ ର୍‍ୟାଗିଙ୍ଗ୍ ପରି । ଅବସର ନେଲା ପରେ ଅନେକ ବରିଷ୍ଠ ଅଫିସର କରପ୍‌ସନ୍ ବିରୋଧରେ ଇମିତି ଭାଷଣ ମାରନ୍ତି ଯେ

ଶୁଣିଲେ ଆଖି ଖୋସିହେଇଯିବ । ସେମାନେ ଭୁଲିଯାଆନ୍ତି ଯେ ସେମାନେ ଦିନେ ଏହାର ମୂଳାଧାର ଥିଲେ ।

ବାକି ରହିଲା ତୃତୀୟ ସ୍ତମ୍ଭ ବା ବିଚାରାଳୟ (ଜୁଡିସିଆରି) । ବର୍ତ୍ତମାନ ବିଚାରାଳୟ ସବୁକ୍ଷେତ୍ରରେ ହସ୍ତକ୍ଷେପ କରିବା ଦେଖାଯାଉଛି । ମଶା, ମାଛି, ଡ୍ରେନ, ଜବରଦଖଲ, ପେନ୍‌ସନ୍, ପ୍ରମୋଶନଠାରୁ ଆରମ୍ଭକରି ବିବାହ, ଛାଡ଼ପତ୍ର, ତଲାକ୍ ସବୁକଥାରେ ଲୋକେ କୋର୍ଟରେ ହାଜର । ହଜାର ହଜାର କେସ୍ ବିଚାର ପାଇଁ ପଡ଼ିରହିଛି ବର୍ଷ ବର୍ଷ ଧରି । କାରଣ ବିଚାରପତିଙ୍କ ସଂଖ୍ୟା କମ୍ । ପୁଣି ବିଭିନ୍ନ କମିଶନ ପାଇଁ କର୍ମନିଯୁକ୍ତ ବିଚାରପତି ପାଇଁ ଦାବି । ତେଣିକି କମିଶନ୍ କ'ଣ ରିପୋର୍ଟ ଦେଲେ, କେବେ ଦେଲେ, କ'ଣ ପଦକ୍ଷେପ ଗ୍ରହଣ କରାଗଲା ତାଙ୍କର ସୁପାରିସ ଉପରେ, ନା ତାହା ଶୀତଳଭଣ୍ଡାରକୁ ଗଲା କିଏ ପଚାରୁଛି । ସମୟ ବଡ଼ ବଳବାନ୍ । ଗୋଟେ ଦୁର୍ଘଟଣା ଘଟିଲେ କମିଶନ୍ ପାଇଁ ଦାବି ହୁଏ ଏବଂ ଦେଖାଯାଏ ଏହିପରି ଏକ ଦୁର୍ଘଟଣା କିଛି ବର୍ଷ (ବା ଦଶନ୍ଧି) ତଳେ, କମିଶନ୍ ବସିଥିଲା, ଅର୍ଥ ଶ୍ରାଦ୍ଧ ହୋଇଥିଲା, ରିପୋର୍ଟ ମିଳିଥିଲା କିନ୍ତୁ ତାହା ଶୀତଳଭଣ୍ଡାରରେ ରହିଛି । ପୁଣି କମିଶନ, ପୁଣି ଅର୍ଥ ଶ୍ରାଦ୍ଧ । ବିଚାରପତିଙ୍କ ସମୟ ନଷ୍ଟ, ଓକିଲ ପୋଷା, ଅର୍ଥବ୍ୟୟ ।

ଏଇୟା ଲେଖିଲା ବେଳକୁ ପୁରୀ ଶ୍ରୀମନ୍ଦିରରେ କାର୍ତ୍ତିକ ବଡ଼ଓଷା ଦିନ ଏକ ଦୁର୍ଘଟଣା ଘଟିଯାଇଛି । ସରକାର ଓ ଶ୍ରୀମନ୍ଦିର କର୍ତ୍ତୃପକ୍ଷ ମୃତ ବ୍ୟକ୍ତିଙ୍କ ପରିବାରବର୍ଗଙ୍କୁ ଏବଂ ଆହତ ବ୍ୟକ୍ତିମାନଙ୍କର ଚିକିତ୍ସା ନିମନ୍ତେ ଆର୍ଥିକ ସାହାଯ୍ୟ ଘୋଷଣା କରିଚାଲିଛନ୍ତି । ଦୁର୍ଘଟଣାର କାରଣ ସଂପର୍କରେ ପୁରୀ ଶ୍ରୀମନ୍ଦିର ଶାସନ, ପ୍ରତ୍ୟକ୍ଷଦର୍ଶୀ, ଆହତ ବ୍ୟକ୍ତି, ବିଶେଷଜ୍ଞମାନେ ମତ ଦେଇସାରିଛନ୍ତି । ତଥାପି କମିଶନ ବସିବ । ଏହିଭଳି ଏକ ଘଟଣା ପ୍ରାୟ ସେହି ସ୍ଥାନରେ ଘଟିଥିଲା ୧୯୯୩ ମସିହାରେ । କମିଶନ ବସିଥିଲା, ରିପୋର୍ଟ ଦିଆହୋଇଥିଲା, ଅଫିସରମାନେ ଯାଇଥିଲେ ବିଭିନ୍ନ ତୀର୍ଥ ଦର୍ଶନ କରି ଅଭିଜ୍ଞତା ସଂଗ୍ରହଲାଗି । କମିଶନ୍‌ର ସଭ୍ୟ ବର୍ତ୍ତମାନ ଜୀବିତ । ସେ ବି ଜଣାଇଛନ୍ତି ପ୍ରତିକ୍ରିୟା । କର୍ମପନ୍ଥା ନିଆଯିବା ଦୂରର କଥା, କମିଶନର୍ ରିପୋର୍ଟ ହଜିଯାଇଛି କୁଆଡ଼େ । ବହୁକାଳରୁ ପୁଣି ସେହି ନାଟକର ପୁନରାବୃତ୍ତି !

ବିଚାରାଳୟର ଏଇ ବିଭିନ୍ନ ବିଭାଗରେ ହସ୍ତକ୍ଷେପ ବା ସକ୍ରିୟତାକୁ ଜୁଡ଼ିସିଆଲ ଆକ୍‌ଟିଭିଜିମ କୁହାଯାଇଛି । ଏହା ଘଟୁଛି କାରଣ ଗଣତନ୍ତ୍ରର ପ୍ରଥମ ଦୁଇସ୍ତମ୍ଭ ଆପଣାର ଭୂମିକା ନିର୍ବାହ କରିବାକୁ ସକ୍ଷମ ନୁହନ୍ତି ।ଏଇ ସକ୍ରିୟତା ଯେତିକି ଶୁଭଙ୍କର ସେତିକି ବିପଜ୍ଜନକ ମଧ୍ୟ । ବିଚାରପତିମାନେ କାହାରି ପାଖରେ ଉତ୍ତରଦାୟୀ ନୁହନ୍ତି । ଭଲ ବିଚାରପତି ହେଲେ କଥା ନିଆରା । କିନ୍ତୁ ସବୁ ବିଚାରପତି ଯେ ଭଲ, ଏକଥା କିଏ କହିବ ? ଭାରତବର୍ଷରେ ବେଶ୍ କେତେକ ବିଚାରପତି ଅଭିଯୁକ୍ତ ବିଭିନ୍ନ ଦୋଷରେ । ତଳଠାରୁ ଉପର ପର୍ଯ୍ୟନ୍ତ ସବୁସ୍ତରର ବିଚାରପତି ଏଥିରେ ଜଡ଼ିତ କିନ୍ତୁ ଉତ୍ତରଦାୟୀ ବା

ଆକାଉଣ୍ଟେବିଲିଟି ନ ଥିବାରୁ ସବୁଠି ତ ପଦକ୍ଷେପ ନିଆଯାଇପାରୁନି । ଏଣେ ବିଚାରପତିମାନଙ୍କ ରାୟକୁ ମାନୁ ନ ଥିବାର ଅଭିଯୋଗରେ କୌଣସି ବିଚାରାଳୟ କୋର୍ଟ ବନ୍ଦ କରିଦେଇ ଜନସାଧାରଣଙ୍କୁ ଆହ୍ୱାନ ଦେବାର ଧମକ ଦେଉଛନ୍ତି ଆଇନ୍‌କୁ ହାତକୁ ନେବାପାଇଁ । ଅପରଦିଗରେ ବିଚାରାଳୟ ଏବଂ ପାର୍ଲାମେଣ୍ଟ ମୁହାଁମୁହିଁ ହେବାର ଉପକଣ୍ଠରେ ।

ତେବେ ସର୍ବଶେଷ ସମ୍ବାଦରୁ ଜଣାଯାଉଛି ଯେ ଉଭୟପକ୍ଷ ନରମିବାକୁ ଆରମ୍ଭ କରିଛନ୍ତି, ସୁପ୍ରିମକୋର୍ଟ ଚିଫ୍ ଜଷ୍ଟିସ କହିଛନ୍ତି ସେମାନଙ୍କ ରାୟ ଚୂଡ଼ାନ୍ତ କିନ୍ତୁ ସବୁବେଳେ ନିର୍ଭୁଲ ନୁହେଁ । ବିଚାରପତିମାନଙ୍କୁ ଉତ୍ତରଦାୟୀ କରିବାପାଇଁ ଉଦ୍ୟମ ଆରମ୍ଭ ହୋଇଛି । କିନ୍ତୁ ତାହାର ବିଚାର କେବଳ ବିଚାରପତିମାନେ କରିବାର ବ୍ୟବସ୍ଥାଥିବାରୁ ଭ୍ରୂକୁଞ୍ଚନ ସୃଷ୍ଟି ହୋଇଛି । ୨୦୦୬ ମସିହା ପାର୍ଲାମେଣ୍ଟର ଶୀତକାଳୀନ ଅଧିବେଶନରେ ଏହାର କିପରି ବିଚାର ହୋଇଛି ଦେଖାଯାଉ । ଏହା ମଧ୍ୟରେ ସୁପ୍ରିମକୋର୍ଟ ଏକ ରାୟରେ ନିଯୁକ୍ତି ପ୍ରଭୃତି କ୍ଷେତ୍ରରେ ହସ୍ତକ୍ଷେପ କରିବାପାଇଁ (ନିହାତି ଦରକାର ନ ହେଲେ) ମନାକରିଦେଇଛନ୍ତି ।

ଦେଶର ଏହି ପରିସ୍ଥିତି । ପ୍ରଶ୍ନ ପୁଣି ଉଠୁଛି ଗଣତାନ୍ତ୍ରିକ ବ୍ୟବସ୍ଥାର ଏହି ସଂକଟରୁ ମୁକ୍ତ କରିବାପାଇଁ ଏବଂ ଦେଶରେ ଏକ ପ୍ରକୃତ ଜନମଙ୍ଗଳ ସମାଜବାଦୀ ରାଷ୍ଟ୍ର ଗଢ଼ିବା ପାଇଁ ଅସ୍ତ୍ରଧାରଣ କରିବା ଅବଶ୍ୟମ୍ଭାବୀ ହୋଇପଡ଼ିବ ନାହିଁ ତ ? କିନ୍ତୁ ଜନଆନ୍ଦୋଳନ ବିନା, ଜନ ସଂଗ୍ରାମର ଗୁଣାତ୍ମକ ବିକାଶ ବିନା ଅସ୍ତ୍ରଧାରଣ କ'ଣ ସେହି ବାମପନ୍ଥୀ ଦୁଃସାହସିକତାବାଦରେ ପରିଣତ ହୋଇଯିବ ନାହିଁ କି ? ଏପରିକି ମାର୍କସବାଦୀ- ଲେନିନ୍‌ବାଦ ମଧ୍ୟ କହେ ଯେ ଜନସଂଗ୍ରାମର ଚୂଡ଼ାନ୍ତ ପର୍ଯ୍ୟାୟରେ ହିଁ ଅସ୍ତ୍ରଧାରଣ ପ୍ରଶ୍ନ ଉଠିପାରେ ।

ସେଦିନ କେଲକାତାରେ ମଧ୍ୟ ଏହି ପ୍ରଶ୍ନ ଉଠିଥିଲା ବହୁ କମ୍ୟୁନିଷ୍ଟଙ୍କ ମଧ୍ୟରେ, ଯେଉଁମାନେ ନିଜର ଜୀବନକୁ ବାଜିଲଗାଇ ପଳାତକ ସାଜିଥିଲେ । ଆଜି ଜୀବନର ବିଳମ୍ବିତ ଅପରାହ୍ଣରେ ମଧ୍ୟ ସେହି ପ୍ରଶ୍ନ ଜୀବନ୍ତ ।

କୋଲକାତାରୁ କଟକ । ପୁଣି ସେହି ଶଗଡ଼ିଆସାହି (ରାଣୀହାଟ) ଡ୍ରେନ । ମଥୁରାନନ୍ଦଙ୍କ ନାମରେ ଯେଉଁ ଘର ଭଡ଼ା ନିଆଯାଇଛି । ମୋ ପକ୍ଷରେ ଏଇଟା ସବୁଠାରୁ କଠିନ ସମୟ । ଘରେ ପାଇପ ନାହିଁ, ଅଛି ଏକ ସାମୂହିକ କୂଅ । ସେଇଥିରୁ କିଛି ପାଣି ମୋପାଇଁ ଗାଧୋଇବାକୁ ଦିଆଯାଏ, ଯାହା ଆଦୌ ଅଣ୍ଟେ ନାହିଁ । ରାଣୀହାଟ ଅଞ୍ଚଳ ମୋର ପରିଚିତ ସ୍ଥାନ । ତେଣୁ ବାହାରକୁ ବାହାରିବା ସଂପୂର୍ଣ୍ଣ ନିଷିଦ୍ଧ । ଏଇଠି ଆସି ରହିଲେ କିଛି ଦିନ ୰ନଟବର ବନଛୋର୍ ଏବଂ ୰ଗୌରୀଶଙ୍କର ଦାସ । ଗୌରୀବାବୁ ଭଲ ଚେସ ଖେଳନ୍ତି, କ୍ଳାନ୍ତିକୁ ମେଣ୍ଟେଇବା ପାଇଁ ତାଙ୍କ ସାଙ୍ଗରେ ଚେସ ଖେଳାଯାଏ । ସେ ବଢ଼ିଆ ବଢ଼ିଆ ଗପ କହନ୍ତି ତାଙ୍କ ପରିବାର ଓ ସ୍ତ୍ରୀଙ୍କ ସଂପର୍କରେ । ପରବର୍ତ୍ତୀ କାଳରେ ସେ ବଡ଼ ବ୍ୟବସାୟୀ ପାଲଟିଥିଲେ କିନ୍ତୁ ସମାଜବାଦୀ ଚିନ୍ତାଧାରା ସହିତ

ସଂପର୍କ ଥିଲା ନିବିଡ଼ । ୰ରାଧାବଲ୍ଲଭ ମିଶ୍ର ଓ ୰ଲେଙ୍ଗୁ ମିଶ୍ରଙ୍କ ସହିତ ମିଶି ତାଙ୍କୁ ଭେଟିଥିଲି ଥରେ ବରଗଡ଼ରେ । ସେହିଭଳି ବନ୍ଧୁବତ୍ସଳ ଓ ଗଳ୍ପମୁଖର ଥିଲେ ସେ । ତାଙ୍କ ସ୍ତ୍ରୀଙ୍କ ସହିତ ପରିଚିତ କରାଇଦେଇ ସେ ଆରମ୍ଭ କରିଥିଲେ ସେହି ପୁରୁଣା ଗଳ୍ପ । ସେମାନେ ଆଉ କେହି ନାହାନ୍ତି । ରାଧାବଲ୍ଲଭଙ୍କର ଅକାଳ ମୃତ୍ୟୁ ହୋଇଯାଇଛି ବ୍ରେନ ଟ୍ୟୁମରରେ । ପୁଅ ରହିଯାଇଛି ମସ୍କୋରେ ପାଠ ପଢ଼ା ଏବଂ ପରେ ଚାକିରିରେ । ରାଧାବଲ୍ଲଭ ମୋଠାରୁ କନିଷ୍ଠ ବୟସରେ । କିନ୍ତୁ ବନ୍ଧୁତା ଏବଂ ସହଯୋଦ୍ଧୃତ୍ୱ ମିଶି ଯାଇଛି ତାଙ୍କ କ୍ଷେତ୍ରରେ । ତାଙ୍କ ପୁଅ ମୋର ବଡ଼ପୁଅ ଅଭିଜିତ୍‌ର ସାଙ୍ଗ । ବନ୍ଧୁତ୍ୱ ପାରିବାରିକ ପାଲଟିଛି ।

ଆଗରୁ ଲେଖିଛି ଯେ ଏହି ଡେନରୁ ଯାଇ ମୁଁ ଗିରଫ ହୋଇଛି । ଗୋପୀନାଥ ମହାନ୍ତି ଇନ୍‌ସପେକ୍ଟର ମୋତେ ରିଭଲଭର ଏବଂ ବନ୍ଧୁକ ମୁନରେ ଗିରଫ କରିଥିଲେ । ପରେ ପରେ ଚାକିରିରୁ ଅବ୍ୟାହତି ନେଇ ରାଉରକେଲା ଇସ୍ପାତ କାରଖାନାରେ ନିରାପତ୍ତା ବିଭାଗରେ ଚାକିରି କରିଥିଲେ ଏବଂ ତା'ପରେ ସେଠାରେ ସ୍ୱାଧୀନ ବ୍ୟବସାୟ କରିଥିଲେ । କିଛି ବର୍ଷ ତଳେ ଆତ୍ମୀୟ ପୁତୁଲ (ନିରଞ୍ଜନ ପଟ୍ଟନାୟକ) ଘରେ ହଠାତ୍ ସାକ୍ଷାତ୍ ହୁଏ । ସେ ପୁତୁଲର ସଂପର୍କୀୟ ଅଜା । ସେଇଠି ସେ ରହୁଥିଲେ କିଛି ଦିନ ପାଇଁ । ହଠାତ ସାକ୍ଷାତ୍ । ସେ ବୁଢ଼ା ହୋଇଯାଇଥିଲେ । ବର୍ତ୍ତମାନ କେଉଁଠି କହିପାରିବି ନାହିଁ । ସ୍ମୃତି ପଖଳା ହେଲା । ଠିକ ସେହିପରି ୰ଗୋପୀନାଥ ଦାସ, ଯିଏ ମୋତେ ଚିହ୍ନଟ କରିଥିଲେ କାରଣ କେନ୍ଦ୍ର ଗୁଇନ୍ଦା ଏସ.ପି.୰ରାଜଗୋବିନ୍ଦ ବୋଷ ମୋତେ ଚିହ୍ନି ନ ଥିଲେ ଏବଂ ମୋର ଚେହେରାରୁ ମୁଁ ଚୀନ୍ ଦେଶର ବୋଲି ଧରିନେଇଥିଲେ । ୰ଗୋପୀନାଥ ଦାସ ପାରିବାରିକ ବନ୍ଧୁ, ଆମ ଗାଁ ପାଖ ଲୋକ । ପରବର୍ତ୍ତୀକାଳରେ ସେ ଅବସର ନେଇ ଗାଁ ସିମିଳିଛୁଇଁରେ ରହୁଥିଲାବେଳେ ଏକ ସଭାରେ ଆମେ ଦୁହେଁ ଭାଷଣ ଦବାର କାର୍ଯ୍ୟକ୍ରମ ଥିଲା ଏବଂ ସେ ଉକ୍ତ ସଭାରେ ଆମେରିକା ସରକାରଙ୍କ ନିର୍ଦ୍ଦେଶରେ ଆମକୁ ସବୁ ଗିରଫ କରାଯାଇଥିଲା ବୋଲି କହିଥିଲେ । ଗୋପୀବାବୁ ସବ୍‌ଇନିସପେକ୍ଟର ପଦବୀରେ ଚାକିରି ଆରମ୍ଭକରି ଡି.ଏସ.ପି. ପଦବୀରେ ଅବସର ନେଇଥିଲେ । ଗୁଇନ୍ଦା କାମରେ ବ୍ୟୁତ୍ପତ୍ତି ଏବଂ ଆଗ୍ରହ ହେତୁ ଜୀବନର ବହୁ ବର୍ଷ ସେ ଏହି କାମରେ ନିଯୁକ୍ତ ଥିଲେ । ରାଜନୀତିକ ଦଳମାନଙ୍କ ସଂପର୍କରେ ସବିଶେଷ ସମ୍ବାଦ ରଖିବାରେ ସେ ଥିଲେ ବିଚକ୍ଷଣ । ପାର୍ଟିମାନଙ୍କର ସବିଶେଷ ଦଲିଲ ପାଇବାରେ ଏବଂ ଅଧ୍ୟୟନ କରିବାରେ ସେ ଥିଲେ ବେଶ ପାରଙ୍ଗମ । ମୁଁ ଗିରଫ ହେଲାବେଳେ ପାର୍ଟି ରଣଦିଭେ ଲାଇନ ପରିହାର କରି ରାଜେଶ୍ୱର ରାଓଙ୍କ ଲାଇନ ଗ୍ରହଣ କରିବାକୁ ଆରମ୍ଭ କରିଥିଲା । 'ଗ୍ରାମାଞ୍ଚଳରେ ସିଭିଲ ଓ୍ୱାର ଏବଂ ସହରାଞ୍ଚଳରେ ସଶସ୍ତ୍ର ଅଭ୍ୟୁତ୍ଥାନ' ନୀତି ସଂପର୍କରେ ଆଲୋଚନା ପାଇଁ ବସିଥିଲା ରାଜ୍ୟ କାର୍ଯ୍ୟକାରୀକମିଟି । ପଳାତକ ରହିଯାଇଥିବା ଅବଶିଷ୍ଟାଂଶ ନେତାମାନେ ଏଥିରେ ଯୋଗ ଦେଇଥିଲେ । ପଳାତକ ସଭ୍ୟମାନଙ୍କ ମଧ୍ୟରେ ଦିବ୍ୟୀକୃଷ୍ଣ ପଣ୍ଡା ଏଇ

ସମୟରେ କମ୍ ବୟସରେ କାର୍ଯ୍ୟକାରୀ କମିଟିକୁ ନିର୍ବାଚିତ ହୋଇଥିଲେ ବୋଲି ମନେପଡୁଛି ।

ଅଥଚ ଗୋପୀବାବୁ ମୋତେ ଚିହ୍ନଟ କରିସାରିବାପରେ ମଙ୍ଗଳାବାଗ ଥାନା ହାଜତରେ ଆରମ୍ଭ କଲେ ଆଲୋଚନା ରାଜେଶ୍ୱର ରାଓଙ୍କ ନୀତି ସଂପର୍କରେ । ପାର୍ଟି ଭିତରେ ରଣଦିଭେଙ୍କ ନୀତି ବିରୋଧରେ ବିଦ୍ରୋହ ଘୋଷଣା କରିଥିବା ନେତା ୰ବିଜୟଚନ୍ଦ୍ର ଦାସ ମତ ଦେଇଥିଲେ ଯେ ରଣଦିଭେଙ୍କ ନୀତି କିଛି ବୁଝି ହେଉଥିଲା କିନ୍ତୁ ରାଜେଶ୍ୱର ରାଓଙ୍କ ନୀତି ତ କିଛି ବୁଝି ହେଉ ନାହିଁ । ଠିକ୍ ସେଇ ବକ୍ତବ୍ୟ ଉଦ୍ଧାରକରି ଗୋପୀବାବୁ ପଚାରିଲେ ମୋତେ ରାଜେଶ୍ୱର ରାଓଙ୍କ ନୀତି ସମ୍ପର୍କରେ ।

ବର୍ତ୍ତମାନ ପୁଲିସ ବିଭାଗରେ ଇଣ୍ଟେଲିଜେନ୍ସୀ ବା ଗୁଇନ୍ଦା ବିଭାଗର ବିଫଳତା ଖୁବ୍ ଚର୍ଚ୍ଚାର ବସ୍ତୁ । ଏହା ଖାଲି ଓଡ଼ିଶା ପାଇଁ ପ୍ରଯୁଜ୍ୟ ନୁହେଁ । ସାରା ଭାରତବ୍ୟାପୀ ଏହା ଦେଖାଦେଇଛି ଯଦିଓ ଏଇ ବାବଦରେ ହିସାବ ନ ଦେବା ଖର୍ଚ୍ଚ (ଅନ୍‌ଆକାଉଣ୍ଟଏବୁଲ ଏକ୍ସପେଣ୍ଡିଚର) ବଢ଼ି ଚାଲିଛି । ପୁଲିସ ଚାକିରି (ଅନ୍ୟସବୁ ଚାକିରି ଭଳି) ବିଶେଷତଃ ଗୁଇନ୍ଦା ଚାକିରି ଖାଲି ବୃତ୍ତି ହେଲେ ଚଳିବ ନାହିଁ । ଏଥିରେ ସଫଳତା ପାଇଁ ସ୍ୱତନ୍ତ୍ର ଅଭିରୁଚି ଏବଂ ଅଙ୍ଗୀକାର ଦରକାର । ଅରଣ୍ୟ ଏବଂ ଜନ୍ତୁକୁ ଭଲ ପାଇବାର ଅଭିରୁଚି ନ ଥିବା ବ୍ୟକ୍ତି ଯେପରି ସଫଳ ବନକର୍ମଚାରୀ ବା ଅଫିସର୍ ହୋଇପାରେନା, ପାଠ୍ୟପୁସ୍ତକ ଏବଂ ଛାତ୍ରକୁ ଭଲ ନ ପାଉଥିବା ବ୍ୟକ୍ତି ଯେପରି ଭଲ ଶିକ୍ଷକ ହୋଇପାରେନା, ଏହା ଠିକ୍ ସେହିଭଳି । ଗୁଇନ୍ଦାଗିରିର ଗୁଣାତ୍ମକ ପରିବର୍ତ୍ତନ ଘଟିଛି, ଘଟୁଛି, ଯେପରି ଘଟୁଛି କ୍ରାଇମ ଓ କ୍ରିମିନାଲ୍‌ମାନଙ୍କର । ତଥାପି ଦାମୋଦର ଦାସ,ଗୋପୀନାଥ ଦାସ, ସ୍ମରଣୀୟ ହୋଇ ରହିବେ ।

ଗିରଫ ହୋଇ ଚାଲିଲି କଟକ ଜେଲଖାନାକୁ । ମୋ ଉପରେ ଥିବା କଟକଣା ଜାନୁୟାରୀ ୨୬, ୧୯୫୦ ମସିହାରେ ସମ୍ବିଧାନ ପ୍ରୟୋଗ ହେବାପରେ ଅଚଳ ହୋଇଯାଇଥିଲା । ଯଦିଓ ପୁଲିସ୍ ମୋତେ ଖୋଜୁଥିଲା କିନ୍ତୁ କେଉଁ ଦଫାରେ ଗିରଫ କରାଯିବ ସେ ଚିନ୍ତାରେ ଥିଲା । ବାଧ ହୋଇ ମୋତେ ପୁଣି ଅଟକ ରଖାଗଲା, ଅଟକବନ୍ଦୀଭାବରେ ଏବଂ ଯେଉଁସବୁ କାରଣ ଦର୍ଶାଯାଇଥିଲା ତାହା ହାସ୍ୟାସ୍ପଦ । ଚୀନ ନେପାଳ (ଯାହା ମୁଁ ଦେଖି ନ ଥିଲି)ରେ ତମେ ତାଲିମ ପାଇଛ, ସଶସ୍ତ୍ର ଅଭ୍ୟୁତ୍ଥାନ ପାଇଁ ଲିପ୍ତ ଅଛ ଇତ୍ୟାଦି ।

ଜେଲଖାନାରେ ଏଥର ରହିବାକୁ ପଡ଼ିଲା ବେଶ୍ କିଛିଦିନ । ତାହାର ଅଭିଜ୍ଞତା ଲେଖିଛି ବିଭିନ୍ନ ଅଧ୍ୟାୟରେ । ତେବେ କେତେଗୁଡ଼ିଏ ଘଟଣା ଲିପିବଦ୍ଧ କରିବାର ଆବଶ୍ୟକତା ରହିଛି । ପାର୍ଟିଲାଇନ ଠିକ୍ ନୁହେଁ, ସମ୍ବିଧାନର ସ୍ୱୀକୃତି ଅବଶ୍ୟମ୍ଭାବୀ ଏବଂ ଏହାର ଉପଯୋଗ କରାଯିବା ଉଚିତ ପ୍ରଭୃତି ପ୍ରଶ୍ନ ନେଇ ତୀବ୍ର ବିତର୍କ ଓ ମତଭେଦ ସୃଷ୍ଟି ହୋଇସାରିଥିଲା ପାର୍ଟି ଭିତରେ ।

ଏତିକିବେଳେ ଦୁର୍ଗା ମହାନ୍ତି (ମୋର ଠିକ ମନେପଡୁ ନାହିଁ କେଉଁ କେସ୍‌ରେ) ପୁରୀରୁ କଟକ ଆସିବା ବାଟରେ ଦିନ ଦ୍ୱିପହରରେ ହାତକଡ଼ି ହାତରେ ଥାଇ ଖସିଗଲେ ପୁଲିସ୍ ହାବୁଡ଼ରୁ ଛତ୍ରବଜାର ପୋଲତଳେ ।

ଦୁର୍ଗା ମହାନ୍ତି ପୁଲିସହାତରୁ ଖସିଯିବା ପ୍ରଥମ କଥା ନୁହେଁ । ଆଗରୁ ସେ ପଳାତକ ଥିଲାବେଳେ ବେଶ କିଛି ଥର ପୁଲିସ ହାତରୁ ଖସିଯାଇଛନ୍ତି । ସେ ଦିନ ଦ୍ୱିପହରରେ ଛତ୍ରବଜାରରୁ ହାତରେ ହାତକଡ଼ା ଥାଇ ଖସିଗଲେ । ତାଙ୍କୁ ଧରିବାପାଇଁ ଶହ ଶହ ମିଲିଟାରୀ ପୁଲିସ ଘେରାଉକଲେ ସମଗ୍ର ଶଙ୍କରପୁର ଅଞ୍ଚଳକୁ । ସେତେବେଳକୁ ଲିଙ୍କରୋଡ଼ ହୋଇ ନାହିଁ । ଦୋଳମୁଣ୍ଡାଇ, ଛତ୍ରବଜାର, ଖାନ୍‌ନଗର ଅଞ୍ଚଳ ଥିଲା ଦୁର୍ଭେଦ୍ୟ । କେତେ ପୁଲିସ୍ ଘେରାଉ ଏ ଅଞ୍ଚଳ ଦେଖି ନାହିଁ ? ଆଜି ବି କୁଆଡ଼େ ଏ ଅଞ୍ଚଳକୁ ପୁଲିସ୍ ଘେରାଉ କରେ, ତେବେ ନିଜେ ନିଜେ ବିପ୍ଳବୀମାନଙ୍କୁ ଧରିବାପାଇଁ ନୁହେଁ, ମାଫିଆମାନଙ୍କୁ ଧରିବା ପାଇଁ । ସମୟ ଅତିକ୍ରାନ୍ତ ହୋଇଛି । ଦୁର୍ଗାବାବୁଙ୍କର କଣ୍ଠାକୁ ପ୍ରବଳ । ସେ ଛପିଗଲେ ଆଖପାଖରେ, ପୁଲିସ୍ ପାଇଲା ନାହିଁ । ଖାଲି ସମ୍ମୁଖୀନ ହେଲା ଗୋଖର ସାପର ।

ଏହି ପଳେଇବାଟା କିନ୍ତୁ ଦୁଃସାହସିକତାବାଦର ନିଦର୍ଶନ ହେଲା । କାରଣ ବଦଳୁଥିବା ପାର୍ଟି ନୀତିକୁ ଏହା କ୍ଷତିଗ୍ରସ୍ତ କଲା ଏବଂ ଅନ୍ୟ ବିଚାରାଧୀନ ବନ୍ଦୀମାନଙ୍କ ପାଇଁ ଅଯଥା କଷ୍ଟ ଓ ହଇରାଣର କାରଣ ହେଲା ।

କଟକ ଜେଲ ସେତେବେଳକୁ ଦରଘାବଜାରରେ, ସହର ମଝିରେ ଜେଲ । ପାଚେରି ଡେଇଁ ପଳେଇବା କଠିନ । ବୈଷ୍ଣବ ପଟ୍ଟନାୟକ ଶିଳ୍ପୀ । ସେ ଚିତ୍ର ଆଙ୍କନ୍ତି ନୂଆ ସେଲ ଆଗରେ । କିନ୍ତୁ ଚିତ୍ର ଆଙ୍କିବା ନାମରେ ଯେ ସେ ଜେଲଖାନା ୱାର୍ଡ ତାଲାର ଡୁପ୍ଲିକେଟ ଚାବି ସଫଳଭାବରେ କରିପାରନ୍ତି ଏକଥା କିଏ ଜାଣିଥିଲା ? ନିଷ୍ପତ୍ତି ହେଲା ଜେଲଖାନାରୁ ପଳାୟନ କରିବେ କିଛି ନେତା । ସେମାନଙ୍କ ମଧ୍ୟରେ ବନମାଳୀ ଦାସ, ବୈଷ୍ଣବ ପଟ୍ଟନାୟକ ଓ ୰ବ୍ରଜ ପଟ୍ଟନାୟକ ଅନ୍ତର୍ଭୁକ୍ତ ବୋଲି ମୁଁ ଜାଣିଥିଲି । ଅନ୍ୟ ତିନି ଚାରିଜଣ କିଏ ମୋର ନାମ ମନେପଡୁ ନାହିଁ । ତେବେ ଦୁଇଜଣ ବା ତିନିଜଣ ୧୫ ନଂ ୱାର୍ଡ଼ରେ ଯେଉଁ ବାକି ଚାରିଜଣ ୧୬ ନଂ ୱାର୍ଡ଼ରେ ରହୁଥିଲେ । ମୁଁ ଥିଲି ୧୬ ନଂ ୱାର୍ଡ଼ରେ ସର୍ବକନିଷ୍ଠ କର୍ମୀ । କୌଣସି କାରଣରୁ ସେମାନଙ୍କ ରିହର୍ସଲ୍ ମୁଁ ଜାଣିପାରିଲି ଓ ବନମାଳୀ ଦାସଙ୍କୁ ପଚାରିଲି । ସେ ବାଧ୍ୟ ହୋଇ ସବୁ କଥା କହିଲେ ଏବଂ ମୋତେ ଅସୁସ୍ଥତା ଆଳରେ ନୂଆ ସେଲକୁ ଚାଲିଯିବା ପାଇଁ ଉପଦେଶ ଦେଲେ । ପଳାୟନ ପରେ ରହିଯାଇଥିବା ବନ୍ଦୀମାନଙ୍କ ଉପରେ ସମ୍ଭାବ୍ୟ କଠୋର ଅତ୍ୟାଚାରକୁ ଏଡ଼ାଇଦେବାକୁ । ମୁଁ କିନ୍ତୁ ଏହା ଭୀରୁତା ହେବ ବୋଲି ନାସ୍ତି କରିଦେଲି । ପଳାୟନର ରାତ୍ରି ଉପସ୍ଥିତ । ବାହାରୁ କିଛି ବନ୍ଧୁ ଯାଇ ଜେଲଖାନା ପାଚେରି ଡେଇଁ ୧୫ ନଂ ୱାର୍ଡ଼ ସାମ୍ନାରେ ଥିବା ପୁରୁଣା ଜେଲ ଗେଟ୍‌ର ପରିତ୍ୟକ୍ତ ଗୃହରେ ପହଞ୍ଚିସାରିଛନ୍ତି । ତତ୍‌କାଳୀନ

ପାର୍ଟି ସେକ୍ରେଟାରୀ ୰ରାମକୃଷ୍ଣ ପତି ସମ୍ବାଦ ଶୁଣୁଛନ୍ତି ଆକାଶବାଣୀରୁ ଆପଣାର ଡେନରେ । ଶୁଣିଲେ ସମ୍ବାଦ ମାନ୍ଦ୍ରାଜ୍ ହାଇକୋର୍ଟ କମ୍ୟୁନିଷ୍ଟ ପାର୍ଟି ଉପରେ ଥିବା ସରକାରଙ୍କ ବେଆଇନ୍ ଘୋଷଣାକୁ ନାକଚ କରି ବହୁ କମ୍ୟୁନିଷ୍ଟ ନେତାଙ୍କୁ ବନ୍ଦିଶାଳାରୁ ମୁକ୍ତ କରିବାର ଆଦେଶ ଦେଇଛି । ରାମକୃଷ୍ଣ ପତିଙ୍କ ମୁଣ୍ଡରେ ଶୁଭ ରାଜନୀତିକ ବୁଦ୍ଧିର ଉଦୟ ହେଲା । ସେ ବନ୍ଦୀ ପଳାୟନ କାର୍ଯ୍ୟକ୍ରମକୁ ବନ୍ଦ କରିବା ପାଇଁ ନିର୍ଦ୍ଦେଶ ଦେଲେ ।

ମୁଁ ଆଗରୁ କହିଛି ୧୯୫୦ ମସିହା ସାଧାରଣତନ୍ତ୍ର ଦିବସ ପରେ ମୋ ଉପରେ ଥିବା କଟକଣା ସବୁ ଆପେ ଆପେ ନାକଚ ହୋଇଯିବା ହେତୁ, ପୁଲିସ୍ ମୋତେ ଧରିବା ପାଇଁ ୱାରେଣ୍ଟ ଜାରିକରିଥିଲେ ହେଁ ନିର୍ଦ୍ଦିଷ୍ଟ କୌଣସି ଅଭିଯୋଗ ମୋ ନାମରେ ନ ଥିଲା । ତେଣୁ ମୋତେ ଗୋଟିଏ ବର୍ଷ କାଳ ପୁରୁଣା ଅଟକ ଆଇନ୍ ବଳରେ ବନ୍ଦୀ କଲେ । ଏହା ଭିତରେ ମୁଁ ପରୀକ୍ଷା ଦେବାପାଇଁ କୋର୍ଟଙ୍କୁ ଅନୁମତି ମାଗିଥିଲି କିନ୍ତୁ ଏଥିପାଇଁ ଅନୁମତି ମିଳି ନ ଥିଲା । ତିନୋଟି ପରୀକ୍ଷା ପାଇଁ ମୋର ଦରଖାସ୍ତ ଖାରଜ ହୋଇଯାଇଥିଲା । କୋର୍ଟ ସହାନୁଭୂତିଶୀଳ ଥିଲେ କିନ୍ତୁ ସରକାର ଜେଲରେ ପରୀକ୍ଷା କେନ୍ଦ୍ର କରିବା ପାଇଁ  ମୋତେ ପୁଲିସ ହେପାଜତ୍‌ରେ ବି ପରୀକ୍ଷା କେନ୍ଦ୍ରକୁ ନେବାପାଇଁ ରାଜି ନ ଥିଲେ । ଯଦିଓ ଅନ୍ୟ ରାଜ୍ୟମାନଙ୍କରେ ଏ ପରଂପରା ସୃଷ୍ଟି ହୋଇସାରିଥିଲା । ପରଂପରା ପରେ ଗଢ଼ିଉଠିଛି । ବର୍ତ୍ତମାନ ଜେଲର କଏଦୀମାନେ ପରୀକ୍ଷା ଦେଇପାରୁଛନ୍ତି । ସେଥିପାଇଁ କର୍ତ୍ତୃପକ୍ଷ ଆଗ୍ରହ ପ୍ରକାଶ କରୁଛନ୍ତି । ଏକଥା ସରକାର ବିନାକାରଣ ଦର୍ଶାଇ ପାସପୋର୍ଟ ଦେବାକୁ ମନାକରିଦେବା ସରକାରଙ୍କର କ୍ଷମତା ଭିତରେ ବୋଲି ବିଚାରାଳୟ କହୁଥିଲେ । (ଏ.ଏନ.ଗୋପାଳନ୍ ଦେଗ୍) ପରବର୍ତ୍ତୀକାଳରେ ସରକାରଙ୍କୁ ପାସପୋର୍ଟ ନ ଦେବାର କାରଣ ଦର୍ଶାଇବା ପାଇଁ କୋର୍ଟ ଖାଲି ବାଧ୍ୟ କଲା ନାହିଁ, ଦର୍ଶାଯାଇଥିବା କାରଣ ଯଥାର୍ଥ କି ନୁହେଁ ତାହା କୋର୍ଟରେ ବିଚାରାଧୀନ ବୋଲି ରାଏ ଦେଲା (ମାନେକା ଗାନ୍ଧୀଙ୍କ କେସ୍) ।

ଏହାକୁ ଜୁଡ଼ିସିଆଲ୍ ଏକ୍‌ଟିଭିଜିମ୍ ବୋଲି କୁହାଯାଉଛି,କିନ୍ତୁ ଏଥିପାଇଁ ଦାୟୀ ଲେଜିସ୍‌ଲେଟିଭ୍ ଏବଂ ଏକ୍‌ଜିକ୍ୟୁଟିଭ୍ । ସେମାନଙ୍କର ମାତ୍ରାଧିକ କାର୍ଯ୍ୟ ବା ନିଷ୍କ୍ରିୟତା ହିଁ ଏଥିପାଇଁ ଦାୟୀ । ମୁଁ ଯେତେବେଳେ ପରିଶେଷରେ ମାନ୍ୟବର ହାଇକୋର୍ଟଙ୍କ ଦ୍ୱାରା ଖଲାସ ହେଲି ସେତେବେଳେ ବିଚାରପତି ମନ୍ତବ୍ୟ ଦେଇ କହିଲେ ଯେ, ଯାହାହେଉ ପରିଶେଷରେ ଯୁବକ ପରୀକ୍ଷା ଦେବାପାଇଁ ସକ୍ଷମ ହେବେ । ପରୀକ୍ଷା ହଲ୍‌କୁ ଯିବା ବାଟରେ ଗିରଫ ହୋଇଥିଲି ପ୍ରଥମଥର । ତା'ର ଛଅବର୍ଷ ପରେ ଆଇ.ଏ. ପାସ୍ କଲି ଏବଂ ବି.ଏ. ପଢ଼ିବାକୁ ଆସିଲି ରେଭେନ୍ସା କଲେଜ । ସେତେବେଳକୁ ମୋର ସହପାଠୀମାନେ ଅଧ୍ୟାପକ ହୋଇସାରିଥିଲେ । ମୁଁ ଯେଉଁ ବର୍ଷ ମାଟ୍ରିକ ପାସ୍ କଲି ସେଇ ବର୍ଷ ରାଧାମୋହନ ଗଡ଼ନାୟକ ମାଟ୍ରିକ ପାସ୍ କରି ଖ୍ରୀଷ୍ଟ କଲେଜରେ ପଢ଼ନ୍ତି । ସେତେବେଳକୁ ସେ ପ୍ରତିଷ୍ଠିତ କବି। ଆମକୁ କିମିତି କିମିତି ଲାଗୁଥିଲା ଅଖାଡୁଆ । ଉଣା ଅଧିକେ ସେଇଭଳି ପରିସ୍ଥିତି ବି ସୃଷ୍ଟି ହେଲା ମୋ ପାଇଁ ।

ତେବେ ମୁଁ କେମିତି ଖଲାସ ହେଲି ସେ ସଂପର୍କରେ ନ କହିଲେ ଭୁଲ୍ ହେବ । ନୂଆ ନିରାପତ୍ତା ଆଇନ୍ ବଳରେ ମୁଁ ଅଟକ ହେଲି । ଅଟକ କରିବାର କାରଣରେ ଯାହାସବୁ ଦର୍ଶାଯାଇଥିଲା ଯିଏ ପଢ଼ିବ ହସିବ । ମାରଣାସ୍ତ୍ରର ଯେଉଁ ସବୁ ତାଲିକା ଦିଆଯାଇଥିଲା ସେସବୁ ମୁଁ ଦେଖି ନ ଥିଲି । ଯେଉଁସବୁ ଦେଶରେ ମୁଁ ଗରିଲା ଟ୍ରେନିଂ ନେଇଛି ବୋଲି କୁହାଯାଇଥିଲା ସେସବୁ ଦେଶ ମୁଁ ଦେଖି ନ ଥିଲି । ଯେଉଁ ସବୁ ସଂଗ୍ରାମର ମୁଁ ନେତୃତ୍ୱ ନେଇଥିଲି ବୋଲି କୁହାଯାଇଥିଲା, ସେଥିପାଇଁ ମୋର ବୟସ ମଧ୍ୟ ହୋଇ ନ ଥିଲା । ମୋର ବୟସ ୧୮ ପ୍ରାୟ । ବନ୍ଦୀମାନଙ୍କୁ ଆପଣାର ବକ୍ତବ୍ୟ କହିବା ପାଇଁ ସୁଯୋଗରେ ମୁଁ ସଂକ୍ଷିପ୍ତରେ ସେଇତକ ଲେଖିଥିଲି । ୰ମନମୋହନ ମିଶ୍ର ଏବଂ ଶ୍ରୀ ବନମାଳୀ ଦାସ ସେ ଦରଖାସ୍ତର ନିର୍ଦ୍ଦେଶକ ଥିଲେ ।

ନିରାପତ୍ତା ଆଇନ୍‌ରେ ଉଲ୍ଲେଖ ଥିଲା ଯେ, ବନ୍ଦୀମାନଙ୍କର ଦରଖାସ୍ତର ବିଚାର ପାଇଁ ଏକ ତିନିଜଣିଆ କମିଶନ ଗଢ଼ାହେବ ଏବଂ ସେମାନେ ଅଟକ ହେବାର ଦଶସପ୍ତାହ ଭିତରେ ସରକାରଙ୍କୁ ଆପଣାର ସୁପାରିସ ଜଣାଇବେ । ସେମାନେ ଚାହିଁଲେ ବନ୍ଦୀଙ୍କଠାରୁ ମୌଖିକ ବକ୍ତବ୍ୟ ନେଇପାରିବେ ।

ମୋର ଦରଖାସ୍ତ କରିବାର ଦଶ ସପ୍ତାହ ପରେ ହଠାତ୍ କମିଶନ ମୋତେ ସାକ୍ଷାତ୍ ପାଇଁ ତଲବ କଲେ । ସମସ୍ତେ ଆଶ୍ଚର୍ଯ୍ୟ ହେଲେ । ମୋର ନିର୍ଦ୍ଦେଶକମାନେ ମୋତେ ଆଇନ୍‌ଟିକୁ ଭଲ କରି ପଢ଼ାଇ ଓ ବୁଝାଇ ଦେଇଥିଲେ ଏବଂ କହିଥିଲେ କମିଶନକୁ ପଚାରିବା ପାଇଁ ସବାଶେଷରେ ଯେ ସେମାନେ ଯେହେତୁ ମୋତେ ଦଶ ସପ୍ତାହ ପରେ ଡାକିଛନ୍ତି, ସେଥିରୁ ସେମାନେ ଯେ ଦଶ ସପ୍ତାହ ଭିତରେ ସରକାରଙ୍କୁ ଆପଣାର ସୁପାରିସ ଜଣାଇ ନାହାନ୍ତି ଏହା ସ୍ପଷ୍ଟ ପ୍ରମାଣିତ ।

କାଠଗଡ଼ା ସାହିରେ ୰ବୀରେନ ମିତ୍ରଙ୍କ ପୈତୃକ ବାସଭବନରେ କମିଶନଙ୍କ ଅଫିସ୍ । ପୋଲିସ୍ ହେପାଜତରେ, ହାତକଡ଼ା ଦେଇ ମୋତେ ହାଜର କରାଗଲା କମିଶନ ଆଗରେ । ସମସ୍ତେ ବିଶିଷ୍ଟ ଆଇନଜ୍ଞ, ଅବସରପ୍ରାପ୍ତ ବିଚାରପତି ଓ ଅବସରପ୍ରାପ୍ତ ପ୍ରଶାସକ । ମୋ ବାପାଙ୍କୁ ଜାଣିଥିବା ଦୁଇଜଣ ସେମାନଙ୍କ ମଧ୍ୟରୁ ।

ପହଞ୍ଚୁ ପହଞ୍ଚୁ ଖିଙ୍କାରିବା ଭଳି କଣ୍ଠରେ ଚେୟାରମ୍ୟାନ୍‌ଙ୍କ ପ୍ରଶ୍ନ ।

ରାମାୟଣ ପଢ଼ିଛ ?

ପଢ଼ିଚି ପିଲାବେଳେ ।

ପିଲାଦିନେ ? ତମ ବୟସ କେତେ ?

୧୮ ବର୍ଷ । କିନ୍ତୁ ଘରେ ପିଲାଦିନୁ ରାମାୟଣ ମହାଭାରତ ପଢ଼ିଛି ।

ରାମଙ୍କ ଚରିତ୍ରକୁ ଆଦର୍ଶ ମନେକର ?

ନାହିଁ ।

ନାହିଁ ? ସେ ପୁଣି ଖିଙ୍କାରି ଗୋଡ଼ାଇଲେ । ତମେ ରାମଚନ୍ଦ୍ରଙ୍କ ସ୍ଥାନରେ ଥିଲେ କ'ଣ କରିଥା'ନ୍ତ ? ତାଙ୍କୁ କାହିଁକି ଆଦର୍ଶ ମନେକରୁ ନାହଁ ?

ରାମଚନ୍ଦ୍ରଙ୍କ ସ୍ଥାନରେ ଥିଲେ ମୁଁ ରାଜଗାଦି ଛାଡ଼ି ଦେଇଥା'ନ୍ତି । କାରଣ ରାଜଗାଦି ପାଇଁ ମୋର କୌଣସି ଲୋଭ ନାହିଁ । କିନ୍ତୁ ବନବାସ ଯାଇ ନ ଥା'ନ୍ତି । ପିତା ହେଲେ ବି କୈକେୟୀ ଯେ ଦଶରଥଙ୍କର ବୃଦ୍ଧ ବୟସରେ ତରୁଣୀ ଭାର୍ଯ୍ୟା ଏକଥା ରାମଚନ୍ଦ୍ର ଜାଣିଥିଲେ । ମୋ ବାପାଙ୍କ ପାଇଁ ମୁଁ ଜୀବନ ଦେବାକୁ ପ୍ରସ୍ତୁତ । କିନ୍ତୁ କାଠଯୋଡ଼ି କୂଳରେ ଠିଆ ହୋଇ ବାପା ଯଦି କହନ୍ତି ଯେ, ପିତୃଭକ୍ତି ପାଇଁ କାଠଯୋଡ଼ିରେ ବୁଡ଼ି ମରିବାକୁ ତା'ହେଲେ ବାପାଙ୍କୁ ନେଇ ଡାକ୍ତରଖାନା ଚିକିତ୍ସା ପାଇଁ ଯିବା ନା ବୁଡ଼ି ମରିବା ପିତୃଭକ୍ତି । ରାଜା ଦଶରଥ ଯୁଦ୍ଧକ୍ଷେତ୍ରରୁ କ୍ଷତବିକ୍ଷତ ହୋଇ ଫେରୁଥିବା ବେଳେ ତାଙ୍କର ଦ୍ୱିତୀୟା ପତ୍ନୀ ଆଙ୍ଗୁଠିରେ ରଥଚକ୍ରର ଅଣକିଳୀ ଦେଇଥିଲେ ବୋଲି ସେ ବିଶ୍ୱାସ କରିବା ଅଲଗା କଥା । କିନ୍ତୁ ସେଇ ଯୋଗୁଁ ଦେଇଥିବା ସତ୍ୟ ତାଙ୍କର ବନବାସ ଯିବା କ'ଣ ଠିକ୍ ?

ରାମଚନ୍ଦ୍ର ଭଲ ମଣିଷ । କିନ୍ତୁ ଆଦର୍ଶ ନୁହନ୍ତି । ସେ ସୀତାଙ୍କୁ ଅଗ୍ନିପରୀକ୍ଷା ଦେବାକୁ କହିଲେ କିନ୍ତୁ ନିଜେ ଅଗ୍ନି ପରୀକ୍ଷା ଦେଲେ ନାହିଁ । କେଉଁ ଧୋବା ତା' ସ୍ତ୍ରୀକୁ କ'ଣ କହିଲା ସେଇ ଯୋଗୁଁ ସେ ଗର୍ଭିଣୀ ସ୍ତ୍ରୀକୁ ବନବାସ ପଠାଇଦେଲେ । ଏପରିକି ମିଥିଳାରେ ତାଙ୍କ ବାପଘରକୁ ପଠାଇଲେ ନାହିଁ । ଇଏ କ'ଣ ଲୋକଙ୍କ ନେତା ନା ଅନୁଗାମୀ ?

ଏକା ନିଃଶ୍ୱାସରେ ତ କହିଗଲି । ସେ ପଟରେ ଯେ ତୀବ୍ର ପ୍ରତିକ୍ରିୟା ସୃଷ୍ଟି କରିବ ଏ କଥା କ'ଣ ମୁଁ ଜାଣିଥିଲି ?

ତୀବ୍ର ପ୍ରତିକ୍ରିୟା । ମୁଁ କ'ଣ ଜାଣିଥିଲି ଯେ ସଭ୍ୟମାନଙ୍କ ମଧ୍ୟରୁ ଜଣେ ବୃଦ୍ଧ ବୟସରେ ଏକ ତରୁଣୀକୁ ବିବାହ କରିଛନ୍ତି ? ସେ ମୋତେ ଗର୍ଜନ କରି ପଚାରିଲେ ରାମଚନ୍ଦ୍ରଙ୍କୁ ପୁରୁଷୋତ୍ତମ ବୋଲି ବିଚାର କର ନାହିଁ ?

କିମିତି କରିବି ? ଯିଏ ବାଳୀକୁ ପଛପଟରୁ ବଧ କଲେ, ଯିଏ ଜଣେ ଶୂଦ୍ର ତପସ୍ୟା କରୁଥିବା ଜାଣି ତା'ର ମୁଣ୍ଡକୁ କାଟି ଦେଲେ, ସେ ଜଣେ ଦୃଢ଼ ନେତା ବୋଲି ବିଚାର କରିବି କିମିତି ?

ସାଙ୍ଗେ ସାଙ୍ଗେ ତୃତୀୟ ସଭ୍ୟ ପ୍ରଶ୍ନ କଲେ, ମହାଭାରତ ପଢ଼ିଛ ? କେଉଁ ଚରିତ୍ରକୁ ଆଦର୍ଶ ମନେକର ଏବଂ କାହିଁକି ?

କର୍ଣ୍ଣ ନିଶ୍ଚିତ ଭାବରେ । କାରଣ ସେ କର୍ତ୍ତବ୍ୟ ଏବଂ କୃତଜ୍ଞତା ପ୍ରତି ଆପଣାର ଆନୁଗତ୍ୟ ପ୍ରକାଶ କରିଛନ୍ତି ।

ଆଉ ତା' ପରେ ?

ଶକୁନି ?All means to the good end.

ଆଉ ଯୁଧିଷ୍ଠିର ?

ଆପଣା ସ୍ତ୍ରୀକୁ ଜୁଆ ଖେଳରେ ବାଜି ରଖିବାର ଅଧିକାର ତାଙ୍କୁ ଦେଲା କିଏ ?

ଆଉ ତା'ପରେ ସ୍ତ୍ରୀକୁ କିଏ କ'ଣ କଲେ ତାଙ୍କର କ'ଣ କହିବାର ଅଛି ?

ଭୀଷ୍ମ, ଦ୍ରୋଣ, କୃପାଚାର୍ଯ୍ୟ ?

ଏ ତ ରୀତିମତ ପରୀକ୍ଷା କ୍ଲାସ୍ ପରି ମନେହେଲା । ମୁଁ ଭାବିଥିଲି ରାଜନୀତିକ ପ୍ରଶ୍ନ ପଚାରିବେ । କିନ୍ତୁ ଏ ପ୍ରଶ୍ନବାଣ ଶୁଣି ବିରକ୍ତ ଲାଗିଲା ।

ସେମାନେ ଯେପରି ବୟୋଜ୍ୟେଷ୍ଠ ଏବଂ ପରାକ୍ରମୀ ଯୋଦ୍ଧା ଥିଲେ ସେମାନଙ୍କ ଭିତରୁ ଜଣେ କିଏ ଠିଆ ହୋଇ ପ୍ରତିବାଦ କରିଥିଲେ କୁରୁସଭାର କାଣ୍ଡ ହେବା ସମ୍ଭବ ହୋଇପାରନ୍ତା ନାହିଁ । ନା ସମ୍ଭବ ହୋଇଥାନ୍ତା ପଶାଖେଳ, ସହଧର୍ମିଣୀକୁ ବାଜି ନା ଦ୍ରୌପଦୀଙ୍କର ବସ୍ତ୍ରହରଣ ? କିନ୍ତୁ ବୟସ ବେସ୍ ହୋଇଯାଇଥିଲା ସେମାନଙ୍କର । ବଂଚିବା ପାଇଁ ପ୍ରତିଷ୍ଠିତ ରାଷ୍ଟ୍ର ଉପରେ ସେମାନେ ନିର୍ଭର କରୁଥିଲେ । ଆଗତ ଶକ୍ତି ପାଇଁ ସେମାନଙ୍କର ଭରସା ନ ଥିଲା କି ତାକୁ ଆଣିବାପାଇଁ ସେମାନଙ୍କର ଉଦ୍ୟମ ନ ଥିଲା । ଦେଖୁ ନାହାନ୍ତି ଆମମାନଙ୍କ ଅବସ୍ଥା ! ଚଳିତ ସମାଜର ବଡ଼ପଣ୍ଡାମାନେ କ'ଣ ଆମଭଳି ଆଗାମୀ ଶକ୍ତି ଉପରେ ଭରସା ରଖିପାରୁଛନ୍ତି ? ଆଉ ବୋଧହୁଏ ତାଙ୍କର ପଚାରିବାର କିଛି ନ ଥିଲା ବା ପଚାରିବା ହେଳା ହୋଇଯାଇଥିଲା । ରକ୍ଷାକର ଶ୍ରୀକୃଷ୍ଣଙ୍କ ଉପରେ କିଛି ପଚାରି ନାହାନ୍ତି । ମୋର ଯାହା ମନେପଡୁଛି, ଏହା ଭିତରେ ପ୍ରାୟ ୬୦ ବର୍ଷ ଅତିକ୍ରମ ହୋଇସାରିଛି ।

ସେମାନେ ମୋତେ ଯିବାକୁ କହିଲେ । ବର୍ତ୍ତମାନ ମୋର ପାଳି । ବୟସ କମ୍ ଥିଲା । ଉତ୍କ୍ଷିପ୍ତ ହୋଇଥିଲି ମୁଁ ନିଶ୍ଚୟ । କହିଲି, ମୁଁ ଯିବାପୂର୍ବରୁ ଆପଣମାନଙ୍କୁ ଏକ ପ୍ରଶ୍ନ ପଚାରିବି । ଯେଉଁ ଆଇନ୍‌ବଳରେ ଆପଣ ପଦାରୂଢ଼ ସେ ଆଇନ୍‌କୁ ଆପଣମାନେ ପଢ଼ିଛନ୍ତି ତ ? ଏହି ଆଇନ୍‌ରେ କୁହାଯାଇଛି ଅଟକ ହେବାର ଦଶ ସପ୍ତାହ ମଧ୍ୟରେ ଆପଣମାନେ ସରକାରଙ୍କୁ ସୁପାରିସ ଜଣାଇବେ । ଯେହେତୁ ଆପଣମାନେ ମୋତେ ବାର ସପ୍ତାହ ପରେ ଡାକିଛନ୍ତି ସାକ୍ଷାତ୍ ପାଇଁ ଏକଥା ସ୍ପଷ୍ଟ ଯେ ଆପଣମାନେ ସରକାରଙ୍କୁ ଏପର୍ଯ୍ୟନ୍ତ ଆପଣଙ୍କ ସୁପାରିସ ଜଣାଇ ନାହାନ୍ତି । ମୁଁ ନ୍ୟାୟ ଲୋଡ଼ିଛି ନ୍ୟାୟାଳୟରେ ।

ଚେୟାରମ୍ୟାନ ଗର୍ଜନ କରି କହିଲେ ଉଦ୍‌ଭ୍ରାନ୍ତ ଯୁବକ ! ତୁମ ପାଇଁ ଆମର ସୁପାରିସ ଶୁଣି ଯାଅ । ସୁପାରିସ ହେଲା Notorious and dangerous communist of desperate character.

କାସାବିଏଙ୍କା ଗଳ୍ପ ପଢ଼ିଛ । ପିତୃ ଆଦେଶ ପାଳନ କରିବା ପାଇଁ ସେ କ'ଣ କରିଥିଲା ଜାଣ ?

ସେଇଟା ଗୋଟେ ବୋକା (dull) ପିଲା ଥିଲା । ସେହିଯୋଗୁଁ ବାପା ତାକୁ ନ ଘୁଞ୍ଚିବାପାଇଁ କହିଯାଇଥିଲେ । ମୂର୍ଖ ବାଳକ ଜାହାଜରେ ନିଆଁଲାଗିଯିବା ସତ୍ତ୍ୱେ ସେଇଠି ଠିଆହୋଇ ମରିବା କ'ଣ ବୁଦ୍ଧିମତାର ପରିଚାୟକ ? ରାମଚନ୍ଦ୍ର ଯେପରି ମୋର ଆଦର୍ଶ ନୁହନ୍ତି, କାଶାବିଏଙ୍କା ସେହିଭଳି ନୁହେଁ ।

ପୁଣି କଟକ ଜେଲ ।

କିନ୍ତୁ ମୁକ୍ତି ଆସନ୍ନ ହୋଇଆସୁଥିଲା ।

ପାର୍ଟି ନୀତିର ପରିବର୍ତ୍ତନ ଆସନ୍ନ । ନାରୀସଂଘ ସଦନରେ ସମ୍ମିଳନୀ । ପାର୍ଟି ସଂଗଠନ ବାହାରେ ଥିବା ବିଜୟଚନ୍ଦ୍ର ଦାସ, ବୈଦ୍ୟନାଥ ରଥ, ଶରତ ପଟ୍ଟନାୟକ ପ୍ରମୁଖ ଏହାର ଉଦ୍ୟୋକ୍ତା । ମନେପଡୁଛି ଅଜୟ ଘୋଷ ପାର୍ଟିର ନୂତନ ସଂପାଦକ ହୋଇସାରିଲେଣି । ଧୀରେ ଧୀରେ ବନ୍ଦୀମାନେ ମୁକୁଳିଲୁ । ଗୁରୁଚରଣ ପଟ୍ଟନାୟକ, କୃଷ୍ଣ ପଟ୍ଟନାୟକ ପ୍ରଭୃତି ଆତ୍ମଗୋପନରୁ ବାହାରକୁ ଆସିଲେଣି । ଭାରତବର୍ଷବ୍ୟାପୀ ପାର୍ଟିର ପୁନର୍ବିନ୍ୟାସ ଆରମ୍ଭ ହୋଇଛି । ତ୍ରୁଟି, ପରାଜୟରୁ ଶିକ୍ଷାଲାଭ କରିବାକୁ ହେବ । କାହାର, ସେ ବ୍ୟକ୍ତି ହେଉ ବା ସଂଗଠନ ହେଉ କାହାର ତ୍ରୁଟି ହୋଇ ନାହିଁ । ମହାତ୍ମା ଗାନ୍ଧି ଯେତେବେଳେ ଚୌରୀଚୌରା ଘଟଣାପରେ ଆନ୍ଦୋଳନକୁ ପ୍ରତ୍ୟାହାର କରିନେଲେ ସେତେବେଳେ ସେ କ'ଣ ପ୍ରତିବାଦର ସମ୍ମୁଖୀନ ହୋଇନଥିଲେ ? ହାରିନ୍ ଚଟ୍ଟୋପାଧ୍ୟାୟ ତାଙ୍କ ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି ଯେ ତା'ପରବର୍ତ୍ତୀ କଂଗ୍ରେସ ଅଧିବେଶନରେ ପ୍ରସିଦ୍ଧ ଅଲ୍ଲୀଭ୍ରାତାଙ୍କ ମଧ୍ୟରୁ ଜଣେ ଗାନ୍ଧୀଙ୍କୁ ପଚାରିଲେ, ଆପଣ କ'ଣ ଜାଣନ୍ତିନି କି ଚୌରୀଚୌରା ଘଟଣା ପରେ ଆପଣ ଆନ୍ଦୋଳନ ପ୍ରତ୍ୟାହାର କରିନେବା ହେତୁ ଆପଣଙ୍କ ଉପରେ ଅନେକ କ୍ଷୁବ୍ଧ, ବିରକ୍ତ । ଗାନ୍ଧୀ ତାଙ୍କ ଭାଷାରେ କହିଲେ ଯେ ତାହା ମୁଁ ଜାଣେ । କିନ୍ତୁ ତାହା ନ କରିଥିଲେ ଆମେ ଆଜି ଏଇଠି ବସିପାରି ନ ଥାନ୍ତେ । କମ୍ୟୁନିଷ୍ଟମାନେ ଭାରତଛାଡ଼ ପ୍ରସ୍ତାବର କେତେକ ସଂଶୋଧନ ପ୍ରସ୍ତାବ ଦେଇଥିଲେ, ଯାହା ଗୃହୀତ ହୋଇ ନ ଥିଲା । ଏହା ସତ୍ତ୍ୱେ ଶହ ଶହ କମ୍ୟୁନିଷ୍ଟ ଭାରତଛାଡ଼ ଆନ୍ଦୋଳନରେ କାରାବରଣ କରିଥିଲେ । ବାହାରେ ଥିବା ବହୁ ନେତା ଫାସୀବାଦର ସମ୍ଭାବ୍ୟ ଆକ୍ରମଣ ବିରୋଧରେ ପ୍ରତିରୋଧ ମଞ୍ଚ ଗଠନରେ ବ୍ୟାପୃତ ଥିଲେ । କେଉଁଠି କାଁ ଭାଁ କୌଣସି ବ୍ୟକ୍ତି ସାମ୍ରାଜ୍ୟବାଦ-ଫାସୀବାଦ ବିରୋଧୀ ଭୂମିକାକୁ ଠିକ୍‌ଭାବେ କାର୍ଯ୍ୟକାରୀ କଲେ ନାହିଁ । ସେଇଥିପାଇଁ କ'ଣ ସମଗ୍ର ପାର୍ଟି ଦାୟୀ ?

କିନ୍ତୁ କମ୍ୟୁନିଷ୍ଟମାନଙ୍କର ନୀତି ଭିତରେ ସମାଲୋଚନା ଓ ଆତ୍ମସମାଲୋଚନା ନାମକ ଏକ ବସ୍ତୁ ରହିଛି ଏବଂ ସେଇଟା ସେମାନେ ଏପରିଭାବେ କରନ୍ତି ଯେ ସେଥିରୁ ସେମାନେ ନିଜେ କ'ଣ ଲାଭ ଉଠାଇ ପାରନ୍ତୁ ନ ପାରନ୍ତୁ, ସେମାନଙ୍କର ବିରୋଧୀମାନଙ୍କୁ ସେଇଥିପାଇଁ ଖାଦ୍ୟ ଓ ହତିଆର ମିଳିଥାଏ । ଏଇଟା ମୋର ଅଭିଜ୍ଞତା ଓ ମତ । ଅନ୍ୟମାନେ ତା'ଠାରୁ ବେଶି ଭୁଲ କଲେବି ତାହାକୁ ଆକସ୍ମିକ ବା ଐଶ୍ୱରିକ ବୋଲି ଆଖ୍ୟା ଦିଆଯାଏ ।

ମୋ ମତରେ ସମାଜବାଦପାଇଁ ରାସ୍ତା ଭାରତୀୟ । ରୁଷ ବିପ୍ଳବ, ଚୀନା ବିପ୍ଳବ, ଭିଏତନାମ ବିପ୍ଳବ, କ୍ୟୁବା ବିପ୍ଳବ ସେମାନଙ୍କର ଜାତୀୟ ବିପ୍ଳବ । ଅନ୍ୟ ବିପ୍ଳବର ଅଭିଜ୍ଞତାରେ ପୁଷ୍ଟ । କିନ୍ତୁ ସଂପୂର୍ଣ୍ଣ ସ୍ୱତନ୍ତ୍ର, ଜାତୀୟ । ସମାଜବାଦ ପ୍ରତିଷ୍ଠାର ରାସ୍ତା ହେଉଛି ଭାରତୀୟ ରାସ୍ତା । ଭାରତୀୟ ଚିନ୍ତା, ଐତିହ୍ୟ, ପରଂପରାରେ ଏହା ପୁଷ୍ଟ ହେବାକୁ ବାଧ୍ୟ । ଭାରତୀୟ ପୁରାଣ, ଇତିହାସରେ ବୁଦ୍ଧ, ଚାର୍ବାକ୍, ବୃହସ୍ପତି, ଚଣ୍ଡୀ

ଦାସ, ବିବେକାନନ୍ଦ ପ୍ରଭୃତି ଭାରତୀୟ ସମାଜବାଦୀ ଚିନ୍ତାଧାରାକୁ ପୁଷ୍ଟ କରିଛନ୍ତି । ରାମାୟଣ, ମହାଭାରତ (ଗୀତା ସମେତ) ନ ପଢ଼ିଲେ ଜଣେ ପ୍ରକୃତ ସମାଜବାଦୀ ହୋଇପାରିବ ନାହିଁ । କମ୍ୟୁନିଷ୍ଟ ପାର୍ଟି କ୍ୟାଡ଼ର ପାର୍ଟି ଥିଲା ବେଳେ ସଭ୍ୟପଦ ରଖିବା ପାଇଁ, ପ୍ରତ୍ୟେକ ପାର୍ଟି ସଭ୍ୟ କି କି ବହି ପଢ଼ିଛନ୍ତି, କେଉଁ ଜର୍ଣ୍ଣାଲ, ମେଗାଜିନ ପଢ଼ିଛନ୍ତି ତା'ର ତାଲିକା (ଏବଂ ସେ ସମୟରେ ପରୀକ୍ଷା) ଦେବାକୁ ପଡୁଥିଲା । ସେ ବହି ବା ଜର୍ଣ୍ଣାଲମାନଙ୍କ ମଧ୍ୟରେ ଖାଲି ସମାଜବାଦ ବହି ନୁହଁ, ଇତିହାସ, ଦର୍ଶନ, ଅଣସମାଜବାଦୀ ବହି, ଏପରିକି ସମାଜବାଦ ବିରୋଧୀ ବହି ମଧ୍ୟ ଅନ୍ତର୍ଭୁକ୍ତ । ଏହି ଶିକ୍ଷା ଯୋଗୁଁ କମ୍ୟୁନିଷ୍ଟ ନେତା ଗୁରୁଚରଣ ପଟ୍ଟନାୟକ ଜଗନ୍ନାଥଙ୍କ ଉପରେ ଦୁଇଟି ତାତ୍ତ୍ୱିକ ବହି ଲେଖିଛନ୍ତି, ଯାହା ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ହୋଇଛି । ମହାପଣ୍ଡିତ ରାହୁଲ୍ ସଂକୃତୟନ, ଆଚାର୍ଯ୍ୟ ଦୀପଙ୍କର ପ୍ରଭୃତି ଏହି ସମାଜବାଦୀ ଚିନ୍ତାର ପ୍ରତିନିଧିତ୍ୱ କରନ୍ତି ।

ପ୍ରସିଦ୍ଧ ଚୀନା ମାର୍କ୍ସବାଦୀ ତତ୍ତ୍ୱବିତ୍ ଲି ରାଓ ଚୀ ଙ୍କର ବହି 'How to be a Good Communist' ପ୍ରତ୍ୟେକ ସମାଜସେବୀଙ୍କର ଗାଇଡ୍‌ଲାଇନ ହେବା ଉଚିତ । ଏହାକୁ ପଢ଼ିଲେ ମନେ ହେବ ଯେପରି ଏହା ମହାତ୍ମା ଗାନ୍ଧୀଙ୍କ ଆଶ୍ରମବାସୀ ଗାନ୍ଧୀବାଦୀମାନଙ୍କ ପାଇଁ ମଧ୍ୟ ଲେଖା ଯାଇଛି । ଏକଦା ଆମ୍ଭମାନଙ୍କ ପାଇଁ ଏ ବହି ପଢ଼ିବା ବାଧ୍ୟତାମୂଳକ ଥିଲା । ବର୍ତ୍ତମାନ ତାହା ଅଛି କି ନାହିଁ କହିପାରିବି ନାହିଁ । ନା ଭାରତ-ଚୀନ ସୀମାନ୍ତ ବିବାଦର ସ୍ତୂପ ଭିତରେ ଏହା ହଜି ଯାଇଛି ?

ରାଜନୀତିକ ଦଳମାନଙ୍କର ସଭ୍ୟମାନେ ଭ୍ରଷ୍ଟାଚାରରେ ଲିପ୍ତ ରହୁଛନ୍ତି. ଅମାର୍ଜିତ ବ୍ୟବହାର ପ୍ରଦର୍ଶନ କରୁଛନ୍ତି, ଶାଳୀନତା ଉଲ୍ଲଘଂନ କରୁଛନ୍ତି ବୋଲି ଅଭିଯୋଗ ହେଉଛି । ଏହାର ଅନ୍ୟତମ କାରଣ ହେଉଛି ତାତ୍ତ୍ୱିକ ତାଲିମର ଅଭାବ । ଯେଉଁମାନେ ଆପଣା ଦଳକୁ କ୍ୟାଡ଼ର ପାର୍ଟିରେ ପରିଣତ କରିବାକୁ ଚାହୁଁଛନ୍ତି ସେମାନେ ଏଥିପ୍ରତି ପ୍ରଥମେ ଧ୍ୟାନ ଦେବା ଉଚିତ । ପ୍ରତ୍ୟେକ ରାଜନୀତିକ କର୍ମୀ ଭାରତୀୟ ଇତିହାସ, ମହାଭାରତ, ରାମାୟଣ (ରାମାନନ୍ଦ ସାଗର ବା ଚୋପ୍ରାଙ୍କ ଚଳଚ୍ଚିତ୍ରରୁ ନୁହେଁ) ଭାରତୀୟ ଦର୍ଶନ, ଏହା ଛଡ଼ା ଯେଉଁ ସବୁ ଦର୍ଶନ ମଣିଷ ସମାଜକୁ ପ୍ରଭାବିତ କରିଛି -ବାଇବେଲ, କୋରାଣ, କନଫୁସିୟସ୍ ପ୍ରଭୃତି ପଢ଼ିବା ଉଚିତ । ତା' ହେଲେ ରାଜନୀତିକ ଜ୍ଞାନର ପରିପକ୍ୱତା ସହିତ ଧାର୍ମିକ ସହିଷ୍ଣୁତା, ଧର୍ମ ନିରପେକ୍ଷତା ବୃଦ୍ଧିପାଇବ । ପୁରୋହିତବାଦ ଯେପରି ଭାରତୀୟ ସଂସ୍କୃତି ନୁହେଁ ଠିକ୍ ସେଇପରି ପାଦ୍ରିବାଦ ଖ୍ରୀଷ୍ଟଧର୍ମ ନୁହେଁ, ବା ମୁଲ୍ଲାବାଦ ଇସଲାମ ଧର୍ମ ନୁହେଁ । କିନ୍ତୁ କେତେଜଣ ରାଜନୀତିକ ନେତା (କର୍ମୀକଥା ଦୂରର କଥା) ଏ ସଂପର୍କରେ ସଚେତନ । ଏ ବିଷୟରେ ଜ୍ଞାନ ଆହରଣ କରିଛନ୍ତି ? କେତେଜଣ ନିର୍ବାଚିତ ପ୍ରତିନିଧି ଏହାକୁ ଅଧ୍ୟୟନ କରିଛନ୍ତି ବା ଏସବୁ ପଢ଼ିବା ସେମାନଙ୍କ ପାଇଁ ବାଧ୍ୟତାମୂଳକ ହୋଇଛି ? ତା ହୋଇଥିଲେ ଗାନ୍ଧୀମୂର୍ତ୍ତି ବା ବିଜୁ ପଟ୍ଟନାୟକଙ୍କ ମୂର୍ତ୍ତି ଭାଙ୍ଗିବାର ଅସହିଷ୍ଣୁତା ଦେଖାଯାଆନ୍ତା ନାହିଁ । ରାଜନୈତିକ କର୍ମୀମାନେ ସାଂପ୍ରଦାୟିକ

ବିଦ୍ୱେଷକୁ ମୂଳରୁ ପ୍ରଶମନ କରିବା ପାଇଁ ଉଦ୍ୟମ କରନ୍ତେ । ଧର୍ମବିଶ୍ୱାସ ଯେପରି ଦେଶପ୍ରେମର କଷଟିପଥର ହୁଅନ୍ତା ନାହିଁ ଠିକ୍ ସେଇପରି ହୁଅନ୍ତା ନାହିଁ ରାଜନୀତିକ ମତବାଦ । ମୋର ମନେପଡୁଛି, ଜଣେ ଅଷ୍ଟ୍ରେଲିଆ ଅଧିକାରୀ ଇସକନ୍ ଭକ୍ତ ଆସିଥିଲେ କହିବାପାଇଁ ୟୁନିଭର୍ସିରେ ‘ଶ୍ରୀକୃଷ୍ଣଙ୍କ ଉପରେ’ ମୁଁ ତାଙ୍କୁ ପଚାରିଥିଲି ଯେ ଆପଣ କେଉଁ ଶ୍ରୀକୃଷ୍ଣଙ୍କ ଉପରେ କହିବେ ? ସେ ବିସ୍ମିତ ହୋଇ ମୋତେ ଅନେଇଲେ । ମହାଭାରତର ଶ୍ରୀକୃଷ୍ଣ ହେଉଛନ୍ତି ସଖା, କୂଟନିତୀଜ୍ଞ, ଦ୍ୱାରକାର ରାଜା । ସେଥିରେ ରାଧା ନାହାନ୍ତି କି ଗୋପୀ ନାହାନ୍ତି । ପଞ୍ଚମ ଶତାବ୍ଦୀରେ ଲିଖିତ ଭାଗବତରେ ଗୋପୀ ଅଛନ୍ତି, ରାଧା ନାହାନ୍ତି । ଜୟଦେବଙ୍କ ସମସାମୟିକ ସମୟରେ ପରକୀୟା ପ୍ରୀତି ଚିନ୍ତାଧାରାରୁ ରାଧାଚରିତ୍ର ସୃଷ୍ଟ ମହାଭାରତର ବ୍ୟକ୍ତି ଶ୍ରୀକୃଷ୍ଣ (ମହାଭାରତ ଅନ୍ତତଃ ଏକହଜାର ବର୍ଷ ପୂର୍ବର କଥା ବା ତା'ଠୁ ପୁରୁଣା) କ'ଣ ବଞ୍ଚିଥିଲେ ଜୟଦେବଙ୍କ ପର୍ଯ୍ୟନ୍ତ (୪୦୦ ବର୍ଷ ତଳର କଥା) ଶ୍ରୀକୃଷ୍ଣ ଏକ ଚିନ୍ତା ଓ ସଂସ୍କୃତି ? ସେ କିଛି କହି ନ ଥିଲେ କିନ୍ତୁ ଆପଣାର ଭାଷଣରେ କହିଥିଲେ ସେ ସଭାର ଆୟୋଜକ ଜଣେ ନାସ୍ତିକ ବା ଆସ୍ତିକ, କିନ୍ତୁ ତାଙ୍କ ଭାଷଣରୁ ଜଣାହୁଏ ଯେ ସେ ଜଣେ ନେସ୍ପିରିଚୁଆଲିଷ୍ଟ ! ଧନ୍ୟବାଦ ଦେବାକୁ ଯାଇ ମୁଁ କହିଲି ଯେ ମୁଁ ସ୍ପିରିଚୁଆଲିଷ୍ଟ କିନ୍ତୁ ମୋର ସ୍ପିରିଚୁଆଲିଜିମ୍ ଆପଣଙ୍କଠାରୁ ସ୍ୱତନ୍ତ୍ର ।

ଏହା କିନ୍ତୁ ସତ୍ୟ ଯେ କମ୍ୟୁନିଷ୍ଟମାନେ କାମ କଲାବେଳେ ସହଜରେ ବା ନିଷ୍ଠାରେ ଅନ୍ୟମାନଙ୍କଠାରୁ ପ୍ରଶଂସା ପାଆନ୍ତି କିନ୍ତୁ ତ୍ରୁଟି ଦେଖିଲେ ସେଇ ପ୍ରଶ୍ନ କରନ୍ତି ଯାହା ସେମାନଙ୍କ ବିରୋଧରେ ପ୍ରଚାର ହୋଇଆସିଛି ଅନ୍ୟମାନଙ୍କ ଦ୍ୱାରା । ମୋର ଏହା ନିଜସ୍ୱ ଅଭିଜ୍ଞତା ।

ଇତିହାସ ପ୍ରସିଦ୍ଧ ସୀମା ଆନ୍ଦୋଳନ । ଆମର ଭୂମିକା ବହୁ ପ୍ରଶଂସା ଲାଭ କରିଛି । ସୋସିଆଲିଷ୍ଟ ନେତା ୰ ବିଶ୍ୱନାଥ ପଣ୍ଡିତ ସୋସିଆଲିଷ୍ଟ ଛାତ୍ର ନେତା ୰ସନ୍ତୋଷ କୁମାର ସାହୁଙ୍କ ସହିତ କମ୍ୟୁନିଷ୍ଟମାନଙ୍କର ମିଳିତ ସାମ୍ମୁଖ୍ୟ ଏହି ଆନ୍ଦୋଳନକୁ ଶକ୍ତିଶାଳୀ କରିଛି । ଏତିକିବେଳେ ୰ଚିନ୍ତାମଣି ଆଚାର୍ଯ୍ୟଙ୍କ ଘରେ କ୍ରିୟାନୁଷ୍ଠାନ କମିଟିର ବୈଠକ । ପଳାତକମାନଙ୍କ ମଧ୍ୟରେ ୰ବିଶ୍ୱନାଥ ପଣ୍ଡିତ,୰ମନମୋହନ ମିଶ୍ର ଏବଂ ମୁଁ । ନିରାପତ୍ତା ଦୃଷ୍ଟିରୁ ୰ହରିଶ୍ଚନ୍ଦ୍ର ବକ୍ସିପାତ୍ର ଏବଂ ୰ସନ୍ତୋଷ କୁମାର ସାହୁଙ୍କୁ ଅଣାଯାଇ ନାହିଁ ।

ବୈଠକ ପରେ ମ୍ୟୁନିସିପାଲିଟି ପଛପାଖ ପଡ଼ିଆ (ବର୍ତ୍ତମାନ ସେଠାରେ କଲ୍ୟାଣମଣ୍ଡପ) ରେ ସାଧାରଣ ସଭା । ୰ଯଦୁମଣି ମଙ୍ଗରାଜ ସଭାପତି । ବୈଠକ ସରିଲାପରେ ଆମେ ସବୁ ଚାରୋଟି ମୋଟର କାର୍‌ରେ ଆସିଲୁ ମ୍ୟୁନିସିପାଲିଟି ପଡ଼ିଆକୁ । କମ୍ୟୁନିଷ୍ଟ ନେତା ୰ଶରତ ପଟ୍ଟନାୟକ ପଳାତକ ନିଜେ । କିନ୍ତୁ ପଳାତକମାନଙ୍କ ନିରାପତ୍ତା ଦାୟିତ୍ୱ ତାଙ୍କ ହାତରେ । ସେ ବିଷୟରେ ସେ ଧୁରନ୍ଧର ଏବଂ ଖ୍ୟାତ ।

ବାଟରେ ଆସିଲାବେଳେ ମନମୋହନବାବୁଙ୍କ ହାତକୁ କିଏ ଜଣେ ଧରାଇଦେଲା ସଭାରେ ବକ୍ତାମାନଙ୍କ ତାଲିକା । ସେଥିରେ ତାଙ୍କର ବିଶ୍ୱନାଥ ପଣ୍ଡିତଙ୍କର ଏବଂ ମୋ

ନାମ ନ ଥିଲା । କିଏ ତାହା ପ୍ରସ୍ତୁତ କରିଥିଲା ମୁଁ କହିପାରିବି ନାହିଁ ତେବେ ଯେତେଦୂର ମନେହୁଏ ଯେଉଁମାନେ ଆନ୍ଦୋଳନର ବିପକ୍ଷରେ ନ ଥିଲେ ବି ଆନ୍ଦୋଳନକୁ ତେଜିବାକୁ ନ ଦେବା ବ୍ୟକ୍ତିମାନେ ଏହା ପ୍ରସ୍ତୁତ କରିଥିଲେ ।

ସେତେବେଳକୁ କ୍ରିୟାନୁଷ୍ଠାନ କମିଟି ପ୍ରାୟ ଦୁଇ ଭାଗରେ ବିଭକ୍ତ ହୋଇଯାଇ ଥିଲା । କିନ୍ତୁ କମିଟିରେ ସଂଖ୍ୟାଗରିଷ୍ଠତା ଥିଲା ଆମ୍ଭମାନଙ୍କର ଏବଂ ଦିନସଭାରେ ତ ଆମକୁ କହିବାକୁ ନ ଦେବା କାହାରି ପକ୍ଷରେ ସମ୍ଭବ ନ ଥିଲା । ଏପରିକି ସେଇଦିନ କ୍ରିୟାନୁଷ୍ଠାନ ବୈଠକ କମିଟିରେ ରାମଚନ୍ଦ୍ର ବକ୍ସିପାତ୍ର ଜଣେ ବିଶିଷ୍ଟ ବ୍ୟକ୍ତିଙ୍କୁ ଭିଡ଼ି ବାହାର କରିଦେଇଥିଲେ ସଭାରୁ, ତାଙ୍କର ମାନ୍ଦା ମନୋଭାବ ଯୋଗୁଁ । ସେ ଭଦ୍ରଲୋକ (ନାମ କହି ଲାଭ ନାହିଁ, କାରଣ ସେ ଆଉ ନାହାନ୍ତି) ଆନ୍ଦୋଳନକୁ ଆଉ ଆଗେଇବାକୁ ଚାହୁଁ ନ ଥିଲେ ।

ସଭାରେ ପ୍ରବଳ ଜନସମାଗମ । ଲୋକେ ବିକ୍ଷୁବ୍ଧ ଏବଂ ସେମାନେ ପ୍ରସ୍ତୁତ ସବୁ ତ୍ୟାଗ କରିବାପାଇଁ । ଜୀବନକୁ ବାଜି ଲଗେଇବାପାଇଁ ବି ସେମାନେ ପ୍ରସ୍ତୁତ । ସଭାରେ ସଭାପତିତ୍ୱ କରିବେ ୰ଯଦୁମଣି ମଙ୍ଗରାଜ । ସେ ସଭାପତିତ୍ୱ କଲାକ୍ଷଣି ତାଙ୍କର ସଭାପତିତ୍ୱକୁ ଚାଲେଞ୍ଜ କରି ଠିଆହେଲେ ୰ମନମୋହନ ମିଶ୍ର । ଏହା ସଂପୂର୍ଣ୍ଣ ତାଙ୍କର ନିଷ୍ପତ୍ତି । ଆମକୁ ବକ୍ତା ତାଲିକାରୁ ବାଦ୍ ଦେବାର ଶକ୍ତି ସେଠାରେ କାହାର ନ ଥିଲା । ସହିଦ ସୁନିଲ ଦେଙ୍କର ଶବ ସତ୍କାର ପାଇଁ ଐତିହାସିକ ଶୋଭାଯାତ୍ରା ସଦ୍ୟ ସରିଛି ।

ଯଦୁମଣି ମଙ୍ଗରାଜ ପ୍ରବଳ ଚାଲାକ ଓ ପ୍ରବୀଣ । ସେ ଠିକ୍ ଧରିପାରିଲେ ସମସ୍ୟା କେଉଁଠି ଏବଂ ସଭାରେ ସଭାପତିତ୍ୱ କରିବାପାଇଁ ଅନିଚ୍ଛୁକ ଘୋଷଣା କରି ସେ ଚାଲିଆସିଲେ ଆମ ପାଖକୁ, ଦର୍ଶକମାନଙ୍କ ପ୍ରଥମ ଧାଡ଼ିକୁ ।

ବର୍ତ୍ତମାନ ସଭାପତି କିଏ ହେବ ? ସଭାସ୍ଥଳରେ ଥିବା କିଛି ଛାତ୍ର ତରୁଣ ନେତା ଚାହିଁଲେ ସଭାପତି ହେବାପାଇଁ । ସେଇଠି ମଧ୍ୟସ୍ଥତା କରୁଥାନ୍ତି ୰ଅମିତାଭ ମହାପାତ୍ର ତାଙ୍କୁ ଯାଇ ସେମାନେ ଧରିଲେ ଏବଂ ଚାପ ପକାଇଲେ ଯେ ଜଣେ ଛାତ୍ର ନେତା ଆଜିର ସଭାପତି ହୁଅନ୍ତୁ । ସେମାନେ ଜଣେ ଛାତ୍ର ନେତାଙ୍କ ନାମ କହିଲେ କିନ୍ତୁ ଦୁର୍ଭାଗ୍ୟର କଥା ଅମିତାଭ ତାଙ୍କୁ ଜାଣି ନ ଥିଲେ । ସେ ଚିହ୍ନିଥିଲେ ହରିଶ୍ଚନ୍ଦ୍ର ବକ୍ସିପାତ୍ର ଏବଂ ମୋତେ । ହରିଶ ନାହାନ୍ତି, ମୁଁ ଅଛି । ସେ ମୋ ନାମ ପ୍ରସ୍ତାବ କରିଦେଲେ ଏବଂ ତାହା ଗୃହୀତ ହୋଇଗଲା । ମୁଁ ଏବଂ ବିଶ୍ୱନାଥ ପଣ୍ଡିତ ଆଲୋଚନା କରିଥିଲୁ ଜଟିଳତା କେମିତି ଦୂର କରାଯାଇପାରିବ । ହଠାତ ମୋ ନାମ ଘୋଷଣା ଏବଂ ଗ୍ରହଣ ।

ଉପାୟ କ'ଣ ? ମନମୋହନ ମିଶ୍ର ଏବଂ ମୁଁ ଉଭୟ ସେତେବେଳେ କମ୍ୟୁନିଷ୍ଟପାର୍ଟିର । ନିଷ୍ପତ୍ତି ପାର୍ଟିର ନୁହେଁ । ସବୁ ଆକସ୍ମିକ । ବିଶ୍ୱନାଥ ପଣ୍ଡିତଙ୍କ ନିର୍ଦ୍ଦେଶକ୍ରମେ ମୋ କାମ ହେଲା ଆଗ ଦୁଇଜଣ ଛାତ୍ର ନେତାଙ୍କୁ କହିବାକୁ ଦେଇ, ହରିଶ୍ଚନ୍ଦ୍ର ବକ୍ସିପାତ୍ରଙ୍କୁ ଡକାଇପଠାଇବା । କାରଣ ସେ ଆସି ଆଗ ଛାତ୍ର ଏବଂ

ଅଣଛାତ୍ରମାନଙ୍କ ମଧ୍ୟରେ ବିଭେଦର ଉଦ୍ୟମକୁ ପ୍ରତିହତ କରିବେ । ଦ୍ୱିତୀୟ କାମ ହେଲା ଯଦୁମଣି ମଙ୍ଗରାଜ ଓ ମନମୋହନ ମିଶ୍ରଙ୍କୁ କହିବା ପାଇଁ ଆହ୍ୱାନ କରିବା । ତୃତୀୟ କାମ ହେଲା ବିଶ୍ୱନାଥ ପଣ୍ଡିତଙ୍କୁ ଡାକିବା । ଆଗାମୀ କାଲିର କାର୍ଯ୍ୟକ୍ରମ ଘୋଷଣା ସହିତ କାର୍ଯ୍ୟାନୁଷ୍ଠାନ କମିଟି ଅତୁଟ ରହିଛି ବୋଲି ଘୋଷଣା କରିବା ପାଇଁ । କରିଦେଲି । ସାବାସୀ ବି ପାଇଲି ଅଶୋକ ଦାସ, ଯଦୁମଣି ମଙ୍ଗରାଜ, ଦୀନବନ୍ଧୁ ସାହୁ ଏବଂ ମନମୋହନ ମିଶ୍ରଙ୍କଠାରୁ ।

କିନ୍ତୁ ଗାଳିବି ଶୁଣିବାକୁ ମିଳିଥିଲା କିଛି ଲୋକଙ୍କଠାରୁ । ଏମାନଙ୍କୁ କି ବିଶ୍ୱାସ ଅଛି । ଏମାନେ ପରା....... ।

ଯେଉଁ କାମ ପାଇଁ କମ୍ୟୁନିଷ୍ଟ ପାର୍ଟି ଆଦୌ ଦାୟୀ ନୁହେଁ, ତାହା ମାତ୍ର ଜଣେ ବା ଦି'ଜଣଙ୍କ ବ୍ୟକ୍ତିଗତ କାମ, ସେଇଥିପାଇଁ ପାର୍ଟିକୁ ଗାଳି । ଆଉ ପାର୍ଟି ସଭ୍ୟ, ସମର୍ଥ. ନେତା ଯେ ଜୀବନକୁ ବାଜି ଲଗାଇ ରଣଭୂମିରେ ଅବତୀର୍ଣ୍ଣ ସେ କଥା ଉଠୁ ନାହିଁ ତ !

ନୀତିରେ ଭୁଲ ହେଇଛି, କିନ୍ତୁ ଦେଶପ୍ରେମ ବା ତ୍ୟାଗରେ ତ୍ରୁଟି ହୋଇ ନାହିଁ, ହେବବି ନାହିଁ । ସଂଗ୍ରାମର ମଇଦାନରେ ଏହା ପ୍ରମାଣିତ ହୋଇଛି । ସେହି ଯୋଗୁଁ ଭୁଶୁଡ଼ି ପଡ଼ିଥିବା ସମାଜବାଦୀ ରାଷ୍ଟ୍ରମାନଙ୍କରେ ସମାଜବାଦୀ ଶକ୍ତିମାନେ ପୁଣି ଫେରୁଛନ୍ତି । ପ୍ରାକ୍ତନ ସୋଭିଏତ ରୁଷର ବିଭିନ୍ନ ରିପବ୍ଲିକ (ବର୍ତ୍ତମାନ ରାଷ୍ଟ୍ର) ରେ ଏହା ସୂଚନା ମିଳେ । ପରବର୍ତ୍ତୀ ପରିସ୍ଥିତିରେ ନୂଆ ରୂପରେ ସେମାନେ ଆସିବାକୁ ବାଧ୍ୟ । ଠିକ ସେହିପରି ଲାଟିନ ଆମେରିକାର ବିଭିନ୍ନ ଦେଶରେ ମଧ୍ୟ ସମାଜବାଦର ବିଜୟ ଧ୍ୱଜା । ଦକ୍ଷିଣ ଆଫ୍ରିକାର ଶାସନ ପ୍ରାୟତଃ ସମାଜବାଦୀମାନଙ୍କ ହାତରେ । ସୋସାଲିଷ୍ଟ ଏବଂ କମ୍ୟୁନିଷ୍ଟମାନଙ୍କ ମଧ୍ୟରେ ଦ୍ୱନ୍ଦ୍ୱ ଯୋଗୁଁ ୟୁରୋପର ମାନଚିତ୍ର ବଦଳିଗଲା । ଫାସୀବାଦର ବିଜୟ ହେଲା । ତାହା ନ ହେଲେ ପୃଥିବୀର ମାନଚିତ୍ର ବଦଳି ଯାଇସାରନ୍ତାଣି । ସୋସାଲିଷ୍ଟମାନଙ୍କର ସୁଧାରବାଦ ଏବଂ କମ୍ୟୁନିଷ୍ଟମାନଙ୍କର ସେକ୍ଟରିଆଲିଜମ୍ ଏହାର କାରଣ । ଏହା ସତ୍ତ୍ୱେ ଲାଟିନ୍ ଆମେରିକାର ବିଭିନ୍ନ ଦେଶରେ ମଧ୍ୟ ସମାଜବାଦୀ ଶକ୍ତିର ବିଜୟ ଘଟିଛି ।

ଏୟା ଲେଖିଲାବେଳକୁ ପାକିସ୍ତାନର ସ୍ରଷ୍ଟା ✓ ମହମ୍ମଦ ଅଲ୍ଲୀ ଜିନ୍ନାଙ୍କ ଉପରେ ବିବାଦ ଦେଖାଦେଇଛି । ପାକିସ୍ତାନ ଗସ୍ତରେ ଯାଇ ଲାଲକୃଷ୍ଣ ଆଡ଼ଭାନୀ ଜିନ୍ନାଙ୍କ ସମାଧି ଉପରେ ସ୍ତବକ ରଖିଛନ୍ତି ଏହା ସଂପୂର୍ଣ୍ଣ ଯଥାର୍ଥ । ଭାରତ ଗସ୍ତରେ ଆସି ମହାତ୍ମା ଗାନ୍ଧିଙ୍କ ସମାଧି ଉପରେ ସ୍ତବକ ନ ରଖିବା, ମସ୍କୋ ଯାଇ ଲେନିନଙ୍କ ମରଦେହ ପାଖରେ ସ୍ତବକ ନ ରଖିବା, ବେଜିଂ ଯାଇ ମାଓ ସେ ତୁଙ୍ଗ ମରଦେହ ଉପରେ ସ୍ତବକ ନ ରଖିବା, ହୋଚିମିନ୍ (ଭିଏତ୍‌ନାମ) ସହରକୁ ଯାଇ ହୋଚିମିନ୍‌ଙ୍କ ମରଦେହ ଉପରେ ସ୍ତବକ ନ ରଖିବା କ'ଣ ଶୋଭନୀୟ ?

ଆଉ ଜିନ୍ନାଙ୍କ ସଂପର୍କରେ ମୁଁ ଆଗରୁ କହିଛି ଯେ ଜିନ୍ନା ମୁସଲିମ୍ ନ ଥିଲେ । ସେ ଉର୍ଦ୍ଦୁ ଜାଣି ନ ଥିଲେ, ଫେଜ ଟୋପି ଦିନେ (ଯେଉଁଦିନ ସେ ପାକିସ୍ତାନର ରାଷ୍ଟ୍ରପତି) ମାତ୍ର ପିନ୍ଧି ଥିଲେ, ମସ୍‌ଜିଦ୍ ଯାଉ ନ ଥିଲେ କି ନମାଜ ପାଠ କରୁ ନ ଥିଲେ, ଘୁଷୁରି ମାଂସ

କେବଳ ଖାଉ ନ ଥିଲେ, ମୁଲ୍ଲାମାନଙ୍କୁ ଡାକି ଖୁଆଉଥିଲେ । ଏହି ଏମ୍.ସି.ଚଗଲାଙ୍କ ରୋଜେସ୍ ଇନ୍ ଡିସେମ୍ବର ବହିରେ ଉଲ୍ଲେଖ ଅଛି ।

ଇସଲାମ୍ ତାଙ୍କ ପାଇଁ ଥିଲା ଏକ ଅସ୍ତ୍ର । କ୍ଷମତା ପାଇଁ ଅସ୍ତ୍ର । ୧୯୩୭ ମସିହା ୟୁ.ପି. ବିଧାନସଭା ନିର୍ବାଚନପରେ ସେ ଏହାକୁ ଅଧିକ ସଫଳତାର ସହିତ ପ୍ରୟୋଗ କରିବାକୁ ଲାଗିଲେ ଏବଂ ତାଙ୍କର କରିସ୍ମା ହେତୁ ସେ ଆଞ୍ଚଳିକ ମୁସ୍‌ଲିମ ନେତାମାନଙ୍କୁ ଏକାଠି କରିବାକୁ ସଫଳ ହେଲେ । ମୁସ୍‌ଲିମ୍ ଲିଗ୍ ଗଠନ କଲେ ଏବଂ ପାକିସ୍ତାନ ନାମକ ଏକ ସଂପୂର୍ଣ୍ଣ ସ୍ୱତନ୍ତ୍ର ରାଷ୍ଟ୍ର ଗଠନ କରିବା ପାଇଁ ଇସ୍‌ଲାମକୁ ବ୍ୟବହାର କଲେ । ପାକିସ୍ତାନର ଗଠନ ପରେ ତାଙ୍କର ସେ ସ୍ୱପ୍ନ ସାକାର ହୋଇଥିଲା ଏବଂ ସେହି ଯୋଗୁଁ ପାକିସ୍ତାନରେ ସେ ଅଗଷ୍ଟ ୧୩, ୧୯୪୭ ମସିହାରେ ଯେଉଁ ବକ୍ତୃତା ଦେଇଥିଲେ ସେଥିରେ ସେ ଏକ ଧର୍ମ ନିରପେକ୍ଷ ରାଷ୍ଟ୍ର ବା ଅନ୍ୟ ଧର୍ମ ପ୍ରତି ସହନଶୀଳତା କଥା ଉଲ୍ଲେଖ କରିଥିଲେ କିନ୍ତୁ ସେତେବେଳକୁ ନେଡ଼ିଗୁଡ଼ କହୁଣିକୁ ବୋହିଯାଇଥିଲା । ଜିନ୍ନା ଏବଂ ଅର୍ଥନୀତିରେ ବିଶାରଦ ଲିଆକତ ଅଲ୍ଲୀ ଖାଁଙ୍କ ପରଲୋକ ପରେ ସେହିଯୋଗୁଁ ପାକିସ୍ତାନରେ ମୁସଲିମ୍ ଲିଗ୍‌ର ପ୍ରଭାବ ବହୁଳଭାବରେ କ୍ଷୁଣ୍ଣ ହେବାକୁ ଲାଗିଲା । ଜେହାଦ ଏବଂ ଭାରତ ବିରୋଧୀ ସ୍ଲୋଗାନ ଏ ରାଷ୍ଟ୍ରର ଅସ୍ତ୍ର ପାଲଟିଲା ।

ଭାରତ ହେବ ଏକ ଗଣତାନ୍ତ୍ରିକ, ସାର୍ବଭୌମ, ଧର୍ମନିରପେକ୍ଷ ରାଷ୍ଟ୍ର । ଏକ ସମାଜବାଦୀ ଭାରତ ହେବ ଆମର ଲକ୍ଷ୍ୟ । ଦେଶର ସମୃଦ୍ଧି କେବଳ ହେବ ନାହିଁ, ବିକାଶ ମଧ୍ୟ ହେବ । ଜାତୀୟ ଆୟର ସମତୁଲ ବଣ୍ଟନ ହିଁ ଆଞ୍ଚଳିକ ବୈଷମ୍ୟକୁ ଦୂରକରିବ, ଶ୍ରେଣୀଗତ ବୈଷମ୍ୟକୁ ମଧ୍ୟ ଦୂର କରିବ । ଏହି ସ୍ୱପ୍ନ ପ୍ରତ୍ୟେକ ଭାରତୀୟଙ୍କର ଯେପରି ଥିଲା ୧୯୫୦-୫୧ ମସିହାରେ, ମୋର ସେହିପରି ଥିଲା ଏବଂ ଏହି ସ୍ୱପ୍ନ ଯୋଗୁଁ ହିଁ ଭାରତ ରହିଛି ଏକ ଗଣତାନ୍ତ୍ରିକ ରାଷ୍ଟ୍ରଭାବରେ (ଏକ ନିର୍ବାଚିତ ସରକାର ସହିତ) ସମସ୍ତ ଦୋଷ ଦୁର୍ବଳତା ଏବଂ ବିପଦ ସତ୍ତ୍ୱେ । ଦ୍ୱିତୀୟ ମହାଯୁଦ୍ଧପରେ ସ୍ୱାଧୀନତା ପାଇଥିବା ବହୁ ରାଷ୍ଟ୍ରରେ ଗଣତାନ୍ତ୍ରିକ ବ୍ୟବସ୍ଥା ଭାଙ୍ଗିଯାଇଛି । ଭାରତରେ ତାହା ହୋଇ ନାହିଁ । ଏହା ପ୍ରତ୍ୟେକ ଭାରତୀୟଙ୍କ ପାଇଁ ଗର୍ବର ବିଷୟ ।

କିନ୍ତୁ ବିପଦ ଭୟାନକ ଆଗରୁ ଏହାର ଅବତାରଣା କରିସାରିଛି । ଜୀବନର ବିଳମ୍ବିତ ଅପରାହ୍ଣ । ଲମ୍ବା ଲମ୍ବା ଛାଇ । ଖ୍ରୀଷ୍ଟିଆନା ରୋଜେଟିକର ଏକ କବିତା ମନେପଡୁଛି । ପୂରା କବିତା ମନେପଡୁ ନାହିଁ । ଖୋଜି ବି ପାଉ ନାହିଁ । ତେବେ ଏହିପରି ଏହାର ମର୍ମ । ମୁଁ ଯେତେବେଳେ ଆଉ ନ ଥିବି, ମୋ ପାଇଁ ଶୋକର ସଂଗୀତ ଗାଇବ ନାହିଁ କି ମୋର ସମାଧି କରିବ ନାହିଁ । କୌଣସି ତରୁଲତା ଲଗାଇବ ନାହିଁ ସେଇଠି । ମୋର ସମାଧି ସ୍ଥଳରେ ଝରିପଡ଼ିବାକୁ ଦିଅ ଶିଶିରବିନ୍ଦୁ । ସେହି ହେଉ ଲୋତକ । ଆଉ ତମେ ମୋତେ ମନେରଖିଲେ ମନେରଖିପାର ଆଉ ଚାହିଁଲେ ଭୁଲି ବି ଯାଅ । କବିତାଟିକୁ ଖୋଜୁଛି । ପାଇଲେ ନିଶ୍ଚୟ ଟିପି ଯିବି ।

When I am dead, my dearest,
Sing no sad songs for me;
Plant thou no roses at my head,
Nor shady cypress tree,
Be the green grass above me
With showers and dewdrops wet,
And if thou wilt remember,
And if thou wilt forget.
I shall not see the shadows,
I shall not feel the rain
I shall not hear the rightangle
Sing on, as if in pain
And dreaming through the twilight
That doth not rise nor set.
Haply I may remember
And haply may forget.

*–Christina Rossetti (1830-1894)*

ଏହାପରେ ଜୀବନର ଯେଉଁ ଅଧ୍ୟାୟ ରହିଯିବ ତାହା ଜୀବନର ଜନପଥରେ ନୁହେଁ ତାହା ହେଉଛି ଜନପଥରୁ ରାଜପଥ । ସେ ପଥ ଲମ୍ବିଯିବ ରେଭେନ୍ସା କଲେଜରୁ ରାଣୀହାଟ-ତୁଳସୀପୁର, ରାଷ୍ଟ୍ରଭାଷାରୋଡ୍ ଦେଇ ଖାନ୍‌ନଗର ପର୍ଯ୍ୟନ୍ତ । କଟକ, କୋଲକାତା, ଦିଲ୍ଲୀ, ମସ୍କୋ, ଫ୍ରାନ୍ସ, ସୋଫିଆ, ବେଜିଂ, ବ୍ୟାକଂକ, ରେଙ୍ଗୁନ ପ୍ରଭୃତି ଦେଇ ପୁଣି କଟକ । କିଏ କହିଥିଲା Road from Moscow to Washington falls through Beijing, Delhi and London.ମୋର ଏତେବାଟ ନାହିଁ ଅଚ୍ଛବାଟ ପିଲାଦିନେ ପଢ଼ିଥିଲି ।

ବହୁ ବହୁ ପଥ ପର୍ଯ୍ୟଟନେ କ୍ଲାନ୍ତ ଅବଶ ଯାହାର ପାଦ ।
ତା'ଶିରେ ନିତ୍ୟ ଝରଇ, ପ୍ରଭୁ କୃପାର ଆଶୀର୍ବାଦ ।

ପୁରା କବିତାଟା ମନେପଡୁ ନାହିଁ । ତେବେ ଏହିଭଳି ଖାଲି ହେତୁ ହେଉଛି । ବୁଲିବା ପାଇଁ ବୁଲି ନାହିଁ । ଦରକାର ପଡ଼ିଛି ଯେତିକି ସେତିକି ବୁଲିଛି । ବୁଲୁବୁଲୁ ଭେଟ ହେଇଛି ଅନେକ ବ୍ୟକ୍ତିଙ୍କ ସହିତ, ବିଭିନ୍ନ ଶ୍ରେଣୀ, ବୟସ ଜୀବିକାର । ଦେଖିଛି ବର୍ଟ୍ରାଣ୍ଡ ରସେଲ, ନିକିତା କ୍ରୁସେଫ, ପାବୋଲୋ ପିକାସୋ, ମାଓସେତୁଙ୍ଗ, ଜୁଲିଓଟ କ୍ୟୁରୀ, ଆନ୍ଦ୍ରେ ଆନ୍ଦ୍ରିନ୍, ହୋଚିମିନ୍, ପାବୋଲୋ ନେରୁଦା, ପ୍ରଭୃତିଙ୍କ ସହିତ । ଜାତୀୟ ସ୍ତରରେ ମଧ୍ୟ ଭେଟ ହୋଇଛି ବହୁ ଲେଖକ, ନେତା, କଳାକାର, ଶିକ୍ଷୀଙ୍କ ସହିତ ।

ଆହରଣ କରିବାକୁ ଚେଷ୍ଟା କରିଛି ପାଥେୟ ସେମାନଙ୍କ ଜୀବନରୁ । କେତେ ସଫଳ ହୋଇଛି କହିପାରିବି ନାହିଁ ।

ତେବେ ଏହି ତ ଜୀବନ । ଯାହା ବର୍ତ୍ତମାନ ସ୍ଥାଣୁ ନୁହେଁ । ଗଡ଼ି ଗଡ଼ି ଚାଲିଛି । ପିଲାଦିନେ କବିତା ପଢ଼ିଥିଲି ମରୁତୀର୍ଥ ବହିର ଶ୍ମଶାନ ଭୂଇଁ କବିତା ।

ଦେଖ ଦେଖ ବାପା ବେଳ ଚାଲିଗଲା ଯାମିନୀ କିପରି ଜାଗେ
ଏହିପରି ସିନା ଜୀବ ଚାଲିଗଲେ ତେବେ ସିନା ଭଲ ଲାଗେ

ଏପରି ସିମିଲି ବା ଉଦାହରଣ ମୁଁ ଖୁବ୍ କମ୍ କାବ୍ୟରେ ପଢ଼ିଛି । ତେବେ ନିଶ୍ଚିତ ଭାବରେ All the World a stage, where Men are actors and women are actreses ନିଶ୍ଚୟ ମନେପଡ଼େ । ଏ ଜୀବନ କ'ଣ ଏକ ନାଟକ ? ଯଦି ତାହାବି ହୋଇଥାଏ, ସେ ନାଟକ ସରି ନାହିଁ ଏପର୍ଯ୍ୟନ୍ତ ।  ଜୀବନର ବାଟେଘାଟେରୁ ଜୀବନର ଜନପଥ ପର୍ଯ୍ୟନ୍ତ ଲମ୍ବି ଆସିଲାଣି । ଜୀବନର ଜନପଥରୁ ରାଜପଥ ପର୍ଯ୍ୟନ୍ତ ଆଉ କେତେ ବାଟ ?

କିଏ କହିବ ?

ଦେଖାଯାଉ ।

ଟିପି ତ ଯାଉଛି । ଯାହା ମନେ ପଡୁଛି । କୌଣସି କ୍ରମ ନାହିଁ । କାରଣ ଜୀବନର ତ କ୍ରମ ନାହିଁ । ଟିପିବାର କ୍ରମ ଆସିବ କେଉଁଠୁ ? ସ୍ତ୍ରୀ କହୁଛନ୍ତି ସେ ଟିପିଚାଲିଛନ୍ତି, ପୁଅ ଝିଅ କହୁଛନ୍ତି ବାପାଙ୍କର ଟିପା ସରିବ ନାହିଁ, ନାତିନାତୁଣୀ କହୁଛନ୍ତି ଅଜା (ଜେଜେ) କ'ଣ ଟିପି ଚାଲିଛ କି ? ସାଙ୍ଗସାଥୀମାନେ କହୁଛନ୍ତି, ମରିବା ତ ସରି ନାହିଁ ତାଙ୍କର ଟିପା ସରିବ କେମିତି ?

କ୍ରମଶଃ ନିଃସଙ୍ଗ ଲାଗିଲାଣି । ଖବରକାଗଜ ପଢ଼ିବାକୁ ଡର ମାଡୁଛି । ସମସାମୟିକ ଲୋକ, ବନ୍ଧୁ, ସହଯୋଦ୍ଧା ଚାଲିଯାଉଛନ୍ତି । ଏଇ ଗଲା କେଇମାସ ମଧ୍ୟରେ ଶ୍ୟାମସୁନ୍ଦର ମହାପାତ୍ର, ନନ୍ଦିନୀ ଶତପଥୀ, ସନ୍ତୋଷ କୁମାର ସାହୁ ପ୍ରଭୃତି ଚାଲିଗଲେ । ଖାଁ ଖାଁ ଲାଗୁଛି । ଏଇ ଥିଲେ, ଏଇ ନାହାନ୍ତି ।

ତଥାପି ମୁଁ ଚାଲିଛି । ଚରୈବତି, ଚରୈବତି, ଚରୈବତି ।

# ପରିଶିଷ୍ଟ

*ଆଗାମୀ ଶତାବ୍ଦୀ ପକ୍ଷରୁ ପୂଜା ସଂଖ୍ୟା ୨୦୦୫ ରେ ପ୍ରକାଶିତ ଶ୍ରୀଯୁକ୍ତ ଗିରିଜା ଭୂଷଣ ପଟ୍ଟନାୟକଙ୍କ ସହ ଏକ ମାର୍ମିକ ସଂଳାପ ।*

ପ୍ରଶ୍ନ : ଜୀବନର ଅପରାହ୍ନ ହୋଇଛି ବୋଲି ଆପଣ ଭାବୁଛନ୍ତି କି ?

ଉତ୍ତର : ଦେହ ଏକ ବସ୍ତୁ । ପ୍ରତ୍ୟେକ ବସ୍ତୁ ପରି ଏହା କ୍ଷୟ ହେବାକୁ ବାଧ୍ୟ । ଏହା କ୍ଷୟ ହୋଇ ଚାଲିଛି । ମଧ୍ୟାହ୍ନ ନିଶ୍ଚୟ ଅତିକ୍ରାନ୍ତ ହୋଇଛି । ତେବେ ସନ୍ଧ୍ୟା କେତେ ଡେରି କହିପାରିବି ନାହିଁ, ସେଥିପାଇଁ ମଧ୍ୟ ମୁଁ ବିବ୍ରତ ନୁହେଁ । କର୍ମକ୍ଷମ ଥାଇ ଚାଲିଯିବା ହିଁ କାମନା । ରୋଗଶଯ୍ୟା, ଡାକ୍ତରଖାନା....ତା' ପରେ ଶୁଣୁଥିବ ଯେ ତାଙ୍କ ବୁଢ଼ା ଗଲେଣି । ଆମ ଇଏ କେତେଦିନ ନର୍କରେ ଘାଣ୍ଟି ହେବେ କେଜାଣି । ଭଗବାନ୍ ତାଙ୍କୁ କେବେ ପାରି କରିବେ ତାଙ୍କୁ ହିଁ ଜଣା । ଶୁଣୁଥିବ କିନ୍ତୁ କିଛି କରିପାରୁ ନ ଥିବ, ସେଇଟାକୁ ମୋର ବେଶି ଭୟ । ଚାଲୁଥିବ, ଲେଖୁଥିବ, କହୁଥିବ, କର୍ମକ୍ଷମ ଥିବ ଆଉ ଚାଲିଯିବ । ତାହା ହିଁ ମୋର କାମନା । ଜୀବନ୍ମୃତ ଅବସ୍ଥାରେ ପଡ଼ିରହିବା, ଡାକ୍ତରଖାନା ଖଟରେ ପଡ଼ିରହିବାକୁ ମୋର ଭୟ । ଭୟ ମୃତ୍ୟୁକୁ ନୁହେଁ । କାରଣ ତା' ସହିତ ଜୀବନର ଜନପଥରେ ଚାଲୁ ଚାଲୁ ଦି' ଚାରି ଥର ପାଖାପାଖି ହୋଇଯାଇଛି । ସେ ମୋତେ ନେଇ ନାହିଁ ବା ନେଇପାରି ନାହିଁ ।

ପ୍ରଶ୍ନ : ଜୀବନର ଜନପଥରେ ୭୫ ବର୍ଷ ଚାଲିଗଲେଣି । କିଛି ସ୍ମୃତି ମନେପଡୁଛି ?

ଉତ୍ତର : ପିଲାଦିନେ ସ୍କୁଲରେ ଏକ କବିତା ବହି ପଢୁଥିଲି । ବହିଟିର ନାମ ସୁବର୍ଣ୍ଣଲେଖା । ସେଥିରେ ଏକ କବିତା ଥିଲା । ତାର ନାମ ଥିଲା 'ହୃଦୟ ତୀର୍ଥ' କବିତାଟିର ଶେଷ ହୋଇଛି ଏଇପରି ।

*''ହାୟରେ ଅବୋଧ ଜୀବ,*
*ଜୀବନର ପଥେ ଘାଟେ ବୁଲି ବୃଥା ସିନା ଖୋଜୁ ଶିବ,*
*ନାହିଁ ସେ ଧୂପେ ଓ ଝୁଣାର ଗନ୍ଧେ*
*ବେଦେ ଓ କୋରାନ ବାଣୀର ଛନ୍ଦେ,*
*ବୁଦ୍ଧ ଯିଶୁର ଦ୍ୱିଧା ଓ ଦ୍ୱନ୍ଦ୍ୱେ*
*ନାହିଁ କାହିଁ ଜଳେ ସ୍ଥଳେ*
*ସେ ଯେ ମାନବର ପରାଣ ଦେବତା*
*ରହିଛି ପରାଣ ତଳେ ।''*

କବିତାଟି ମୋତେ ପିଲାଦିନୁ ପ୍ରେରଣା ଦେଇ ଆସିଛି । ଆଜି ମଧ୍ୟ ଦେଉଛି । ସେଇଯୋଗୁଁ ମୁଁ ମନ୍ଦିର, ମସ୍‌ଜିଦ, ଗିର୍ଜାକୁ ଯାଇ ନାହିଁ ପୂଜା କରିବାକୁ । ମଣିଷ ଭିତରେ ମୁଁ ସନ୍ଧାନ କରିଛି ଦେବତ୍ୱକୁ । ପରବର୍ତ୍ତୀ କାଳରେ ମାମୁ (ସେ ଆଉ ନାହାନ୍ତି) ପଢ଼ାଇଲେ

ବିବେକାନନ୍ଦ । 'ତମ ଆଗରେ ଯିଏ ଠିଆ ହୋଇଛି ସେଇ ମଣିଷ ହିଁ ଭଗବାନ୍ । ତାର ଉପକାର କରିବା ହେଉଛି ଶ୍ରେଷ୍ଠ କାମ ।' ବିବେକାନନ୍ଦଙ୍କ ବାଣୀ ହିଁ ମୋତେ ମଣିଷର ସେବାରେ ନିବେଦିତ ହେବା ପାଇଁ ପ୍ରେରଣା ଦେଇଥିଲା । ମୁଁ ଖୋଜିଛି ମଣିଷକୁ- ଦେବତାକୁ ନୁହେଁ ।

ମଉସା ଥିଲେ ରେଢ଼ାଖୋଲରେ ଫରେଷ୍ଟ ଅଫିସର । ନେଇଯାଇଥିଲେ ମୋତେ ସଙ୍ଗରେ ଭୀମଭୋଇଙ୍କ ଜନ୍ମ ସ୍ଥଳକୁ ।

*'ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ ଦେଖୁ ଦେଖୁ କେବା ସହୁ ।*
*ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ ।'*

ଏଇ ବାଣୀ ଚମକ ସୃଷ୍ଟି କରିଥିଲା ମନରେ । ମନେପଡୁଛି ବିପ୍ଲବୀରୁ ଯୋଗୀ ପାଲଟିଥିବା ମୋର ବନ୍ଧୁ ବିଶ୍ୱମ୍ଭର ପଣ୍ଡିଚେରୀରୁ କଟକ ଆସିଥାନ୍ତି । ସେତେବେଳେ ମୁଁ ସକ୍ରିୟ ରାଜନୀତିକ କର୍ମୀ । ସାଙ୍ଗ ହୋଇ ଗଲୁ ରମାଦେବୀଙ୍କୁ ଭେଟିବା ପାଇଁ । ସେ ଆମକୁ ଦେଖି କହିଲେ ଯେ ଗିରିଜା ଭଳି ରାଜନୀତି କରୁଥିବା ବ୍ୟକ୍ତି ଆଉ ବିଶ୍ୱମ୍ଭର ଭଳି ଯୋଗୀ ଭିତରେ ପାର୍ଥକ୍ୟ କେଉଁଠି ? ଆମେ ଦୁହେଁ ଅନେଇଲୁ ବିସ୍ମିତ ଭାବରେ । ମାତୃସୁଲଭ ହସ ଖେଳାଇ ସେ କହିଲେ ରାଜନୀତିକ ନେତାମାନେ ସ୍ୱାର୍ଥପର ହୋଇ ନିଜ କଥା ଭାବି, ନିଜ ସ୍ୱାର୍ଥ ପାଇଁ ଦେଶ କଥା ଭୁଲିଗଲେ । ଆଉ ଯୋଗୀମାନେ କେବଳ ଖୋଜିଲେ ନିଜର ମୁକ୍ତି, ନିଜର ଶାନ୍ତି, ଦେଶ ଦଶା କଥା ସେମାନେ ମଧ୍ୟ ଭୁଲିଗଲେ ।

ସଂସ୍କୃତ ଭଲ ପଢୁ ନ ଥିଲି । ପରେ କିଛି କିଛି ପଢ଼ିଲି । ପଢ଼ିଲି ରାଜା ବିଶିଙ୍କର ବାଣୀ ।

*'ନ ତ୍ୱହଂ କାମୟେ ରାଜ୍ୟଂ, ନ ସ୍ୱର୍ଗଂ ନଃ ପୁନର୍ଭବମ,*
*ପ୍ରାଣୀନାଂ ଦୁଃଖ ନାଶନଂ ପ୍ରାଣୀନାଂ ଆର୍ତ୍ତନାଶନଂ ।*

ମୋର ରାଜ୍ୟ ଦରକାର ନାହିଁ, ସ୍ୱର୍ଗକୁ ଯିବାର କାମନା ନାହିଁ, କି ପୁନର୍ଜନ୍ମର କାମନା ନାହିଁ । ପ୍ରାଣୀଙ୍କ ଦୁଃଖ ଆର୍ତ୍ତର ବିନାଶ ଏକମାତ୍ର କାମନା । ବିଶି ରାଜା ଥିଲେ । ତଥାପି କି ଉଦାର ଏଇ ବାଣୀ । ମନରେ ନୂତନ ପ୍ରେରଣା ଦେଇଆସିଛି । ତା'ପରେ ଜୀବନରେ ଆସିଲେ ଗୌତମ ବୁଦ୍ଧ । ସଂଘପଦରେ ଶରଣ ଓ ଧର୍ମପଦରେ ଶରଣ ଜୀବନର ଗତିପଥକୁ ବଦଳାଇ ଦେବାରେ ସାହାଯ୍ୟ କଲା । ବ୍ୟକ୍ତି ବଡ଼ ନୁହେଁ, ସଂଘ ହେଉଛି ବଡ଼, ଜୀବନକୁ ନିୟନ୍ତ୍ରିତ କଲା । ତା'ପରେ ଆସିଲେ କାର୍ଲ ମାର୍କ୍ସ ।

ପ୍ରଚଳିତ ସମାଜରେ ଇତିହାସ ହେଉଛି ଶ୍ରେଣୀ ସଂଘର୍ଷର ଇତିହାସ । ତୋର (ସର୍ବହରାର) ହରାଇବାର କିଛି ନାହିଁ । ଜୟ କରିବାକୁ ଅଛି ସମଗ୍ର ପୃଥିବୀକୁ ।

ଆଗ୍ନୋଷ୍ଟିକରୁ ମୁଁ ପାଲଟିଗଲି ସମ୍ପୂର୍ଣ୍ଣ ନିରୀଶ୍ୱରବାଦୀ ।

ଚଣ୍ଡିଦାସଙ୍କ ବାଣୀ 'ଶୁନ୍ହରେ ମାନୁଷ ଭାଇ, ସବାର ଉପରେ ମାନୁଷ ସତ୍ୟ ତାର ଉପରେ ନେଇ' ମଣିଷ ମୋତେ ଅନୁପ୍ରାଣିତ କଲା, ବେଶି ଭଗବତ୍ ଅନୁକମ୍ପା ନୁହେଁ ।

ପରିଶେଷରେ ଶ୍ରୀଅରବିନ୍ଦ ବା ମାର୍କ୍ସଙ୍କର କଳ୍ପିତ ସାମ୍ୟବାଦ ବା କମ୍ୟୁନିଜମ୍ ବାସ୍ତବରେ ରୂପାନ୍ତରିତ ହୋଇପାରୁ ବା ନ ପାରୁ ଏକ ସୁଦୂରପ୍ରସାରୀ ଲକ୍ଷ୍ୟ ପାଇଁ ମଣିଷକୁ ଅନୁଧାବନ କରିବା ପାଇଁ ସୁଯୋଗ ଦେଲା । ମଣିଷର ଲକ୍ଷ୍ୟ ହେଲା ଅସୀମ, ସସୀମ ନୁହେଁ ।

ଠିକ୍ ସେଇପରି ପୃଥିବୀପୃଷ୍ଠରେ ଦିନେ ଅତିମାନସ ଶକ୍ତି ଅବତରଣ କରିବ ଏବଂ ତା'ର ପରଶରେ ମଣିଷ ଅତିମାନବରେ ରୂପାନ୍ତରିତ ହେବ, ମାଙ୍କଡ଼ ଦିନେ ମଣିଷରେ ରୂପାନ୍ତରିତ ହେଲାଭଳି । ସେଥିପାଇଁ ମଣିଷକୁ ପ୍ରସ୍ତୁତ ହେବାକୁ ପଡ଼ିବ । ଲକ୍ଷ୍ୟ ହେବ, ଅସୀମ, ଦିଗନ୍ତବିସ୍ତାରୀ ।

ବାବାଜି ମହାରାଜଙ୍କୁ ପଚାରିଥିଲି । କେବେ ଅବତରଣ କରିବ ଅତିମାନସ ଶକ୍ତି ? ସେ ଉତ୍ତର ଦେଇଥିଲେ - ନିକଟରେ । ନିକଟଟା କେତେଦୂର ? ମୋର ପ୍ରଶ୍ନ ଉତ୍ତରରେ ସେ କହିଲେ ଆପଣାକୁ ସମର୍ପଣ କରି ପ୍ରସ୍ତୁତ କରି ରଖ । ବ୍ୟସ୍ତ ହୁଅ ନାହିଁ । ସେ ଆଉ ନାହାନ୍ତି । ଅତିମାନସ ଶକ୍ତି ଏ ପର୍ଯ୍ୟନ୍ତ ଅବତରଣ କରି ନାହିଁ । ତଥାପି ମଣିଷ ଅନେଇଚି ସେଇ ଏଲ ଡୋରାଡୋକୁ (El dorado)।

ଅବଧୂତଙ୍କ ପରି ମୋର ବହୁତ ଗୁରୁ । ଆଦିବାସୀଠାରୁ ଆରମ୍ଭ କରି ହାଡ଼କଟା ଲେନ୍‌ର ବାରବନିତାଙ୍କ ପର୍ଯ୍ୟନ୍ତ । କଲେଜ ସ୍କୁଲ ଶିକ୍ଷକଙ୍କଠାରୁ ଆରମ୍ଭ କରି ଅଳସକନ୍ୟା ପର୍ଯ୍ୟନ୍ତ । ସମସ୍ତଙ୍କଠାରୁ କିଛି କିଛି ଶିଖିଛି । ଜୀବନର ଜନପଥରେ ବାଟହୁଡ଼ିଲା ବେଳେ, ଝୁଣ୍ଟିପଡ଼ି ରକ୍ତାକ୍ତ ହେଲାବେଳେ, ପଟିଆର ଚାଷୀ, କାଗଜ କଳର ଶ୍ରମିକଠାରୁ ପାଇଥିବା ଶିକ୍ଷା, ଘାଟିକିଆର ଶବରପଲ୍ଲୀ ଝିଅଠାରୁ ପାଇଥିବା ଶିକ୍ଷା ସହାୟକ ହୋଇଛି । ପୁଣି ଫେରିଚି ଜୀବନର ଜନପଥକୁ ।

ପ୍ରଶ୍ନ : ସ୍ମୃତିରେ କେଉଁ ସବୁ ଘଟଣା ଉଜ୍ଜୀବିତ ରହିଛି ଏପର୍ଯ୍ୟନ୍ତ ?

ଉତ୍ତର : କେତେ କଥା, କେତେ କାହାଣୀ । କଲେଜରେ ପାଦ ଦେଉ ଦେଉ ଛାତ୍ରଆନ୍ଦୋଳନ ଭିତରକୁ ପଶିଗଲି । ଛାତ୍ରସଂଘର ସକ୍ରିୟ ସଭ୍ୟ ହୋଇଗଲି । ମନେପଡୁଛି, ୧୯୪୭ ଅଗଷ୍ଟ ୧୪ ମଧ୍ୟ ରାତ୍ରି । ବର୍ଷାମୁଖର ରାତି । କିନ୍ତୁ ପୋଷ୍ଟର ମାରିବାକୁ ହେବ । ଦିନଯାକ ଦାନ୍ତକାଠି, ପ୍ରେସ କାଳି, ଖବରକାଗଜରେ ପୋଷ୍ଟର ଲେଖା ସରିଚି । ନିରୁପମା ରଥ, ନନ୍ଦିନୀ ପାଣିଗ୍ରାହୀ (ପରେ ଶତପଥୀ), ୰ସାବିତ୍ରୀ ମିଶ୍ର ମିଶି ପୋଷ୍ଟର ଲେଖିଛନ୍ତି । ବରଷା ରାତି । କେଶବ, ଶିବାଜି, ପ୍ରହ୍ଲାଦ ସେଠୀ, ୰ ମୁରାରି ଜେନା, ୰ଧୀର ବିଶ୍ୱାଳ, ୰ ଉଦୟନାଥ ସୁବୁଦ୍ଧିଠାରୁ ଆରମ୍ଭ କରି ୰ ମନମୋହନ ମିଶ୍ର, ୰ଦୁର୍ଗା ମହାନ୍ତି, ୰ଶମ୍ଭୁନାଥ ବିଶ୍ୱାଳଙ୍କ ପର୍ଯ୍ୟନ୍ତ ସମସ୍ତେ, ରାତିତମାମ ପୋଷ୍ଟରମରା ।

ରେଳବାଇ ଧର୍ମଘଟର ଡାକରା । କଟକରୁ ବାହାରିଲୁ କେଶବ, ପ୍ରହ୍ଲାଦ ସେଠୀ ଓ ମୁଁ । ରେଳରାସ୍ତା କଡ଼େ କଡ଼େ ଚାଲିଲୁ ଗ୍ୟାଙ୍ଗ କୁଲିମାନଙ୍କୁ ଭେଟି ଭେଟି । ଗ୍ୟାଙ୍ଗ କୁଲି ସେଡ୍‌ରେ ରାତି ରହଣି । କଟକରୁ ପଳାୟନ ଏବଂ ପ୍ରତ୍ୟାବର୍ତ୍ତନ । କଂଚାଲୁହା ଇସ୍ପାତ ପାଲଟୁଛି । ବାଟରେ ପଳାତକ କାଶୀ ମିଶ୍ର (କାଦର)ଙ୍କ ସାକ୍ଷାତ୍ ଏବଂ ଗୋଟିଏ ରାତିରହଣି ତାଙ୍କ ପାଳଗଦା କୁଡ଼ିଆରେ ।

ପଳାତକ ଜୀବନ । ଜୀବନ କଟୁଛି ଜଙ୍ଗଲ ଭିତରେ, ଆଦିବାସୀ ପଲ୍ଲୀରେ । ଆମେ ଦଳେ ପଳାତକ ଏକାଠି ଥିଲୁ । ତଡ଼ିଲା ଆମକୁ ମିଲିଟାରୀ ପୋଲିସ । ବାଉଁଶ ବଣ ଭିତର ଦେଇ ୰ଦୁର୍ଗା ମହାନ୍ତି, ୰ନଟବର ବନଛୋଡ, ୰ ଗୌରୀ ଦାସ ଏବଂ ମୁଁ ଦୌଡ଼ିଚାଲିଲୁ ।

ପଟିଆ ଜଙ୍ଗଲରୁ ଚନ୍ଦକା, ମେଣ୍ଢାଶାଳ, ରଣପୁର, ବାଙ୍କୀ, ଆଠଗଡ, ଢେଙ୍କାନାଳ, ଚୌଦ୍ୱାର ଦେଇ କଟକ । (ମହାନଦୀରେ ପୋଲ ହୋଇ ନାହିଁ) ପ୍ରାୟ ୧୨୦ ରୁ ୧୪୦ ମାଇଲ । ସେଥିରେ ପୁଣି ବଣୁଆ ହାତୀ ପଲ ମୁହଁରୁ ରକ୍ଷା ପାଇବା ପାଇଁ ପୋଖରୀ (ଦହ) ଭିତରେ ପାଣି ଓ ପଙ୍କ ଭିତରେ ଆପଣାର ଆତ୍ମରକ୍ଷା ।

ସେତିକିବେଳେ ଆମେ କିଛିଦିନ ପାଇଁ କାଳିଆବୋଦା ଆଶ୍ରମର ଏକ ଘରେ ରହିଥିଲୁ ଗୁପ୍ତ ଭାବରେ । ୰ଦୁର୍ଗା ମହାନ୍ତି, ୰ମନମୋହନ ମିଶ୍ର, ୰ଦୁଃଶାସନ ଜେନା, ୰ମାଧବ ସିଂ, କେଶବ ଦାସ ଓ ମୁଁ । କାଳିଆବୋଦା ଶ୍ମଶାନ । ମହାନଦୀବିହାର ହୋଇ ନାହିଁ, ଏକ ବିରାଟ ଉଡ଼ାଜାହାଜ ଓହ୍ଲାଇବା ପଡ଼ିଆ । ରେଳବାଇ ପୋଲରେ ଗାଡ଼ି ଯାଏ, ଲୋକେ ଯାଆନ୍ତି ବେପାରୀ ବି ଯାଆନ୍ତି । ସେମାନଙ୍କୁ ଲୁଟନ୍ତି ମହାନଦୀ ପୋଲଉପରେ । ସେଠାରେ ଆମକୁ ଡକାୟତ ଭାବି ଲୋକେ ଘେରାଉ କରନ୍ତି । ସକାଳେ ପୁଲିସକୁ ଖବର ଦେଇଥାନ୍ତି । ରାତି ୧୨ଟାରୁ ୩ଟା ଭିତରେ ଆମେ ନିତ୍ୟକର୍ମ (ଗାଧୁଆ ସମେତ) ସାରୁ ମହାନଦୀରେ । କାରଣ ଆଶ୍ରମରେ ସମସ୍ତେ ପାହାନ୍ତିଆରୁ ଉଠନ୍ତି । ସନ୍ଦେହ ହେବା ସ୍ୱାଭାବିକ । ପୁଲିସ ଆସିବା ଆଗରୁ ମନମୋହନ ମିଶ୍ରଙ୍କ ଭାଷଣରେ ମୁଗ୍ଧ ଜନତା ଆମକୁ ଛାଡ଼ିଦେଲେ । ଧନେଶ୍ୱର (ଘର ଯାହା ନାମରେ ଭଡ଼ା ନିଆଯାଇଥିଲା) ତାର ସ୍ତ୍ରୀ, ପୁଅଝିଅକୁ ଛାଡ଼ି ଆମେ ପଳେଇଲୁ । କିନ୍ତୁ ଯିବା ପୂର୍ବରୁ ବାବାଙ୍କ ଅନୁମତି ନେବାକୁ ହେଲା । ତାଙ୍କର ମାଟିତଳ ଘର, ସୁଡ଼ଙ୍ଗ ସବୁ ଦେଖା ହୋଇଗଲା । ପୁଲିସ ଆମର ଟେର ପାଇଲାନି ।

ସ୍ମୃତି ଉଖାରୁଚି । ଦେହ ଖରାପ ହୁଏ ସେତିକିବେଳେ । ମୋତେ ଚିକିତ୍ସା ପାଇଁ ଦୁର୍ଗା ମହାନ୍ତି ନେଇଯାଆନ୍ତି କୋଲକାତା । ରହିବାକୁ ହୁଏ କୋଲକାତାର ହାଡ଼କଟା ଲେନରେ । ବାରବନିତା, ଡକାୟତମାନଙ୍କର କେନ୍ଦ୍ର ଏଇ ହାଡ଼କଟା ଲେନ । ସେଇଠି ମୁଁ ରହିଯାଏ ପ୍ରାୟ ଦୁଇମାସ । ଗୋଟିଏ ଘର । ତିନୋଟି ବଡ଼ ବଖରା । ଗୋଟିଏ ବଖରା (ଗୋଟିଏ ଛୋଟିଆ ଘରକୁ ମିଶାଇ) ରେ ଆମେ ତିନିଜଣ ପଳାତକ, ମଝିଘରଟି ଖାଲି । ଆଉ ତା'ପର ବଖରାରେ ଦଳେ ଦୁର୍ଦ୍ଧର୍ଷ ଡକାୟତ । ଦେହରେ ଭୟ ସଂଚାର ହୁଏ । ଦାୟିତ୍ୱରେ ଝିଅଟିଏ । ଗୋଟିଏ ଘରେ ସେ ଭଗିନୀ, ଆଉ ଗୋଟିଏ ଘରେ ସେ ଉପଭୋଗ୍ୟା ବାରବନିତା । ସେ ସ୍ମୃତି ଭୁଲିବାର ନୁହେଁ । ବିଦାୟ ନେଇ ଆସିଲା ବେଳେ ଆଖିରୁ ଲୁହ ଝରାଇ ସେ ଝିଅଟି କହିଥିଲା-ରୁବେନ (ମୋର ଗୁପ୍ତ ନାମ) ତମ ସାଙ୍ଗରେ ତ ଆଉ ଦେଖା ହେବ ନାହିଁ । ତମର ପରିକଳ୍ପିତ ସାମ୍ୟବାଦକୁ ମୁଁ କିନ୍ତୁ ଅପେକ୍ଷା କରିବି, ଏ କଷଣରୁ ମୁକ୍ତି ପାଇଁ । ତା ସାଙ୍ଗରେ ଆଉ ଦେଖା ହୋଇ ନାହିଁ । ପଚାଶ ବର୍ଷରୁ ଉର୍ଦ୍ଧ୍ୱ ସମୟ ଅତିକ୍ରାନ୍ତ । ସାମ୍ୟବାଦ ବି ଆସି ନାହିଁ ।

ସୀମା ଆନ୍ଦୋଳନ । ସହିଦ ସୁନୀଲ ଦେ'ର ଶବକୁ ନେଇ ଶୋଭାଯାତ୍ରା । କଟକ ସହରରେ ଇମିତି ଶୋଭାଯାତ୍ରା ଆଉ ଥରେ କେବେ ହେବ କହିବା କଠିନ । ରାସ୍ତା ଖୁନ୍ଦାଖୁନ୍ଦି, ତଥାପି ଶୋଭାଯାତ୍ରାର ମୁଣ୍ଡ ଖାନନଗରରେ ପହଞ୍ଚିଲା ବେଳକୁ ଶୋଭାଯାତ୍ରାର ଶେଷ ଭାଗ ମେଡିକାଲ ଆଜିର ରକ୍ତଭଣ୍ଡାରରୁ ବାହାରି ନାହିଁ । କେବଳ ଚୌଦ୍ୱାର, ପଟିଆରୁ ପ୍ରାୟ ୪୦/୫୦ ହଜାର ଲୋକ ଆସିଥିଲେ ଶୋଭାଯାତ୍ରାକୁ ।

ଶେଷସ୍ମୃତି କଟକନଗର ହଜାର ବର୍ଷପାଳନର ଉଦ୍‌ଘାଟନ । କାଠଯୋଡ଼ି ପୋଲଠାରେ ନଈବନ୍ଧ ଉପରେ ବିଡ଼ାନାସୀ ପର୍ଯ୍ୟନ୍ତ ଜନସମାଗମ, ଦେଖିବା ପାଇଁ କଟକ ସହରକୁ ସାଲ୍ୟୁଟ ବିମାନ ବାହିନୀ ଦ୍ୱାରା । କୁହାଯାଏ ୧୬ରୁ ୨୦ ଲକ୍ଷ ଲୋକ ହୋଇଥିଲେ ଏଇ ସମାଗମରେ । କଟକ ସହର ସହସ୍ର ବାର୍ଷିକୀ ସହର ଭାବରେ ଛିଟିକିଗଲା ବିଶ୍ୱ ମାନଚିତ୍ରକୁ । ତଥାକଥିତ ସମାଲୋଚକମାନଙ୍କର ପାଟି ବନ୍ଦ ହୋଇଗଲା । ଜଷ୍ଟିସ୍ ହରିହର ମହାପାତ୍ର ଏଥିପାଇଁ ସ୍ମରଣୀୟ ହୋଇ ରହିବେ । ଇମିତି କେତେ ସ୍ମୃତି, କେତେ କଥା ହାବୁକା ମାରୁଛି । ସବୁ କ'ଣ କହିହେବ ?

ପ୍ରଶ୍ନ : ଆଚ୍ଛା, ସୀମା ଆନ୍ଦୋଳନରେ ଆପଣ ଏକ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ସେ ସଂଗ୍ରାମ କ'ଣ ସଫଳ ହୋଇଛି ?

ଉତ୍ତର : କ'ଣ ଲାଭ ଉଖାରି ସେ ସ୍ମୃତିକୁ । ଷଢ଼େଇକଳା-ଖରସୁଆଁ ଫେରିବାର ପ୍ରଶ୍ନ ଉଠୁ ନାହିଁ ଝାଡ଼ଖଣ୍ଡ ହେଲା ପରେ । କାରଣ ଏଇ ଦୁଇ ରାଜ୍ୟର ଅଧିକାଂଶ ହେଉଛନ୍ତି ଆଦିବାସୀ । ଆମର ଦାବି ଥିଲା ଯେ ସେମାନଙ୍କର ସମ୍ପର୍କ ଥିଲା ଓଡ଼ିଶା ଏବଂ ଓଡ଼ିଆ ସହିତ ବେଶି । ଏହା ସହିତ ଦ୍ୱିତୀୟ ବୃହତ୍ତମ ହେଉଛନ୍ତି ଉକ୍ତ ଦୁଇ ରାଜ୍ୟରେ ଓଡ଼ିଆ । ସେଥିଯୋଗୁଁ ସେ ଦୁଇଟି ରାଜ୍ୟ ଓଡ଼ିଶାକୁ ଆସିବା ଉଚିତ । କିନ୍ତୁ ନା ଅଛି ଆମର ରାଜନୀତିକ ପ୍ରଭାବ ନା ଅଛି ଲବି । ଏହା ଛଡ଼ା ଏକ ଜାତୀୟ ଆନ୍ଦୋଳନକୁ ଗାଦିରୁ ତଡ଼ିବାର ବା ଗାଦିକୁ ଫେରିବାର ମାଧ୍ୟମ ଭାବରେ ଯଦି ବ୍ୟବହାର କରାଯାଏ ତା' ହେଲେ ଜାତୀୟ ସ୍ୱାର୍ଥ ରକ୍ଷା ହେବ କିପରି ?

ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିଲେ ନବବାବୁ । ପଣ୍ଡିତ ଲୋକ । ଚିନ୍ତାରେ ସାମ୍ୟବାଦୀ । କିନ୍ତୁ ବେଶି ପଣ୍ଡିତ ଯୋଗୁଁ ନିଷତ୍ତି ଗଣ୍ଡଗୋଳିଆ ହୋଇଯାଏ । କଟକରେ ମୋତେ କହିଲେ, ଯାହା ପାରୁଛ କର । ପୋଡ଼ ଜାଳ କାରଣ ତା'ନ ହେଲେ ସେମାନେ ଶୁଣିବେ ନାଇଁ । ଆମେ ସବୁ ଇସ୍ତଫା ଦେଉଛୁ । ମୁଁ ଯାଉଛି । ସେ ଫେରିଲେ ଗୁର୍ଖା ଆଉ ଘରଓ୍ୱାଲି ମିଲିଟାରୀ ଫୋର୍ସ ନେଇ । ତାକୁ କୁଆଡ଼େ ଜବାହରଲାଲ ବୁଝାଇଦେଲେ ଏହା ବିଚ୍ଛିନ୍ନତାବାଦୀ ଆନ୍ଦୋଳନ । ସେଇ କଥା ସେ ବୁଝାଇ ପାରିଲେ ନାହିଁ ତେଲୁଗୁମାନଙ୍କୁ । ସେମାନେ ଗାଲରେ ଥାପଡ଼ ମାରି ଆନ୍ଧ୍ରପ୍ରଦେଶ ନେଲେ । ସେ କଥା ସେ ବୁଝାଇ ପାରିଲେ ନାହିଁ ମହାରାଷ୍ଟ୍ରବାସୀଙ୍କୁ । ସେମାନେ ବମ୍ବେ (ବର୍ତ୍ତମାନ ମୁମ୍ବାଇ) ସହରକୁ ନ ପାଇ ସ୍ୱତନ୍ତ୍ର ମହାରାଷ୍ଟ୍ର ପ୍ରଦେଶ ନେଲେ, ଆପଣାର ଐକ୍ୟବଦ୍ଧ ସଂଗ୍ରାମ ଫଳରେ । ସେ କଥା କାଟିଲା ନାହିଁ ବିଧାନ ରାୟ ଶ୍ରୀକୃଷ୍ଣ ସିଂହ ମେଣ୍ଟକୁ ଯେତେବେଳେ ପ୍ରତ୍ୟାଖ୍ୟାନ କରି ବଂଗ ବିହାରକୁ ମିଶାଇ ଗୋଟିଏ ରାଜ୍ୟ ଗଠନ କରିବାର ଚକ୍ରାନ୍ତକୁ ପଣ୍ଡ କରିଦେଲେ ବଂଗ-ବିହାରବାସୀ ।

ଓଡ଼ିଶାରେ ଖାଲି ସାର ହେଲା ଯେ ଇସ୍ତଫା ଦେବି ଇସ୍ତଫା ଦେବି କହି ନବବାବୁ କ୍ଷମତାରୁ ଗଲେ ଏବଂ ଫୁଟବଲର ଫରଓ୍ୱାର୍ଡ଼ରେ ଖେଳୁଥିବା ଖେଳାଳି ଡକ୍ଟର ହରେକୃଷ୍ଣ ମହତାବଙ୍କର କିଛିଦିନ ଗୋଲକିପର ଭାବରେ (ରାଜ୍ୟପାଳ ପଦବୀରେ)ଖେଳିବାର ସମାପ୍ତ ହେଲା ଏବଂ ସେ ଫେରିଲେ କ୍ଷମତାକୁ । ଆମେ ଲାଠି ଗୁଳି ଖାଇବା ସାର ହେଲା । ବର୍ତ୍ତମାନ

ମୁଖ୍ୟ ପ୍ରଶ୍ନ ହେଉଛି ଅନ୍ୟ ରାଜ୍ୟରେ ରହିଯାଇଥିବା ଓଡ଼ିଆମାନେ କିପରି ଓଡ଼ିଆ ପଢ଼ିବେ, ଉତ୍କଳୀୟ ସଂସ୍କୃତି କେମିତି ଅତୁଟ ରହିବ । ସେଇଟା ଆମର ଜାତୀୟ ଦାୟିତ୍ୱ ।

ପ୍ରଶ୍ନ : ଆପଣ ତ ବହୁକାଳ ଧରି ସମାଜସେବୀ, ରାଜନୀତିକ କର୍ମୀ ଭାବରେ କାମ କରିଛନ୍ତି । ଓଡ଼ିଶାରେ ଖଣିଜ ସମ୍ପଦ, ବନ୍ୟସମ୍ପଦ, ଜଳସମ୍ପଦ ଭରପୂର, ତଥାପି ଓଡ଼ିଶା ଦରିଦ୍ର କାହିଁକି ?

ଉତ୍ତର : କାରଣ ଦୁଇଟି, ପ୍ରଥମ ହେଲା ଯେ ରାଜନୀତିକ ଇଚ୍ଛାଶକ୍ତିର ଅଭାବ, ଆପଣାର ଦାବିକୁ ଐକ୍ୟବଦ୍ଧ ଭାବରେ ଉପସ୍ଥାପନରେ ବ୍ୟର୍ଥତା ଏବଂ ଉପଯୁକ୍ତ ଲବିର ଅଭାବ ।

ମନେପଡୁଛି, ୰କେ.ଡି. ମାଲବ୍ୟ ମୋର ବନ୍ଧୁ । ସେ କେନ୍ଦ୍ରରେ ମନ୍ତ୍ରୀ ଥାଆନ୍ତି । ଆନ୍ଧ୍ରରୁ ଏକ ପ୍ରତିନିଧି ଦଳ ତାଙ୍କୁ ଭେଟିବାକୁ ଆସିଲେ । ବଂଧୁ ଶ୍ୟାମସୁନ୍ଦର ମହାପାତ୍ର ଏବଂ ମୁଁ ଦୈବାତ୍ ସେଠାରେ ଉପସ୍ଥିତ ଥିଲୁ । କିଛି ଦଳର ନେତା ସେତେବେଳେ ଜେଲରେ ଥିଲେ । ତଥାପି ସବୁ ଦଳ ମିଶି ଏକାଠି ଆସିଥିଲେ । ମାଲବ୍ୟ ସେମାନଙ୍କୁ ଲକ୍ଷ୍ୟ କରି ପରିହାସରେ କହିଲେ ଯେ ଆପଣମାନଙ୍କ ଭିତରେ ଲଢ଼ାଇ ସରିଗଲାଣି କି ? ସେମାନେ ଉତ୍ତରଦେଲେ ଆମ ଭିତରେ ଲଢ଼ାଇ ତ ଆନ୍ଧ୍ର ଭିତରେ । ଆଜି ଆସିଛୁ ଏକାଠି ଆପଣଙ୍କ ସହିତ ଲଢ଼ିବା ପାଇଁ । ମାଲବ୍ୟଜୀଙ୍କର ପାଟି ଚୁପ୍ । ସେମାନଙ୍କର ଅନେକ ଦାବି ଗୃହୀତ ହୋଇଗଲା । ଏହା କହିବା ନିଷ୍ପ୍ରୟୋଜନ । ଓଡ଼ିଶାରେ ତାହା ହୋଇପାରି ନାହିଁ । ସମସ୍ୟା ସେଇଠି ।

ଦ୍ୱିତୀୟ କାରଣ ହେଲା ପ୍ରାକୃତିକ ସଂପଦର ଉପଯୁକ୍ତ ବିନିଯୋଗର ଅଭାବ । ଖଣି ଖୋଳୁ ଖୋଳୁ ଅରଣ୍ୟ ଗଲାଣି । ଉତ୍ତାପ ବଢ଼ି ଚାଲିଛି । ଅରଣ୍ୟ ରହିଛି ବନ୍ଧୁକଧାରୀ କାଠ ମାଫିଆମାନଙ୍କ ହାତରେ । ତାକୁ ଜଗିଛନ୍ତି ବାଡ଼ିଟିଏ ହାତରେ ଧରିଥିବା ଫରେଷ୍ଟ ଗାର୍ଡ଼ । ଓଡ଼ିଶାର ବନ୍ୟ ବିଭାଗଟା ଠିଆ ହୋଇଛି ଓଲଟା ପିରାମିଡ଼ ଭଳି । ତଳେ ଯେତିକି ଫରେଷ୍ଟ ଗାର୍ଡ଼ ସେତିକି । ଉପରେ ଅଫିସରମାନଙ୍କୁ ମାଳ । ଫାଇଲର ଅରଣ୍ୟ, ବୃକ୍ଷଲତାର ନୁହେଁ । କୃଷିଭିତ୍ତିକ ଶିଳ୍ପ ନାହିଁ, ଯେତିକି ଅଛି ମରମର ଅବସ୍ଥା । ଆଉ ବୃହତ୍ ଶିଳ୍ପ ଯୋଗୁଁ ଜାତୀୟ ଆୟ ସିନା ବଢ଼ି ଚାଲିଛି କିନ୍ତୁ ଆମ ଲୋକଙ୍କର ଅବସ୍ଥାରେ ଗୁଣାତ୍ମକ ପରିବର୍ତ୍ତନ କାହିଁ ? ପର୍ଯ୍ୟଟନ ଶିଳ୍ପର ଅଭିବୃଦ୍ଧି ଆମ ପାଇଁ ଏକାନ୍ତ ଆବଶ୍ୟକ, କାରଣ ଏହି ଶିଳ୍ପ ପରିବେଶକୁ ବେଶି ସନ୍ତୁଳିତ କରେ ନାହିଁ । ଏ ପର୍ଯ୍ୟନ୍ତ ଆମର ଅଧିକାଂଶ ପର୍ଯ୍ୟଟକ ହେଉଛନ୍ତି ତୀର୍ଥଯାତ୍ରୀ (ହିନ୍ଦୁ, ବୌଦ୍ଧ, ମୁସଲମାନ) ଏବଂ ଗବେଷକ । ସେତିକିର ବିନିଯୋଗ ହୋଇପାରିଲେ କେତେ ବିକାଶ ହୋଇପାରିବ । ହସ୍ତ ଏବଂ କୁଟୀର ଶିଳ୍ପର ବିକାଶ ପର୍ଯ୍ୟଟନ ସହିତ ସମ୍ପୃକ୍ତ ନିବିଡ଼ ଭାବରେ । ଓଡ଼ିଶାରେ ସଂସ୍କୃତି ପର୍ଯ୍ୟଟନ, ହସ୍ତଶିଳ୍ପ ଓ କୁଟୀର ଶିଳ୍ପ, କୃଷିଭିତ୍ତିକ ଶିଳ୍ପକୁ (Agro Industries) ଜଣେ ମନ୍ତ୍ରୀଙ୍କ ଦାୟିତ୍ୱରେ ଏବଂ ଏଗୁଡ଼ିକୁ ସମ୍ମିଳିତ ବିଭାଗରେ ରଖାଯିବା ଉଚିତ ।

ପ୍ରଶ୍ନ : ଆପଣ ପଢ଼ିଲାବେଳେ ଗୋଟିଏ ବିଶ୍ୱବିଦ୍ୟାଳୟ ଥିଲା । ବର୍ତ୍ତମାନ ନଅଟି ବିଶ୍ୱବିଦ୍ୟାଳୟ ହେଉଛି ଏବଂ ରେଭେନ୍ସା ବିଶ୍ୱବିଦ୍ୟାଳୟ ହେଉଛି ଦଶମ ବିଶ୍ୱବିଦ୍ୟାଳୟ । ଆପଣ କ'ଣ ଭାବୁଛନ୍ତି ଶିକ୍ଷାର ବିକାଶ ସମ୍ପର୍କରେ ?

ଉତ୍ତର : ବିଶ୍ୱବିଦ୍ୟାଳୟ ବଢ଼ିଛି । କିନ୍ତୁ ଅନେକ ରିପିଟେସନ ବା ଦୋହରାଇବାକୁ ଏଡ଼ି ଦିଆଯାଇପାରିଥାନ୍ତା । ନୂଆ ନୂଆ ବିଭାଗ ଖୋଲିଲେ ଗୋଟିଏ ସ୍ଥାନର ପିଲା ଆଉ ସ୍ଥାନକୁ ଯାଆନ୍ତେ ପଢ଼ିବା ପାଇଁ । ବଲାଙ୍ଗୀର ପିଲା ଭୁବନେଶ୍ୱର ଆସନ୍ତେ, କଟକ ପିଲା ସମ୍ବଲପୁର ଯାଆନ୍ତେ, ସମ୍ବଲପୁର ପିଲା ବାଲେଶ୍ୱର ଯାଆନ୍ତେ, ବାରିପଦା ପିଲା ବ୍ରହ୍ମପୁର ଯାଆନ୍ତେ । ବିଭାଗ ରିପିଟ୍ ହେଲେ ବିନିମୟ କମିଯିବ, ସଂହତି କମିଯିବ । ସେଇଟା ଶିକ୍ଷାର ପ୍ରକୃତ ଦର୍ଶନର ପରିପନ୍ଥୀ । ଶିକ୍ଷା ସହିତ ନିଯୁକ୍ତି ଜଡ଼ିତ । ନିଯୁକ୍ତିର ସମ୍ଭାବନାକୁ ଆଖିଆଗରେ ରଖି ସେଇ ଅନୁଯାୟୀ ବିଭାଗ ଖୋଲାଯିବା ଉଚିତ ।

ଓଡ଼ିଶାରେ ଇସ୍ପାତ ଶିଳ୍ପ ପାଇଁ ୩୫ରୁ ଉର୍ଦ୍ଧ୍ୱ ରାଜିନାମା ସ୍ୱାକ୍ଷରିତ ହୋଇଛି । କେତେ ଓଡ଼ିଆ ପିଲା ସେଇଥିରେ ନିଯୁକ୍ତି ପାଇବେ ଏବଂ ସେଥିପାଇଁ ବିଶ୍ୱବିଦ୍ୟାଳୟମାନେ ଆଗତୁରା ପଦକ୍ଷେପ କ'ଣ ନେଲେଣି ? ଚଳିତ ବର୍ଷ ଏବଂ ଆଗାମୀ ବର୍ଷ ଯେତିକି ଡାକ୍ତର ଅବସର ନେବେ ସେ ଖାଲି ଜାଗା ପୂରଣ କରିବା ପାଇଁ ସେତିକି ଡାକ୍ତର ମେଡିକାଲ କଲେଜମାନଙ୍କରୁ ବାହାରିବା ସମ୍ଭବ ନୁହେଁ । ତାର ଯୋଜନା ପାଞ୍ଚବର୍ଷ ପୂର୍ବରୁ ହେବା ଉଚିତ ଥିଲା । ସେଇ ବିଷୟ ସବୁ ଆଭିମୁଖ୍ୟ ପାଇଁ ପ୍ରଯୁଜ୍ୟ ।

ପ୍ରଶ୍ନ : ବହୁ ସାମ୍ୟବାଦୀ ଏବଂ ଅନ୍ୟାନ୍ୟ ଦେଶ ଆପଣ ବୁଲିଛନ୍ତି । ସାମ୍ୟବାଦୀ ରାଷ୍ଟ୍ରମାନଙ୍କ ମଧ୍ୟରୁ କେବଳ ଚୀନ, ଭିଏତନାମ, କ୍ୟୁବା ଛଡ଼ା ବାକି ସବୁଠାରେ ସାମ୍ୟବାଦ ଭୁଶୁଡ଼ି ପଡ଼ିଛି । ଆପଣଙ୍କର କ'ଣ ମତ ସାମ୍ୟବାଦର ଭବିଷ୍ୟତ୍ ଉପରେ ?

ଉତ୍ତର : ସାମ୍ୟବାଦର ଦର୍ଶନ ବୈଜ୍ଞାନିକ । ସମାଜର ସେ ଧାରାକୁ ସାମୟିକ ବିପର୍ଯ୍ୟୟ ନଷ୍ଟ କରିପାରିବ ନାହିଁ । ସାମ୍ୟବାଦୀ ସମାଜ ଭୁଶୁଡ଼ି ପଡ଼ିଲା ପ୍ରଥମେ ସୋଭିଏତ ୟୁନିଅନରେ । କେହି ତାକୁ ଭାଙ୍ଗି ନାହାନ୍ତି, ଆପଣାର ଭାରାରେ ତାହା ଭୁଶୁଡ଼ି ପଡ଼ିଲା । ଶ୍ରେଣୀହୀନ ସମାଜ ଭିତରେ ଜନ୍ମହେଲା ନୂତନ ଶ୍ରେଣୀ, ପାର୍ଟି ଆପାର୍ଟଚିକ ବା ନେତାଙ୍କୁ ନେଇ ଗ୍ରୁପ । ସେମାନେ ହେଲେ ସୁବିଧାବାଦୀ ଗୋଷ୍ଠୀ । ସମାଜର ସବୁ ସୁବିଧାକୁ ସେମାନେ ହାତେଇ ନେଲେ । ଗଣତାନ୍ତ୍ରିକ କେନ୍ଦ୍ରୀକରଣରୁ ଗଣତନ୍ତ୍ରଟା କଟିଗଲା । ପର୍ସନାଲଟି କଲଟରର ଜନ୍ମ ହେଲା । ନେତା ବା ନେତ୍ରୀଙ୍କୁ ହାଁଜୀ କରିବା ହେଲା ଅଭ୍ୟାସ । ଲେନିନବାଦୀ ତ୍ୟାଗ ରହିଲା ନାହିଁ । ଲେନିନଙ୍କ ପାଇଁ ଗାଁ ଗହଳିରୁ ଆସୁଥିଲା ଖାଦ୍ୟ, ଫଳ, ଉପହାର ଭାବରେ । ଲେନିନ ସେସବୁ ଗ୍ରହଣ କରୁଥିଲେ କିନ୍ତୁ ପଠାଇଦେଉଥିଲେ ଶିଶୁ ସ୍କୁଲମାନଙ୍କୁ । ନିଜେ କଳାରୁଟି ଏବଂ ଚା' ଖାଇ ଚଳୁଥିଲେ । ସେଇ ବ୍ୟବସ୍ଥା ରହିଲା ନାହିଁ ।

ଭାରତବର୍ଷରେ ବି ସେଇ ଅବସ୍ଥା ଦେଖାଦେଇଛି । ଦେଶ ଆମର ଇଣ୍ଡିଆ ଏବଂ ଭାରତରେ ବିଭକ୍ତ ହୋଇଯାଇଛି । ଭ୍ରଷ୍ଟାଚାରୀ ରାଜନୀତିକ ନେତା, ଭ୍ରଷ୍ଟାଚାରୀ ବେପାରୀ ଏବଂ ତାଙ୍କର ପ୍ରତିନିଧି, ମାଫିଆମାନେ ରହିଛନ୍ତି ଇଣ୍ଡିଆରେ । ସେମାନେ ଶତକଡ଼ା ଆଠ ।

ବାକି ସମସ୍ତେ ରହିଛନ୍ତି ଭାରତରେ । ଆଦିବାସୀ, କ୍ଷେତମୂଲିଆ, ମଜୁରିଆ, ଛୋଟ କାରିଗର (ଯେପରି ମୋଚି, ଦର୍ଜୀ) ବସ୍ତିବାଲା ମଧ୍ୟବିତ୍ତ,.....ରହିଛନ୍ତି ଭାରତରେ । ବିଧାନସଭା, ପାର୍ଲ୍ୟାମେଣ୍ଟର ସଭ୍ୟମାନଙ୍କର ଦରମା, ଭତ୍ତା, ସୁବିଧା ସବୁ ବଢୁଛି । ନିର୍ବାଚିତ

ପଦବୀ ପାରିବାରିକ ହୋଇଛି । ସେମାନଙ୍କର ଅବସର ବୟସ ନାହିଁ କି ଅବସର ନେବାର ନାହିଁ । ସେମାନଙ୍କ ମଧ୍ୟରୁ ଅନେକ ନିଜେ ମାଫିଆ ବା ସେମାନଙ୍କର ପାଟ୍ରନ ।

ମିଲୋଭାନ ଜିଲାସଙ୍କର ଐତିହାସିକ 'ନିଉ କ୍ଲାସ' ଏଠି ବି ଗଢ଼ି ଉଠୁଛି । ବିକାଶ ହେଉଛି, ବୈଷମ୍ୟ ବି ବଢୁଛି । ଗଣତନ୍ତ୍ର, ନିର୍ବାଚନ, ଭୋଟ, କଲଗାର୍ଲ, ନାଇଟ କ୍ଲବ ସବୁ ସେଇ ୮% ଲୋକଙ୍କ ପାଇଁ । ନିର୍ବାଚନ ଖର୍ଚ୍ଚ ବଢ଼ିଚାଲିଛି । ଲକ୍ଷ, କୋଟିରେ । ବୁଲେଟ୍ ନୁହେଁ ବ୍ୟାଲଟ ପାଇଁ ଆହ୍ୱାନ ଦେଉଥିବା ପ୍ରଧାନମନ୍ତ୍ରୀ, ନିଜେ ନିର୍ବାଚିତ ନୁହନ୍ତି ନିଜ ରାଜ୍ୟରୁ, ଅନ୍ୟ ରାଜ୍ୟରୁ ସେ ରାଜ୍ୟସଭା ସଦସ୍ୟ ।

ବିକାଶ ସହିତ ଉତ୍କଟ ବୈଷମ୍ୟ ଏବଂ ଭ୍ରଷ୍ଟାଚାର ଲୋକଙ୍କୁ ଆକର୍ଷିତ କରୁଛି ବିକଳ୍ପ ରାସ୍ତାକୁ । କେତେଟା ନିର୍ବାଚନ ଗଲାଣି ? ଆଉ ନୁହେଁ, ବୀତସ୍ପୃହ ମଣିଷ ଖୋଜୁଛି ବିକଳ୍ପ । ମାଓବାଦୀମାନଙ୍କର ପ୍ରଭାବ ବଢୁଛି, ସବୁ ପ୍ରକାର ସାମରିକ ପଦକ୍ଷେପ ସତ୍ତ୍ୱେ , କାରଣ ଅସଲ ମଞ୍ଜି ରହିଯାଇଛି ସେମିତି । ଆର୍ଥନୀତିକ ବୈଷମ୍ୟ, ସାମାଜିକ ଅନ୍ୟାୟ, ଭ୍ରଷ୍ଟାଚାର ବସା ବାନ୍ଧିଛି । ତେଣୁ ସାବଧାନ !

ହୁଏତ ନୈରାଶ୍ୟ ହୋଇଯାଇପାରେ । ସେ ଆଶଙ୍କା ନିଶ୍ଚିତ ଭାବରେ ରହିଛି । ବିପ୍ଳବର ଅର୍ଥ ନୈରାଶ୍ୟ (Chaos) ନୁହେଁ । ସମାଜର ଗୁଣାତ୍ମକ ପରିବର୍ତ୍ତନର ନାମ ହେଉଛି ବିପ୍ଳବ । ଆମେ ଏକ ଗଣତାନ୍ତ୍ରିକ ବ୍ୟବସ୍ଥାରେ ରହିଛୁ । ଏହା ଆମର ବିଶ୍ୱାସ । କିନ୍ତୁ ଭୋଟ ହୋଇଯାଇଛି ଦୁର୍ମୂଲ୍ୟ । ଭାରତର ପ୍ରଧାନମନ୍ତ୍ରୀ ନିଜେ ପ୍ରତ୍ୟକ୍ଷ ନିର୍ବାଚନରେ ପରାଜିତ । ତେଣୁ ସେ ଆସିଛନ୍ତି ସୁଦୂର ଆସାମରାଜ୍ୟରୁ ରାଜ୍ୟସଭାକୁ । କାରଣ ? ଭୋଟରେ ପାଣ୍ଡିତ୍ୟ, ଅଙ୍ଗୀକାର, ରାଜନୀତିକ ବିଶ୍ୱାସର ମୂଲ୍ୟ ହଜିଯାଉଛି । ଅର୍ଥବଳ, ବାହୁବଳ ହୋଇଯାଇଛି ନିୟାମକ । ରାଜନୀତି ପାଲଟିଛି ପେସା, ବିଶ୍ୱାସ ନୁହେଁ ।

ଗଣତନ୍ତ୍ରର ତିନୋଟି ସ୍ତମ୍ଭ । ବର୍ତ୍ତମାନ ସେ ତିନିଙ୍କ ଭିତରେ ବିବାଦ ଘମାଘୋଟ । ବିଧାନସଭା, ଲୋକସଭାକୁ କ୍ରମଶଃ ମାଫିଆମାନେ ବେଶି ପଶିଆସୁଛନ୍ତି । ଅଫିସରମାନେ ରାଜନୀତିକ ନେତାଙ୍କ ପରି ଭ୍ରଷ୍ଟାଚାରୀ ପାଲଟୁଛନ୍ତି । ସଚ୍ଚୋଟ ଅଫିସରମାନେ ଅତିଷ୍ଠ ହୋଇ ଗୁପ୍ତ ଭୋଟ ଆପଣା ଭିତରେ କରି ସବୁଠାରୁ ବେଶି ଭ୍ରଷ୍ଟାଚାରୀ ଅଫିସରମାନଙ୍କୁ ଚିହ୍ନଟ କରିବାକୁ ଉଦ୍ୟମ କରୁଛନ୍ତି ।

ସୁପ୍ରିମକୋର୍ଟ ଏବଂ ପାର୍ଲାମେଣ୍ଟ ମୁହାଁମୁହିଁ । ତମ କଥା ତମେ ବୁଝ । ଆମ କାମ ଆମେ କରିବୁ । କୋର୍ଟ ସବୁ ବନ୍ଦ କରିଦେଇ ତମେ ଯାହା ପାରୁଛ କରିଯାଅ । କିଛି ଆପତ୍ତି ନାହିଁ ସେଥିରେ । ତେଣେ ହାଇକୋର୍ଟର କିଛି ବିଚାରପତି କ୍ଲବର ମାଗଣା ମେମ୍ବର ହେବା ଲୋଭରେ ବା ମାଗଣା ମୋବାଇଲ ଫୋନ ପାଇବା ଲୋଭରେ ରାୟ ଦେଉଛନ୍ତି ବିଚିତ୍ର । ଏଭଳି ଉଦାହରଣ ବଢ଼ି ଚାଲିଛି ଏବଂ ବିଚାରପତିମାନଙ୍କୁ ଆକାଉଣ୍ଟେବଲ ବା ଉତ୍ତରଦାୟୀ କରିବା ପାଇଁ ଉଦ୍ୟମ ଆରମ୍ଭ ହୋଇଛି ।

ଆଉ ଚତୁର୍ଥ ସ୍ତମ୍ଭ । ସେମାନଙ୍କୁ ଜିଣିବା ପାଇଁ ଅର୍ଥଠାରୁ ବାହୁ ପର୍ଯ୍ୟନ୍ତ ସବୁର ଭୟ ଦେଖାଯାଉଛି । ସଫଳ ପୂରା ହୋଇପାରୁ ନାହିଁ । କିନ୍ତୁ ଉଦ୍ୟମ ଅବ୍ୟାହତ । ଗଣତନ୍ତ୍ରର

ଚାରୋଟି ସ୍ତମ୍ଭ ଦୋହଲିବାକୁ ଆରମ୍ଭ କଲେ ବିକଳ୍ପର ସନ୍ଧାନ ଲୋକେ କରିବେ ନା ନାହିଁ ? ମଦ, ମାଫିଆ, ମର୍ଡର ଆଦି ହୋଇଗଲା ଅବଶ୍ୟମ୍ଭାବୀ, ତା' ହେଲେ ମାଓବାଦୀ ହେବା ପାଇଁ କେତେ ବାଟ ?

ପ୍ରଶ୍ନ : କଟକରେ ଦୀର୍ଘଦିନ ରହିଲେଣି, କ୍ୟାପିଟାଲ ତ ହୋଇଛି ଆପଣଙ୍କର ଆଖିଆଗରେ । କ'ଣ ମତ ଆପଣଙ୍କର, ଏଇ ଦୁଇ ସହର ଉପରେ ?

ଉତ୍ତର : ମୁଁ କଟକ ଆସିଲି ରହିବା ପାଇଁ ସ୍ୱାଧୀନତାର ପୂର୍ବରୁ । ଆଗରୁ ବୁଲି ଆସିଛି ଅନେକ ଥର । କିନ୍ତୁ ପାଠ ପଢ଼ିବା ପାଇଁ ଆସି ଏଇଠି ରହିଗଲି, କଟକିଆ ହୋଇ ।

ମନେପଡୁଛି, କଟକ ସହରର ସହସ୍ର ବାର୍ଷିକୀ ଉତ୍ସବର ସାଫଲ୍ୟ ପରେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ସେକ୍ରେଟେରୀ ବଂଧୁ ପ୍ୟାରୀମୋହନ ପରିହାସରେ କହିଲେ ଯେ ଯାହାହେଉ ଢେଙ୍କାନାଳ ଜିଲ୍ଲା (ସେତେବେଳେ ଅନୁଗୋଳ ଢେଙ୍କାନାଳ ଜିଲ୍ଲା ଅନ୍ତର୍ଭୁକ୍ତ)ର ଲୋକ ଆସି କଟକ ସହରର ସହସ୍ରବାର୍ଷିକୀ କଲେ ।

ମୁଁ ଉତ୍ତର ଦେଲି ନାଇଁ, ସେମାନେ ଖାଲି ମୁଖ୍ୟମନ୍ତ୍ରୀଙ୍କ ସେକ୍ରେଟେରୀ (ପ୍ୟାରୀ ମୋହନଙ୍କ ଘର ତାଳଚେର)ମୁଖ୍ୟମନ୍ତ୍ରୀ (ନନ୍ଦିନୀ ଶତପଥୀ), ଚିଫ୍ ଜଷ୍ଟିସ୍ (ଜଷ୍ଟିସ ଗତିକୃଷ୍ଣ ମିଶ୍ର), ବୋର୍ଡ ଅଫ ରେଭିନ୍ୟୁର ସଦସ୍ୟ (ଉମାକାନ୍ତ ମିଶ୍ର) ହେବେ, ଆଉ କିଛି ହେବେ ନାଇଁ ନା କ'ଣ ? ବହୁ ହସ ହେଲା । ସମସ୍ତେ ସେଥିରେ ଯୋଗଦେଲେ । କଟକ ସହରର ସେ ଭାଇଚାରା ଆଉ ନାହିଁ । ହାମ୍ ସାହୀର ଝିଅ ଉପରେ କିଏ ହାତ ଦେବ, ତା ହାତଟା କଟିଯିବ ନାଇଁ ? ସେ ସ୍ପିରିଟ ଆଜି ନାହିଁ । ସେ ଦିନ ଭିକାରି (କଟକ ସହର ଶାନ୍ତି କମିଟିର ସମ୍ପାଦକ)କୁ ମୁଁ ସେଇ କଥା କହୁଥିଲି । ପ୍ରଭାତ (ପ୍ରଭାତ ତ୍ରିପାଠୀ, ପୂର୍ବତନ ଏମ.ଏଲ.ଏ)କୁ ମଧ୍ୟ ସେଇଆ କହିଛି । ଉଭୟ ମୋର ବ୍ୟକ୍ତିଗତ ବନ୍ଧୁ ।

ମଣି ସାହୁ ଛକରେ ସେ ସମୟରେ ଗଣକବି ବୈଷ୍ଣବ ପାଣିଙ୍କ ଯାତ୍ରା ହୁଏ । ସାରା କଟକ ସହରରୁ, ପାଖ ଗାଁମାନଙ୍କରୁ ଝିଅବୋହୂମାନେ ପଟି, ଲଣ୍ଠନ ନେଇ ଆସନ୍ତି ରାତିରେ ଯାତ୍ରା ଦେଖିବାକୁ । ଆଜି ତାହା-ମୋ ରହିବା ଘର ଆଗରେ କଳାବିକାଶ କେନ୍ଦ୍ରକୁ ଝିଅମାନେ ଆସିବା ପାଇଁ ଏସ୍କର୍ଟ ଦରକାର ପଡୁଛି ।

ସେତେବେଳେ କଟକର ଲୋକସଂଖ୍ୟା କେତେ ଥିଲା ? ତଥାପି କଟକ ସହରରେ ତିନିଟା ରଂଗମଂଚ ଚାଲୁଥିଲା, ସପ୍ତାହକୁ ଛଅଦିନ । ଆଉ ଆଜି ? ସେତେବେଳେ କଟକ ସହରରେ ସଭା ସମିତି କରିବା ପାଇଁ ଖୋଲା ଜାଗା ଥିଲା ଅନେକ । ଆଜି ଆଦୌ ନାହିଁ । ଲୋକ ବି ସେମିତି ଆସୁ ନାହାନ୍ତି ସଭା ସମିତିକି । କେବଳ ଫିଲ୍ମଷ୍ଟାର, କ୍ରିକେଟଖେଳାଳିଙ୍କ ପାଇଁ ଭିଡ଼ । ସେତେବେଳେ ସେମିତି ନ ଥିଲା ।

କଟକ ସହର ଧୀରେ ଧୀରେ ମୁରବୀଶୂନ୍ୟ ହୋଇଯାଇଛି । ମନେପଡୁଛି ସାମ୍ପ୍ରଦାୟିକ ଦଙ୍ଗାର ସମୟ । ମହତାବବାବୁ କହିଲେ ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କ ଘରେ । ଡାକ ବୀରେନ (ବୀରେନ ମିତ୍ର)କୁ । ବୀରେନ୍ ମିତ୍ର,ବିଶ୍ୱନାଥ ପଣ୍ଡିତ, ରାମକୃଷ୍ଣ ପତି, ଡକ୍ଟର ପରିଜା, ଭୈରବଚନ୍ଦ୍ର ମହାନ୍ତି ବସି ଯାହା ନିଷ୍ପତ୍ତି ନେବେ ତାହା କାର୍ଯ୍ୟକାରୀ ହେବ । କଟକ ସହରବାସୀ

ତାକୁ ମାନିନେବେ । ମନ୍ତ୍ରୀ ସୁରେନ୍ଦ୍ର ନାଥ ପଟ୍ଟନାୟକ ତାହା କାର୍ଯ୍ୟକାରୀ କରିବେ । ଏହା ହେଉଛି ମୁରବୀମାନଙ୍କର ନିଷ୍ପତ୍ତି । ଏପରି ମୁରବୀ ହୋଇଛନ୍ତି ଜଷ୍ଟିସ ହରିହର ମହାପାତ୍ର, ଜଷ୍ଟିସ ରାଜକିଶୋର ଦାସ, ଆଡଭୋକେଟ ରଣଜିତ୍ ମହାନ୍ତି, ବୀରେନ୍ଦ୍ର ମୋହନ ପଟ୍ଟନାୟକ, ପ୍ରବୀର ପାଲିତ, ମନମୋହନ ମିଶ୍ର । ସେମାନେ ବି ଆଜି ନାହାନ୍ତି । ସେମାନେ ମିଶି ଯାହା ନିଷ୍ପତ୍ତି କରୁଥିଲେ, କଟକ ସହର ତାହା ମାନୁଥିଲା ।

ଆଉ ଭୁବନେଶ୍ୱର ? ଭୁବନେଶ୍ୱର ଏବଂ ଚଣ୍ଡୀଗଡ଼ ଏକା ସମୟର । ଗୋଟିକର ସ୍ଥପତି (?) ହେଲେ ଭାବ (କ୍ୱାଲିଫିକେଶନ ଜଣା ନାହିଁ) ଏବଂ ଚଣ୍ଡୀଗଡ଼ର ହେଲେ ପୃଥିବୀର ଶେଷ କ୍ଲାସିକାଲ ସ୍ଥପତି କରବୁଇଜର । ଦୁଇଶହ ବର୍ଷ ଆଗକୁ ଅନାଇ ଚଣ୍ଡୀଗଡ଼ର ନକ୍ସା ତିଆରି ହୋଇଛି । ଆଉ ଭୁବନେଶ୍ୱରର ? ସହର ମଝିରେ ଦୁଇଟା ଜାତୀୟ ରାଜପଥ, ସହରର ଉପକଣ୍ଠରେ ଆନ୍ତର୍ଜାତିକ ବିମାନ ବନ୍ଦର, ସହର ମଝିରେ ତିନିଟା ସାମରିକ ସଂସ୍ଥା, ସବୁ ରାସ୍ତା ପରସ୍ପରକୁ ଭେଟୁଛନ୍ତି ସମକୋଣରେ, ସହରଟା ପାହାଡ଼ ଉପରେ ତଳକୁ ଗଡ଼ି ଯାଇଛି (ରାଜଭବନରୁ ଗୋଟିଏ ପଟରେ ମାଉସୀମା ମନ୍ଦିର ପର୍ଯ୍ୟନ୍ତ, ଆଉ ପଟରେ ଶିରୀପୁର ପର୍ଯ୍ୟନ୍ତ, ଆର ପଟକୁ ନୂଆପଲ୍ଲୀ ପର୍ଯ୍ୟନ୍ତ) ରହିଛି ନେଚୁରାଲ ଡ୍ରେନେଜ । ତଥାପି ପାଣି ଅଟକୁଛି, ମଶାମାଛିଙ୍କ ଦୌରାତ୍ମ୍ୟ । କି ଯୋଜନା ଏଇଟା ? ପ୍ରଥମ ତିନିଚାରିଟା ୟୁନିଟ୍‌ର ଘର ରାସ୍ତା ଠାରୁ ତଳେ । ପରେ ପରେ ବହୁତଳପ୍ରାସାଦ । କେହି କାହାକୁ ମାନିବାକୁ ନାରାଜ । କଣ ନା ରାସ୍ତା ଏନ୍‌କ୍ଲୋଜ କରିଛୁ, ଏନକ୍ରୋଚ ନୁହେଁ । ବହୁତ ବର୍ଷପରେ ମନେପଡ଼ିଲା ଯେ ମେଟ୍ରୋପଲିସନ ଗଢ଼ି ଖାଲି ସରକାରୀ କ୍ୱାର୍ଟର୍ସ କଲେ ସାମାଜିକ, ମନସ୍ତାତ୍ତ୍ୱିକ ସମସ୍ୟା ଉପୁଜିଲାଣି ଭୟାନକ ଭାବରେ । ଆଉ ପାଣି ? ପ୍ରଥମେ ଦୟା, ତା'ପରେ କୁଆଖାଇ ଏବଂ ପରିଶେଷରେ ନରାଜରୁ ପାଣି ନେବାକୁ ପଡ଼ିଲା ସହରଠାରୁ ବହୁଦୂର ନରାଜରୁ । ପୁଣି ପିଇବା ପାଣି ଆଉ ଅନ୍ୟାନ୍ୟ ବ୍ୟବହାର ପାଇଁ ପାଣି ମଧ୍ୟ ଗୋଟାଏ ପ୍ରକାରର । ପୃଥିବୀର କୌଣସି ଆଧୁନିକ ସହରରେ ଇମିତି ବ୍ୟବସ୍ଥା ନାହିଁ । ଯୋଜନାର ତ୍ରୁଟି ଯୋଗୁଁ ଏଇ ସମସ୍ୟା ଦେଖାଦେଇଛି ।

ଖାଲି କଟକରୁ ଅଫିସ୍ ଉଠାଇବା ହିଁ ସାର ହୋଇଛି । ଉଠାଅ, କେଉଁଠାକୁ, କେମିତି, କଣ ଲାଭ ହେବ ସେଥିରୁ ଏହାର ବିଚାର ନାହିଁ । ଫଳରେ କିଛି ନ୍ୟସ୍ତସ୍ୱାର୍ଥ ଲୋକଙ୍କର ଘର ଭଡ଼ାଲାଗିବା ସାର ହୋଇଛି । କେଉଁଠି ଅଫିସ କହିଲେ, କେହି କହିପାରିବେ ନାହିଁ । ଭୁବନେଶ୍ୱରରେ ଘର ତିଆରି ଚାଲିଛି ପ୍ରଭୂତ । ଚୋରା ସିମେଣ୍ଟ, ଚୋରା ଇଟା, ଚୋରା କାଠ (ଏବଂ ଚୋରା ଲାଇଟ୍) ଅନେକ ଲୋକଙ୍କ ଘର ପାଇଁ ସହାୟକ ହୋଇଛି । ତୋଷାଳି ପ୍ଲାଜା ଖାଲି ପଡ଼ିଛି ବହୁ ବର୍ଷଧରି । ଅସାମାଜିକ ଲୋକ ଏବଂ ଚୋରଙ୍କର କେଦାରେଶ୍ୱର ପାଲଟିଛି । କିନ୍ତୁ ସେଠାକୁ ଅଫିସସବୁ (ଯାହା ସବୁ ଭଡ଼ା ଘରମାନଙ୍କରେ ଚାଲୁଛି) ଉଠାଇବା ସମ୍ଭବ ହୋଇ ନାହିଁ । କମ କଷ୍ଟ ସେ କାମ କରିବା ? କାରଣ ମଧ୍ୟ ସ୍ପଷ୍ଟ ।

ଏହାର ଫଳ ବିଷମୟ । ଦୁଇଟି ଯାକ ସହରର ତ୍ରୁଟିପୂର୍ଣ୍ଣ ଯୋଜନା ଏବଂ ତ୍ରୁଟିପୂର୍ଣ୍ଣ ମ୍ୟାନେଜମେଣ୍ଟ ଦୁଇଟି ଯାକ ସହରର ବିକାଶକୁ ବ୍ୟାହତ କରୁଛି । କିନ୍ତୁ ଆଜିର କଥା

ନୁହେଁ, କୌଣସି ସମୟରେ ବି ନେତାମାନେ ଷ୍ଟେଟ୍‌ସମ୍ୟାନଙ୍କ ଭଳି ବ୍ୟବହାର ନ କରି ପଲିଟିସିଆନ୍‌ମାନଙ୍କ ଭଳି ବ୍ୟବହାର କରି ଆସିଛନ୍ତି । ଷ୍ଟେଟ୍‌ସମ୍ୟାନ ଅନାଏ ଆଗାମୀ ପାଞ୍ଚ ପିଢ଼ିକୁ, ପଲିଟିସିଆନ ଅନାଏ ଆଗାମୀ ପାଞ୍ଚବର୍ଷକୁ (ନିର୍ବାଚନକୁ)

ଏହା କୌଣସି ବ୍ୟକ୍ତି ବା ଗୋଷ୍ଠୀ ସପକ୍ଷରେ ବା ବିପକ୍ଷରେ ନୁହେଁ । ସ୍ୱାଧୀନତା ପରେ ଗଢ଼ା ହୋଇଥିବା ଗୋଟିଏ ବୋଲି ଫାଉଣ୍ଟେନ କାମ କରୁ ନାହିଁ । ଗୋଟିଏ ବୋଲି ଘଡ଼ି ଠିକ୍ ସମୟ ଦେଖାଉ ନାହିଁ । ଗୋଟିଏ ବୋଲି ରାସ୍ତା ବିପଦମୁକ୍ତ ନୁହେଁ । କିନ୍ତୁ ଚାଲିଛି ଘର ତିଆରି, ବହୁତଳ ପ୍ରାସାଦ Emergency ବ୍ୟବସ୍ଥା ନାହିଁ, Fire Extinguisher ନାହିଁ, ଡ୍ରେନ୍ ନାହିଁ Wastageର ବ୍ୟବସ୍ଥା ନାହିଁ ଅନେକଥିରେ ।

କିନ୍ତୁ ବୁଝୁଛି କିଏ ? ଶୁଣୁଛି କିଏ ? କଟକରେ ତ ଅନେକ ଅଫିସର ତ୍ରୁଟିକୁ ସୁଧାରିବାକୁ ଯାଇ ରାତାରାତି ବଦଳି ହୋଇଯାଇଛନ୍ତି ।

ପ୍ରଶ୍ନ : ଆପଣ ମାର୍କ୍ସବାଦରେ ବିଶ୍ୱାସ କରିଥିଲେ । ଏବେ ମଧ୍ୟ ଅନେକ ମାର୍କ୍ସବାଦରେ ବିଶ୍ୱାସ କରନ୍ତି ବୋଲି କହନ୍ତି । ସେମାନଙ୍କ କଥା ଏବଂ କାର୍ଯ୍ୟ ମଧ୍ୟରେ ଫରକ କେତେ ?

ଉତ୍ତର : ଆପଣ ତ୍ରୁଟିକୁ ନିୟମ ବୋଲି ଧରନ୍ତୁ ନାହିଁ । ଏକ ନିୟମରେ, ଧାରାରେ ଚାଲୁ ଚାଲୁ ତ୍ରୁଟି ଦେଖାଯାଏ । ସେଇଟା ସାମୟିକ । ତ୍ରୁଟି ସଂଶୋଧିତ ହେଲା କି ତ୍ରୁଟିଟା ନିୟମ ହୋଇଗଲା ସେଇଟା ବିଚାର୍ଯ୍ୟ ।

ଦ୍ୱିତୀୟ କଥା ହେଲା କିଛି ଲୋକଙ୍କ କାର୍ଯ୍ୟକୁ ନୀତିରେ ବିକାର ବା ବିପର୍ଯ୍ୟୟ ଭାବିବା ଭୁଲ । କେତେ ନେତା, କେତେ ଦେଶରେ ତ୍ରୁଟି ବା ବିଚ୍ୟୁତି ହେଲା ବୋଲି ସାମାଜିକ ନିୟମ ଭୁଲ ହୋଇଯିବ ନାହିଁ । ମାର୍କ୍ସବାଦ ଏକ ବୈଜ୍ଞାନିକ ସାମାଜିକ ନିୟମ । ନୂତନ ପରିସ୍ଥିତି, ନୂତନ ଉଦ୍‌ଭାବନ ତାହାକୁ ସମୃଦ୍ଧ କରିବ କିନ୍ତୁ ନିୟମ ବଦଳିଯିବ ନାହିଁ, ସବୁ ପ୍ରାକୃତିକ ନିୟମ ପରି ।

ସୋଭିଏତ ୟୁନିଅନ ଏବଂ ପୂର୍ବ ୟୁରୋପରେ ସମାଜବାଦ ଭୁଶୁଡ଼ି ପଡ଼ିଲା, ପାର୍ଟି ଭିତରେ ଜନ୍ମଲାଭ କରିଥିବା ନିଉ କ୍ଲାସ ପାଇଁ । ଚୀନ ଭିଏତନାମ ତ ଭୁଶୁଡ଼ି ପଡ଼ିଲା ନାହିଁ । ସେମାନେ ତ୍ରୁଟିକୁ, ସମ୍ଭାବ୍ୟ ତ୍ରୁଟିକି ସୁଧାରି ନେଲେ । ଦକ୍ଷିଣ ଆଫ୍ରିକାରେ ତ ସମାଜବାଦ ଭାଙ୍ଗି ପଡ଼ିଲା ନାହିଁ । ଏହା ଛଡ଼ା ସାମ୍ୟବାଦ ଓ ସାମ୍ୟବାଦୀମାନେ ପୁଣି ଫେରିବାକୁ ଆରମ୍ଭ କରିଛନ୍ତି ସମାଜବାଦ ଭାଙ୍ଗି ପଡ଼ିଥିବା ଦେଶମାନଙ୍କରେ । ଲିଥୁଆନିଆ, ବୁଲଗେରିଆ ତାହାର ଉଦାହରଣ । ଆଫ୍ରିକା, ଲାଟିନ ଆମେରିକାର ଅନେକ ଦେଶରେ ସାମ୍ୟବାଦୀମାନେ ବିଜୟୀ ବା ବିଜୟର ଉପକଣ୍ଠରେ । ନାମକରଣ କ'ଣ ହେବ ତା ଅଲଗା କଥା । କିନ୍ତୁ ସମାଜରୁ ବୈଷମ୍ୟ ଦୂର ହୋଇ ସାମ୍ୟ ପ୍ରତିଷ୍ଠା ଅବଶ୍ୟମ୍ଭାବୀ । ଭାରତର ସମାଜବାଦୀ ଶକ୍ତି ବିଭାଜିତ ହୋଇ ନ ଥିଲେ ଏବଂ ପି.ସି. ଯୋଶୀ ତଥା ଅଜୟ ଘୋଷଙ୍କ ନୀତି ଅନୁସରଣ କରିଥିଲେ ପଶ୍ଚିମବଂଗ, ତ୍ରିପୁରା, କେରଳ ଛଡ଼ା ଆନ୍ଧ୍ର, ବିହାର, ମହାରାଷ୍ଟ୍ରରେ କଣ ହୋଇଥାନ୍ତା ପରିସ୍ଥିତି ଏତେବେଳକୁ ?

ବ୍ୟକ୍ତିଗତ ବିଚ୍ୟୁତିକୁ ନୀତିର ବିଚ୍ୟୁତି ବୋଲି କୁହାଯାଇପାରେ ନାହିଁ । ଅବଶ୍ୟ ଏକଥା ସତ୍ୟ ଯେ ତାହା ପ୍ରଭାବିତ କରେ । ସତ୍ୟବାଦୀର ପଞ୍ଚସଖା କ'ଣ ସେଥିରୁ ମୁକ୍ତ ? ଗାନ୍ଧୀ ଭକ୍ତମାନେ କ'ଣ ସେଥିରୁ ମୁକ୍ତ ? ଠିକ୍ ସେଇପରି ସମାଜବାଦୀମାନେ ମଧ୍ୟ । କିନ୍ତୁ ସବୁଦଳ

ପରି ଆଜି ମଧ୍ୟ ସାମ୍ୟବାଦୀମାନଙ୍କ ମଧ୍ୟରେ ଅନେକ ଅଛନ୍ତି ଯେଉଁମାନଙ୍କର ଲାଇଫ୍ ଷ୍ଟାଇଲ ଏତେ ସରଳ ଯେ ସେମାନଙ୍କୁ ଥଟ୍ଟାରେ ଗାନ୍ଧିବାଦୀ ସାମ୍ୟବାଦୀ କୁହାଯାଏ । ପଞ୍ଜାବର ପ୍ରସିଦ୍ଧ ସାମ୍ୟବାଦୀନେତା ସତ୍ୟପାଳ ଡାଙ୍ଗ ଏବଂ ତାଙ୍କର ପତ୍ନୀ ବିମଳା ଡାଙ୍ଗ ଫକୀର ରାଜନୀତିଜ୍ଞ ଭାବରେ ପରିଚିତ ।

ସମୟ ବଦଳୁଛି । ଆମେ ନବଲବ୍ଧ ସ୍ୱାଧୀନତାକୁ 'ଏ ଆଜାଦୀ ଝୁଟା ହେ' ବୋଲି କହୁଥିଲୁ । ଆମ ମତରେ ଏହା କେବଳ ରାଜନୀତିକ ସ୍ୱାଧୀନତା ମାତ୍ର । ସମ୍ବିଧାନ କାର୍ଯ୍ୟକାରୀ ହେବା ସହିତ ଆମେ ଭାବିଲୁ ଯେ ସମ୍ବିଧାନ, ଗଣତନ୍ତ୍ର, ଭୋଟାଧିକାର ସମାଜର ଗୁଣାତ୍ମକ ପରିବର୍ତ୍ତନ ଆଣିଦେବ । ବିକାଶ ହେଲା, ଜାତୀୟ ଆୟ ବଢ଼ିଲା, କିନ୍ତୁ ବୈଷମ୍ୟ ବି ବଢ଼ିଲା । ସ୍ୱାଧୀନତା ସଂଗ୍ରାମର ମହାରଥୀମାନେ, ଜୟପ୍ରକାଶ, ଅଚ୍ୟୁତ ପଟ୍ଟବର୍ଦ୍ଧନ, ଲୋହିଆ, ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ମାଳତୀ ଦେବୀ, ବିଜୁ ପଟ୍ଟନାୟକ ଆହ୍ୱାନ ଦେଲେ ଦ୍ୱିତୀୟ ସ୍ୱାଧୀନତା ସଂଗ୍ରାମ ପାଇଁ । ଏଇ ମାତ୍ର ଓଡ଼ିଶାର ରାଜ୍ୟପାଳ ଆହ୍ୱାନ ଦେଇଛନ୍ତି କ୍ଷୁଧା ଏବଂ ଦାରିଦ୍ର୍ୟ ବିରୋଧରେ ସଂଗ୍ରାମ ପାଇଁ । ତା ଅର୍ଥ ହେଉଛି ସଂଗ୍ରାମ ସରି ନାହିଁ ।

*ଧଳା ବଦଳରେ କଳା ହେଲେ ଚୋକ*
*ମେଣ୍ଟିବ କି କୋଟି ଗରିବଙ୍କ ଦୁଃଖ,*
*ପହିଲି ଆଷାଢ଼ ନଈ ବଢ଼ି ପାଣି*
*ତୁମେ ତାକୁ ଲୋଡେ ପିଇବ କି ?*

ଜାତୀୟକବି ବାଞ୍ଛାନିଧିଙ୍କର ଏଇ କବିତା ଆଜି ବି ସତ୍ୟ । ଉଦାରୀକରଣ, ଗ୍ଲୋବାଲାଇଜେସନ ଏବଂ ମଲଟିନେସନାଲମାନେ ଆମର ଆର୍ଥନୀତିକ ସ୍ୱାଧୀନତା ସହିତ ରାଜନୀତିକ ସ୍ୱାଧୀନତାକୁ ବିପନ୍ନ କରିବାର ଉପକଣ୍ଠରେ । ଏହା ଖାଲି ମୋର ମତ ନୁହେଁ । ବହୁ ସଚେତନ ବୁଦ୍ଧିଜୀବୀ ଅର୍ଥନୀତିଜ୍ଞମାନଙ୍କର ମଧ୍ୟ ମତ ।

ପ୍ରଶ୍ନ : ତା' ହେଲେ ଆପଣ ସକ୍ରିୟ ରାଜନୀତି ଛାଡ଼ିଲେ କାହିଁକି ?

ଉତ୍ତର : ପରିବର୍ତ୍ତିତ ପରିସ୍ଥିତିରେ ପାରିଲି ନାହିଁ । ସାମ୍ୟବାଦୀ ଆନ୍ଦୋଳନ ଦ୍ୱିଧା ବିଭକ୍ତ ହୋଇଗଲା । ନିର୍ବାଚନ ଗ୍ରାସ କଲା ସମସ୍ତଙ୍କୁ । ପାର୍ଟି ଭିତରେ ହୋମୋଜିନିଟି, ଡିମୋକ୍ରାଟିକ ସେଣ୍ଟ୍ରାଲିଜମ୍ ରହିଲା ନାହିଁ । ମତ ପାର୍ଥକ୍ୟକୁ ଭୁଲ ବୁଝାଗଲା । ଫାକ୍ସନାଲିଜମର ବିଷ ଚହଟିବାକୁ ଆରମ୍ଭ କଲା । ମଲେ ପତାକା ଅର୍ଦ୍ଧନମିତ ହେବ କି ନାହିଁ, ଜୀବନର ଲକ୍ଷ୍ୟ ତାହା ନ ଥିଲା । କୋଠା, ବ୍ୟାଙ୍କ ବାଲାନ୍ସ, ଓକିଲାତି କରି ବା ଦିପୋଟି ହୋଇ ତାହା କରିପାରିଥାନ୍ତି । ସେଇଟା ଲକ୍ଷ୍ୟ ନ ଥିଲା । ସୋଭିଏଟ୍ ୟୁନିୟନ ଗଲି ୧୯୫୭ ମସିହାରେ । ମଣିଷ ନୁହେଁ ରୋବଟ୍ ଦେଖିଲି । ରିପୋର୍ଟ କଲି । ଅନେକ (ଯେପରି ଂ ଭୂପେଶ ଗୁପ୍ତ, ଂପି.ସି. ଯୋଶୀ ପସନ୍ଦ କଲେ, ଅନ୍ୟମାନେ ବିଦ୍ରୂପ କଲେ, ଜର୍ମାନୀ ଯାଇଥିଲି ପରେ ପରେ । ସମାଜବାଦୀ ସମାଜରେ ପ୍ରବଳ ସୋଭିଏଟ୍ ବିରୋଧୀ ମତ ଦେଖିଲି । ରିପୋର୍ଟ କଲି ପାର୍ଟିକୁ । ସେଇ ଅବସ୍ଥା, ଡକ୍ଟର ପଞ୍ଚାନନ ରାହା ଏବଂ ମୁଁ ଲେଖି ଦେଇଥିଲୁ ଯେ ଏଇ ଜର୍ମାନୀ ରହିପାରିବ ନାହିଁ ।

ତେଣୁ ସାମ୍ୟବାଦୀ ରହିଲି । କିନ୍ତୁ କୌଣସି ପାର୍ଟିରେ ନାହିଁ । ନକ୍ସଲବାଦୀମାନେ ଗଣସଂଗଠନ ଗଢ଼ି, ଗଣ ଆନ୍ଦୋଳନ କରି ତାହାର ଚୂଡ଼ାନ୍ତ ପର୍ଯ୍ୟାୟରେ ଅସ୍ତ୍ରଧାରଣ କଲେ ଭଲ ହୁଅନ୍ତା ବୋଲି ମୋର ମତ । ନଚେତ୍ ଖାଲି ରକ୍ତପାତ ହିଁ ସାର ହେବ । ବିପ୍ଲବ ଏକ ପ୍ରକ୍ରିୟା । ବିପ୍ଲବୀ ତାର ଧାତ୍ରୀ । ଭଲ ଧାତ୍ରୀ ଯେପରି ଗର୍ଭସ୍ଥ ଶିଶୁକୁ କମ୍ ଯନ୍ତ୍ରଣାରେ, କମ୍ ରକ୍ତପାତରେ ଭୂମିଷ୍ଠ କରାଏ, ବିପ୍ଲବୀର ଦାୟିତ୍ୱ ସେଇପରି । ସେଇଯୋଗୁଁ ଫେରିଲି । ଅପରାହ୍ନ ଜୀବନରେ ଯିବି କୁଆଡ଼େ ?

ସେଇଯୋଗୁଁ ୟୁନିଭର୍ସ ଗଢ଼ିଲି । ବିତର୍କ ବା ଡାଇଲଗ ଜରିଆରେ ଐକ୍ୟ ଖୋଜିବା ହେଉଛି କାମ । ଓଡ଼ିଶାର ଐତିହ୍ୟ, ସଂସ୍କୃତିକୁ ବିଶ୍ୱଦରବାରରେ ପରିଚିତ କରାଇବା ହେଉଛି କାମ । ଅନ୍ୟ ଲୋକଙ୍କର, ଦେଶର ସଂସ୍କୃତି ସହିତ ଓଡ଼ିଶାବାସୀଙ୍କୁ ପରିଚିତ କରାଇବା ହେଉଛି କାମ । ଆଦିବାସୀ, ନାରୀ ଏବଂ ଶିଶୁମାନଙ୍କର କଲ୍ୟାଣ ଏବଂ ବିକାଶ ହେଉଛି କାମ ।

ୟୁନିଭର୍ସ ହେଉଛି ଏକ ଯାତ୍ରା, ବନ୍ଦର ନୁହେଁ । ମୁଁ ଆଜି ଅଛି କାଲିକି ନ ଥିବି । କିନ୍ତୁ ୟୁନିଭର୍ସର ପ୍ରବାହ ରହିଥିବ । ୧୯୭୩ରେ ଏହାର ଶୁଭାରମ୍ଭ ହେଲା । ଏଇଠି ଆୟୋଜିତ ହେଲା କଟକ ନଗରର ସହସ୍ର ବାର୍ଷିକୀ । ଏଇଠିକୁ ଆସିଛନ୍ତି ଭାରତବର୍ଷର ତଥା ପୃଥିବୀର ବହୁ ଦେଶର ଭାବୁକ, ଲେଖକ, କଳାକାର, କୂଟନୀତିଜ୍ଞ, ବିଚାରପତି ।

ପ୍ରଥମେ ଆଣିଥିଲି ପୋଲିଓ ଟିକା ଓଡ଼ିଶାକୁ । ଜର୍ମାନୀରୁ ସୋଭିଏତ ୟୁନିୟନ ଯିବା ବାଟରେ ଉଡ଼ାଜାହାଜରେ ଦେଖାହେଲା ସୋଭିଏତ ରାଷ୍ଟ୍ରର ସ୍ୱାସ୍ଥ୍ୟମନ୍ତ୍ରୀଙ୍କ ସହିତ । ସେ କହିଲେ ଭାରତର ସ୍ୱାସ୍ଥ୍ୟ ପାଇଁ ସୋଭିଏତ ସାହାଯ୍ୟ କଥା । କଳାବତୀ ସରଣ ଶିଶୁ ଚିକିତ୍ସାଳୟ, ଦିଲ୍ଲୀରେ ପୋଲିଓ ଟିକା କଥା । କମ୍ରେଡ଼ , ଦିଲ୍ଲୀ ଭାରତବର୍ଷ ନୁହେଁ । ଓଡ଼ିଶାକୁ ଯୋଗାଇଲେ ମୁଁ ତାର ବଣ୍ଟନର ଦାୟିତ୍ୱ ନେବାକୁ କହିଥିଲି । ସେ ଚିଠି ଲେଖିଦେଲେ ସେଇଠି । ତାକୁ ଦେଖି କଳାବତୀ ସରଣ ଶିଶୁ ଚିକିତ୍ସାଳୟର ଡାକ୍ତରମାନେ ଚକାଡୋଳା ପାଲଟି ଯାଇଥିଲେ । ହାତ ଲେଖା ଚିଠି ଆଣିଲେ କେମିତି ? ଡକ୍ଟର ଆନସାରୀ ରାଜ୍ୟପାଳ । ସେ ଶୁଭଦେଲେ ।

ପ୍ରଶ୍ନ : ଆପଣଙ୍କ ଜୀବନର ସବୁଠାରୁ ବଡ଼ କାର୍ଯ୍ୟ କ'ଣ ?

ଉତ୍ତର : ସୁସ୍ଥଥିବା ପର୍ଯ୍ୟନ୍ତ ମୁଁ ଦୁଇ ହଜାରରୁ ଅଧିକ ଶବ ପୋଡ଼ିଛି । କିଏ ମରିଯିବା ଖବର ପାଇଲେ ମୁଁ ବାକି ସବୁ ଭୁଲିଯାଏ । ଦଳ ମତ ଜାତି ଜୀବିକା । ଶବ କେତେବେଳେ ପୋଡ଼ାଯିବ, କେଉଁଠି ପୋଡ଼ାଯିବ ତା'ର ଆୟୋଜନ କରିବାରେ ମୋର ଖ୍ୟାତି ବା ନଟୋରିଟି ରହିଛି । ମୋର ଅନେକ ବନ୍ଧୁ ମରିବା ପୂର୍ବରୁ ସେମାନଙ୍କ ପିଲାପିଲିଙ୍କୁ କହିଯାଇଛନ୍ତି, ପ୍ରଥମେ ଗିରିଜାକୁ ଖବର ଦେଇଦେବ । ବହୁ ଅସ୍ୱାଭାବିକ ଶବ ପୋଡ଼ିଛି । ବର୍ଷା ରାତିରେ ଗର୍ଭିଣୀ ମାଆର ପେଟଚିରି ଦୁଇଟି ଚୁଲାରେ ପୋଡ଼ିଛି, ପେଟ୍ରୋଲ ଢାଳି । ସେଇଟା ସବୁଠାରୁ ମହତ୍ତ୍ୱପୂର୍ଣ୍ଣ କାମ ବୋଲି ଭାବିଛି ।

ପ୍ରଶ୍ନ : ସ୍ଥାୟୀ ସନ୍ତକ କ'ଣ ଆପଣଙ୍କ କାର୍ଯ୍ୟର ?

ଉତ୍ତର : ପାଟଳିପଙ୍କ ଗ୍ରାମରେ 'ନିବେଦିତା ହୋମ' ଅନାଥ ଶିଶୁମାନଙ୍କ ପାଇଁ । ୧୯୬୨ ମସିହାର ବନ୍ୟା ଭିତରେ ଏହାର ଜନ୍ମ । ପରିଚାଳିକା କୁମାରୀ ପ୍ରମିଳା ତ୍ରିପାଠୀ ।

ବାହା ହୋଇ ନାହାନ୍ତି । ସେ ପାଲଟି ଯାଇଛନ୍ତି ଗାନ୍ଧାରୀ, ଶହେ ଶିଶୁଙ୍କର ମାତା । ଶ୍ରୀଅରବିନ୍ଦଙ୍କ ଦର୍ଶନରେ ଅନୁରକ୍ତ ପ୍ରମିଳା ଏହାକୁ ବିରାଟ ଅନୁଷ୍ଠାନରେ ପରିଣତ କରିଛନ୍ତି । ଆରମ୍ଭ ହୋଇଥିଲା ନୁଆଁଣିଆ କୁଡ଼ିଆରୁ । ବର୍ତ୍ତମାନ କୋଠା, ପୋଖରୀ, ସ୍କୁଲ, ଲାଇବ୍ରେରୀ, ଧନ୍ଦାମୂଳକ ଶିକ୍ଷା ବୟସ୍କ ଲୋକମାନଙ୍କ ଆଶ୍ରୟସ୍ଥଳର କେନ୍ଦ୍ର ଏହା । ସେତେବେଳେ ବିଜୁଳି ଲାଇନ ନ ଥିଲା, ପିଇବା ପାଣି ନ ଥିଲା । ବାତ୍ୟା ବନ୍ୟା ମରୁଡ଼ିର ଭୂଇଁରେ ଏକ ସଂଗଠନ ଗଢ଼ିବା ଭାରି କଠିନ କାମ । ପୁଣି ଗ୍ରାମୀଣ ଈର୍ଷା, ଯାହା ଗ୍ରାମମାନଙ୍କୁ ବିଷାକ୍ତ କରିଛି ।

ଅନୁଗୁଳ ମୋର ପିତୃପୁରୁଷଙ୍କ ସ୍ଥାନ । ନବକୃଷ୍ଣ ଚୌଧୁରୀ, ରାଧାମୋହନ ଗଡ଼ନାୟକଙ୍କର କର୍ମପୀଠ । କିଛି ଗୋଟିଏ କରିବାର ଇଚ୍ଛାଥିଲା । ଗଢ଼ା ହେଲା ଜନକଲ୍ୟାଣ ସଂସ୍ଥା, ଭାରତ ସରକାରଙ୍କ ଆନୁକୂଲ୍ୟରେ । ବିଶ୍ୱଜିତ୍ ମିଶ୍ର ଏହାର ପରିଚାଳକ । ଅନୁଗୁଳର ଜନଜୀବନରେ ଏହା ଆପଣାର ଆଲେଖ୍ୟ ରଖିବାକୁ ବ୍ରତୀ । ଧନ୍ଦାମୂଳକ ଶିକ୍ଷା, ଜ୍ଞାନ, ବିଭିନ୍ନ ପ୍ରକାରର ସମାଜ କଲ୍ୟାଣ କାର୍ଯ୍ୟ ସମ୍ପନ୍ନ କରାଯାଇଛି । ନାରୀ ଏବଂ ବେକାର ଯୁବକ/ଯୁବତୀମାନଙ୍କ ପାଇଁ ସ୍ୱତନ୍ତ୍ର କାର୍ଯ୍ୟକ୍ରମ ଗ୍ରହଣ କରାଯାଉଛି । କବି ୰ରାଧାମୋହନ ଗଡ଼ନାୟକଙ୍କ ନାମରେ ଏକ ଲାଇବ୍ରେରୀ ଗଢ଼ା ହୋଇଛି । ନବକୃଷ୍ଣ ଚୌଧୁରୀଙ୍କ ଜନ୍ମ ଦିବସରେ ଏହାର ଶୁଭାରମ୍ଭ ହୋଇଛି । ସେଇ ସ୍ମୃତିରେ ଏହା ନିୟୋଜିତ ।

ରାୟଗଡ଼ା (ମୁନିଗୁଡ଼ା, ବାଂଜିକୁସୁମ ଗାଁ) ଜିଲ୍ଲାରେ ୫୦ଟି ଆଦିବାସୀ ଝିଅଙ୍କୁ ନେଇ, ଏକ ଆବାସିକ ସ୍କୁଲ ଗଢ଼ାହୋଇଛି । ଭଲ ରେକର୍ଡ କରୁଛନ୍ତି ପିଲାମାନେ । ନକ୍ସଲ ପ୍ରଭାବିତ ଅଞ୍ଚଳ । ଆମ ଶିକ୍ଷୟିତ୍ରୀ, ଛାତ୍ରୀମାନେ କିନ୍ତୁ ନିର୍ଭୟ । କାରଣ ରାଜନୀତିକ ଗନ୍ଧ ନାହିଁ । ଶ୍ରୀ·ରାମଚନ୍ଦ୍ର ବକ୍ସିପାତ୍ର ଏବଂ ଶ୍ରୀ ଏ.କେ. ସାରଦା ଏହାର ସ୍ଥାନୀୟ ଦାୟିତ୍ୱରେ ଅଛନ୍ତି । ଭାରତ ସରକାରଙ୍କ ଅନୁଦାନରେ ଏହା ଗଠିତ । ପାଞ୍ଚବର୍ଷ ଧରି ଆମେ ଗବେଷଣା କରିଛୁ ଓଡ଼ିଶାର ଆଦିବାସୀମାନଙ୍କ ଉପରେ । ଏହି ଗବେଷଣା ନିବନ୍ଧ ପ୍ରକାଶିତ ଏବଂ ଆଲୋଚିତ ହୋଇଛି ନୂଆଦିଲ୍ଲୀ, କାଠମାଣ୍ଡୁ ଏବଂ ସୁଇଜରଲାଣ୍ଡରେ । ବର୍ତ୍ତମାନ ତାହା ଦଶଖଣ୍ଡ ବହି ଆକାରରେ ପ୍ରକାଶ ପାଇଛି ଦିଲ୍ଲୀରୁ ।

ଏହା ସମ୍ଭବ ହେଉଛି ୟୁନିଭର୍ସର କର୍ମକର୍ତ୍ତା, ଆମର ସହକର୍ମୀ ଏବଂ ଶୁଭେଚ୍ଛୁମାନଙ୍କ ଯୋଗୁଁ । ଏହା ଏକକ କାମ ନୁହେଁ, ସମଷ୍ଟିର କାମ ।

ପ୍ରଶ୍ନ : ଆପଣ ଏକଦା ରେଭେନ୍ସା କଲେଜ ଛାତ୍ର ସଂସଦର ସଭାପତି ଥିଲେ । ସେତେବେଳେ ଛାତ୍ରସମାଜ, ସଂସଦ, ରାଜନୀତି ଦ୍ୱାରା ପ୍ରଭାବିତ ହେଉଥିଲା କି ?

ଉତ୍ତର : ସମ୍ପୂର୍ଣ୍ଣ ଭାବରେ ହେଉନଥିଲା, କିନ୍ତୁ ନିର୍ବାଚନରେ କିଏ ପ୍ରାର୍ଥୀ ହେବ, କ'ଣ କାର୍ଯ୍ୟକ୍ରମ ହେବ, ଏସବୁ ସ୍ଥିର କରୁଥିଲେ ଛାତ୍ର ନେତା ବା ଦଳୀୟ କର୍ମୀମାନେ । ରାଜନୀତିକ ବଡ଼ ନେତାମାନେ ଜାଣୁଥିଲେ ପରେ । କଂଗ୍ରେସ, ସୋସାଲିଷ୍ଟ ଏବଂ କମ୍ୟୁନିଷ୍ଟ ପାର୍ଟିର ଛାତ୍ରମାନେ ସବୁ ସ୍ଥିର କରୁଥିଲେ । ଗୋଟିଏ ଦିଓଟି ଲିଫଲେଟ, ପୁସ୍‌କାର୍ଡ, ହାତଲେଖା ପୋଷ୍ଟରରେ ସୀମିତ ଥିଲା ।

ମୁଁ ପ୍ରାର୍ଥୀ ଥିଲି । ମୁଁ ଚାରିଅଣା ଖର୍ଚ୍ଚ କରିଥିଲି । ପିଲାମାନେ ଚାରିଅଣା ଲେଖାଏଁ ଚାନ୍ଦା ଦେଇ ଗୋଟିଏ ଲିଫ୍‌ଲେଟ୍ ଛପାଇଥିଲେ । ସେଥିରେ ଲେଖାଥିଲା ଧାଡ଼ିଏ । ସେ

ଆମର ପ୍ରାର୍ଥୀ ସେତିକି, କଲେଜର ପୋ[illegible]ଖାଯାଇଥିଲା, ଗୋଟିଏ ଡବା ସହିତ । ଦସ୍ତଖତଟିଏ ଏବଂ ସୁଙ[illegible]

ଅସଲ ସାଫଲ୍ୟ ହେଉଛି କଣ୍ଟାକ୍ଟ ଏବଂ କାର୍ଯ୍ୟ । ନିର୍ବାଚନ ପୂର୍ବରୁ ଦଳେଇଘାଇ, ରିଲିଫ, ସୀମା ଆନ୍ଦୋଳନ । ମୁଁ ପ୍ରାର୍ଥୀ ନ ହୋଇ ଏହିସବୁ କାର୍ଯ୍ୟ ସହିତ ଯିଏ ଜଡ଼ିତ ଥିଲା, ସେ ଠିଆ ହୋଇଥିଲେ ବି ଜିତିଥାଆନ୍ତା । ଏ ବିଜୟ ମୋର ବ୍ୟକ୍ତିଗତ ବିଜୟ ନୁହେଁ ।

କଲେଜ ୟୁନିଅନ ନିର୍ବାଚନ ପରଦିନ ସବୁ ଅବସ୍ଥା ସ୍ୱାଭାବିକ ହୋଇଯାଉଥିଲା । ନିର୍ବାଚନର ଉଷ୍ମତା ପରଦିନକୁ ଶେଷ । ମୋର ସମ୍ପାଦକ ଥିଲେ ୰ ରମେଶ ଚନ୍ଦ୍ର ଧଳ । ସେ କଂଗ୍ରେସ ଦଳର । କିନ୍ତୁ କୌଣସି କାର୍ଯ୍ୟରେ ଆମ ଭିତରେ ବିରୋଧ ହୋଇ ନାହିଁ । ମତାନ୍ତର ଥିଲା କିନ୍ତୁ ମନାନ୍ତର ନ ଥିଲା । ସେଥିପାଇଁ ବ୍ୟକ୍ତିଗତ ବଂଧୁତା ସେସବୁର ସୀମା ସରହଦ ଟପି ପରିବ୍ୟାପ୍ତ । ସେଇଟା ମୋର ଗର୍ବ ଏବଂ ସାଫଲ୍ୟ ।

ସେ ଦିନର ଅନେକ ପ୍ରତିଦ୍ୱନ୍ଦ୍ୱୀ, ଅନ୍ୟ ଦଳର ସଭ୍ୟ ମୋର ଘନିଷ୍ଠ ବଂଧୁ । ସେ ତାଲିକା ଆରମ୍ଭ କଲେ ଶେଷ ହେବ ନାହିଁ । ମନେପଡୁଛି, ମୋର ସଭାପତିତ୍ୱ ସମୟରେ ବହୁ ବିଶିଷ୍ଟ ବ୍ୟକ୍ତି ଆସିଥିଲେ । ବର୍ମାର ପ୍ରଧାନମନ୍ତ୍ରୀ ଉନୁ, ବିଶ୍ୱବିଦ୍ୟାଳୟ ଗ୍ରାଣ୍ଟସ୍ କମିଶନର ଚେୟାରମ୍ୟାନ ସି.ଡି. ଦେଶମୁଖ, ଜୟପ୍ରକାଶ ନାରାୟଣ ଏବଂ ସର୍ବୋପରି ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁ ।

ସେତେବେଳେ ସେ ଜାଣିଥିଲେ ଯେ, ମୁଁ କଂଗ୍ରେସର ବିରୋଧୀ । ମୁଁ ତାଙ୍କୁ ନିମନ୍ତ୍ରଣ କରିଛି ଦଳୀୟ କର୍ମୀ ଭାବରେ ନୁହେଁ, ରେଭେନ୍ସା କଲେଜ ୟୁନିୟନର ସଭାପତି ଭାବରେ । ପ୍ରଧାନମନ୍ତ୍ରୀ କଲେଜ ଆସିବା ପୂର୍ବରୁ ଯେଉଁ ବେତାର ବାର୍ତ୍ତା ପୁଲିସ ଆଇ.ଜି.ଙ୍କ ପାଖକୁ ଆସିଥିଲା ସେଥିରେ ଲେଖାଥିଲା, Since the President of the College Union is our opponent, it is the expressed desire of the Prime Minister that no policeman either in uniform or in plain clothes should enter the campus of the college without written (underline written) permission of the President.

ସେତେବେଳେ ଆଇ.ଜି. ଶ୍ରୀ ବି.ରାୟ ମୋତେ ଗୋପନରେ ଏହି ବାର୍ତ୍ତାଟି ଦେଖାଇଥିଲେ ଏବଂ ଚାରିଜଣ ସାଦାପୋଷାକରେ ପୁଲିସ ରେଭେନ୍ସା କଲେଜ ଭିତରକୁ ଯିବା ପାଇଁ ମୋ ଠାରୁ ଲିଖିତ ଅନୁମତି ନେଇଥିଲେ ।

ପ୍ରଶ୍ନ : ଆଉ କିଛି କହିବେ ?

ଉତ୍ତର : ନା, ସେ ଦିନ ରକ୍ତରେ ନିଆଁ ଥିଲା, ଦେହରେ ଯୌବନ ଥିଲା, ଆଖିରେ ସ୍ୱପ୍ନ ଥିଲା । ସେ ଦିନ ସାମ୍ୟର ସମାଜ ଗଢ଼ିବା ପାଇଁ ସ୍ୱପ୍ନରେ ବିଭୋର ହୋଇଥିଲି । ଆଖି ବୁଜିବା ପୂର୍ବରୁ ସେଥିରୁ କାଣିଚାଏ ସାର୍ଥକ ହେବା ଦେଖିପାରିଲେ, ଜୀବନ ସାର୍ଥକ ହେବା ମଣିବି ।





ଶ୍ରୀ ଗିରିଜାଭୂଷଣ ପଟ୍ଟନାୟକ

ଓଡ଼ିଶାର ବାମପନ୍ଥୀ ଆନ୍ଦୋଳନର ଜଣେ ପୁରାତନ କର୍ମୀ । ଅଧୁନା ସେ ଜଣେ ସମାଜସେବୀ, ପ୍ରାବନ୍ଧିକ ଓ ସ୍ତମ୍ଭକାର ଭାବରେ ସୁପରିଚିତ । ଛାତ୍ରାବସ୍ଥାରେ ସେ ସ୍ୱାଧୀନତା ଆନ୍ଦୋଳନରେ ସଂଶ୍ଳିଷ୍ଟ ଥିଲେ । ଭାରତୀୟ ସଂସ୍କୃତି ଓ ଐତିହ୍ୟରେ ପରିପୁଷ୍ଟ ଲେଖକଙ୍କର ଚିନ୍ତା ଉଭୟ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଦର୍ଶନର ସମ୍ମିଶ୍ରଣ । ଲେଖକଙ୍କର ଜୀବନସ୍ମୃତିର ପ୍ରଥମ ଖଣ୍ଡ ''ଜୀବନର ବାଟେଘାଟେ'' ସାହିତ୍ୟ ଏକାଡେମୀଦ୍ୱାରା ପୁରସ୍କୃତ । ''ଜୀବନର ଜନପଥରେ'' ତାଙ୍କର ଜୀବନସ୍ମୃତିର ଦ୍ୱିତୀୟ ଖଣ୍ଡ । ମାର୍କ୍ସ, ଲେନିନ୍‌ଙ୍କୁ ଲେଖକ ଯେପରି ନିଜର ଆଦର୍ଶ ଭାବରେ ଗ୍ରହଣ କରିଛନ୍ତି ଠିକ୍ ସେହିପରି ଗୌତମ ବୁଦ୍ଧ, ଚାର୍ବାକ୍, ବୃହସ୍ପତି, ଚଣ୍ଡୀଦାସ, ଅଲେଖ ମହିମା ଓ ଶ୍ରୀଅରବିନ୍ଦ ପ୍ରଭୃତିଙ୍କୁ ସେ ନିଜର ଆଦର୍ଶ ଭାବରେ ଗ୍ରହଣ କରିଛନ୍ତି ।

ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨
ISBN 978-81-7411-617-8